ବୈଷ୍ଣବଚରଣ ରଚନାବଳୀ

ରଚୟିତା :
ବୈଷ୍ଣବଚରଣ ଦାସ

ପ୍ରକାଶକ :
ଓଡ଼ିଶା ସାହିତ୍ୟ ଏକାଡେମୀ
ସଂସ୍କୃତି ଭବନ, ଭୁବନେଶ୍ୱର-୭୫୧୦୧୪

ମୁଦ୍ରଣ କାଳ : ୧୯୯୯

ମୁଦ୍ରଣ :
ଶ୍ରୀ ମା' ପ୍ରିଣ୍ଟର୍ସ, ଭୁବନେଶ୍ୱର-୧୪

ମୂଲ୍ୟ -୧୩୦.୦୦ ଟଙ୍କା

BAISHNABA CHARAN RACHANABALI

Written by :
Baishnaba Charan Das

Published by :
Orissa Sahitya Akademi
Sanskruti Bhawan,
Bhubaneswar-751014

1st Edition 1999

Printed at
Shree Maa Printers,
B.J.B. Nagar, Bhubaneswar - 14

Price : Rupees One hundred thirty only

ISBN 81-7586 - 033-2

# ଅଗ୍ରଲେଖ

ଓଡ଼ିଆ ସାହିତ୍ୟର ସବୁଜ ଯୁଗର ଅନ୍ୟତମ ସୃଜନ ପ୍ରତିଭା ସ୍ୱର୍ଗତ ବୈଷ୍ଣବଚରଣ ଦାସ ଏକାଧାରରେ ଥିଲେ ଜଣେ କବି, ଗାଳ୍ପିକ, ଔପନ୍ୟାସିକ, ନାଟ୍ୟକାର ତଥା ଓଡ଼ିଆ ଭାଷା, ସଂସ୍କୃତି ଓ ପରମ୍ପରାର ଏକନିଷ୍ଠ ପୂଜାରୀ । ସାମାଜିକ ମନସ୍ତତ୍ତ୍ୱ ଉପରେ ପର୍ଯ୍ୟବସିତ ତାଙ୍କର 'ମନେମନେ' ଉପନ୍ୟାସ ଓଡ଼ିଆ ସାହିତ୍ୟରେ ଏକ ଅନନ୍ୟ ସୃଷ୍ଟି । ସାମାଜିକ ପୃଷ୍ଠଭୂମିରେ ରଚିତ ତାଙ୍କର 'ଅଦ୍ୱିତୀୟା, 'ପାଗଳା ରହିମ୍', 'ମାଷ୍ଟ୍ରାଣୀ', 'ଯୋଗବାରୁଣୀ' ଆଦି ଗଳ୍ପ ଓଡ଼ିଆ କଥା ସାହିତ୍ୟକୁ ତାଙ୍କର ଅମୂଲ୍ୟ ଦାନ । ନାଟ୍ୟକାରଙ୍କ ପଦ୍ମାବତୀ, ପ୍ରତ୍ୟନ୍ତର ନାଟକ ଦୁଇଟି ସଫଳତାର ସହ ଅଭିନୀତ ହୋଇ ଦର୍ଶକମାନଙ୍କ ମନୋରଞ୍ଜନ କରିବାରେ ସମର୍ଥ ହୋଇପାରିଛି । 'ବାସନ୍ତୀ' ଉପନ୍ୟାସର ଗୋଟିଏ ଭାଗ ଏହି ସ୍ରଷ୍ଟାଙ୍କ କୃତିଦ୍ୱାରା ସମୁଜ୍ଜ୍ୱଳ । ରୋମାଣ୍ଟିକ୍‌ଧର୍ମୀ ଉଚ୍ଛ୍ୱାସ - ଆବେଗଭରା ତାଙ୍କର କବିତାଗୁଚ୍ଛ 'ସବୁଜ'ର ଉଦାତ୍ତ ସ୍ୱର ଓ ସ୍ୱାକ୍ଷର ।

ତାଙ୍କର ସାହିତ୍ୟିକ ଓ କଳାକାର ଜୀବନ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ଥିବାରୁ ସେ ସାହିତ୍ୟରଚନା, ସାହିତ୍ୟଚର୍ଚ୍ଚାରେ ନିୟୋଜିତ ରହିବା ସହିତ ସଙ୍ଗୀତ ଚର୍ଚ୍ଚା ଆସରରେ ଆଗ୍ରହର ସହ ଯୋଗଦାନ କରୁଥିଲେ । ଜଣେ ସଙ୍ଗୀତଜ୍ଞ ଓ କଳାପ୍ରେମୀ ଭାବରେ ସେ କଳାପ୍ରତି ନିଜର ଉନ୍ନତ ରୁଚିବୋଧର ପରିଚୟ ଦେଇଥିଲେ । ଉଚ୍ଚଶିକ୍ଷିତ ବୈଷ୍ଣବଚରଣ ଓଡ଼ିଶା-ବିହାର ପ୍ରଦେଶର ପାଟଣା ବିଶ୍ୱବିଦ୍ୟାଳୟରୁ ଇଂରାଜୀ ଓ ପରେ ଓଡ଼ିଆରେ ସ୍ନାତକୋତ୍ତର ଉପାଧି ଲାଭ କରିଥିଲେ । ସେ ପ୍ରଥମ ଓଡ଼ିଆ ଆଇ.ପି.ଏସ୍. ଅଫିସର ହେବାର ଗୌରବ ଲାଭ କରିଥିଲେ । ତାଙ୍କର ଗଭୀର କର୍ତ୍ତବ୍ୟନିଷ୍ଠା, କାର୍ଯ୍ୟଦକ୍ଷତା ଓ ସାଧୁତା ପାଇଁ ସେ ପୋଲିସ୍ ସେବାର ସର୍ବୋଚ୍ଚ ପଦବୀରେ ଅଧିଷ୍ଠିତ ହୋଇପାରିଥିଲେ । ଦେଶର ଜଣେ ଦକ୍ଷ ପୋଲିସ୍ ଅଫିସର ଭାବରେ ଲଣ୍ଡନଠାରେ ଅନୁଷ୍ଠିତ ଷଷ୍ଠଜର୍ଜଙ୍କ ରାଜ୍ୟାଭିଷେକ ଉତ୍ସବରେ ସେ ଯୋଗଦାନ କରି ବିଶେଷ ସମ୍ମାନର ଅଧିକାରୀ ହୋଇଥିଲେ ।

ସେ ଅତ୍ୟନ୍ତ ମିଷ୍ଟଭାଷୀ, ପରୋପକାରୀ ଓ ବନ୍ଧୁବତ୍ସଳ ଥିବାରୁ ସମସ୍ତଙ୍କର ପ୍ରିୟପାତ୍ର ହୋଇ ପାରିଥିଲେ । ପୁଲିସ୍ ଜୀବନର କାର୍ଯ୍ୟବ୍ୟସ୍ତତା ତାଙ୍କର ସାହିତ୍ୟ

ସାଧନାର ପ୍ରତିବନ୍ଧକ ହୋଇନଥିଲା । ବରଂ ତାଙ୍କର ସାରସ୍ୱତ ଜୀବନକୁ କରିଥିଲା ଅଧିକ ଶୃଙ୍ଖଳିତ, ସୁଶୋଭିତ ଓ ମଧୁମୟ ।

ଅତୀବ ଆନନ୍ଦର କଥା, ସେହି ବରେଣ୍ୟ ସ୍ରଷ୍ଟାଙ୍କ ଅନବଦ୍ୟ ସୃଷ୍ଟିସମ୍ଭାରକୁ ସଙ୍କଳିତ କରି ଏକ ଗ୍ରନ୍ଥାବଳୀ ଆକାରରେ ପ୍ରକାଶ ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀଙ୍କ ସାଧୁ ପ୍ରଚେଷ୍ଟା ଏବେ ଫଳବତୀ ହେଲା । ସ୍ୱର୍ଗତ ଦାସଙ୍କ ଧର୍ମପତ୍ନୀ ଶ୍ରୀମତୀ ବୀଣାପାଣି ଦାସ ଏବଂ ସୁକନ୍ୟା କବିତା ମହାପାତ୍ରଙ୍କ ଆଗ୍ରହ ଓ ପ୍ରୟାସ ଫଳରେ ପାଣ୍ଡୁଲିପିଟି ଏକାଡେମୀର ହସ୍ତଗତ ହୋଇଥିବାରୁ ଏବଂ ଶ୍ରୀମତୀ ଦାସଙ୍କର ଆଂଶିକ ଅର୍ଥ ସହାୟତାରେ ଏହି ରଚନାବଳୀର ପ୍ରକାଶନ ତ୍ୱରାନ୍ୱିତ ହୋଇଥିବାରୁ ଏହାର ପ୍ରକାଶନ ଅବସରରେ ଉଭୟଙ୍କୁ ଏକାଡେମୀ ପକ୍ଷରୁ ସାଧୁବାଦ ଜଣାଉଛି । ଗ୍ରନ୍ଥାବଳୀଟି ପାଠକ ସମାଜରେ ସମାଦୃତ ହେବା ସଙ୍ଗେ ସଙ୍ଗେ ଲୁଚି ଲୁଚି ଯାଉଥିବା ଓଡ଼ିଆ ସାହିତ୍ୟର ସବୁଜ ଯୁଗର ଏହି ସୃଜନ ପ୍ରତିଭା ଜନମାନସରେ ଉଜ୍ଜ୍ୱଳତର ଭାବରେ ପ୍ରତିଭାତ ହେବେ ବୋଲି ମୁଁ ଆଶାପୋଷଣ କରୁଛି ।

ହରପ୍ରସାଦ ପରିଚ୍ଛା ପଟନାୟକ
ସଚିବ



B.C.Das, I.P. (Retd.)



# ଉତ୍ସର୍ଗ

କେମିତି ଲେଖିବି, କେଉଁ ଭାଷାରେ ଲେଖିବି, ସେ ବର୍ତ୍ତମାନ କେଉଁଠି ଥିବେ, ତାହା ଯଦିଚ ମୁଁ ଜାଣି ନାହିଁ; ମୋର ଅନ୍ତର କାହିଁକି କୁହେ ସେ ଅଛନ୍ତି— ଲେଖାରେ, ଭାଷାରେ, ପ୍ରତିଟି ହୃଦୟର ସାହିତ୍ୟ ମନ୍ଦିରରେ । କ'ଣ ଉତ୍ସର୍ଗ କରିବି କାହାକୁ ଉତ୍ସର୍ଗ କରିବି ସବୁ ଉତ୍ସର୍ଗର ମୂଳ ଈଶ୍ୱର ଓ ମୋର ସ୍ୱାମୀ । ସାରସ୍ୱତ ଦୃଷ୍ଟିରୁ ଭକ୍ତ ଦ୍ରଷ୍ଟାବର୍ଗଙ୍କୁ ମୁଁ ଉତ୍ସର୍ଗ କରୁଛି ଯେଉଁମାନେ ସାଦରରେ ପଢ଼ିବେ ଓ ଯେଉଁମାନେ ଅନାଦରରେ ସମାଲୋଚନା କରିବେ ।

ବୀଣାପାଣି ଦାସ

# ବିଷୟ ସୂଚୀ





# କଥାକାର ୰ବୈଷ୍ଣବ ଚରଣ ଦାସ
## (ସଂକ୍ଷିପ୍ତ ଜୀବନୀ)

ବୈଷ୍ଣବ ଚରଣଙ୍କର ଜନ୍ମ ଭଦ୍ରଖର ବଙ୍କ ସାହିରେ ଏକ ବୈଷ୍ଣବ ପରିବାରରେ ୧୮୯୯ ମସିହା ସେପ୍ଟେମ୍ବର ୧୦ ତାରିଖରେ ହୋଇଥିଲା । ତାଙ୍କର ପିତ୍ରା ଶ୍ରୀ ପ୍ୟାରିମୋହନ ପଟନାଏକ ଏକ ନୈଷ୍ଠିକ ବୈଷ୍ଣବ ଥିଲେ । ଏପରିକି ସେ ତାଙ୍କର ପଦବୀ ବା ସାଙ୍ଗିଆ 'ପଟନାଏକ'କୁ 'ଦାସ' କରିଥିଲେ କାରଣ ସେ ଭଗବାନଙ୍କ ଦାସ ବୋଲି ପରିଚିତ ହେବେ ବୋଲି । ତାଙ୍କର ୪ଟି ପୁଅ ଓ ତନ୍ମଧ୍ୟରୁ ବୈଷ୍ଣବ ଚରଣ ୨ୟ ପୁତ୍ର ଥିଲେ । ପିତାଙ୍କର ଭାଇମାନଙ୍କର କୌଣସି ପିଲାପିଲି ନଥିବାରୁ ଏହି ୪ ଜଣ ପୁଅ ୪ ଭାଇଙ୍କର ପୁଅ ହୋଇ ବଢ଼ିବାକୁ ଲାଗିଲେ । ବୈଷ୍ଣବ ଚରଣଙ୍କ ପିତା ତାଙ୍କୁ ଉଚ୍ଚଶିକ୍ଷା ଦବା ପାଇଁ ବଦ୍ଧପରିକର ଥିଲେ । ସେତେବେଳେ ଉଚିତ ଶିକ୍ଷାଦାନ ଦବା ଏକ ଗୁରୁତର ବ୍ୟାପାର ବୋଲି ଧରାଯାଉଥିଲା । ପ୍ୟାରିମୋହନଙ୍କ ବୈଷ୍ଣବ ପରିବାରରେ (ଯେଉଁଠାରେ ଅହୋରାତ୍ର ହରିନାମ ସଂକୀର୍ତ୍ତନ ଚାଲୁଥିଲା) ସେଠି କିପରି ଭାବରେ ଏହି ୪ ଭାଇଙ୍କର ଶିକ୍ଷା ପ୍ରଦାନ କରାଯାଇ ପାରିଥିଲା ଭାବିଲେ ଆଶ୍ଚର୍ଯ୍ୟ ଲାଗେ, କାରଣ ସବୁ ଭାଇମାନେ ଉଚ୍ଚଶିକ୍ଷିତ ଓ ତନ୍ମଧ୍ୟରୁ ବୈଷ୍ଣବ ଚରଣ ସବୁଠାରୁ ଉଚ୍ଚଶିକ୍ଷିତ ଥିଲେ । ସେ ପାଟନା ବିଶ୍ୱବିଦ୍ୟାଳୟରୁ ଇଂରାଜୀ ସାହିତ୍ୟରେ ଏମ୍.ଏ. ଓ ପରେ ଓଡ଼ିଆରେ ଏମ୍.ଏ. କରିଥିଲେ । ପରେ ପରେ ସେ ପୁଲିସ୍ ବିଭାଗରେ ନିଯୁକ୍ତି ପାଇ ଡେପୁଟି ଏସ୍.ପି. ଭାବରେ ପ୍ରଥମ ଓଡ଼ିଆ ଅଫିସର ହୋଇ ବାହାରିଲେ । ସେତେବେଳେ ବିହାର-ଓଡ଼ିଶା ଏକତ୍ର ଥିଲା । ସ୍ୱେ ନିପୁଣତା ସହ ତାଙ୍କର ପୁଲିସ୍ କାମ କରି ଯଥା ସମୟରେ 'ନିଖିଳ ଭାରତ ସର୍ଭିସ୍' ବା 'ଅଲ୍ ଇଣ୍ଡିଆ ସର୍ଭିସ'ରେ ଯୋଗଦାନ କରିଥିଲେ । ସେ ହେଉଛନ୍ତି ପ୍ରଥମ ଓଡ଼ିଆ ଆଇ.ପି. ଅଫିସର । ତାଙ୍କର ଯୋଗ୍ୟତା ଏତେ ବେଶି ଥିଲା ଯେ ସେ ସମୟରେ ଅର୍ଥାତ୍ ବ୍ରିଟିଶ୍ ରାଜତ୍ୱ ସମୟରେ ତାଙ୍କୁ ଷଷ୍ଠ ଜର୍ଜଙ୍କ କୋରୋନେସନ୍ ବା ଅଭିଷେକ ସମୟରେ କେତେଜଣ ନିପୁଣ ଓ ଦକ୍ଷ ପୁଲିସ୍ ଅଫିସରଙ୍କ ସହିତ ଲଣ୍ଡନ ଯିବାକୁ ବଛା ଯାଇଥିଲା । ସେ ମଧ୍ୟ ହେଉଛନ୍ତି ପ୍ରଥମ ଓଡ଼ିଆ ପୋଲିସ୍ ଅଫିସର ଯେ କି ଏହି ସମ୍ମାନ ପାଇଥିଲେ ।

ଏହିପରି ତାଙ୍କର ପୋଲିସ୍ ବିଭାଗରେ ଉତ୍ତରୋତ୍ତର ଉନ୍ନତି ହେବାକୁ ଲାଗିଲା । ଏ ମଧ୍ୟରେ ବିହାର ଓଡ଼ିଶାରୁ ବିଚ୍ଛିନ୍ନ ହେଲା । ସେ ପୋଲିସ୍ ବିଭାଗର

ଉଚ୍ଚ ପଦବୀରେ ରହି କାମ କରିବାକୁ ଲାଗିଲେ । ସେ ତାଙ୍କର ସର୍ବିସ୍‌ର ବା ଓଡ଼ିଶା ସରକାରଙ୍କର ପୋଲିସ୍ ବାହିନୀର ସର୍ବୋଚ୍ଚ ସ୍ଥାନକୁ ଯାଇ ଅବସର ନେଲେ ୧୯୫୩ରେ ।

ତାଙ୍କର ବହୁମୁଖୀ ପ୍ରତିଭାକୁ ଲେଖିଲେ ସରିବ ନାହିଁ । ସେ ଏକାଧାରରେ ଏକ ସୁଯୋଗ୍ୟ ପୋଲିସ୍ ଅଫିସର, ସାହିତ୍ୟିକ, ସଙ୍ଗୀତଜ୍ଞ, କଳାପ୍ରେମୀ ଓ ଦେଶପ୍ରେମୀ ଥିଲେ । ତାଙ୍କର ଉପନ୍ୟାସ 'ମନେ ମନେ' ''ବାରୁଣୀ'' ଓ ''ଉତ୍କଳ ସାହିତ୍ୟ''ରେ ଧାରାବାହିକ ଉପନ୍ୟାସ ଭାବରେ ପ୍ରକାଶିତ ହେବା ପରେ ପୂର୍ଣ୍ଣ ଭାବରେ ଉପନ୍ୟାସ ରୂପେ ମନମୋହନ ପ୍ରେସ୍ ଦ୍ୱାରା ପ୍ରକାଶିତ ହେଲା । ତାଙ୍କର ଅନ୍ୟ କେତେକ କ୍ଷୁଦ୍ରଗଳ୍ପ ଓ ଉପନ୍ୟାସ 'ବଡ଼ସାନ', 'କିନ୍ତୁ' ଓ 'ବାସନ୍ତୀ' ପ୍ରଭୃତି ''ଉତ୍କଳ ପ୍ରସଙ୍ଗ'', ''ସହକାର'' ଓ ''ବାରୁଣୀ'' ଭଳି ତତ୍‌କାଳୀନ ପତ୍ରିକା-ମାନଙ୍କରେ ପ୍ରକାଶିତ ହେଉଥିଲା । ଅନେକ କ୍ଷୁଦ୍ରଗଳ୍ପ, କବିତା, ନାଟକ (ପଦ୍ମାବତୀ) ଓ ଉପନ୍ୟାସ ଅପ୍ରକାଶିତ ଭାବରେ ରହିଯାଇଛି । ତାଙ୍କର ଲେଖା ନାଟକ 'ପଦ୍ମାବତୀ' ଓଡ଼ିଶାର ବିଭିନ୍ନ ସ୍ଥାନରେ ନାଟ୍ୟପ୍ରେମୀମାନଙ୍କ ଦ୍ୱାରା ପରିବେଷଣ କରାଯାଇଛି । ଅନେକ ବର୍ଷ ଧରି ତାଙ୍କର ଲେଖା ଉପନ୍ୟାସ 'ମନେ ମନେ' ଯାହାକି ତାଙ୍କର ପ୍ରକାଶିତ ପ୍ରଥମ ଉପନ୍ୟାସ କଲେଜରେ 'ବି.ଏ.' ପାଠ୍ୟପୁସ୍ତକ ଓ ପରେ 'ଏମ.ଏ.'ର ପାଠ୍ୟପୁସ୍ତକ ହୋଇପାରିଲା । ସେ କଲେଜରେ ପଢ଼ିବା ବେଳୁ ସାହିତ୍ୟ ଚର୍ଚ୍ଚା ଓ ଲେଖାଲେଖି ଆରମ୍ଭ କରିଥିଲେ ଓ ସାହିତ୍ୟ ଉପରେ ଗବେଷଣା କରୁଥିଲେ । ସେହି ସମୟରେ ନଅଜଣ ସବୁଜ କବି ବା 'ସବୁଜ ଯୁଗ'ର ଲେଖକମାନଙ୍କ ମଧ୍ୟରୁ ସେ ଜଣେ ଥିଲେ । 'ବାସନ୍ତୀ'ର ଗୋଟିଏ ଭାଗ ତାଙ୍କର ନିଜର କୃତିତ୍ୱପୂର୍ଣ୍ଣ କାର୍ଯ୍ୟ । କିନ୍ତୁ ପୋଲିସ୍ ବିଭାଗରେ ରହି କାମର ଚପଟରେ ତାଙ୍କର ସାହିତ୍ୟ ଦିଗଟି ପୂର୍ଣ୍ଣ ଭାବରେ ପ୍ରକାଶ ପାଇପାରିଲା ନାହିଁ । ସଙ୍ଗୀତ ଚର୍ଚ୍ଚା ଓ ସଙ୍ଗୀତ ଆସରରେ ସେ ବିଶେଷ ଭାବେ ଯୋଗ ଦେଉଥିଲେ । ମୃଦଙ୍ଗ ଓ ତବଲା ବଜାଇବାରେ ବିଚକ୍ଷଣ ଥିଲେ । କଳାପ୍ରେମୀ ଓ କଳାକାର ତାଙ୍କର ଅତି ଆଦରଣୀୟ ଥିଲେ । ତାଙ୍କର ପାରିବାରିକ ଜୀବନ ସୁଖମୟ ଥିଲା । ନିଜେ ବହୁତ ସୌଖୀନ, ବିଳାସୀ ଓ ଆଡମ୍ବରପ୍ରିୟ ଥିବାରୁ ଅଯାଚିତ ଭାବରେ ଖର୍ଚ୍ଚ କରୁଥିଲେ । ସାଙ୍ଗସାଥି ପରିବାର ଓ ପୋଲିସ୍‌ର ସାଙ୍ଗ ଅଫିସରମାନଙ୍କ ସହିତ ସଦ୍‌ଭାବ ରଖି ମଧ ସେ ତାଙ୍କର ନିଜର କାମରେ କେବେହେଲେ ଅବହେଳା କରୁ ନଥିଲେ ।

ବୈଷ୍ଣବଚରଣ ଏତେ ବଡ଼ ସଂସାର ଚଳାଇ ମଧ୍ୟ ଚଳାଇ ପାରିଲେ ନାହିଁ । ତାଙ୍କର କାମର ଚପଟ ଓ ସଂସାରର ନାନା ପ୍ରକାର ଭଲମନ୍ଦରେ ସେ ଭାରାକ୍ରାନ୍ତ ହୋଇପଡ଼ିଲେ । ତାଙ୍କର ବିବାହିତ ଜୀବନର ପ୍ରଥମ ଭାଗରେ ଅକାଳରେ ଝଡ଼ ଆସିଥିଲା । ପ୍ରଥମ ପୁତ୍ରର ଜନ୍ମ ସମୟରେ ସେ ତାଙ୍କର ପ୍ରଥମ ସ୍ତ୍ରୀଙ୍କୁ ହରାଇଥିଲେ । ୨ୟ ବିବାହ କଲେ ଓ ସନ୍ତାନସନ୍ତତି ତାଙ୍କର ୯ ଜଣ ଥିଲେ । ମିଷ୍ଟଭାଷୀ, ପରୋପକାରୀ ବୈଷ୍ଣବଚରଣ କାମର ଚପଟ ଓ ଘରର ସବୁ ଦାୟିତ୍ୱ ତୁଲାଇ ତୁଲାଉ ତାଙ୍କର ଅବସର ନବାର ସମୟ ଆସିଗଲା । ଏତେବଡ଼ ଚାକିରି ଓ ସର୍ବୋଚ୍ଚ ସ୍ଥାନରେ ଥିବା ସତ୍ତ୍ୱେ ସେ ନିଜ ପରିବାରର ବିଶେଷ କିଛି କରିପାରି ନଥିଲେ । ଅବସରପ୍ରାପ୍ତ ବୈଷ୍ଣବ ଚରଣ ସମସ୍ତ ଭାର ନିଜେ ବହନକରି ନିଜ ଘର ଭୁବନେଶ୍ୱରକୁ ଯାଇ ରହିଲେ । ତାଙ୍କର ପିଲାମାନେ ସେତେବେଳେ ସମସ୍ତେ ସ୍କୁଲ୍ କଲେଜରେ ପଢୁଥିଲେ । କାହାରି ପଢ଼ା ମଧ୍ୟ ସରିନଥିଲା । ଅକସ୍ମାତ୍ ଅକାଳ ଝଡ଼ ଆସି ବୈଷ୍ଣବ ଚରଣଙ୍କ ପରିବାରକୁ ଛିନ୍ନ ଭିନ୍ନ କରିଦେଲା । ୫୯ ବର୍ଷ ବୟସରେ ୧୯୫୮ ମସିହା ନଭେମ୍ବର ମାସ ୯ ତାରିଖରେ ତାଙ୍କର ହୃତ୍‌ପିଣ୍ଡ କ୍ରିୟା ବନ୍ଦ ହୋଇ ହଠାତ୍ ସେ ମୃତ୍ୟୁବରଣ କଲେ । ପରିବାରରେ ଘୋର ଅନ୍ଧକାର ଘୋଟି ଆସିଲା । କହିବା ବାହୁଲ୍ୟ ଯେ ଓଡ଼ିଶାର ଏକ ଉଜ୍ଜ୍ୱଳ ତାରକା ଓ କୀର୍ତ୍ତିମାନ ପୁରୁଷର ଅବସାନ ହେଲା ।

# ଆଶିଷ-ମଣି

॥ ୧ ॥

ଦିବ୍ୟୋଜ୍ଜ୍ୱଳ ରଥେ ଯେବେ ଗଭୀର ନିଶିଥେ
ନାଥ ଯାଉଥିଲ ଶୂନ୍ୟ ଭେଦି ଚାହିଁ ଥିଲି ପଥେ ॥୦॥
(ତବ) ପାଦ ପାରିଜାତୁଁ ଖସି ପାଖୁଡ଼ା ଗୋଟିଏ
ରଜସ୍ନାତ ଦୀପ୍ତଅଙ୍ଗେ ଆସିଲା କେମନ୍ତେ
ନାଥ ବିସ୍ତାରି ପ୍ରସାଦ-ଧୂଆଁ ମୋ ନୟନ ପଥେ ॥୧॥

ଘେନିବି ବୋଲି କାତରେ ବଢ଼ାଇଲି ଶିର
(ପୁଣି) ଅଭାଗା ଭାଗ୍ୟକୁ ଶୂନ୍ୟେ ଦିଶିଲା କେମନ୍ତେ
ନାଥ-ତା' ପରାଗ କଣାମାତ୍ର ପଡ଼ିଲା ଏ ମାଥେ ॥୨॥

ଅନ୍ତର ସମାଧି ପୀଠେ ଲାଗିଛିରେ ଧୂଳି
(କିବା) ଗଙ୍ଗାଧାର ବହେ ତହିଁ କଳ କଳ ସ୍ରୋତେ
ଦୀନ ଖୋଜୁଛି ସେ ପାଖୁଡ଼ାଟିଏ କାହାର ପଥେ ॥୩॥

(ଅବା) କାହିଁ ଖୋଜେ ପାଖୁଡ଼ା ସେ ତା' ପରାଗ ରେଣୁ
ନାଥ-ପଡ଼ିବ କି ଦିନେ ଭଲା ମୋ ଜାହ୍ନବୀ ସ୍ରୋତେ
ତବ ମନ୍ଦାକିନୀ ଅଙ୍ଗେ କେଭେ ମିଳିବ କି ସତେ ॥୪॥

କହ-କା ଗଭା-ଖଞ୍ଜଣା ଆଜି ମୋ ପାଖୁଡ଼ା ରାଣୀ
ଦେବ ମିଳିବ କି ମୋ ଆଶିଷ-ମଣି ଫେରିମତେ
ଏ ମୋ-ସ୍ୱଚ୍ଛ ଗଙ୍ଗାଜଳେ ଧୋଇ ଭେଟନ୍ତି ତୋ ରଥେ ॥୫॥

(କଟକ-୨୬।୧୧।୧୯୧୯)

॥ ୨ ॥

# ରାଧାଶ୍ୟାମ

## ଶାରୀ ପ୍ରତି ଶୁକ

କହରେ ପୂରିଲାଟି ଏବେ ମନସ୍କାମ
ଚାହିଁ ଚାହିଁ ତୋତେ ମୋ ଦିନ ସରିଗଲା
ଜପୁଁ ଜପୁଁ ତୋ ମଧୁ ନାମ ।
ମୋ ଶାରୀ ଗଲା କାହିଁ
ଶୂନ୍ୟ କରି ମରୁ ଭୂଇଁ
କାହୁଁ ବା ଶୁଣିଲା ଶ୍ୟାମ ନାମ !
ଆସିବୁ ନାହିଁ ସତେ
ନିରର୍ଥ କଲୁ ମତେ
ଜାଣିଲି କରମ ମୋର ବାମ ।
ଆସନ୍ତୁ ଯଦି ଥରେ ବସି ଏକା ଡାଳରେ
ରଟନ୍ତେ ଲୋ ସଦା ରାଧାଶ୍ୟାମ ॥

(କଟକ - ୧୨।୧୧।୧୯୨୦)

॥ ୩ ॥

# ଧ୍ରୁବତାରା

କାହିଁ ମୋ ଧ୍ରୁବତାରକା ତୀରେ ତରଣୀ ଅଟକା
ମୋ ନାଆ ଛାଡ଼ିବା କାଳେ ମୁହଁଲୁଚା ଦେଲୁକିରେ ସଖା ।
ଯାହାକୁ ଚାହିଁଲି ଥରେ ସେ ନାହିଁ ପରକ୍ଷଣରେ
ଧ୍ରୁବ କି ହେଲା ଅଧ୍ରୁବରେ
କାହିଁ ମୁଁ ଯିବି ଏବେ ଏକା ।
ବାଜୁଛି ଖରା ତରାସ ଝରୁଛି ବିଜୁ ଝଲସ
ଶୁଭୁଛି ବାଆ ଧଲସ
ଫେରା ଅମଙ୍ଗ ନଉକା ।
ଯିବୁ ତୁ ଏବେ କାହିଁରେ ଭାସିବୁ କେଉଁ ନଈରେ
ପଥେ ଦଗା ଦବୁ କିରେ
ଚାଲ ତୁ ନାହିଁ ମୋ ଦକା ।

ତାରକା ଅଛୁ ତୁ କାହିଁ
ଅନ୍ଧ ମୁଁ ପାଇଲି ନାହିଁ
ନିରାଶେ ଦେଲି ମୁଁ ଭସାଇ
ରଖିଲେ ରଖ ବା ଠକା ।
(କଟକ - ୧୭।୧।୧୯୨୦)

॥ ୪ ॥

## ନିରାଶ

କରିଥିଲି ମୁଁ ଆଶା ହୋଇଲା ଢୁର
ଗଢ଼ିଲି ଅଟ୍ଟାଳିକା ହୋଇଲା ଚୂର

ନିରାଶ ହୃଦ ମୋର କରିଲୁ ନାରଖାର
ତୁ ମୋହନ ନାଗର କରିଲୁ ଢୁର
ଅଭାଗା ଭାଗ୍ୟଛବି କରିଲୁ ଚୂର ।

ଏ କ୍ଷୁଦ୍ର ପ୍ରାଣ ଆଶା କେନ୍ଦ୍ରେ ବିରାଜି
ରାଜିବାକୁ କ୍ଷଣକେ ନ ହେଲୁ ରାଜି

ମୁଁ ଚାହିଁ ଚାହିଁ ପଥ ଗଲାଟି କାହିଁ ଅସ୍ତ
ମୋ ଦିନ ସରା ଜ୍ୟୋତି ପ୍ରାଣବନ୍ଧୁର
ପରାଣ ଧନ ମୋର କରିଲୁ ଢୁର ।
(କଟକ - ୧୭।୧।୧୯୨୦)

॥ ୫ ॥

## ମୃତ୍ୟୁ

ଶୂନ୍ୟ ଯଦି କଲ ଘର
ଦୀପଟି ଲିଭାଇ ଦିଅ
ହାଣିବାର ଥିଲେ ବକ୍ଷେ
(ତହିଁ) କି ଭାବେ ଆଲୋକ ଦିଅ ?

ଦେଖିବାକୁ ସର୍ବହୀନ,
ନାଥ ଯେବେ ଥାଏ ମନ
ଭାଙ୍ଗି ଚୂରି ଦେଖ ସବୁ
(ଖାଲି) ଆଲଟି ସଂହାରି ଦିଅ ।
ଆଖି ଆଗେ ଚିତା ଜାଳି,
ଦେବ ଯଦି ସବୁ ଢାଳି
କେମନ୍ତେ ବୁଝିବି ମୂଢ଼
ଆଲଟି ଯେ ସବୁଠୁ ପ୍ରିୟ !

(କଲେଜ ହଷ୍ଟେଲ, କଟକ - (୯।୨।୧୯୨୦)

॥୬॥

## ବଂଶୀ

କହ କିଏ ସେ ଦୂରେ ଦୂରେ ବାଏ ବଂଶୀ ?
ଚମକି ପୁଲକି ଉଠେ ପରାଣ ହରସି !!
କାହା ମୋହନ ତାନ ଲହରୀ
ଯାଏ ବାଜି ଅନ୍ତରେ ଗୋ - କ୍ଷଣେ ହସାଇ - ଭସାଇ ଖରେ
(କେଉଁ) ମହାସିନ୍ଧୁ - ବୁକେ ମିଶି
ହଜି ଯାଏ ବଂଶୀ ?
କ୍ଷୁଦ୍ର ହୃଦୟ ଘେରି କେ ସେ ରହି ରହି ଜ୍ୱାଳା
ଭରି ଦିଏ ଗୋ ?
ଜୀବନ ପାରେ ତୋଳି ନିଏ ଗୋ
କ୍ଷଣେ ଛାଡ଼ିଦିଏ ହସି !
ଅନନ୍ତ ଶୂନ୍ୟରେ ଭାସି
କାହିଁପଡ଼େ ଖସି ?

(ପାଟନା-ସେପ୍ଟେମ୍ବର, ୧୯୨୦)

॥ ୭ ॥

ଆ-ଆରେ ସଲାଜ ହସଟି ହସି
ପରାଣେ - ପରାଣ ବିନ୍ଧୁ ପଶି ।
ପରାଣ ମନ୍ଦିର ଖୋଲା ଚିରଦିନ
ଧରିବାକୁ ପ୍ରୀତି କଣାରେ
(ତୁ) ନାଚିଲେ ପୀରତି ପସରା ବୋହଲେ
ପୂରିଯାଏ ମୋ ଅଗଣାରେ
ଆ-ଆରେ କରୁଣା ହିମ ବରଷି ।
ଆ-ଆ ତୁ ଅନ୍ତରେ ପୀରତି ମନ୍ତ୍ରରେ
ବଜାଇ ଦେ ମୋ ମୃଦୁ ବୀଣାରେ ।
ତାହାରି ସ୍ମୃତିରେ ଚିରଜୀବନରେ
ରହିବି ଚରଣେ କିଣାରେ
ବାରେକ ଦେଏ ଉଲ୍ଲସୀ ?
ଆ- ଆରେ ଜୀବନ ପୂଜା ତୁଳସୀ !!

(ପାଟନା - ସେପ୍ଟେମ୍ବର, ୧୯୨୧)

॥ ୮ ॥

ଶ୍ରୀ

(ମୁଁ) ନୂଆ ନାଉରୀ
ନାହିଁ ଆଗ ପଛ ନାହିଁ ପାଲ ଦଉଡ଼ି
ଆଉ ତ ନାହିଁ କେହି ତୁଙ୍ଗିଟି ମୋ ସହି
ଆହୁଲା ମୋ ଗୀତ ଗାଇ କାଟେ ଲହଡ଼ି ।
ଅଜଣା ପରଦେଶେ ଚାଲିଛି ଦିନ ଶେଷେ
ଚାରିଦିଗୁ ଅନ୍ଧାର ଆସି ଅଙ୍ଗ ପରଶେ
ଘୋଟି ଆଇଲା ରାତି ଦୁଲୁକି ଉଠେ ଛାତି
ମଝି ନଈରେ ଧରିବ ସିନା (ଚକା) ଭଉଁରୀ ।

(ପାଟନା - ଅକ୍ଟୋବର, ୧୯୨୧)

॥ ୯ ॥

ଭରିଛି ସେ ଚାନ୍ଦ କେଉଁ ଆକାଶେ
କେଉଁ ବନେ ଫୁଟିଛି ସେ ଫୁଲ ସୁବାସେ ।
ଯେଉଁ ଶିଖା ମନଭୁଲା ଜଳୁ କେଉଁ ଦୀପରେ
ଛବି ଖେଳୁଛି ପ୍ରାଣ ମନ କେଉଁ ସ୍ୱପନେ
ଭାସିବ ମୋ ଗୀତ ଫୁଟି କେଉଁ ମଧୁ ମାସେ ॥୧॥
ଯେଉଁ ଛବି ଅନ୍ତରେ ଓ ଦୁହୁଁଙ୍କ ମନରେ
ଯାଉଛି ଭାସି
ଚାହିଁ ଚାହିଁ ନ ମିଳଇ ଧରିବି ଯାଏ ଆସି
କାହିଁ ସେ ? ସୁଦୂର - ଆଲୋକେ
ଅଚିହ୍ନ ଚିତ୍ତରେ ଦିଶା ନ ଆସେ ? ॥୨॥
ଯେଉଁ ବାଣୀ ସ୍ୱନ ଶୁଣି ଜାଗେ ତନୁ ତଳେ
ଭଙ୍ଗା ତନ୍ତ୍ରୀରୁ ନାଦ ବହିଗଲା ତଳେ
ଶୁଣିବି ନାହିଁକି ଅବେ ମିଳନ - ଭାଷେ ॥୩॥

(ପାଟନା - ୨।୨।୧୯୨୨)

॥ ୧୦ ॥

ଆଉ ନ ପାରିବି ଚାହିଁ
ଆଉ ନ ପାରିବି ଚାହିଁ
ଚପଳ ଆଲୋକ ଖେଳେ ନାହିଁ ମୋର ଗାନ ନାହିଁ ।
(ଆଜି) ସରେଣି ଚିତ୍ରିତ ପୁରା ପଡ଼ିଛି ଆକାଶୁ ଖସି
ଜନ୍ମର ଭୂମି ଭଲାସେ ଭସାଉଛି ହସି ରସି
ସେ ମିଳନ ସେ ଦୂରନେ ନାହିଁ ମୋର ଗାନ ନାହିଁ
ଅଶ୍ରୁ ଆଖି ଅନ୍ଧକରେ
ଆଉ ମୁଁ ନ ପାରିବି ଚାହିଁ ॥୧॥

କେବେ ହେବ ସ୍ଫୁରିତ ଉଠିବି ସରସେ ମାତି
ବିଧୁର ସେ ଲହରି ପରି ଧାଇଁବି ଏ ହୃଦ ପାତି
(ସେ) ମଧୁ ମିଳନ ରାଗିମା - ମୋ ଚିତ୍ତକୁ ଆସି ଧାଇଁ
କେବେ ନବ କରି ମତେ - ଭରିବି ପାରିବି ନାହିଁ ॥୨॥

(ରଥଯାତ୍ରା, ପୁରୀ - ୧୯୨୬)

॥ ୧୧ ॥

କି ଅଭାବେ ଏ ଭାବେ ମୁଁ
ରହିଛି ସରଣୀ ଚାହିଁ,
କିଏ ସେ ପରବାସୀ ସେ
ଆସିବ ତରଣୀ ବାହି ?
ବସିବାର ମୋର ଏ ସଇକତେ
ସଫଳ ହେବ କି ଏଥର ସତେ
ସାର୍ଥକ ହେବି ଚାହିଁ -
ସେ ମାୟାତରୀ ବାହି ॥୧॥
ଆସ ଆସ ଥରେ ଦୂର ଅତିଥି
ପାରିଜାତ - ବେଣୀ କନକ ବେଣୀ
ଧରି ରଖିବି ନାହିଁ
(ଯିବ) ଫେରି ତରଣୀ ବାହି ॥୨॥

॥ ୧୨ ॥

(ଆଜି) ଆସ ହେ ରାସବିହାରୀ -
ଚିର ବିରହିଣୀ ବ୍ରଜଜନା ରାଧିକା ଅଛନ୍ତି ପ୍ରସାରି ଚକ୍ଷୁ (ତୁହାରି)
(ଆଜି) ଗୋକୁଳେ ସକଳେ ପ୍ରେମ ଭିକାରୁଣୀ
ସ୍ଫୁରିତ ନାହିଁଟି ବାହାରି ବଇଁଶୀ
- ଆଜିକ ଆସ ହେ ରାଧାମନୋହାରୀ ॥୧॥
ଯଦି ସୋହାଗିନୀ ଭାଗ୍ୟବତୀଠାରେ ନାଥ କରିଥାଅ ବଶ

ନକର ନକର ନିରାଶ ବାଳାକୁ ଆସ ହେ ରାସବିହାରୀ
(ଆଜି) ଆସ ହେ ଆସ ହେ କୋଟି ରୂପ ଧରି ସଭିଙ୍କ ପାଇଁ ଗୋପୀନାଥ
କୋଟିକୁ ଗୋଟିଏ ସଖୀକୁ ଗୋଟିଏ ସବୁ ଗୋପିନୀର ଧରହାତ
ତେବେ ଭଲା ପୂରୁ ରାଧା ମନସାଧ ରାଣ ଶୁଣ ବାଳା ଗୁହାରି ।

॥ ୧୩ ॥

ପୁରୁଣା ବୀଣାଟି ଯାଇଛି ଫାଟି ଗୋ
ଛିଡ଼ି ଯାଇଛି ତା' ତାର
ତପ୍ତ ଅଶ୍ରୁବାରି ଅବିରତେ ଝରି
ରୋଧି ଦେଇଛି ତା' କଣ୍ଠ ଦୁଆର
ଛଅରାଗ ଆଉ ଛତିଶ ରାଗିଣୀ ସବୁତ ମନରୁ
ପାଶୋରି ଦେଲିଣି
ଭୁଲିତ ଗଲିଣି ମୃଦଙ୍ଗର କିଣୀ
ଗମକ ମୂର୍ଚ୍ଛନା ମଧୁ ଝଙ୍କାର
ଜଡ଼ ଭରତକୁ ଦୟାବହି କେହି
ସ୍ୱର ଜ୍ଞାନ ଟିକେ ପାରିବକି ଦେଇ
ରୁଦ୍ଧ ଦ୍ୱାର ଫେଇ ଦେବି ମୁକୁଳାଇ
ସଙ୍ଗୀତ ଛନ୍ଦେ ମୋ ବେଦନା ଭାର ।

॥ ୧୪ ॥

(ମିଶ୍ର ହାମ୍ବିର - କଓ୍ୱାଲି)

ମୁଁ ପାଦ ନୂପୁର ବାଜା - ମାଁ ସେ ନଟବର
ଅଦୁଆ ସୂତା ଖିଅ ମୁଁ (ସେ) ପୁରୁଣା କାରିଗରର
ନାଚି ନାଚି (ସେ) ଯାଏ ଖେଳି ଭବରଙ୍ଗ ଭୂମି ପରେ
ବାଜି ବାଜି ଯାଏ ମୁହିଁ ତାଳେ ତାଳେ ଫର ଫର
(ସେ) ବୁଣି ବୁଣି ଯାଏ ଜାଲେ (ମୁଁ) ଖାଲି-ଖାଲି-ଖାଲି ଚାଲେ
(ପୁଣି) ଗଣ୍ଠି ଗଣ୍ଠିକେ ମୁଁ ଥାଏ
ମହାଜାଲେ (ସେ) ଧୀବର ରେ ।

॥ ୧୫ ॥

ଆସ ଯାଅ କେତେବେଳେ ଗୋ ନାହିଁ ଠିକଣା
ତଥାପି ତ ସବୁବେଳେ ରହିଛି କିଣା
ଆସ ତୁମେ ଧରି ଯେବେ ଗୋ ହସ ବେଶଟି
ମନ ମୋର ଅଧବାଟ ଯାଏ ପାଛୋଟି ।

ଆସ ତୁମେ ହସି ହସି ଯାଅ କେତେବେଳେ ଖସି
ସେ ହସ ମୋ ପ୍ରାଣେ ପଶି ସାଧେ ମୋ ବୀଣା ।୧।

ଏତିକି ମାଗୁଣି ମୋର ତୁମ୍ଭ ପାଶରେ
ଭରିଦିଅ ପ୍ରାଣ ମୋର ସଦା ହସରେ

ଦିବା ଆଗମନେ ହସ ଯିବା ରାତିରେ ବି ହସ
ହସରେ ଜୀବନ ବଶ ଜଗତ ଜିଣା ।

॥ ୧୬ ॥

ପ୍ରିୟ ସହି ଏ ବନ୍ଧା ଏ ମନ କୋଣେ ଗୋ
ସାତ ସପନର ଯାକୁ ନ ପାଇବି
ସେ ବନ୍ଧା ଏ ମନ କୋଣେ ଗୋ ।
ଅନ୍ତରେ ଅନ୍ତରେ ଘେନି ମୁଁ ଥାପିଚି
ରତନ ଦେବୀରେ ପ୍ରାଣେ ଗୋ ।୦।
ଚନ୍ଦ୍ର ମଲ୍ଲୀ କଢ଼ି ଛାତିରେ ପହିଲା
ହରଷ ଜଗାଇ ଯେ ପରଶ ଦେଲା
ଜଳିଗଲା ଅଳି ରହିଚି ସେ କଳି
ଭୁଲିକି ପାରୁଚି କ୍ଷଣେ ଗୋ ।୧।
କ୍ଷଣେ ପାଇବାର କ୍ଷଣକେ ଅନ୍ତର
ସେ ତ ବାହାରର ଜଣେ ଗୋ
(ଯାକୁ) ରତନ ଆସନେ ଥାପିଚି ମୁଁ ପାଶେ
ଏ ବନ୍ଧା ଏ ମନ କୋଣେ ଗୋ ।୨।

॥ ୧୭ ॥

(ଆଶାବରୀ ଏକତାଳୀ)

ଆହେ ସୁନ୍ଦର ମନୋହର
ସୁନ୍ଦର ତୁମେ ଅତି ମନୋହର ମନୋହର ବିଶ୍ୱ ଚରାଚର
କିବା ମନୋହର ନଭେ ରବି-ଶଶୀ - କିବା ହାସ୍ୟମୟୀ ଧରା
ଆକାଶ ଅବନୀ ପୀରତି - କୀରତି - ସୁନ୍ଦର ଏ ବିଶ୍ୱସାରା
ଆଶିଷ ତୁମର ଆନନ୍ଦ ଆଧାର - ହେ ଚିର ନୂତନ ହେ ସୁନ୍ଦର
ହେ ଚିର ବାଞ୍ଛିତ ଚିର ଉପେକ୍ଷିତ
ସନାତନ ଚିର ଅସୁନ୍ଦର
ମଧୁରେ ସୁନ୍ଦରେ ମିଳନ ପୂର୍ଣ୍ଣିମା
ସଂସାର ମଧୁର ସୁନ୍ଦର ।

॥ ୧୮ ॥

(ମିଶ୍ର ଭୂପାଳି ଏକତାଲା)

କିଏ ନେବ ଏ ପଦ୍ମକଳି
ଆସରେ ଚିହ୍ନରା-ଗ୍ରାହକେ ଚଳି
ଏ କୁସୁମ ଯେହୁ ଲୋଡ଼ିବ
ଏ କୁସୁମ ସେହୁ ପାଇବ ।୦।
ସୁନାଫୁଲ କଢ଼ି ବୁଲାଇ ବିକୁଚି
ଅମୂଲ ମୂଲ କେ ପାରିବ କଳି ।୧।
ଏ ଫୁଲକୁ ଯେହୁ ଛୁଇଁବ
ସେ ମୋ ପଛେ ପଛେ ଧାଇଁବ ।
ଦୂରକୁ ଚାହିଁଲେ ଦୂରେ ଚାହିଁଥିବ
ପାଖ ତା' ପାଖରେ ଥିବଟି ପଡ଼ି । ।୨।
କୁସୁମ ଭିତରେ କୀଟ ପରାଏ
ବୁଲୁଚିରି ଥାଚି ଫୁଲକୁ ଚାହେଁ
ସେ ଫଟା ରସିକ ରାଜ୍ୟଧନ ଦେଲେ
ତାକୁ ନ ମିଳିବ ରସିକା କଢ଼ି । ।୩।

॥ ୧୯ ॥

(ଆଶାବରୀ ଏକତାଳ)

ମୋର ହାତ ଧରି ବାଟ କଢ଼ାଇ ନିଅ ହେ
ପଥଭୁଲା ପାନ୍ଥ ଡାକୁଚି
ଆହା ବୋଲିବାକୁ ସାହା କେହି ନାହିଁ
ତୁମ ବାନା ତଳେ ଲୋଟୁଚି ॥୧॥
ଏକାକୀ ଯାଏ ମୁଁ ଆଖିବୁଜି ଚାଲି
ପଦେ ପଦେ ମତେ ଜଗିଥାଅ ଖାଲି
ତୁମରି ପତାକା ବୋହିବା ଶକତି
କଣିକାଏ ଅନ୍ଧ ମାଗୁଚି ॥୨॥

॥ ୨୦ ॥

ସେ ମତେ ମାଗୁଛି ନିତି
ବିଦାୟଟି ଦେଇପାରେ
ପାଶୋରିବି ତାକୁ କିବା
ଉପାୟ କହି ଦେ ବାରେ
ମୌଖିକ ବିଦାୟ ଭାଷା
ଭୁଲିବା ସିନା ଦୁରାଶା
ପାଶେ ଥାଇ ଯେ ନିରାଶା
ଛାଡି ଭାସେ ଲୁହ ଧାରେ ॥୧॥
ନିତି ଆସେ ନିତି ଯାଏ
ନିତି ଦେଖା ନିତି ହାୟେ
ନିତି କର୍ଣ୍ଣ ପୁଟେ ନିତି (ତାକୁ)
ଚାହିଁନା ଚାବୁକ ମାରେ ॥୨॥
ଫଗୁଣ ଶିହରଣେ
ଦ୍ୱିଗୁଣ ବିଚ୍ଛେଦେ ମରେଁ
ଫଗୁ ଖେଳେ ଭିଡ଼ାଭିଡ଼ି
ବିଦାୟ କହୁଛି ଧାରେ ॥୩॥

ଆସୁ ସେ ଚୋରା ବସନ୍ତ
ଢାଙ୍କି ରଖିବି ପଣନ୍ତ
ବିଦାୟ ମାଗିଲେ ଦେବି
ତାକୁ ତ ନ ଛାଡ଼ି ପାରେ ॥୪॥

॥ ୨୧ ॥

ବିଶ୍ୱ ଭାଗ୍ୟଲିପି ତୋ ମୋ ହାତେ
ଅଧାଅଧି ଭାଗବାଣ୍ଟ ତୋ ସାଥେ ମୋ ସାଥେ
ମୋ ଅଧକ ମୁଁ ସମ୍ଭାଳେ - ତୋ ଭାଗ ତୋ ହାତେ
ନିଆଁ ଢାଳି ଦିଏ ମୁହିଁ
କଳା ମେଘ ଆସେ ଉଇଁ
ଶାନ୍ତି ବାରି ଦେଉ ଢାଳି
ତୁ ଅନ୍ଧାରି ପ୍ରଭାତେ ॥୧॥

ଫୁଲେ ଫୁଲେ ଫୁଟି ବୁଲେ ମୁଁ
ଅଳି ସାଥେ ସନ୍ଧି ତୁଲେ ମୁଁ
ଫୁଲକନ୍ୟା ଇନ୍ଦୀବର ମିଳାଉ ଗୁପତେ
(ମୁଁ) ବାଆ ନେଇ ଆସେ ଧାଇଁ
ବିଚ୍ଛେଦ ନାଗରା ବାଇ
ମଧୁଅଠା ଦେଇ ଓଠେ ଯୋଡାଉ ଶକତେ ।

॥ ୨୨ ॥

କାହାକୁ ସଜନୀ ରଖିବୁ ଧରି
ତୋ ପାଇଁ ବସନ୍ତ ଯିବଟିକି ଫେରି
ପରାଣ ସଙ୍ଗିନୀ ନିଜରେ ତୁ ମଣୁ
ଯଉବନ ନୁହଁ କାହାର ନ ଜାଣୁଁ
ଆସିଲାଣି ମଧୁମାସରେ ଫୁଲି ହାସରେ
ଲତା ହେଲେକି ବତାସରେ ॥୧॥

ସାଜି ବସିଲାଣି ସଜ ବୁକୁ ପାରି
ଆସିବ ପରା ସେ ନାଗର ରସ ସାଗର
ବାନ୍ଧିନେବ ଫୁଲ ପାଶର
ଉଡ଼ିବେଟି ଦୁହେଁ - କେ ପାରିବ ଧରି ॥୨॥

॥ ୨୩ ॥

ଆଶା ଦେଲ ଯଦି ଆଶାୟୀ ପ୍ରାଣେ
ଦେଲ କାହିଁକି ନେଲ କାହିଁକି,
ବାରିଦ ଅଙ୍ଗେ ଦାମିନୀ ଆଭା
ଖେଳାଇଲ ଯେବେ ନେଲ କାହିଁକି
ଚାତକିନୀ ପ୍ରାଣେ ତୃଷା ବିକାର
ଦେଲ ଯେବେ କଲ କି ପ୍ରତିକାର
ଅଜଣା ରାଇଜେ ମୃଦୁଳ ବୀଣା
ବଜାଇଲ ଯେବେ ଗଲ କାହିଁକି ॥୧॥
ତାମସ ଜଡ଼ିତ ଜଡ଼ ନୟନେ
ଭାସି ଆସିଥିଲେ ସୁଖ ସ୍ୱପନେ
ଜଳାଇଲ ଯେବେ ସୁଖ ପ୍ରଦୀପ ରେଖା
ଜାଳୁ ଜାଳୁ ଲିଭାଇଲ କାହିଁକି ॥୨॥
କମଳ କାନନ ଜଳା ଶିଶିର
ହୃଦେ ଦେଲ ଏକି ଆଶା ସଞ୍ଚାର
ବସନ୍ତ ଆଗମ କୋକିଳ ଗୀତ
ପୋଡ଼ା ଶୀତ ସେ ସୂଚଇ ନାହିଁକି ॥୩॥

॥୨୪॥

## ଦେଶବନ୍ଦନା

ଭାରତ ଜନନୀ ବର୍ଷୁଁ ସ୍ୱପନୁ ଉଠିଲୁଁ ଉହଳ ଯେବେ ମା' ଜାଗି
ଶୁଣିଲୁ ଜଗତେ ଜୟ କୋଳାହଳ
ଦେବଗାନ ନଭେ ମାତାର ଲାଗି

ସେ ଦିନ ତୋ ଗଳେ ଲମ୍ବାଇଲା ମା' ଗୋ
ଜୟମାଲ୍ୟ ଟୀକା ଲେଖିଲା ଭାଲେ
ଚିର ଯଉବନା ଉତ୍କଳ ରାଣୀ,
ନାଚିଲୁ ବେଳାରେ ବାରିଧି ତଳେ

(କୋରସ)

ଜଗତ ଜାଗାଳି ତୋ ପାଦେ ଜନମି ଉତ୍କଳ
ମୋ ଦେଶ ତ୍ରିଲୋକେ ସାର
ଘୋଷେଁ ଜୟମାଗୋ ପତିତପାବନୀ
ମୁକତିଦାୟିନୀ ସ୍ୱର୍ଗଦ୍ୱାର ।
ଶୀର୍ଷେ ସ୍ୱର୍ଣ୍ଣହସ୍ତ ଯୁଗଳ ଭାରତ ମାତାର ଆଶୀ ନ୍ୟସ୍ତ
ଲଲାଟେ ପ୍ରତିଭା ଚନ୍ଦନ ଲେଖା
ଅଳକା ଧୂସର ଗିରି ପ୍ରଶସ୍ତ
କଣ୍ଠେ ଜନନୀ ବକ୍ଷେ ଲମ୍ବି
ମହା ବୈତରଣୀ ସୁବର୍ଣ୍ଣ ହାର
ଚନ୍ଦ୍ରହାର କୃଷ୍ଣା ମୃଗରାଜ, ଜିଣି ଦୟା-ମେଖଳାୟତ କଟୀଯାର

(କୋରସ)

ସଦ୍ୟ ଜାଗରସ୍ଫୁଟ ବଦନା ପ୍ରଭାତ ପଦ୍ମକୋଟକ ଦୃଷ୍ଟି
ସ୍ମିତହାସ୍ୟ ଆଲୋକିତ ବିମ୍ବାଧରୁ
ଝରେ ସଦ୍ୟ ପୀତ ଅମୀୟ ବୃଷ୍ଟି
ସେ ସୁଧା ପିପାସୀ କଳିର ମାନବ
ତା ପଦେ ସରବେ ଆସିଲେ ଧାଇଁ,
କାମଧେନୁ ପ୍ରାୟେ ତୋଷିଲୁ ସକଳେ
ଧନ୍ୟ ହୋଇଲେ ତୋ ଗୁଣ ଗାଇ ।

(କୋରସ)

ଦୀକ୍ଷା ତୋହର କର୍ମ ସାଧନା ମରଣ ବିହୀନ ଜୀବନ ଶିକ୍ଷା
ତ୍ୟାଗ ତୋହର ବୀଜମନ୍ତ୍ର, ନୀତି ସାମ୍ୟ, ପୀରତି, ଦୟା ତିତିକ୍ଷା
ଘୋଷେ ତୋ ବାରତା ଭୁବନ ଈଶ୍ୱର
ପୁରୀ କୋଣାରକ କୀରତିରାଜି
ଅମର ପ୍ରସ୍ତରେ ନିହିତ ତୋ ଭାଷା
ହୋଇଲି ଜନନୀ ସ୍ତବ୍ଧ ଆଜି ।

(କୋରସ)

ଆଣିଛ ଜଗତେ ପୀରତି, ଶାନ୍ତି ମୁକତି ଦୁଆର ଦେଇଛ ମେଲି
ବନ୍ଦେ ଭାରତ ମଥା ପାତି ହିନ୍ଦୁ
ତିଳକ ଘେନେ ତୋ ଚରଣ ଧୂଳି
ସେ ଯୋଗେ ଜନନୀ ବକ୍ଷ ଛାଡ଼ି କକ୍ଷେ
ଲୁଚାଇଛ କିଗୋ ଆନନ୍ଦ ଦୀପ୍ତି
ଆଦରେ ଉଦଧି ଗାଇ ନାନାବାୟା
ଚିଲିକା ଶିଖରେ ଆଣେ ବିସୁପ୍ତି ।
(କୋରସ)

॥ ୨୫ ॥

ନୀଳାଚଳ ନୀଳ ପାରାବାର ବକ୍ଷେ ନୀଳ ଗଗନ ପାରେ
ଲେଖିଛି ଭାରତ ଲୁପ୍ତ ଗୌରବ ସ୍ୱେଦ - ଅଶ୍ରୁଗାରେ ।

ହିନ୍ଦୁ ଭାବନା ହିନ୍ଦୁ ସାଧନା ହିନ୍ଦୁ ଲୋତକ ଧାର
ଉତ୍କଳ ସନ୍ତାନ ଶରୀର-ମାନସ ନିର୍ଯାସ ଶକ୍ତସାର ।

କାହିଁଛି ଜଗତେ ପୁଣ୍ୟପୀଠ ସ୍ଥାନ ପୁରୀଧାମୁଁ ତୀର୍ଥ ବଳି
କାହିଁଛି ଏପରି ଆନନ୍ଦ ବଜାର କାହିଁଛି ଅନ୍ନ ଏ ଭଳି ।

କାହିଁ ମହାପ୍ରଭୁ ଜଗନ୍ନାଥ ନାମ ହୋଇଅଛି ଭଲା ସାର
ଏହି ସେ ତୀର୍ଥ ଏଇ ବଇକୁଣ୍ଠ ସାମ୍ୟ କରେ ପ୍ରଚାର ।

ଶାରଦ ପୂର୍ଣ୍ଣିମା ଭାରତ ଆକାଶେ ଯେବେରେ ହୋଇଲା ଲୀନ
ନୀଳଚକ୍ର ଟେକ ମଥାଟେକି ଦିନେ ଦେଇ ଆଶ୍ୱାସ ସେ ଦିନ ।

ମୀନକେତନ କମ୍ପନେ ଚେତନେ ଦୀନା ଉତ୍କଳ ମାତାର
ଦୀନ ସ୍ତନ ତଳେ ଝଙ୍କାରି ଉଠିଲା ଛିନ୍ନ ବୀଣାର ତାର ।

ବଡ଼ଦାଣ୍ଡ ବଡ଼ ଦେଉଳ ଠାକୁର ତୋହରି କେ ତୋ ସମାନ
ସବୁ ବଡ଼ ତୋର ଓଡ଼ିଆ ଭାଇରେ ତୁ ପୁଣି କାହାଠୁ ସାନ ।

ଭୂ ଭାରତେ ଜାତିଭେଦ ନାହିଁ ଯହିଁ ଏ ପରା ଦେଉଳ କାର
ନୀଳାଚଳ ବଡ଼ ଦେଉଳଟି ଏକା ଦୀନହୀନ ଓଡ଼ିଆର
ହିନ୍ଦୁ ଭାବନା ହିନ୍ଦୁ ସାଧନା ହିନ୍ଦୁ ଲୋତକ ଧାର ।

॥ ୨୬ ॥

## ମଧୁ-ସ୍ମରଣେ

ଏ କଟକ ଭୂମି ରୋମାଞ୍ଚ ଥରେ
ଚାହିଁ ରହିଅଛି କାହା ପୟରେ
କି ଦୁଃଖ କାନନ ଇତେ ଏ ଭଳି
ଦିବସ ପାଦପେ ପଡ଼ିଛି ଢଳି
ଆନନ୍ଦ ଲାବଣ୍ୟ କାହିଁରେ ।
କାହିଁ ଫୁଲରାଜି କାହା ପାଦେ ଆଜି
ଭେଟୁଛୁଁ ଇଚ୍ଛା ସେ ଛାଇରେ ॥୧॥
କାହିଁ ଲୁଚିଲା ସେ ଚଣ୍ଡ ତପନ
କାହିଁ ଭାସିଗଲା ନୀଳ ଗଗନ
କାହିଁ ସେ ଆଲୋକ କାହିଁ ସେ ଧାରା
ଉଇଁବ ନାହିଁକି ଆଉ ସେ ତାରା
କାହିଁ ସେ ସୁଧା ବରଷା ଯେ
ନୀରସ ନୀରଦ କାଳିମାର ଛାୟା
ଲିଭାଇଛି କି ଭରସା ଯେ ॥୨॥
ଫେଇଥିଲା ପରା ମୁଖୁ ବସନ
ବିଶାଦ କାଳିମା କରି ମୋଚନ
ଜନନୀ ଆଜି ଗୋ କେଉଁ ଦୁଃଖରେ
ପୁଣି ଘନଛାୟା ତୋ ଆନନ୍ଦରେ
ଉଷ୍ଣଶ୍ୱାସେ କି ଏ ଧାରା
ଫୁଲ ତୋଳି ଧରି (ତା) ଗଜ କପାଳରେ
ଘୋର ବିଷାଦ ପସରା ଯେ ॥୩॥
ଚିର ଅଭାଗିନୀ ଉତ୍କଳ ମାତା
ତା' ଫଟା କପାଳ ଗଜ ମୁକୁତା
ତା' ଚିରା ଅଞ୍ଚଳ ମଣି ଗଣିକ
ତା ଅନ୍ଧାର କୋଠି ନିଧି ବଣିକ
ଆଜି ସେ ମଧୁସୂଦନ ଯେ
କ୍ଷଣକେ ହସାଇ ରସାଇ ଭସାଇ
କଲେ ତୋ କୋଳେ ଶୟନ
ଆଜି ମୁଦିଛି ନୟନ ଯେ ॥୪॥
(ମଧୁସୂଦନ ଦାସଙ୍କ ବିୟୋଗରେ)

॥ ୨୭ ॥

କହେ ହନୁମନ୍ତ ହୋଇଲେ ହେମନ୍ତ ବସନ୍ତ ତା ପଛେ ଥୁଆ ଗୋ
ହେମନ୍ତ ହେମାଳ କୁହୁଡ଼ି କାକର ବାପା ଦେଇଥିଲେ ନାଁ ଗୋ
ଗାଆଁ ଯାକେ ସନ୍ନିପାତ
(ଏବେ) ହେମନ୍ତ ସରିଲା ବସନ୍ତ ଆସିଲା ନାଡ଼ି ମିଳିଲା ସଙ୍ଗାତ ଗୋ
ହେମନ୍ତର ଶୀତ ସରିଗଲା ମିତ ଶିଶିର ପୋତିଲା ଶିର ଗୋ
କନକ କାଠିର କୁହୁକ ପରଶେ ବସନ୍ତ ଜାଗିଛି ଚିର ଗୋ ।
ଆସ ଆସ ଆଳି ମାଳି
ଆସ ଘେନି ବନ୍ଦାପନା ଥାଳି ଗୋ ॥୧॥
ମଳୟେ ସିନାନ ବଢ଼ାଇ ହେମନ୍ତେ ସଜାଅ ବସନ୍ତ ବେଶେ ଗୋ
ଅମଳ କପୋଳେ ଏ ଚୂର୍ଣ୍ଣ କୁନ୍ତଳେ ବାରିଦିଅ
ଯୋଡ଼ା ପଲ୍ଲବ ଖଣ୍ଡୁଆ ।

॥ ୨୮ ॥

ଆଜି ଶୁଷ୍କ ମରୁ ସଲିଳ ସାଗର
ଆସିଛି ତହିଁ ଗୋ ଦୁର୍ଗମ ବଢ଼ି
ଆଜି ଶୁଷ୍କଲତା ଜାଗିଛି ସହସା
ଧରିଛି ତହିଁ ଗୋ ଅପୂର୍ବ କଢ଼ି
(ଆଜି) ଯାଇଛି ଯୋଡ଼ିଗୋ ଏ ଦୀନ ବୀଣାର
ଖଣ୍ଡେ ଖଣ୍ଡେ ଛିଣ୍ଡା ଚୁମୁକି ତାର
(ଆଜି) ବାଜିଲେ ବାଜନ୍ତା ବିକଳା ରାଗିଣୀ
ବନ୍ଧ ଦୁଃଖରାଶି କରି ଉଦ୍‌ଗାର ।
(ଆଜି) ନୈରାଶ୍ୟ-କଦମ୍ବ, ଶିରେ ତୁ କିଏ ରେ-
ବୁଣି ଦଉ ମଧୁ ମୂରଲୀ ତାନ
(ଆଜି) ବାସନା-ଅତଳ-ଯମୁନା ତରଙ୍ଗେ
ଭସାଇ ଦଉ ଏ ଦୁଃଖୀ ପରାଣ
ଆଜି ଦୁଃଖଭରା ହୃଦୟ ମୋର ଗୋ
ଢାଳିବ କହ ତୋର ଚରଣେ
ଆଜି ଦୁଃଖ ଗଢ଼ା କୁସୁମ କଳିକା
ଅର୍ପିବି କି କହ ତୋହ ଚରଣେ ?

॥ ୨୯ ॥

## ଚାତକ

ଚାହିଁ ବସିଥାଆ ଚାତକ
ମେଘ ଚାହେଁ ତୋର ଲୋତକ -
ତୁ ଚାହୁଁ ଚାଠାରୁ ବାରିରେ
(ସେ) ଦେବ ପରା ଟଟେ ଘାରିରେ ।

॥ ୩୦ ॥

## ଅନ୍ଧକାରେ

କଟିଗଲା କାଳ ମୋର ଘୋର ଅନ୍ଧକାରେ
ବିଚିଗଲା ଜୀବନ ମୋ ଏ ପୋଡ଼ା କାନ୍ତାରେ ।
ନାହିଁ କି ରବି କିରଣ ହସାଇ ହସିବ
ନାହିଁ କି ଜୀବନ - ଉସ ପରାଣ ପଶିବ ?

କି ମଧୁର ! ଜଳଧାର କିବା ପ୍ରାଣଧାରା
ଗଳି ଭାସି ଧର ଧର ହେଲି ଗୋ ସାରା ।
ଏ ସର୍ବ - ଗରାସୀ ସ୍ରୋତ କେ କହିଲା ମନୁ ଦେଶେ
ଶତମୁଖୀ ଏ କରାଳ କେ ଆଣିଲା ସୁଧା ବେଶେ !

॥ ୩୧ ॥

## କେ ସେ ?

(କୌଣସି ଏକ ଅତି ନିକଟ ଆତ୍ମାର ଦେହତ୍ୟାଗରେ)

ଏ କ୍ଷୁଦ୍ର କୁଟୀର ଅଙ୍ଗନେ ଭାଙ୍ଗି ପଶିଲା କେ ସେ ?
ଦୀନଜନ ନଗ୍ନ ସ୍ୱରୂପ ଦେଖି ହସିଲା କେ ସେ ?
ସ୍ୱପ୍ନେ ନିଦ୍ରାଦେବୀ ନୟନେ ଘୋର ବିଷାଦ ତୂଳୀ
ବୁଲାଉ ଥିଲେ କି ଆଦରେ ? ଦେଖି ହସିଲା କେ ସେ !
ବହୁ ଥିଲା ଝରଝର ନୟନୁ ଲୋତକ ଧାର
ହିଆ ମୋର ଥର ଥର ବିହ୍ୱଳ ବିରସେ !

କମ୍ପିତ ଓଷ୍ଠ ଅଧରେ ଚୁମ୍ବିଲା ଗୋ ! କେ ସେ ?
ଏ କ୍ଷୁଦ୍ର କୁଟୀର ଅଙ୍ଗନେ ଭାଙ୍ଗି ପଶିଲା କେ ସେ ?
ଅଙ୍ଗନ ଭଙ୍ଗା ସେ ହସ୍ତେ ଗୋ ଧରି ଆଦର ଲେପ
ମୁଦ୍ରିତ ନୟନେ ବୁଲାଇ ବୋଳିଦେଲା ଗୋ କେ ସେ ?
ଅନାଇ ଦେଖିଲି ଖରେ ହୃଦ ମୋ ଆଖି ଆଗରେ
ସ୍ୱପନ ବିହାରୀ ଉରେ ଅଶ୍ରୁ ଅନ୍ତ ବେଶେ
ଚକ୍ଷୁ ଯୁଗ ନୀରବରେ କାହିଁ ଗଲା କେ ସେ ?
ନୟନରୁ ତାରା କ୍ଷଣକେ ହରି ନେଲା ଗୋ ! କେ ସେ ?
ମଧୁ ନିଦ ମଧୁ ସ୍ୱପନ ଭାଙ୍ଗି ଦେଲା ଗୋ ! କେ ସେ ?
ଇଞ୍ଚାତାରା ପରି ଆସିଥିଲା ଲୋ ସେ
ନିଶିଥ ରଜନୀ ଅନ୍ଧାର ଭେଦି
ସୁଧା ପାନ ଆଶୀ ଚାତକୀର ବୃଥା
ଶୁଷ୍କ କ୍ରନ୍ଦନ ଦେବାକୁ ଛେଦି ?
ଆସିଲା ସେ ନଭେ ଦେଲା କ୍ଷଣେ ଦେଖା
ତା' ହସେ ମିଶି ମୁଁ ହସିଲି ଗୋ
ଝୁରିମରେ ଏବେ ଆଶା - ଅବସାନେ
ଏଇ ହସ ବିଷ-ବିଚିଲି ଗୋ

+ + + + +

ପ୍ରାଣ ପଥେ ମୋର ଖେଳାଇଲା ବିଜୁ
ପୁଣି ହାଣିଲା ଅଶନି କେ ସେ ?
ଉହାଡ଼େ ବସି ଗୋ ଆଜି ଦେଖେ ପରା
ଅଧର ମୋର ଗୋ ହସେ

+ + + + +

ଯେ ହେଉ କ୍ଷଣକେ ଏତେ ସରି କରି
ଗଲା କାହିଁ ଅବଶେଷେ ?
ଉଭେଇ ଗଲାକି ଯବନିକା ତଳେ
(ଅବା) ଗଲା ଉଡ଼ି ପରୀ ଦେଶେ ।

॥ ୩୨ ॥

# ଅଭିମାନେ

ଯେଣେ ଇଚ୍ଛା ତେଣେ ଯାଉ ବୋଲି
ଭରା ଅଭିମାନେ ବାନ୍ଧିଲି ଗୋ ଦମ୍ଭେ ଆଣ୍ଠ,
ବିଷମ ସଂକଳ୍ପ ଘୋର୍ଚ୍ଚୁ ଜାଗି
ଅନିତ୍ୟ ତନ୍ଦ୍ରାରୁ ନିତ୍ୟେ ଆଜି ଏ ସଂକଟ ।
ଯେଣେ ଇଚ୍ଛା ଯାଇଅଛି ତେଣେ
ଇଚ୍ଛା ନାହିଁ ଏ ହୃଦୟେ ଉଏଁ ସେ କିପାଇଁ,
ଯେଣେ ଇଚ୍ଛା ଯାଉ ପଛେ ତେଣେ
ଯେଣୁ ଇଚ୍ଛା ତେଣୁ ପୁଣି ଆସେ କିପାଁ ଧାଇଁ ?
ଆସେ କିଆଁ ଛପି ଛପି ପୁଣି
କ୍ଷୀଣ ମେଘଢ଼ଙ୍କା କଉମୁଦୀ ପ୍ରସ୍ତରଙ୍କୁ,
ଧରି କଳା କୁମାରୀ ଜହ୍ନର
ବହିଆସେ କିପାଁ ନିଶା କିରୀଟର କୋଳୁଁ ।
ତାରକାଗୁମ୍ଫିତ ନୀଳାକାଶ
ଦିଏ ଛାଇ କିପାଁ ତାର ମୋହିନୀ ମୂରତି,
ଚକିତ ଚାହାଣି ତାରକାର
ଆସି ବିନ୍ଧି ବୁକେ କିପାଁ ପକାଏ କରତି ?
ନିତି ନିତି ରବିର ଉଦୟେ
ସ୍ୱପନ ପାସୋରା କିଏ ଝଲସେ ନୟନେ,
ବହି ଆସେ କା'ର ସ୍ମୃତି-ସୁଧା
ସହ ଅବସାଦ କାଉକୋଇଲି ବଚନେ ।
କ୍ଷଣୁ କ୍ଷଣେ ତରସେ କିପାଇଁ
କ୍ଷୁଦ୍ର ଏ ହୃଦୟ କାହାର ବା ଆଗମନ ଆଶେ ।
ନିମିଳିତ ନୟନେ ଅନ୍ତର
ଚକିତେ କହ ଗୋ କାହୁଁ ଉନ୍ମୀଳନେ ଆସେ ?
କରିବାକୁ ମନୁ ଦୂର ତାକୁ
ଯେତେକ ମୁଁ ଭିଡ଼େ ଅଣ୍ଟା କହିବି ଜୋ କେତେ ?

ଅବିରତ ବିତାଡ଼ିତ ପୁଣି
ଅକାତରେ ଅଭାବୁକ ଚଳାଏ ଗୋ ଯେତେ ।
କି କରିବି କରିଛି ଦଖଲ,
ନେତ୍ରପ୍ରାନ୍ତେ ପରା ଯେତେ ଶୂନ୍ୟ ଅଧିକାର,
ଆଗହୁଁତ ଦେଇଅଛି ଢାଳି
ଅନ୍ତର ପ୍ରଦେଶ ମୋର କରି ଛାରଖାର ।
ରହିବି କାହିଁ ଗୋ କହ
ଛାଡ଼ି ତା'ର ଶୂନ୍ୟଭରା ସ୍ମୃତିର ଅଗଣା,
ରଖିବି କାହିଁ ଗୋ କହ
ଉଚ୍ଛ୍ୱସିତ ଅଭିମାନ ହୃଦୟ ବେଦନା ?
ଅଭିମାନ ଧନ ମୋର
ଶେଷ ଧନ ଆଜି
ଯିବକି ଗୋ ଭାସି ଏହି ମତେ
କି କରିବି କହ ବାରେ
ସେ ଧନୁଁ ବଞ୍ଚିତ ହୋଇ ଦୀନ କି
ବଞ୍ଚିବ ସତେ ?
ଆସିବ ସେ ଯେତେବେଳେ
ନ ଥିବକି କିଛି ମୋର ଦେବି ଉପହାର
ପିନ୍ଧିବକି ଦୟାବହି
ପ୍ରତ୍ୟାଖ୍ୟାତ ଏ ମଳିନ କର ଯୁଗହାର
ବାଷ୍ପ ଭରା-ନତଶିର
ଘେନିବ କି, ଧରିବ କି ବକ୍ଷ ବକ୍ଷେ ତା'ର ?

॥ ୩୩ ॥

## ଓଡ଼ିଆ ପଖାଳ ଭାତ

ମୁଣ୍ଡିଆ ମୁଣ୍ଡର ଖେଳୁଆଡ଼ ବାଆ ଚକା ଭଉଁରୀରେ ବହି
ମୁକ୍ତ ଆକାଶର ତୁଙ୍ଗ ଶିଖରରୁ ଝରୁଥିଲା ରହି ରହି ।୧।

କନମନ ହୋଇ କେବେ ଚିଲୁଟାଏ ନଣ୍ଡା ବରଗଛୁଁ ଉଠି
ତା'ରି ତେଢେ ଭେଦି ପବନ ଅବଶେ ପଳାଗ ଆସେ ଲେଉଟି ।୨।

ଆକାଶ ମୁକ୍ତ ଶୂନ୍ୟ ପବନ ପୂର୍ଣ୍ଣ ହରଷ ଧାରା
ଲମ୍ବାଇଛି ପରା ଏ ଉତ୍କଳ ବକ୍ଷେ ଜୟ ଗଉରବ ମାଳା ।୩।

ବଜା ବଜା ବଜା ସେନାପତି ପୁଅ ବଜାରେ ଖରେ ମହୁରୀ
ବର୍ଗୀ ଖଣ୍ଡ ପରା ଗାଆଁ ମୁଣ୍ଡେ ବୁଢ଼ା ପାଇକ ଛାଡ଼ିଛି ହୁରି ।୪।

ବୁଢ଼ା ପାଇକ ସେ ପାଇକ ଗ୍ରାମର ବହୁଦିନୁ ଥିଲା ନେତା
ବୀରଙ୍କ ସନ୍ତାନ, ବୀରଙ୍କ ଜନକ ଶତ୍ରୁଜିଣା ଚିରଜେତା ।୫।

ବୀର ସୁତେ ଆଜି ବୃଦ୍ଧେ ରଖି ଗ୍ରାମେ ଯାଇଛନ୍ତି କାହିଁ ରଣେ
ପାଇକ ଗ୍ରାମର ରକ୍ଷକ ଏ ବୃଦ୍ଧ ଆଉ ନାହିଁ କେହି ଜଣେ ।୬।

ବୁଢ଼ା ଥର ହର ହାତଟି ପକାଇ ମୁଛେ ଚାଳିଅଛି ଖରେ
ଗଭୀର ନିମଗ୍ନ ଆଖି ଯୋଡ଼ି ଜଳେ ଚାହିଁ ଅଛି ଗ୍ରାମ ପାରେ ।୭।

ବଜା ବଜା ବଜା ବଜାରେ ମହୁରୀ ସେନାପତି ଉଠ ବଜା
କମ୍ପମାନ କଣ୍ଠେ ହାକି ଦେଲା ବୃଦ୍ଧ ଗାଁ ମୁଣ୍ଡେ ଆସି ବଜା ।୮।

ମହୁରୀଆ ବୁଢ଼ା ନିଧି ସେନାପତି କାନରେ ପଡ଼ିଲା ଡାକ
(ତା'ର) ମନେ ପଡ଼ିଗଲା ବୁଢ଼ାସଙ୍ଗେ ଗତ ବିଜୟ ବାଜଣାଯାକ ।୯।

ମନ୍ତ୍ରବଳେ ଉଠି ଶତ ସ୍ମୃତିଯୁକ୍ତ ମହୁରୀରେ ଦେଲା ଫୁଙ୍କି
ଥରି ଉଠି ପଡ଼ି ବାଜୁଛି ମହୁରୀ ବୁଢ଼ାର ନ ଛାଡ଼େ ଝୁଙ୍କି ।୧୦।

ଏକ ଦୁଇ ତିନି ଚାରିଟି ସବାର କାହୁଁ ଦେଲେ ଦେଖା ଆସି
ନିଃଶବ୍ଦ ଶରଣେ ଘୋଟକ ଛୁଟାଇ ଉଡାଇ ଧୂଳିକା ରାଶି ।୧୧।

ଚାହୁଁ ଚାହୁଁ ବୁଢ଼ା ବାଉଳାଙ୍କ ପରି କ୍ଷଣକେ ହୋଇଲା ସ୍ଥିର
ପରକ୍ଷଣେ ଦର୍ପେ ଛାତିକୁ ଫୁଲାଇ ଧନୁରେ ଯୋଖିଲା ତୀର ।୧୨।

ଏହା ବୋଲି ବର୍ଗୀବର ସମାରୋହେ ନେଇ ନିଜ ମୁଛେ ହାତ
ପକାଇ ହସିଲା ଝିଙ୍ଗାସି କହିଲା ଓଡ଼ିଆ ପଖାଳ ଭାତ ।୧୩।

କେଡ଼େ ପାଇକତୁ ଅଟୁ ଆରେ ବୁଢ଼ା ନିଶ ମୋଡ଼ ଦେଖି ଥରେ
ଆପାଦ ମସ୍ତକ ଥରୁଁ ଥରୁଁ ବୃଦ୍ଧ ମାତା ଭଗବତୀ ସ୍ମରେ ।୧୪।
ଆଜ୍ଞା ହଉ ବୋଲି ଆସ୍ଫାଳି ସଦମ୍ଭେ

(ଅସମ୍ପୂର୍ଣ୍ଣ)

❑ ❑ ❑

# ମନେ ମନେ

## ପ୍ରଥମ ଖଣ୍ଡ

## ମେରା ଭାଇ ରେ !

(୧)

ସେଦିନ ହରିବାବୁ କଚେରିରୁ ସହଳ ସହଳ ଆସି ନିଜ ଦାଣ୍ଡଦୁଆରେ ପହଞ୍ଚିଲା ବେଳକୁ ବେଳ ଆସି ବୁଡ଼ିଲାଣି । ତାଙ୍କ ଦାଣ୍ଡ ଅଗଣା ପକ୍କା ଚଉରା ଉପରେ ବସି ଗାଁ ଝିଅଯାକ କଇଁଫୁଲର ଅପୂର୍ବ କୋଠିମାନ, ଅବଶ୍ୟ ବଡ଼ ଓଷେଇତୀଙ୍କ ଫରମାସ ଅନୁସାରେ, କାଟିବାରେ ବ୍ୟସ୍ତ ହୋଇଗଲେଣି । ଆଜି ସେମାନଙ୍କର ବଡ଼ଘର, କାଲି କୁମାରପୂର୍ଣ୍ଣିମା । ହରିବାବୁ ସେ ଆଡ଼କୁ  ଚାହିଁ ଡାକିଲେ, 'କନକ' । କେହି ଉତ୍ତର ଦେଲେ ନାହିଁ  । ମୁହଁ ଫେରାଇ ପିଣ୍ଡା ଉପରକୁ ଉଠିଲେ । ଉଠିବା ମାତ୍ରକେ ତାଙ୍କ ପରିଶ୍ରମ ମଳିନମୁଖରେ ଟିକିଏ ଦରହାସ ଫୁଟି ଉଠିଲା । କିଛିକ୍ଷଣ ପରେ ସହାସ୍ୟ ବଦନରେ ସ୍ନେହଭରା କ'ଣ୍ଠରେ ସେ କହିଲେ—"କିଲୋ କଙ୍କି, ତମର ଆଜି ପରା ବଡ଼ଘର, ଏଠି ବସିଛୁ ଯେ ?" ଉତ୍ତରରେ କେବଳ ଶବ୍ଦ ହେଲା—"ଉଁ ଉଁ ଉଁ, ସୁଁ ସୁଁ ସୁଁ !" "କି ଲୋ, କାନ୍ଦୁଚୁ କାହିଁକି ?" କିଛି ଉତ୍ତର ନାହିଁ—ଦ୍ୱିଗୁଣିତ ବେଗରେ କ୍ରନ୍ଦନ । ହରିବାବୁ ହସି ହସି ନଇଁ ପଡ଼ି ଧୂଳିଧୂସରିତା ଦଶମବର୍ଷୀୟା ବାଳିକାଟିର ନତମସ୍ତକଟିକୁ ସ୍ୱହସ୍ତରେ ଟେକି ଧରିବାକୁ ଚେଷ୍ଟା କଲେ, କିନ୍ତୁ କ୍ରନ୍ଦନତତ୍ପରା କୌଣସିମତେ ମୁଣ୍ଡ ଟେକିଲା ନାହିଁ—ପୁଣି ରାଗିଯାଇ କାନ୍ଥ ଆଡ଼କୁ ବୁଲି ବସି ନିଜର କ୍ଷୁଦ୍ର ସୁଗୋଲ ହସ୍ତଦ୍ୱୟରେ କାନ୍ଥଟିକୁ ପ୍ରହାର କରିବାକୁ ଲାଗିଲା । ହରିବାବୁ କ'ଣ ବୁଝି ହୋ ହୋ କରି ହସି ଉଠି, ନିଜ ଛତାଟି ଭିତରୁ ଖଣ୍ଡେ ବିଲାତୀ ଛାପାପାଡ଼ୀ ଲୁଗା ବାହାର କରି ଅତି କଷ୍ଟରେ ହାସ୍ୟ ସମ୍ବରଣ କରି ମଜାଟା ଦେଖିବା ପାଇଁ ସମାଗତ

ଦୁଇଟିନୋଟି ପିଲାଙ୍କୁ ଆଖି ଠାରି କହିଲେ—"ଦେଖିଲୁ କନକ, ଏ ଲୁଗାଟା ଏବେ ତୋ ମନକୁ ଲାଗୁଚି କି ନା ?" ଏହା କହି ଲୁଗାଖଣ୍ଡିକ ବାଳିକାହସ୍ତରେ ଗୁଞ୍ଜିଦେଇ ବିଜୟୋଲ୍ଲାସରେ ହସି ହସି ଭିତରକୁ ଚାଲି ଯିବାକୁ ବସିଲେ । କିନ୍ତୁ ବାଳିକାଟି ଲୁଗା ଆଡ଼କୁ ଥରେ ମାତ୍ର ନ ଚାହିଁ ନିର୍ମମଭାବରେ ତାହା ବାବୁଙ୍କ ଉପରକୁ ଫୋପାଡ଼ିଦେଲା, ଆଉ କଇଁ କଇଁ ହୋଇ କାନ୍ଦିବାକୁ ଲାଗିଲା । ହରିବାବୁ ଟିକିଏ ବିସ୍ମିତ ହୋଇ ଫେରିଲେ; କନକର ଦୁଇ ହାତ ଧରି କହିଲେ—"ସୁନା ଭଉଣୀଟି ପରା, କ'ଣ ହେଇଚି କହିଲୁ ! ତୋ ପାଇଁ ଆଜି ଏଇ ସୁନ୍ଦର ଲୁଗାଟି ଆଣିଚି । ଏଇ ଦେଖ୍, ଗୁଡ଼ିଆ ପାଖରୁ ବଡ଼ଘର ଭୋଗ ତୋ ପାଇଁ ଆଣିଚି । କହିଲୁ କଙ୍କି, କଥା କ'ଣ ? ନୂଆବୋଉ କିଛି କହିଲା ? କେହି ପିଲାଏ ମାରଧର କଲେ ?" ଏହିଥର ବାଳିକାଟି କଥା କହିଲା—ଅବଶ୍ୟ ବହୁ କଷ୍ଟରେ । କହିଲା କି, "ନୀଳୁଭାଇ କାହିଁକି ମତେ ଲହ୍ନିଖାଇ ବୋଲି କହିଲା ? ଉଁ ଉଁ ଉଁ—ମୁଁ ଓଷା କରିବି ନାହିଁ —ଉଁ ଉଁ ଉଁ ! ମୁଁ ଲୁଗା ପିନ୍ଧିବି ନାହିଁ —ଉଁ ଉଁ ଉଁ !" ହରିବାବୁ ହସି ଉଠୁଥିଲେ, କିନ୍ତୁ ତାଙ୍କ ମୁହଁ ଉପରେ ସ୍ଥାପିତ ଯୋଡ଼ିଏ ଦିବ୍ୟଚକ୍ଷୁର ଅଶ୍ରୁପୂର୍ଣ୍ଣ ଝଲସରେ ତାଙ୍କ ହୃଦୟର କେଉଁ ସୂକ୍ଷ୍ମ ତନ୍ତ୍ରୀ କି ମଧୁର ଭାବରେ ତାଡ଼ିତ ହେଲା କେଜାଣି, ହସିବେ କ'ଣ, ସେ ହଠାତ୍ ବାଳିକାଟିକୁ କୋଳ କରି ଧରି ଗୃହ ମଧ୍ୟକୁ ଚାଲିଗଲେ - କିଛି କହିଲେ ନାହିଁ ।

\+ + + + +

ପରଦିନର କଥା, ଆଜି କୁମାରପୂର୍ଣ୍ଣିମା—କୁମାରୀମାନଙ୍କର ସୌନ୍ଦର୍ଯ୍ୟ-ଉପାସନାର ଦିବସ । ଘରେ ଘରେ ଆଜି ଆନନ୍ଦର ଢେଉ ଖେଳିଯାଉଅଛି । କି ଧନୀ, କି ନିର୍ଦ୍ଧନ, ସମସ୍ତେ ନିଜ ନିଜ ପିଲାମାନଙ୍କୁ ଯଥାଶକ୍ତି ସଜାଇ ସୌନ୍ଦର୍ଯ୍ୟ-ଉପାସନାର ଚରମ ସହଯୋଗିତା ଅନ୍ତରରେ ଅନୁଭବ କରିବାକୁ ଛାଡୁନାହାନ୍ତି । ଘରେ ଘରେ ଆନନ୍ଦକଲ୍ଲୋଳ — ଘରେ ଘରେ ଶୋଭାର ହାଟ ବସିଯାଇଅଛି । ସରଳ ବାଳକବାଳିକାମାନେ ସ୍ୱଭାବ-ସୌନ୍ଦର୍ଯ୍ୟର ଚରମ ବିକାଶ ପୂଜାଫୁଲ ଅଙ୍ଗେ ଅଙ୍ଗେ ଖେଳାଇ ଷୋଡ଼ଶୋପଚାରରେ ସୌନ୍ଦର୍ଯ୍ୟଦେବତାଙ୍କୁ ପୂଜା ଦେଉଅଛନ୍ତି ।

ସନ୍ଧ୍ୟା ପହରେ କି ଦୁଇଘଡ଼ି ଥାଉଁ ଚାନ୍ଦ ବଡ଼ାବଡ଼ିର ଧୂମ୍ ପଡ଼ିଗଲାଣି—ପିଲାଠାରୁ ବୁଢ଼ାବୁଢ଼ୀ ପର୍ଯ୍ୟନ୍ତ ସମସ୍ତେ ନିହାତି ବ୍ୟସ୍ତ ଥିଲାପରି ଯଥାସମ୍ଭବ ଧାଁଦଉଡ଼ ଲଗାଇଅଛନ୍ତି, କେଉଁଠାରେ ବୋହୂଝିଏ ଗୁଣ୍ଡ ହୋଇ ଚକ୍ରାକାରରେ ବସି

ହସଖୁସିରେ ଆପଣା ଆପଣା କେଶବିନ୍ୟାସ କରିବାରେ ବ୍ୟସ୍ତ, କେଉଁଠାରେ କେତେଗୁଡ଼ିଏ ପ୍ରୌଢ଼ା ନିଜ ନିଜ ପିତ୍ରାଳୟ, ତଥା ମାତୃଭୂମିର ପ୍ରଶଂସା ଦ୍ୱାରା ଅତ୍ରତ୍ୟ ଶ୍ୱଶୁରଗୃହ ଓ ଗ୍ରାମର ଦ୍ରବ୍ୟସାମଗ୍ରୀ ରୀତିନୀତି ଆଦିର ନିକୃଷ୍ଟତା ସ୍ପଷ୍ଟଭାବରେ ପ୍ରତିପାଦିତ କରି ପକାଉଅଛନ୍ତି । କିନ୍ତୁ ଏ ପ୍ରକାର ଅଯଥା ବଡ଼ିମା ଏ ଘର ଓ ଗ୍ରାମର ଝିଅଗୁଡ଼ାଙ୍କ ଦିହରେ କେଉଁ ଯାଉନାହିଁ । ସେମାନେ ଯଥାସମ୍ଭବ ଥଟ୍ଟାସମ୍ବନ୍ଧମାନ ସ୍ମରଣ ବା ଆବିଷ୍କାର କରି ପ୍ରୌଢ଼ାମାନଙ୍କୁ ରୀତିମତ ଗାଳିଦେବାକୁ ଛାଡୁନାହାନ୍ତି—ହେଲେ, ବୟସ୍ୱତ୍ୱ ଓ ବିଜ୍ଞତ୍ୱର ପରିଚାୟକ ସେମାନଙ୍କର ଗୋଟିଏ ଗୋଟିଏ ମସ୍ତକ ସଞ୍ଚାଳନରେ ସେମାନେ ସଲଖେ ସଲଖେ ନିଜ ନିଜ ନ୍ୟୂନତା ଜ୍ଞାନରେ ଉପନୀତ ହୋଇ ତୁନି ହୋଇ ଯାଉଅଛନ୍ତି । ଗୋଟିଏ ଘରେ ସାନ୍ତାଣୀ ଖଣ୍ଡେ ଗାମୁଛା ଦେହରେ ବେଢ଼ାଇ ଦେଇ ନସରପସର ହୋଇ ଚାନ୍ଦ ବାଢ଼ିବାରେ ବ୍ୟସ୍ତ । ପିଲାଗୁଡ଼ାକ ନୂଆ ଲୁଗା ପିନ୍ଧିବେ ବୋଲି ତାଙ୍କ ପିଛା ଧରିଅଛନ୍ତି, ବୋହୂଗୁଡ଼ାକ ତାଙ୍କ ମୁଣ୍ଡ ବାନ୍ଧିଦେବାକୁ ଚୂ ଚୂ କରି ଭିଡ଼ାଭିଡ଼ି ଲଗାଇଛନ୍ତି । ସାନ୍ତାଣୀ କିନ୍ତୁ ଗମ୍ଭୀରଭାବରେ ସହସ୍ର ଅଦୃଷ୍ଟପୂର୍ବ ଚାନ୍ଦର ପ୍ରତିକୃତି ଥାଳି-ଥାଳିଆମାନଙ୍କରେ ବେଧଡ଼କ୍ ବସାଇଦେଇ ଯାଉଅଛନ୍ତି । ହେଲେ, ବେଳେ ବେଳେ ତାଙ୍କ କ'ଣ୍ଠନିର୍ଗତ ବାକ୍ୟସ୍ରୋତରେ ତିଷ୍ଠିବାର ଆଉ ବାଟ ରହୁନାହିଁ । ଗାଁ ଓଝେଇତୀର ଆଉ ଡର ନାହିଁ —ଜହ୍ନ ବୁଢ଼ା ହୋଇଯିବ ବୋଲି ପିଣ୍ଡି ଉପରେ ଆସି ଦିନ ଘଡ଼ିଏ ଥାଉଁ ଜହ୍ନିଫୁଲର ଗୋଟିଏ ପୂର୍ଣ୍ଣଚନ୍ଦ୍ର ଆଙ୍କି ପକାଇଲାଣି ।

ଆଜି କନକ ଅଝଟ ଧରି ବସିଛି—ନୀଲୁଭାଇ ପାଇଁ ଚାନ୍ଦ ବଢ଼ା ନହେଲେ ସେ ଚାନ୍ଦ ବନ୍ଦାଇବାକୁ ଯିବ ନାହିଁ—ଲୁଗା ଚୂଡ଼ି କିଛି ପିନ୍ଧିବ ନାହିଁ, ଚୂଲି ଓଷା ମୁହଁରେ ନିଆଁ ଢାଳିଦେବ । ହରିବାବୁଙ୍କ ଗୃହିଣୀ ଧରି ବସିଛନ୍ତି—ସେଇଟା କାହାର କିଏ, ତା ପାଇଁ ଆମେ ଗୋଟାଏ ଚାନ୍ଦ ବାଢ଼ିବୁ କିଆଁ । କନକ ପାଇଁ ତାକ ଉପରେ ଡାକ ଆସୁଛି । ସେ ତ ନ ଘୁଞ୍ଚିଲେ ସରିଲା—ସେମିତି ବାଡ଼କୁ ଆଉଜି ବସିଛି । ହରିବାବୁ କଚେରି ଫେରନ୍ତା ଆସି ଏସବୁ ଦେଖି କେଉଁ ଆଡ଼କୁ ହେବେ, କିଛି ସ୍ଥିର କରିପାରୁନାହାନ୍ତି, ଥରେ କାର୍ଯ୍ୟବ୍ୟସ୍ତା ଅର୍ଦ୍ଧାଙ୍ଗିନୀଙ୍କ ଆଡ଼କୁ ଚାହିଁ କନକର କରୁଣ ମୂର୍ତ୍ତିଟି ଆଡ଼କୁ ଚାହିଁଲା ବେଳକୁ ଦୁଇ ଆଡୁ ମହାଧନ୍ଦା ଲାଗିଯାଉଛି । ଇତିମଧ୍ୟରେ ପୁଣି ପତ୍ନୀଙ୍କ କଠୋର, ପ୍ରତିଜ୍ଞାସ୍ଥିର ନୟନର ବିଦ୍ୟୁତ୍-କଟାକ୍ଷ ମଧ ତାଙ୍କ ହୃଦୟର ଅପରିଜ୍ଞେୟ କୌଣସି ସ୍ଥାନରେ ଆଘାତ କଲାଣି । ହେଲେ, ହରିବାବୁ ଯେତେବେଳେ ସେହି ପିତୃମାତୃହୀନା ସରଳା ବାଳିକାଟିର କଥା ଭାବି ତାହାର ବାଲ୍ୟସ୍ନେହର ପାତ୍ର ସେହି ନୀଳୁଭାଇଟି କଥା ସ୍ମରଣ କରୁଛନ୍ତି, ସେତେବେଳେ ସେ ଅସ୍ୱାଭାବିକ ବଳ ସଞ୍ଚୟ କରି ପତ୍ନୀଙ୍କୁ ଅବଜ୍ଞା

କରିବାକୁ ଯାଉଅଛନ୍ତି ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ତଥାପି କଚେରିଆ ବୁଦ୍ଧି ଛାଡ଼ ଯାଇନାହିଁ । ଅତଏବ ଶେଷରେ ସିଦ୍ଧାନ୍ତ ହୋଇଗଲା ଯେ, ଯଥାସମ୍ଭବ ଦୁଇ ପକ୍ଷ ରକ୍ଷା କରିବାକୁ ହେବ, ଅତଏବ କିଛି ଗୋଟାଏ ଦୋମୁଣ୍ଡିଆ କରି କହିବାକୁ ହେବ । ସୁତରାଂ ହରିବାବୁ କହିଲେ, ''ଆହା, ଗରିବ ଛେଉଣ୍ଡ ପିଲାଟି, ତା ପାଇଁ ଆଉ କିଏ ଚାନ୍ଦ ବାଢ଼ିବ ?''

ବାସ୍ତବିକ, ନୀଳୁ ବଡ଼ ଗରିବ ପିଲାଟିଏ । ବାପ ନାହିଁ, ମା' ନାହିଁ—ପିଲାଟି ସାତବର୍ଷ କାଳରୁ ଆସି ଏଠାରେ ଭଉଣୀଘରେ ଅଛି । ଭଉଣୀର ପୁଣି ଭାଇଭଗାରି ଘର, ସେଥିକି ପୁଣି ନିଜେ ଭଉଣୀ ବର୍ଷେ ହେଲା ଇହଧାମ ଛାଡ଼ି ଚାଲିଗଲେଣି, ଅଛନ୍ତି କେବଳ ଭିଣୋଇ ନିତେଇବାବୁ । ନିତେଇ ବଡ଼ ଭଲ ଲୋକ । ହେଲେ, ଅବସ୍ଥା ତେତେ ଭଲ ନୁହେଁ ।

ନୀଳୁ ପିଲାଟି ଗାଁଯାକରେ ଗୋଟିଏ ପିଲା ଏକା—ଦେଖିବାକୁ ଯେମିତି ସୁନ୍ଦର, ବୁଦ୍ଧିଶୁଦ୍ଧିରେ, ପାଠଶାଠରେ, ବ୍ୟବହାରରେ ତତୋଽଧିକ, ସେଥିପାଇଁ ସେ ପିଲାଟି ଗାଁ ଖଣ୍ଡିକରେ ପୁଅ—ତାକୁ କି, ଏ ନ ଦେଖି ପାରେ, ଏକେ ତ ଗରିବ, ପୁଣି ଏଡ଼େ ସୁବୋଧ, ତେଣୁ ତା ପାଇଁ ଗାଁ ମାଇପଯାକଙ୍କ କଥା ତ ଛାଡ଼ିଦିଅ, ଅଣ୍ଡାଟିଠାରୁ ଭେଣ୍ଡାଟିଏ ଯାଏଁ—ବୁଢ଼ାବୁଢ଼ୀ ପର୍ଯ୍ୟନ୍ତ ସମସ୍ତେ ଧାଇଁଥାନ୍ତି । ନୀଳୁ ଦିନେ ବାଧିକି ପଡ଼ିଲେ ଗାଁର ସାତ ପିଲାଙ୍କର ଖିଆପିଆ ବନ୍ଦ —ସାତ ଲୋକଙ୍କର ଧାଁଦଉଡ଼ର ପର୍ଯ୍ୟନ୍ତ ନଥାଏ ।

ଆଜି କୁମାରପୂର୍ଣ୍ଣିମାରେ ନୀଳୁ ବଡ଼ ବ୍ୟସ୍ତ—ବ୍ୟସ୍ତ ସବୁଠାରୁ ତା'ର ପାଟି ଓ ପେଟ । ତା' ପାଇଁ ଖଣ୍ଡେ ନୂଆ ଲୁଗା ହୋଇଛି ସତ, ହେଲେ ତାହା ହଳଦିଆ ହୋଇନାହିଁ । କିଏ ଅଛି ଯେ ହଳଦାଇବ । ଚାନ୍ଦ ତ ବଢ଼ା ହୋଇନାହିଁ । ଏଥିରେ କିନ୍ତୁ ନୀଳୁର ଅଣୁମାତ୍ର ଦୁଃଖ ଥିବାର ବୋଧ ହେଉନାହିଁ—ଆନନ୍ଦମନରେ ଧାଇଁ ଧାଇଁ ବୁଲୁଅଛି ।

ଚାନ୍ଦବନ୍ଦାଣ ପୂର୍ବରୁ ନୀଳୁ ହସି ହସି ଆସି କନକର ସଯତ୍ନ ନିର୍ମିତ ଖୋଷାଟି ଭିଡ଼ି ଦେଇ କହିଲା, ''କି ଲୋ ଶୁଖୁଆଖାଇ—ଇସ୍, ଶୁଖୁଆଖାଇ, ଇଚ୍ଛିଖାଇ ପୁଣି ଓଷା କରୁଛନ୍ତି — ଦିଅ, ଏଇଟାକୁ ତଡ଼ିଦିଅ ଏଠଉଁ ।'' ଏସବୁର ଗୋଟିଏ କିଛି ଉତ୍ତର ଆଶା କରି ବୋଧହୁଏ ନୀଳୁ କନକ ଆଡ଼କୁ ଚାହିଁଲା, କିନ୍ତୁ ଦୁଃଖର ବିଷୟ, କନକ

ଅନ୍ୟ ଆଡ଼େ ମନ ଦେଇଥିଲା—ନହେଲେ ଗୋଟାଏ କଳିଗୋଳ ନ ହୋଇ ଯାଇନଥାନ୍ତା ।

ବାସ୍ତବିକ୍, ନୀଲୁ ପିଲାଟା ଏଡ଼େ ମେଳିଆ, ଏଡ଼େ ସୁବୋଧ, ହେଲେ, ଦିନରେ ଦୁଇ ଓଳି କନକ ସଙ୍ଗରେ କଳିଗୋଳ, ମାରପିଟ, ଦଙ୍ଗାଫିସାଦ ନହେଲେ ତାକୁ ଆଉ ଭାତ ରୁଚେ ନାହିଁ । ଯେତେବେଳେ ଦୁହିଁଙ୍କର ଭେଟ ହେଲା—ଆଉ ସେମାନଙ୍କର ଛାଡ଼ବାଡ଼ ବଡ଼ ଗୋଟାଏ ଦେଖାଯାଏ ନାହିଁ, କାହାରି କିଛି ଗୋଟାଏ ଅନିଷ୍ଟ ନ ହେବାଯାକେ କେହେଁ ସାଙ୍ଗ ଛାଡ଼ନ୍ତି ନାହିଁ; ଯାହା ବା ଛଡ଼ାଛଡ଼ି ହୁଅନ୍ତି, ତାହା କେବଳ ଅନ୍ୟ କାହାରି କଥାରେ—କଳିଗୋଳ ଦେଖି କେହି ଛଡ଼ାଇ ଦେଲେ ଯାଇଁ । ନ ହେଲେ—ଶୁଣାଶୁଣିରୁ ଜଣାଯାଏ, ଦିନେ ପରା ଦୁହେଁ ବସି ବାଗ୍‌ବିତଣ୍ଡା, ହସଖୁସି, ଗୁଷାବେଉଷା, ମାରପିଟ୍, କନ୍ଦାକଟାରେ ଓଳି ଗୋଟାଏ କଟାଇ ଦେଇ ପୁଣି ଥରେ ସେହି ସେହି ବ୍ୟବସାୟ ନୂଆ କରି ଆରମ୍ଭ କରିବାକୁ ଯାଉଥିଲେ; କନକ ନୂଆବୋଉ ଆସି ଦୁହିଁଙ୍କୁ ଦୁଇ ବାଡ଼ି ଦେଇ କନକକୁ ଅଡ଼ାଇ ନେଇଗଲେ । ତଥାପି କନକ ନୀଳୁଭାଇକି ନ ଦେଖିଲେ ଦଣ୍ଡେ ରହିପାରେ ନାହିଁ, ଦେଖିଲେ ପୁଣି ଟିକିଏ ଚିମୁଟାଚାମୁଟି ଦେବାକୁ, ଟିକିଏ ଖତେଇ ହେବାକୁ ଛାଡ଼େ ନାହିଁ, ନୀଲୁ ଟିକିଏ ଯଦି—ଦଶାବିପାକରୁ ଅବଶ୍ୟ—ଏସବୁର ପ୍ରତିବ୍ୟବହାର ଦେବାକୁ ଯାଏ, ତାହାହେଲେ ଭୋ ଭୋ କରି ଡକା ପାରିବାକୁ ମଧ୍ୟ କୁଣ୍ଠିତ ହୁଏ ନାହିଁ । କନକର ଏସବୁ ପାଠରେ ଭାରି ଦଖଲ —ଗୋଟାଏ ଆଖିରେ କାନ୍ଦିବା ଓ ସଙ୍ଗେ ସଙ୍ଗେ ଅନ୍ୟ ଆଖିରେ ହସିବାରେ ଯେମିତି, ଆଖିରୁ ଲୁହ ପୋଛୁ ପୋଛୁ କାନରେ (ନୀଲୁର) ଛେପ ପକାଇବାରେ ସେମିତି, ନୀଲୁଭାଇ ହାତ ଧରି ଚାଲୁ ଚାଲୁ ରାଗି ଯାଇଁ ତା ଆଡ଼କୁ ପଛ କରି ତାହାରି ପଛେ ପଛେ ଚାଲିବାରେ ଯେମିତି ଦଖଲ, ନୀଲୁଭାଇ ଏସବୁ ମାଲରୁ କିଛି ବରାମଦ୍ କରି ପକାଇଲେ ରଡ଼ିବାରେ ମଧ୍ୟ ତତୋଽଧିକ ! ନୀଲୁ ପିଲା ଚଲାଖ — ଲୁହା ଜାଣି ପାଣି ଦିଏ । ଦିନେ ଦିନେ ପ୍ରକାରାନ୍ତରେ ଏ କଠୋର ଶାସନର ପ୍ରତିବାଦ କରିବାକୁ ମଧ୍ୟ ଛାଡ଼େ ନାହିଁ । କନକ ଘରଠାକୁ ନ ଆସିଲେ ଚୂଡ଼ାନ୍ତ ପ୍ରତିବାଦ ହୁଅନ୍ତା । ତଥାପି ତତୋଽଧିକ ଆତ୍ମପରୀକ୍ଷା ସହ୍ୟ କରିବା ଅସମ୍ଭବ—କନକକୁ ନ ଦେଖିଲେ, ତା'ଦ୍ୱାରା ପ୍ରପୀଡ଼ିତ ନ ହେଲେ ତ ନ ହୁଏ ! ଅତଏବ ଯେଉଁ ଦିନ ଖିଆଲ୍ ଉଠେ ଯେ, ଆଜି କନକକୁ ଜବଦ୍ କରିବି, ସେ ଦିନ ତାକୁ ବରଂ ଟିକିଏ ସହଳ ସହଳ ତାଙ୍କ ଘରଠାରୁ ଯିବାକୁ ହୁଏ; ଯାଇଁ, କନକ ଆସିବା ଆଗରୁ ବଉଳ ଗଛ ଉପରେ ବସି ରହେ—କନକ ଆସିଲେ ମଜାଟା

ଦେଖିବ । ଯାହା ହେଉ ଏ ଆଶାରେ ତାକୁ ଦିନେ ହେଲେ ନିରାଶ ହେବାକୁ ପଡ଼େ ନାହିଁ—ବାସ୍ତବିକ୍ ମଜାଟା ଦେଖିବାର ଭଳିଯା ଜିନିଷ ଏକା ।

+ + + + +

ଫୁଁ ଫୁଁ କରି ଶଙ୍ଖ ବାଜି ଉଠିଲା, ବଡ଼ ଓଷେଇତୀ ନିଜ ଶଙ୍ଖଟି ତଳେ ଥୋଇଦେଇ ଭୋଗପାଣି ଛଡ଼ାଇଦେଲେ —ଚାନ୍ଦବନ୍ଦାଣ ହୋଇଗଲା । ତେଲଦୀପରେ ଚନ୍ଦ୍ର କେତେଦୂର ପ୍ରୀତ ହେଲେ କେଜାଣି, କିନ୍ତୁ ପିଣ୍ଡିଟି ଉପରେ ଶହେ ଚନ୍ଦ୍ର ଝଲସି ଉଠିଲା—ସେ ଠିକ୍ ନୈବେଦ୍ୟ ଗ୍ରହଣ କଲେ ପରା !

ସବୁ ସରିଗଲା । ସମ୍ମାନସ୍ଥାନୀୟ କୌଣସି ପ୍ରୌଢ଼ା ଆସି ଚନ୍ଦ୍ରଙ୍କ ଉଦ୍ଦେଶ୍ୟରେ ଅର୍ଘ୍ୟ ଦେଇଗଲେ । ନିଜ ନିଜ 'ଚାନ୍ଦ' ଧରି ଯେ ଯାହା ଘରକୁ ଚାଲିଗଲେ, ଏକା ନୀଲୁ ଖାଲି ହାତରେ ସେହିଠାରେ ଥକା ହୋଇ ଛିଡ଼ା ହୋଇଥାଏ । ଏହି ସମୟରେ ଦୁଇ ହାତରେ ଦୁଇଟା ଥାଳି ଧରି 'ନୀଲୁଭାଇ' 'ନୀଲୁଭାଇ' ବୋଲି ଡାକି ଡାକି ଦେଖାଦେଲା କନକ । ଦୂରରୁ କହିଲା - 'ନୀଲୁଭାଇ, ଦେଖ ଦେଖ ମୋର ଦିଇଟା ଚାନ୍ଦ । ଛି ଛି, ତୋର — ତୋ ଚାନ୍ଦ କାହିଁ ? ଛି ଲୋ ଛି, ଯାର ଚାନ୍ଦ ନାହିଁ ଲୋ ନାହିଁ ।'' ନୀଲୁ କିଛି କହିଲାନାହିଁ ଦେଖି ହସି ହସି ତା' କପାଳରେ ଟୀକା ମାରିଲା । ନୀଲୁ ତା'ର ଯେଉଁଠି ସେଇଠି କାଠପିତୁଳାଟି ପରି ଛିଡ଼ା ହୋଇଥାଏ—ମୁହଁ ତଳକୁ କରି, ଏ ଶରତ୍କାଳରେ ସୁଦ୍ଧା ଦେହରୁ ବିନ୍ଦୁ ବିନ୍ଦୁ ଝାଳ, ମୁହଁରେ କଥା ନାହିଁ । କନକକୁ ଦେଖି ନୀଲୁ ହାତପିଠିଟା ଚଟ୍କରି ଆଖିରେ ଘଷି ଦେଲା । କନକ ଏଣେ ନୀଲୁ ଲୁଗାକୁ ଲକ୍ଷ୍ୟ କରି କହିଲା—''ଦେଖ ନୀଲୁଭାଇ, ମୋର କେମିତି ହଳଦିଆ ଲୁଗା ! ତୋ ଲୁଗାଟା ଧୂଆ ବି ହୋଇନାହିଁ । ଛି, ଛି ! ମୁହଁକୁ ଲାଜ ନାହିଁ —ଆହୁରି କାନ୍ଦୁଚନ୍ତି !'' ନୀଲୁ ଏତେବେଳକୁ ଲୁହ ପୋଛିପୋଛି ଦେଇ ଗଳା ସଫା କରୁଥିଲା, କନକ କଥା ଶୁଣି ଆଉ ସମ୍ଭାଳି ନପାରି ଫୁଲି ଫୁଲି କାନ୍ଦି ଉଠି ସେଠାରୁ ଦଉଡ଼ି ପଳାଇଗଲା ।

କନକ ତ କେଭେଁ ନୀଲୁଭାଇକି ଏପରିଭାବରେ କାନ୍ଦିବାର ଦେଖିନାହିଁ—ବଡ଼ ବିଷମ ସମସ୍ୟା, 'ନୀଲୁଭାଇଟା ଇମିତି କାନ୍ଦୁଚି କାହିଁକି ?' ମନକୁ କୌଣସି ପ୍ରକାରେ ବୁଝାଇ ନପାରି ନିଜେ ବସି ବିଧିମତେ ଉଚ୍ଛ୍ୱସିତଭାବରେ କାନ୍ଦିବାକୁ ଲାଗିଲା । ଆଉ କ'ଣ କରିବ ବିଚାରୀ —ଚାନ୍ଦଯୋଡ଼ାକ ଦୁଇ ହାତରେ ଧରି ପୂଳାପୂଳା କରି ଛିଣ୍ଡାଇ

ଚକଟା ଚକଟି ପରସ୍ତେ କରିଦେଲା, କିନ୍ତୁ ସେଥିରୁ ତ କିଛି ବୁଦ୍ଧି ବାହାରିଲା ନାହିଁ। ଅତଏବ ଥାଳିଯୋଡ଼ାକ ଠେଲି ଦେଇ ସ୍ଥିରପ୍ରତିଜ୍ଞ ଭାବରେ ମନମାଫିକ ଦମେ କାନ୍ଦି ନେବାକୁ ବସିଗଲା। କାନ୍ଦୁଚି, ଲୁହ ଶୁଖୁନାହିଁ, କୌଣସି ଆଡ଼କୁ ଭ୍ରୂକ୍ଷେପ ନକରି କାନ୍ଦୁଚି। ହଠାତ୍ କାହାର ଗୋଟିଏ କ୍ଷୁଦ୍ର ସୁକୋମଳ ହସ୍ତ ତାହାର ଢଳଢଳ ପଦ୍ମ ପରି ଭରା ଚକ୍ଷୁଯୋଡ଼ିକୁ ଚାପି ଧରିଲା, ଆଉ ଗୋଟିଏ ହାତ ତାହାର ରକ୍ତିମାଭ ଚିକ୍କଣ କପୋଳରେ ଟୀକା ମାରିଲା। ଭରାକ'ଣ୍ଠରେ ନୀଳୁ କହିଲା, ''ଇଃ !'' ବାଳିକା ଚମକି ଉଠି ହାତ ଛଡ଼ାଇବାକୁ ଗଲା, କିନ୍ତୁ ହାତ ଆପେ ଛାଡ଼ିଗଲା; ଆଉ ନୀଳୁ ଆଗକୁ ଡେଇଁ ପଡ଼ି ଆଙ୍ଗୁଳି ଦେଖାଇ କହିଲା, ''କି ଲୋ, ମୋତେ କହୁଥିଲୁ ପରା !'' ନୀଳୁର ଇଚ୍ଛା - କନକ ଆଉ ଟିକିଏ କାନ୍ଦୁ, କିନ୍ତୁ କାନ୍ଦିବା କଥା ଦୂରେ ଥାଉ, କନକ ଏକାଦମ୍‌କେ ପୁରା ଗମ୍ଭୀର ହୋଇଗଲା - ଯେମିତି ଆଉ କାନ୍ଦିବ ନାହିଁ। ନୀଳୁକୁ ଏଇଟା କେମିତି ନୂଆ ବୋଧ ହେଲା - ସେ ବିସ୍ମିତ ହୋଇ ତା ଆଡ଼କୁ ଚାହିଁ ରହିଲା। କନକର ସଦ୍ୟସ୍ନାତ ମୁଖଟି ରଙ୍ଗ ପଡ଼ିଗଲା। ସେ ତରତର ହୋଇ କହିଲା - ''ନୀଳୁଭାଇ, ତମ ଚାନ୍ଦ ନିଅ, ଏଇଟା ତମ ଚାନ୍ଦ।''

ନୀଳୁ ନ ଶୁଣିଲା ପରି କହିଲା - ''କହିଲୁ କନକ, ତୁ କାନ୍ଦୁନାହୁଁ କାହିଁକି, କହିଲୁ ?''

''ମୁଁ ତୋରି ପରି ହେଉଚି, ନୁହଁ ?''

''କାନ୍ଦୁଥିଲୁ କେମିତି ? ଇଃ।''

''କାହିଁ, କିଏ କାନ୍ଦୁଥିଲା, କେତେବେଳେ ? ତୁ ତ କାନ୍ଦୁଥିଲୁ, ମୁଁ କୁଆଡ଼େ କାନ୍ଦିବି।''

ନୀଳୁ କିନ୍ତୁ ହଠାତ୍ କନକର ହାତଯୋଡ଼ିକ ଦୁଇ ହାତରେ ଧରି ଆଖି ଛଳଛଳ କରି କହିଲା - ''ଆଚ୍ଛା କଙ୍କି, ତତେ ମୋ ରାଣଟି, କହ, କାହିଁକି କାନ୍ଦୁଥିଲୁ ?''

''ତୁ କାନ୍ଦିବୁ, ମୁଁ ଟିକିଏ କାନ୍ଦିଲେ ଅଖ ଲାଗିଗଲା। ଯା ମୁଁ ଫେର୍ କାନ୍ଦିବି ଯେ।''

''ବସ୍ ବସ୍ ରହ; କାହିଁକି କାନ୍ଦୁଥିଲୁ କହ, ନହେଲେ ଛାଡ଼ିବି ନାହିଁ।''

''ତୁ କାହିଁକି କାନ୍ଦୁଥିଲୁ କହୁନାହୁଁ ?''

"ମୁଁ କ'ଣ ଆଉ କାନ୍ଦୁଚି ? ଆଉ କାନ୍ଦିବି ନାହିଁ, ଯା !"

"ଆଉ କ'ଣ ମୁଁ କାନ୍ଦୁଚି - ଭାରି ଚାଇଁ । ନିଅ, ଏବେ ତମ ଚାନ୍ଦ ଖାଇବ ତ ଖା, ନହେଲେ ମୁଁ ମୋର ଯାଉଚି ।

ନୀଲୁ ଆଉ ଗାମ୍ଭୀର୍ଯ୍ୟ ରଖିପାରିଲା ନାହିଁ, ହୋ ହୋ କରି ହସିଉଠିଲା ।

ନିଜ ନିଜ ଚାନ୍ଦ ହାତରେ ଧରି ଦୁହେଁ ଉଠିଲେ; ଖାଇ ଖାଇ ଚାଲିଲେ । ଦୁହିଁଙ୍କ ମୁଖରେ ମଧୁର ହାସ୍ୟରେଖା ଫୁଟି ଉଠୁଅଛି । ଦୁହେଁ ନିର୍ବାକଭାବରେ ଚାଲିଅଛନ୍ତି । ଉପରେ ସ୍ୱଚ୍ଛ ଶାରଦୀୟ ଆକାଶର ମଧୁର ପୂର୍ଣ୍ଣିମା ଚାନ୍ଦ - ଜଗତ ବିମଳ ଜ୍ୟୋସ୍ନାରେ ଭାସୁଅଛି, ଆଉ ପିଲାଯୋଡ଼ିକଙ୍କ ନବୀନ ପ୍ରାଣ କିପରି ଗୋଟିଏ ମଧୁର ଆଲୋକରେ ଛାଇ ଯାଇଅଛି । ଆଜି ଏ ଶୋଭାର ଅସୀମ ପ୍ରବାହରେ ନିୟତିର ସ୍ଥିର ଅଧୀରତାର ମନ୍ଦ ପବନରେ ଏ କ୍ଷୁଦ୍ର ହୃଦୟଯୋଡ଼ିକ କେଉଁ ଆଡ଼କୁ ଭାସି ଯାଉଅଛି, କେଜାଣି ।

(୨)

ହରିହର ପଟ୍ଟନାୟକଙ୍କ ଘର ଭଦ୍ରକ ସହର ନିକଟସ୍ଥ ଗୋବିନ୍ଦପୁର ଗ୍ରାମରେ ସେ ଗ୍ରାମର ଜଣେ ମୁଖିଆ ଲୋକ । ତାଙ୍କ ଛଡ଼ା ଆଉ କେହି ସେ ଗ୍ରାମରୁ ଇଂରାଜୀ ଶିକ୍ଷା ପାଇନଥିଲେ । ହରିବାବୁଙ୍କ ସ୍ୱର୍ଗତ ପିତା ମୁକ୍ତାରି କରି ଅନେକ ଟଙ୍କା ଉପାର୍ଜନ କରିଥିଲେ ଓ ତାଙ୍କୁ ଇସ୍କୁଲରେ ପଢ଼ାଇ ଓକିଲ କରିବାର ଇଚ୍ଛା କରିଥିଲେ, କିନ୍ତୁ ହରିବାବୁ, ଏଣ୍ଟ୍ରାନ୍‌ସ ପରୀକ୍ଷା ଦେବାପୂର୍ବରୁ ତାଙ୍କର ଅକାଳ ବିୟୋଗ ହେବାରୁ ପଢ଼ାପଢ଼ି ଛାଡ଼ି ହରିବାବୁଙ୍କୁ ଚାକିରି କରିବାକୁ ପଡ଼ିଲା । ଭଦ୍ରକ କଲେକ୍ଟରୀ କଚେରିରେ କିରାଣି କାମରେ ପଶି ବର୍ତ୍ତମାନ ସେ ନାଜର କାମରେ ସୁପ୍ରତିଷ୍ଠିତ ଅଛନ୍ତି ।

ଗୋବିନ୍ଦପୁର ଗ୍ରାମଟିରେ ସମସ୍ତେ କଚେରିଆ । ଅନେକଗୁଡ଼ିଏ କରଣଙ୍କର ସେଠାରେ ବାସ, କିନ୍ତୁ ସମସ୍ତେ ପ୍ରାୟ ଦରିଦ୍ର - କଚେରିରେ ମୋହରିର ବା ଟାଉଟରି ହେଲା ଅଧିକାଂଶଙ୍କର ପେସା । କେବଳ ଏହି ପଟ୍ଟନାୟକଙ୍କ ଘରଟି ଚଳେ ଭଲ । ହରିବାବୁ ମଧ୍ୟବିତ୍ତ ଗୃହସ୍ଥ । ତାଙ୍କ ଘରକୁ ସେ ନିଜେ, ତାଙ୍କ ସ୍ତ୍ରୀ ସରସ୍ୱତୀ ଦେଈ ଓ ଗୋଟିଏ ସାନ ଭଉଣୀ - କନକ ବା କଙ୍କି । ବାପାଙ୍କ କାଳହେବା ପୂର୍ବରୁ ମା' ତ ଇହଲୋକ ଛାଡ଼ି ଯାଇଥିଲେ । ୫-୬ ବର୍ଷ ବୟସ ବେଳକୁ କନକ ମାତୃହୀନା ।

ସେହିଦିନୁ ସେ ନୂଆବୋଉଙ୍କ (ସର ଦେଈ) ହାତରେ ବଢୁଅଛି ଓ ଗଢ଼ା ହୋଇ ଆସୁଅଛି। ସେ ଗଢ଼ା ହେବା ପୁଣି ସାଧାରଣ ରକମର ନୁହେଁ - କୁମ୍ଭକାର ଯେପରି ମାଟି ପିଣ୍ଡୁଳାଟିକୁ ବାଡ଼େଇ ନିଜ ଇଚ୍ଛାନୁରୂପ ପାତ୍ର ଗଢ଼େ, ଏ ସେହିପରି। ପାର୍ଥକ୍ୟ ମଧ୍ୟରେ ଏତିକି ଯେ, କନକ ମାଟିପିଣ୍ଡୁଳାଟି ସହଜ ନୁହେଁ - ତା' ହାତଗୋଡ଼ କଥା କହେ। ସର ଦେଈଙ୍କ ପ୍ରକୃତି ଟିକିଏ ଖର। ହରିବାବୁ କଚେରିରେ ଯାହା ହୁଅନ୍ତୁ, ଘରେ କିନ୍ତୁ ଏ ହାକିମଙ୍କ ପାଖରେ କୁକୁର ହୋଇଥାନ୍ତି। କନକ ଘରେ ସ୍ନେହ-ଆଦର ଯାହା ପାଏ, ସେ ସବୁ ଭାଇଙ୍କ ଠାରୁ। ନୂଆବୋଉଙ୍କ ଠାରୁ ଗାଳି, ମାଡ଼, ବକାଝକା ଛଡ଼ା ଆଉ କିଛି ପାଇବାର ସୌଭାଗ୍ୟ ତା'ର ବେଶି ହୁଏ ନାହିଁ। ତା ବୋଲି ଯେ ସର ଦେଈ କନକକୁ ସ୍ନେହ ନକରନ୍ତି, ତାହା ବୋଲାଯାଇ ନପାରେ - କେବଳ ତାଙ୍କ ବାହ୍ୟ ବ୍ୟବହାରରୁ କିଛି ଜାଣିପାରିବା କଷ୍ଟ। ଯାହା ହେଉ, କନକ ସେ ଯୋଗେ ଘରେ ପଶେ ନାହିଁ - ପୁଅପୁଅକା ଲୁଗାଖଣ୍ଡେ ପିନ୍ଧି ଦାଣ୍ଡରେ ଚାରିଆଡ଼େ ତା ନୀଳୁଭାଇ ସାଙ୍ଗରେ ଖେଳିବୁଲେ ଓ ଭାଇଙ୍କ ଆସିବା ବେଳ ହେଲେ ଦାଣ୍ଡରୁ ତାଙ୍କ ସଙ୍ଗ ନେଇ ନୂଆବୋଉଙ୍କ ନାମରେ ନାଲିସ୍‌ଫେରାଦ କରୁଁ କରୁଁ ଘରକୁ ଆସେ।

ଏହିପରି ନୀଳୁ ଓ କନକର ବାଲ୍ୟଜୀବନଟା କଟିଗଲା। ନୀଳୁ ଇସ୍କୁଲରେ ପଢ଼ିଲା ଦିନଠୁଁ ଦୁହିଁଙ୍କ ଦେଖା ସାକ୍ଷାତର ସୁଯୋଗ କ୍ରମେ କମି ଆସିଲା। କନକକୁ କିଛି ପାଠ ପଢ଼ାଇବା ମଧ୍ୟ ହରିବାବୁଙ୍କ ଇଚ୍ଛା, କିନ୍ତୁ କନକର ପାଠରେ ମନ ନାହିଁ। ନୀଳୁ ଦିନେ ମୁରବିୟାନା କରି ବସିଲାରୁ ଆଶାତୀତ ଫଳ ଫଳିବାର ଦେଖି ହରିବାବୁ ତାକୁ ହିଁ କନକର ଭାର ଦେଇଦେଲେ। ନୀଳୁ ତ ହରିବାବୁଙ୍କ ଘରେ ଆସି ପଢ଼ାପଢ଼ି କରେ, ଏବେ କନକ ମଧ୍ୟ ବହିବସ୍ତାନି ନେଇ ତା' ଆଗରେ ବସିବାକୁ ଆରମ୍ଭ କଲା। କ୍ରମେ ନୀଳୁର ମନୋଯୋଗ ଦେଖି କନକର ମଧ୍ୟ ପାଠରେ ମନ ବସିଲା, କିନ୍ତୁ ନୀଳୁଭାଇ ଛଡ଼ା ଆଉ କାହାରି ପାଖରେ ସେ ପଢ଼ିବ ନାହିଁ - ଏତକ ସେ ସ୍ପଷ୍ଟ କରି ସମସ୍ତଙ୍କୁ ଜଣାଇ ଦେଇଥିଲା।

କନକର ମଧ୍ୟ ବୟସ ହେଲା। ସର ଦେଈ ତାକୁ ଆଉ ଘରୁ ଛାଡ଼ିବାକୁ, ନୀଳୁ ଆଗରେ ହେବାକୁ ଦେବାକୁ ଅମଙ୍ଗ ହେଲେ। ଫଳରେ ନୀଳୁ ଏଣ୍ଟ୍ରାନ୍‌ସ ପାସ୍ କରିସାରିଲା ବେଳକୁ ଦୁହିଁଙ୍କର ଦେଖା ପର୍ଯ୍ୟନ୍ତ ପ୍ରାୟ ବନ୍ଦ ହୋଇଗଲାଣି। ଏହି କେତେଦିନର ବିଚ୍ଛେଦରେ ଦୁହେଁ ନିଜ ନିଜ ବାଲ୍ୟସ୍ମୃତି ଉପରେ ଆହୁରି ରଙ୍ଗୀନ ଚିତ୍ରମାନ ନ୍ୟୂନାଧିକ ରଚନା କରି କି ସୁଖ, କି ଦୁଃଖ ଯେ ଅନୁଭବ କରିଥିବେ ତାହା କିଏ କହିବ ? କିନ୍ତୁ

ସଂପୂର୍ଣ୍ଣ ବିଚ୍ଛେଦ ବାକିଥିଲା - ଏବେ ହେଲା । ନୀଲୁ ଏଣ୍ଟ୍ରାନ୍ସରେ ବୃତ୍ତି ପାଇଲା । ହରିବାବୁଙ୍କ ଚେଷ୍ଟା ଓ ସାହାଯ୍ୟରେ କଟକ ଯାଇ ତା'ର ଏଫ୍.ଏ. ପଢ଼ିବାର ସ୍ଥିର ହୋଇଗଲା । ସେତେବେଳକୁ କନକର ବୟସ ୧୪ ବର୍ଷ ।

ନୀଲୁ କଟକ ଯିବା ସ୍ଥିର ହୋଇଗଲା ଦିନୁ ଯିବା ଦିନଯାଏ ପ୍ରାୟ ଏକମାସ କାଳ ଦୁହିଁଙ୍କର ସାକ୍ଷାତ ହୋଇନାହିଁ - କ'ଣ ଭାବି ଦୁହେଁ ଦୁହିଁଙ୍କି ଲୁଚି ଲୁଚି ବୁଲୁଅଛନ୍ତି । କନକର ସେ ହାସ୍ୟମୟୀ ପ୍ରକୃତି, ସେ ଚଞ୍ଚଳତା କୁଆଡ଼େ ଗଲାଣି; ନୀଲୁ ମଧ କିପରି ଗମ୍ଭୀର ହୋଇ ଉଠିଅଛି । ଦୁହିଁଙ୍କର ଏପରି ଭାବର କାରଣ ଦୁହେଁ ସ୍ପଷ୍ଟ ବୁଝିଥିଲେ ହେଁ କେହି କାହାରି ଆଗକୁ ଆସିବାକୁ ସାହସ କରୁନାହାନ୍ତି । ଆଜି ବିଦାୟ ମୁହୂର୍ତ୍ତରେ ନୀଲୁ ମଧ କନକକୁ ଖୋଜିଲା ନାହିଁ । ନୂଆବୋଉଙ୍କ ଠାରୁ ବିଦାୟ ନେଇ ଆସିବା ବେଳେ ସେଠାରେ କନକ ନଥିବାର ଦେଖି ସୁଦ୍ଧା କିଛି କହିଲା ନାହିଁ । ଛଳଛଳ ନେତ୍ରରେ ସେ ଘରୁ ବାହାରି ଆସିଲା ବେଳେ ସେପଟ କୋଣଘର ଉପରେ ସ୍ୱତଃ ତାହାର ଦୃଷ୍ଟି ପଡ଼ିଗଲା । ଠିକ୍ ସେହି ମୁହୂର୍ତ୍ତରେ କାହାର ଗୋଟାଏ ଚଞ୍ଚଳ ଶାଢ଼ିପଣନ୍ତ ଝଟ୍ ସେ ଘର ଭିତରେ ପଶି ଲୁଚିଗଲା - କିଏ ଗୋଟିଏ ତାକୁ ଥରେ ମାତ୍ର ଦେଖିବା ଆଶାରେ ଛିଡ଼ା ହୋଇଥିଲା - ଧରା ପଡ଼ିବା ଭୟରେ ହଠାତ୍ ଭିତରେ ଅଦୃଶ୍ୟ ହୋଇଗଲା ଯେମିତି । ନୀଲୁ ସେ ଆଡ଼କୁ ନଅନାଇ ଏକମୁହାଁ ହୋଇ ବାହାରି ଚାଲିଗଲା ।

## (୩)

''ହଇ ହୋ, କ'ଣ କରିବା ? କନକର ତ ଆସି ବୟସ ହୋଇଗଲା, ବାହାଘରଟା କରି ପକାଇଲେ ହୁଅନ୍ତା, କଥା ହେଉଚି - ସୁପାତ୍ର ମିଳୁଚି କାହିଁ ? ମୁଁ ତ ରହିଲି କଚେରିରେ, ତମେ ତ ରହିଲ ଘରକାମରେ; ଏ ସବୁ କଥା ଦେଖୁଚି ଶୁଣୁଚି କିଏ ? ଗୋପୀନାଥପୁର ମଧୁ ପି'ସାଙ୍କ ସାଙ୍ଗରେ ଦେଖା ହୋଇଥିଲା । ସେ କହିଲେ - ''ଝିଅଟା ଆସି ବୁଢ଼ୀ ହେଲା, ବାହା ନାଁ ତ ଧରିବାକୁ ନାହୁଁ । ତୁ ନ କଲେ କିଏ କରିବ ? ତା' ମା' ଯଦି ଥାନ୍ତା !''

''ମା' ଥିଲେ ଖାଲି ସରଗରେ ନେଇ ଥୋଇ ଆସନ୍ତେ ପରା । ତମ ଝିଅ, ତମ ଭଉଣୀ, ତମର ସବୁ । ତମେ ରଖ, ଆମକୁ ଏତେ ଖୁଣ୍ଟା କାହିଁକି ଲୋ ମା' । ଏ ଜଳଜଳା ଜୀବନଟା ଯା' ମୋର ଗଲାନାହିଁ । କ'ଣ ନା, ମା' ଥାନ୍ତା । କିଲୋ

ମା' - 'ମୁଁ ତ ଖାଏଁ ମୋର ଭାତ, ତୋର କାହିଁକି ଗାଲରେ ହାତ ।' ନାହିଁ ନାହିଁ, ସେ ପୋଡ଼ା ଝିଅ ଖଣ୍ଡକ ପରା ମତେ ଜଳେଇ ପୋଡ଼େଇ ଖାଇବ । କି, ମୁଁ ତ ତମକୁ ସେଦିନ ଠୁଁ କହୁଚି ! ଆମ ଗାଁ ନଟ ତ ତେରସ୍ତା ବାହା ହୋଇଗଲା, ତାକୁ ତ ଦେଇଥିଲେ ହେଇଥାନ୍ତା । ମୁଁ ତ ତମକୁ କହୁଚି, ମତେ କାହିଁକି ଇଏ ସିଏ ଖୁଣ୍ଟା ଦେବ ? କିଏ କାହିଁକି ପଦେ କହିବ ନା ?''

''କିଏ ତମକୁ କ'ଣ କହିଲା ମ ? ମୁଁ ତ ଭଲ କଥା କହୁଚି, ତମେ ଏତେ ଖପା ହେଇଯାଉଚ କାହିଁକି ? ନଟ ତ ବାହା ହେଇଗଲାଣି, ସେଥିପାଇଁ ତ ଝିଅ ବାଡ଼ୁଅ ରହିବ ନାହିଁ । କାହାକୁ ଦବା, ମୁଁ ସେଇଆ ପଚାରୁଚି ?''

''ତମ କଥା ତମେ ଜାଣ, ମୁଁ କାହିଁକି କହିବି ଲୋ ମା' ! ମୁଁ କାହାର କିଏ ? ତମ ଭଉଣୀ ରାଣୀ ହେବେ - ମୁଁ ତ ଗରିବ ଘର ଝିଅ, ବଡ଼ ବଡ଼ କଥାରେ ମୋ ମୁଣ୍ଡ ପଶେନାହିଁ ।''

''ଗଲା ତ ଆଉ; ଗଲା ସବୁ ସରିଗଲା ଯେ ! ତମ ନଟ ତ ବାହା ହେଇଗଲାଣି; ନହେଲେ ଭଲା ତାକୁ ଦିଆ ହେଇଥାନ୍ତା । ମୋରି କସୁର ହେଲା, ମୁଁ ତମ କଥା ଶୁଣି ନାହିଁ । ଏବେ କାହାକୁ ଦବା କହିଲ ? ମୁଁ କହୁଛି, ଏଇ ଏଇ - ନୀଲୁ କଥା ହେଲେ ହୁଅନ୍ତା ନାହିଁ ନା ? ଏଥର ତ ଏଫ୍.ଏ.ରେ ସ୍କଲାରସିପ୍-ଜଳପାନୀ ପାଇ ବି.ଏ. ପଢୁଛି - ପୁଣି ଓକିଲାତି ପଢ଼ିବ । ପିଲାଟା ଯେମିତି ବୁଦ୍ଧିଆ, ଯେମିତି ଉଦ୍‌ଯୋଗୀ—ଆପଣା ବାହୁବଳର ମାରିଗଲା ନା, ଆଉ କ'ଣ ? କ'ଣ କହୁଚ ? ଏମିତି ନାକସିଟକା ମତେ ଭଲ ଲାଗେ ନାହିଁ । କ'ଣ ସଫା କଥାଟା କହୁ ନାହଁ କାହିଁକି ?

''କର, ତମର କରୁନାହଁ, ମୋର କ'ଣ ଅଛି ? ତମ ଭଉଣୀକି ତମର ଗଛ ମୂଳରେ ବସାଇଲେ ବସାଇବ, ରାଣୀ କଲେ କରିବ - ସେ ତମକୁ ଶୋଭା ଦିଶିବ । ଆମେ କାହିଁକି ସେଥିରେ ପାଟି ଫିଟାଇବୁ ଲୋ ମା' —''

''ଆରେ ଯାଉଚ କୁଆଡ଼େ ମ ? ଶୁଣ, ମୁଁ ଗୋଟାଏ କଥାକୁ କହୁଥିଲି ନା —ଯାଃ, ମଲା ମଣିଷ ଆସି ।''

\+ + + + +

ଯେତେବେଳେ ଦୁଆରପିଣ୍ଡାରେ ସ୍ୱାମୀସ୍ତ୍ରୀଙ୍କ ମଧ୍ୟରେ ଏପରି କଥୋପକଥନ ଚାଲିଥିଲା, ସେତେବେଳେ ନିକଟସ୍ଥ ଗୃହ ମଧ୍ୟରେ ଗୋଟିଏ ନବୀନା ଯୁବତୀ ଖଣ୍ଡିଏ ସଉପ ଉପରେ ଶୋଇଥିଲେ—ଜାଗ୍ରତ କି ନିଦ୍ରିତ ହଠାତ୍ ଜଣାଯିବ ନାହିଁ; ତେବେ ଏପରି ନିଶ୍ଚଳ, ନିସ୍ତବ୍ଧ ଭାବରେ ପଡ଼ି ରହିଛନ୍ତି ଯେ, ଘରେ କେହି ଥିବାର ବାହାର ଲୋକେ ଜାଣି ପାରିବେ ନାହିଁ; ଏଥକୁ ଅଘୋର ନିଦ୍ରାରେ ପଡ଼ିଥିବାର ବିଶେଷ ସମ୍ଭାବନା । ହେଲେ ନିଦ୍ରିତ ବ୍ୟକ୍ତିର ନିଃଶ୍ୱାସପ୍ରଶ୍ୱାସରେ ଟିକିଏ ଶବ୍ଦ ହେବା ବିଶେଷ ସମ୍ଭବ—ୟାଙ୍କର କିନ୍ତୁ ଘନ ଘନ ଶ୍ୱାସକ୍ରିୟା ଚଳୁଥିଲେ ହେଁ ଟିକିଏ ମାତ୍ର ଶବ୍ଦ ଶୁଣାଯାଉ ନାହିଁ । ସେ ଯାହା ହେଉ, ପୂର୍ବୋକ୍ତ କଥୋପକଥନର ଶେଷାଂଶ ଦ୍ୱାରା ତାଙ୍କର ପୂର୍ଣ୍ଣ ଚେତନା ଆସିବାର ଜଣାଗଲା । କାରଣ, ତାହା ସରୁ ନ ସରୁଣୁ ନବୀନାଟି ଅତି ସନ୍ତର୍ପଣରେ ଉଠି ଓଷ୍ଠାଧର ଦଂଶନ କରି, ଗୋଡ଼ର ମଲ ଆଣ୍ଠୁ ପର୍ଯ୍ୟନ୍ତ ଟେକି ଧରି ନିଃଶବ୍ଦ ଭାବରେ ସେ ଘରୁ ଅନ୍ୟ ଦ୍ୱାର ଦେଇ ବାହାରିଗଲେ —ଆଉ ଯାହା କରନ୍ତୁ, ଅନ୍ତତଃ ସଚେତ୍ ନିଦ୍ରାର ପରିଚୟ ଦେଇଗଲେ ।

ନବୀନା ଯୁବତୀଟି କିଏ ? ଆମ୍ଭମାନଙ୍କର ପୂର୍ବପରିଚିତା କନକ ବା 'କଙ୍କି'କୁ ବର୍ତ୍ତମାନ ଯୁବତୀ ଛଡ଼ା କିଛି ବୋଲାଯାଇ ନପାରେ ।

ବାସ୍ତବିକ୍, ୨ ବର୍ଷ ବିତି ଗଲାଣି, କନକର ବର୍ତ୍ତମାନ ବିବାହଯୋଗ୍ୟ ବୟସ ମଧ୍ୟ ଉତ୍ତୀର୍ଣ୍ଣ ହୋଇଗଲାଣି । ଅଧିକ କ'ଣ, କନକ ବର୍ତ୍ତମାନ ଭାଇଭାଉଜଙ୍କ କଣ୍ଟକ, ସାଇ ପଡ଼ିଶାଙ୍କର ଲଜ୍ଜାର ବିଷୟ, ଗ୍ରାମର ନିନ୍ଦାର କାରଣ, ଶତ୍ରୁମାନଙ୍କର ଉପଭୋଗର ସହାୟ, ପ୍ରତିଦ୍ୱନ୍ଦ୍ୱୀ କରଣ-ସାଆନ୍ତମାନଙ୍କ ଗମ୍ଭୀର ଆଲୋଚନାର କେନ୍ଦ୍ର । ଗୃହରେ ଗୂଢ଼ ଆନ୍ଦୋଳନ, ସାଙ୍ଗ ମେଳରେ ମଧୁର ପରିହାସ-ଜ୍ୱାଳା, ତୁଠରେ ଘାଟରେ-ବାଟରେ ଚାରିଆଡ଼େ ତୀବ୍ର କଟାକ୍ଷ ସଙ୍ଗେ ସଙ୍ଗେ କର୍ଣ୍ଣଚୁମ୍ବୀ ଗୁପ୍ତ ସମ୍ଭାଷଣ, ସାଧାରଣ ସ୍ତ୍ରୀ-ମହଲରେ ଗଭୀର ଆନ୍ଦୋଳନ—ଏସବୁ କନକର ଜୀବନକୁ ଏହି ଦିନରୁ ସ୍ୱପ୍ନମୟ କରି ପକାଇଲାଣି ।

ସେ ଦିନ କନକ ଆଉ କୁଆଡ଼େ ନ ଯାଇ ଭାଇଙ୍କ ଶୋଇବା ଘରେ ବସି ଟିକିଏ ନିର୍ଜନତା ଭୋଗ କରୁଥିବା ବେଳେ ଦୂରରେ ଭାଇଙ୍କ ପାଟି ଶୁଣି ସେ ଘରୁ ବାହାରି ଯିବାକୁ ମନସ୍ଥ କରିଅଛି, ଏତିକିବେଳେ ଭାଇଭାଉଜ ଦୁହେଁ ଆସି ସେହି ପିଣ୍ଡାରେ ବସି ପୂର୍ବୋକ୍ତ ମତେ କଥୋପକଥନ କରିବାକୁ ଲାଗିଲେ । ଜାଣି ରଖିବା ଆବଶ୍ୟକ ଯେ, ଏତେବେଳେ ଆଉ ପୂର୍ବ କଥା ନାହିଁ । କନକ ଅନେକ ଦିନରୁ ହରିବାବୁଙ୍କ ଆଗକୁ ସୁଦ୍ଧା

ଯାଉ ନାହିଁ । ବିବାହଯୋଗ୍ୟ ବୟସର ବା କିଛି ଗୋପନୀୟ ଭାବ ଥିବ । ଯାହା ହେଉ, ନିଜ ବିଷୟରେ କଥୋପକଥନ ହେଉଥିବାର ଜାଣି ସେ ଅପ୍ରତିଭ ଓ ଉତ୍କଣ୍ଠିତ ହୋଇ ସେହିଠାରେ ଶୟନ କରିଥିଲା ।

(୪)

ସେ ବର୍ଷ ଶ୍ରୀପଞ୍ଚମୀ ପଡ଼ିଲା ସୋମବାର । ସୋମବାର, ମଙ୍ଗଳବାର କଲେଜ ବନ୍ଦ—ରବିବାରକୁ ମିଶାଇ ୩ ଦିନ ଛୁଟି । ନୀଳୁବାବୁଙ୍କର ଏଇଟା ଥାର୍ଡ଼ ଇୟର । ଏ ଛୁଟିରେ ସେ ଘରକୁ ବାହାରିଲେ । ତାଙ୍କର ଘରଟ ଏକପ୍ରକାର ନାହିଁ କହିଲେ ଚଳେ—ତେବେ ଭିଣୋଇଙ୍କ ଘରକୁ ଯିବେ । ଅନେକଙ୍କୁ ଏଇଟା ଆଶ୍ଚର୍ଯ୍ୟ ବୋଧ ହେଲା । ନୀଳୁବାବୁ ପୂଜା ଛୁଟିରେ ସୁଦ୍ଧା କଟକ ଛାଡ଼ି ଯିବାର ଦେଖାନାହିଁ, ତିନିଦିନ ଛୁଟିରେ ଭିଣୋଇଙ୍କ ଘରକୁ ଯିବା ଆଶ୍ଚର୍ଯ୍ୟ ଲାଗିବାର କଥା ଏକା ।

କଥା କ'ଣ କି, ନୀଳୁବାବୁ ନିଜେ ମଧ ଏଥିରେ କମ୍ ଆଶ୍ଚର୍ଯ୍ୟ ବୋଧ କରି ନଥିଲେ । ଏହି କେତେ ଦିନ ହେଲା ନୀଳୁବାବୁଙ୍କ ମନ ସ୍ଥିର ନାହିଁ - ସବୁବେଳେ ଚଞ୍ଚଳ, କାହିଁରେ ଲାଗୁ ନାହିଁ; କ'ଣ ଗୋଟାଏ ଅଜଣା କାରଣରୁ ମନ ଖାଲି ଘାଣ୍ଟି ଚକଟି ହେଉଅଛି । ଅଦୃଶ୍ୟ ବନ୍ଧନ ଦ୍ୱାରା ଟାଣି ହୋଇ ବାଲ୍ୟକାଳର ଶତମଧୁର ଦୃଶ୍ୟ ପଶ୍ଚାଦ୍‌ଭାଗରେ ଥାଇ କନକର ମଧୁର ମୂର୍ତ୍ତି ଚାରିଆଡୁ ଗୋଟିଏ ମଧୁର ଭାବରାଜ୍ୟର ସୃଷ୍ଟି କରୁଅଛି । ପ୍ରତି କଥାରେ କନକର ମୂର୍ତ୍ତିଟି ଧରି ବାଲ୍ୟସ୍ମୃତି ଆଜି କେଜାଣି କାହିଁକି ନୀଳୁବାବୁଙ୍କ ମନକୁ ଅସ୍ଥିର କରୁଅଛି । କେତେବେଳେ ପ୍ରଗଳ୍‌ଭା ବାଳିକା ତାଙ୍କୁ ବିଦ୍ରୂପ ବହ୍ନିରେ ଜାଳି ଦେଉଅଛି, କେତେବେଳେ ଦୁଷ୍ଟା ଆସି ହସି ହସି ତାଙ୍କର କର୍ଣ୍ଣମର୍ଦ୍ଦନ କରିଅଛି, କେତେବେଳେ ବା ଅଭିମାନିନୀ ତାଙ୍କ ହସ୍ତ ଉପରେ ଅଜସ୍ର ଅଶ୍ରୁ-ବୃଷ୍ଟି କରୁଅଛି, କେତେବେଳେ ଅବା ଛଳ କ୍ରୋଧରେ ହାସ୍ୟପୂର୍ଣ୍ଣ ଆଖିଯୋଡ଼ିକ ଛଳ ଛଳ କରି ମୁହଁ ଫେରାଇ ଚାଲିଯାଉଅଛି, କେତେବେଳେ ଅବା ତାହାର ମଧୁର ହସ ହସି ସ୍ନେହମୟୀ ବୀଣାଜିଣା କ'ଣ୍ଠରେ ସରଳ ଭାଷାରେ ମଧୁ ବୃଷ୍ଟି କରୁଅଛି, କେତେବେଳେ ପୁଣି ତାଙ୍କ ଅଶ୍ରୁ ସହିତ ଆପଣାର ଅଶ୍ରୁଧାରା ମିଶାଇ ଦେଇ ତାଙ୍କ କୁଞ୍ଚ କାନିଟି ଧରି ମୋଡ଼ି ମୋଡ଼ି ବିନାବାକ୍ୟବ୍ୟୟରେ ସାନ୍ତ୍ୱନା ଦେବାକୁ ଚେଷ୍ଟା କରୁଅଛି । ଏହି ପ୍ରକାର ଶତ ଶତ ଛବି ତାଙ୍କ ଆଖି ଆଗରେ ଦିନରାତି ଖେଳି ବୁଲୁଅଛି । ସବୁଠି କନକ—କନକର ମୋହିନୀ ଛବିରେ ଯେମନ୍ତ କି ସଂସାର ପୂରିରହିଅଛି । ଏହି କେତେ ଦିନ ହେଲା

କେତେ ଯେ ତାଙ୍କର ଅଘଟନ ଘଟିଗଲାଣି, ତାହାର ସୀମା ନାହିଁ—କେତେବେଳେ ବସୁ ବସୁ କନକର ଛବି ଦେଖି ଚମକି ଉଠୁଛନ୍ତି; ଜାଗରଣରେ ସ୍ୱପ୍ନ ଦେଖି କେତେବେଳେ ବା କନକର ସଙ୍ଗ ଉପଭୋଗ କଲା ପରି ବୋଧ କରି, ସେହି ବହୁଦିନର ନିର୍ମଳ ହାସ୍ୟରେ ହୃଦୟ ତାଙ୍କର ପୂର୍ଣ୍ଣ ହୋଇଯାଉଅଛି, ଆଉ ସାଙ୍ଗେ ସାଙ୍ଗେ କଠୋର ସତ୍ୟ ଆସି ସେ ହାସ୍ୟମୂଳରେ କୁଠାରାଘାତ କରି ଯାଉଅଛି; କେତେବେଳେ ବସୁ ବସୁ ନିଦ୍ରାକର୍ଷଣ ହେଉଅଛି; କେତେବେଳେ ବା ଶତ ଚେଷ୍ଟାରେ ସୁଦ୍ଧା ନିଦ୍ରାର ଅଭାବ; —ଏସବୁରେ ପଡ଼ି ନୀଳୁବାବୁଙ୍କ ଜୀବନ ସ୍ୱପ୍ନମୟ ବୋଧ ହେଉଅଛି । ସମୟଟା ଯେପରି ଗୋଟିଏ ଦୁଃସ୍ୱପ୍ନ—ସ୍ୱପ୍ନୋଚିତ ଅବସନ୍ନତା ଯେପରି ତାଙ୍କ ଅଙ୍ଗପ୍ରତ୍ୟଙ୍ଗ ଭିଣିଦେଇ ଯାଉଅଛି । ବାସ୍ତବିକ ଏହିସବୁ ସ୍ମୃତିର ଅନ୍ତରାଳରେ ଥାଇ କାହାର ଗୋଟିଏ ଅଜ୍ଞେୟ ହସ୍ତ ପ୍ରତ୍ୟେକଟିକୁ ବିଷାଦର ସୂକ୍ଷ୍ମ ଆବରଣରେ ମଣ୍ଡିତ କରିଦେଉଅଛି —ଯେମନ୍ତ କି, ଏ ସବୁ ସ୍ମୃତିରେ ଉପଭୋଗ ଅନ୍ୟପ୍ରକାରେ ହୋଇନପାରେ; ଯେମନ୍ତ କି, ସେ ସ୍ମୃତିରାଜ୍ୟର ଅଧିକାରୀ ସେହି ଦୁର୍ବହ ବିଷାଦ । ହୃଦୟ-ତନ୍ତ୍ରୀ ଚଞ୍ଚଳଭାବରେ ତାଡ଼ିତ ହେଉଅଛି — କିନ୍ତୁ କାହିଁ ସେ ମଧୁର ରାଗିଣୀ, କାହିଁ ସେ ଉନ୍ମାଦିନୀ, କାହିଁ ସେ ବିଧୂରା ମଧୁର-ଗାୟିକା । କାହିଁ, କାହିଁ ? ଏହି ଯେ, ଏ କ'ଣ ? ଏ ବିଷାଦଓଢ଼ଣାର ତାତ୍ପର୍ଯ୍ୟ କ'ଣ ? - ଓଃ - ଏ କ'ଣ ?

ନୀଳୁବାବୁ ମନ୍ତ୍ରମୁଗ୍ଧବତ୍ ଆହାରପାନାଦି କରୁଅଛନ୍ତି—କିଛି ଠିକ'ଣା ନାହିଁ । ସେହିପରି ଯନ୍ତ୍ରଚାଳିତ ପରି ଆଜି ବାହାରି ଅଛନ୍ତି ଗ୍ରାମକୁ । ସେ ନିଜେ ଜାଣନ୍ତି ନାହିଁ କାହିଁକି —ଯନ୍ତ୍ରପରି ଚାଳକର ଅଲଙ୍ଘ୍ୟ ଆଦେଶରେ ଯେପରି ପ୍ରେରିତ ହେଉଅଛନ୍ତି । ଯୋଡ଼ିଏ ପ୍ରିୟ ଆଖିର ଅର୍ଦ୍ଧପରିଚିତ ଗୋଟାଏ ସ୍ଥିର ଦୃଷ୍ଟି ତାଙ୍କ ଉପରେ ଚାରିଆଡୁ ଯେପରି ଅଜାଡ଼ି ହୋଇପଡୁଅଛି । ସେଥିରେ ଆଶା ନାହିଁ, ନିରାଶା ବି ନାହିଁ । ଅଛି କେବଳ ଗୋଟାଏ ଅସୀମ ଧୈର୍ଯ୍ୟ, ଆଉ ଗୋଟିଏ ସ୍ଥିର ନିର୍ଭରତା ଓ କରୁଣ ବାଚାଳତା । ସେ ଦୃଷ୍ଟି ବା ପ୍ରହେଳିକାର ଅର୍ଥ ଗ୍ରହଣ ଅସମ୍ଭବ ।

(୫)

ରାତି ପାହି ଆସିଲାଣି, ପୂର୍ବ ଆକାଶ ରଙ୍ଗା ପଡ଼ିଗଲାଣି । ସୁଲୁସୁଲିଆ ପାହାନ୍ତି ବାଆ ନୂତନ ଦିବସର ନୂତନ ଜୀବନର ସମ୍ବାଦ ବହିଆଣୁଅଛି; ଆଉ ବହିଆଣୁଅଛି—ସେହି ସଳଜ ପାହାନ୍ତି ତାରାର ବିଦାୟଚାହାଣି, ସେହି ଦୂରାଗତ

ବଂଶୀସ୍ୱନ । ସେ ବଂଶୀସ୍ୱନରେ ଗଛପତ୍ର ଜାଗି ଉଠି ବିନୀତ ଭାବରେ ସେ ଆଦର୍ଶ ଗ୍ରହଣ କରି ଆନନ୍ଦରେ ହଲୁଅଛନ୍ତି, ଦୋହଲି ଦୋହଲି ନବଜୀବନର ନୂତନ କ୍ରୀଡ଼ାର ଆଦିବାସ ଉପଭୋଗ କରୁଅଛନ୍ତି । କାଉକୋଇଲିଙ୍କ ନିଦ ଭାଙ୍ଗିଲାଣି—'କା କା', 'କୁଉ କୁଉ' ରାବରେ ଗାଁ-ମାଇପି ପିଲାଙ୍କ ମଧୁର ସ୍ୱପ୍ନ ଭାଙ୍ଗିଗଲାଣି ।

ଏହିପରି ସମୟରେ ପଟ୍ଟନାୟକଙ୍କ ଘରଦାଣ୍ଡରେ ବାଇଦ ବାଜିଉଠିଲା—ଦଶ ବାର ହାତ ନହବତ ଉପରୁ ଯୋଡ଼ି ନାଗରା ଓ ମହୁରୀ ମଧୁର ପ୍ରଭାତୀ ତାନ ଛାଡ଼ିଦେଲା । ସ୍ୱରଲହରୀ ଗ୍ରାମର ନିସ୍ତବ୍ଧତା ଭଙ୍ଗ କରି ନାଚି ନାଚି ଖେଳି ଖେଳି ମୁକ୍ତ ବାୟୁକୋଳରେ ପଶି ସମସ୍ତଙ୍କୁ ସଂସାରର ମୁକ୍ତ ନିମନ୍ତ୍ରଣ ଶୁଣାଇଦେଲା ।

ହରିବାବୁ ଏଣେ ଶଯ୍ୟା ତ୍ୟାଗ କରି ପିଣ୍ଡା ଉପରେ ବସି ଦାନ୍ତ ଘଷୁ ଘଷୁ ନାନା ପ୍ରକାର ବରାଦ ଦେଉଅଛନ୍ତି । ସାଇପଡ଼ିଶା, ବନ୍ଧୁବାନ୍ଧବ ବିଚାର ସାର କରି ନାନାପ୍ରକାର କାର୍ଯ୍ୟରେ ଲାଗି ଯାଇଅଛନ୍ତି । ଗୃହିଣୀ ଇତିପୂର୍ବରୁ ଉଠି କେତେ ପାଇଟି ମଧରେ ନିଜ ମୁଣ୍ଡଟି ଦୁଇ ହାତରେ ଚାପି ଧରି, ହୁକୁମ୍ ଜାରି କରି ସାଇମାଇପଙ୍କ ମନରେ ଏତିକିବେଳୁଁ 'କଳ୍ପନା' ଆଣିସାରିଲେଣି ।

ହରିବାବୁ ଦାନ୍ତ ଘଷି ସାରି ପାଇଖାନା ଯିବାର ବନ୍ଦୋବସ୍ତ ଲଗାଇଛନ୍ତି, ଏହିପରି ସମୟରେ ଭିତର ଆଡ଼ୁ ଗୋଟିଏ ମୁକ୍ତ ଦ୍ୱାର ଦେଇ ଚଞ୍ଚଳ ଗତିରେ କିଏ ଗୋଟିଏ ଆସି ଲଥ୍ କରି ତାଙ୍କ ଗୋଡ଼ ପାଖରେ ବସି ତାଙ୍କ ଲୁଗାକାନି ଧରି ଉଚ୍ଚସ୍ୱରରେ କ୍ରନ୍ଦନ କରିବାକୁ ଲାଗିଲା । ଏହା ଦେଖି ହରିବାବୁ ବ୍ୟସ୍ତସମସ୍ତ ହୋଇ କହିଲେ, "କଙ୍କି, କଙ୍କି, ମତେ ତୁ ମାରିପକାନା ଭଲା !" କନକ କିନ୍ତୁ ଏତେଦିନକେ ଭାଇଙ୍କୁ ପାଇଅଛି । କାରଣ, ହରିବାବୁ ବଡ଼ ପୁରୁଷତ୍ୱ କରି ବାହାଘର ପ୍ରସଙ୍ଗ ହେବା ଦିନୁଁ ଲୁଚି ଲୁଚି ବୁଲୁଅଛନ୍ତି, କନକ ଆଡ଼କୁ ଚାହିଁବାକୁ ସୁଦ୍ଧା ମନ ବଳାଉ ନାହାନ୍ତି । ସ୍ତ୍ରୀ ପ୍ରଶ୍ନ କରିବାରୁ କହିଲେ, "ମୁଁ ତାକୁ ଚାହିଁଲେ ବାହାଘର କରିପାରିବି ନାହିଁ, ତା' କାନ୍ଦଣା ବି ମୁଁ ଶୁଣିପାରିବି ନାହିଁ !" କନକ ଏତେଦିନେ ତାଙ୍କୁ ଧରି କାନ୍ଦିବାର ସୁବିଧା ପାଇଅଛି । ଏ ସୁବିଧାଟା ଯେ କେଡ଼େ, ତାହା ବୋଧହୁଏ ପୁରୁଷମାନଙ୍କର, ବିଶେଷତଃ ନବ୍ୟ—ଭଦ୍ରଲୋକଙ୍କର କଳନା କରିବା ଅସାଧ । ବାହାଘର ପୂର୍ବରୁ ଯେତେ ମନର କଥା, ଯେତେ ଦୁଃଖର କଷାଘାତ, ତାହା ସହିବା ପାଇଁ ଦୃଢ଼ତମ ହୃଦୟ ଆବଶ୍ୟକ । ଅଳ୍ପବୟସ୍କା କନ୍ୟା ମାତ୍ରକେ ବାହା ହେବା ପୂର୍ବରୁ ଯେଉଁ କେତେଦିନ ଏକପ୍ରକାର

ମୂକଭାବାପନ୍ନ ହୋଇ ଏ ବିଷମ ପରୀକ୍ଷାରେ ପଡ଼ନ୍ତି, ସେହି ଅବସ୍ଥାର ଯତ୍‌କିଞ୍ଚିତ୍ ସାନ୍ତ୍ୱନାସ୍ୱରୂପ ବୋଧହୁଏ ଦୟାମୟ ଏ ଓଡ଼ିଆ ଘର ଝିଅଙ୍କ ପାଇଁ 'ବାହୁନା' ସୃଷ୍ଟି କରିଥିଲେ । ହା ଦୈବ ! କି କଠୋର ବିଧାନ ! ଯେଉଁ ଗୃହରେ ଜୀବନ ଲାଭ କରି, ଲାଳିତ ପାଳିତ ହୋଇ, ସ୍ନେହର ବସ୍ତୁମାନ ପଲକମାତ୍ରକେ ପ୍ରତି କ'ଣାରେ ନିରୀକ୍ଷଣ କରିବାକୁ ହୁଏ, ସେହି ଗୃହ ଏଡ଼େ ଅଳ୍ପ ବୟସରେ ଛାଡ଼ିଯିବାକୁ ହେବ—ଚିରଦିନ ପାଇଁ ଛାଡ଼ିଯିବାକୁ ହେବ —ଅଥଚ ଆପଣଙ୍କ ମୁଖରେ କିଏ ଆସି ବଳପୂର୍ବକ ଯୋଡ଼ାପଟି ଲଗାଇଦେବ, ହୃଦୟ ଖୋଲି ପଦେ କଥା ଶେଷ ଥର ପାଇଁ କହିବାକୁ ଆପଣଙ୍କର ସୁବିଧା କାଢ଼ିନେବ, ଏ କଠୋର ଶାସନରେ ନିୟନ୍ତ୍ରିତ ହୋଇ ଆପଣଙ୍କ ହୃଦୟର ଅବସ୍ଥା କ'ଣ ହେବ, ଥରେ ଭାବି ଦେଖନ୍ତୁ । ଆଉ ଭାବନ୍ତୁ, ସେହି ଅବସ୍ଥାରେ ଯଦି ଦଣ୍ଡକ ପାଇଁ ମାତ୍ର ଟିକିଏ ସୁବିଧା ମିଳେ, ଆପଣ ବାହୁନିବେ କି ନାହିଁ—ସେହି ତୁଚ୍ଛ ମାଇକିନିଆଙ୍କ ପରି ନୀଚଭାବରେ ଡକାପାରି କାନ୍ଦିବେ କି ନାହିଁ —ଅବଶ୍ୟ ଯଦି ସେ ପର୍ଯ୍ୟନ୍ତ ଆପଣଙ୍କ ପୁରୁଷ-ହୃଦୟ ନ ଭାଙ୍ଗି ରହିଥାଏ ! ଏହି କ୍ଷୁଦ୍ର ପରୀକ୍ଷାଟି ପୁଣି ଶ୍ୱଶୁରାଳୟର କଠୋର କାରାବାସର, ନିର୍ମମ ଶାସନର ପୂର୍ବ ସଙ୍କେତ ମାତ୍ର ।

ଅତଏବ କନକ କାନ୍ଦିଲା । ବଡ଼ କରୁଣ କାନ୍ଦଣା ସେ, ବଡ଼ ହୃଦୟଭେଦୀ । ବାଲ୍ୟକାଳରୁ ଆରମ୍ଭ କରି ଯେତେ ସ୍ମୃତି, ସମସ୍ତ ଟିକିନିଖି କରି ସ୍ମରଣ କରି ବର୍ତ୍ତମାନ ଅବସ୍ଥା ସହିତ ତାହାର ତୁଳନା କରି ସେ ଅତି ବିକଳ ଭାବରେ କାନ୍ଦିଲା । ଓହୋ, ସେ କାନ୍ଦଣାର ଅର୍ଥ ଅନ୍ୟ ଲୋକେ କ'ଣ ବୁଝିବେ । ହରିବାବୁ କୌଣସିମତେ ସେଠାରୁ ପଳାଇ ଯାଇ ନପାରି ନିଜେ ପିଲାଙ୍କ ପରି କାନ୍ଦିବାକୁ ଲାଗିଲେ ।

କନକ ଅଧଘଣ୍ଟାଏ କାଳ ଆତ୍ମବିସ୍ମୃତ ପରି କାନ୍ଦିଲା—ଯେତେ ତୁନି କଲେ ତୁନି ହେଲା ନାହିଁ । ସେଠାରେ ଯେତେ ଲୋକ ଥିଲେ, ସମସ୍ତେ କାନ୍ଦିଲେ—ଜଣେ ଲୋକ କାନ୍ଦିଲା ନାହିଁ । ସେ କେବଳ କାନ୍ଦଣା ଆରମ୍ଭ ହେବାର ଟିକିଏ ପରଠୁଁ ଆସି ଯେଉଁଠାରେ ଯିମିତି ଛିଡ଼ା ହୋଇଥିଲା, ସେହିଠାରେ ସେମିତି ଛିଡ଼ା ହୋଇଥାଏ । ଦୁଇ ଚାରିଜଣ ଗାଁ ଝିଏ ଯେତେବେଳେ ଆସି ଜୋର କରି କନକକୁ ସେଠାରୁ ବଳପୂର୍ବକ ଘେନି ଚାଲିଗଲେ, ସେତେବେଳେ ଯାଇଁ ନୀଲୁବାବୁଙ୍କର ଚେତା ପଶିଲା । ସେତେବେଳେ ସେ ବୁଝିପାରିଲେ ଯେ, ସମସ୍ତେ ତାଙ୍କ ଆଡ଼କୁ ବିସ୍ମିତ ଭାବରେ ଚାହିଁରହିଅଛନ୍ତି । ଏହା ଦେଖି ସେ ଶୀଘ୍ର ଗତିରେ ଯାଇଁ ହରିବାବୁଙ୍କ ଗୋଡ଼ ପାଖରେ ଲଥି କରି ମୁଣ୍ଡିଆଟିଏ

ମାରିଲେ । ହରିବାବୁ କ'ଣ ବୁଝିଲେ, କ'ଣ ବା ତାଙ୍କଠେଇଁ ଦେଖିଲେ କେଜାଣି—ସେ ହଠାତ୍ ଦ୍ୱିଗୁଣିତ ବେଗରେ କାନ୍ଦି ଉଠି ସେଠାରୁ ପଳାଇଗଲେ ।

ନିତେଇବାବୁ (ନୀଲୁବାବୁଙ୍କ ଭିଣୋଇ) କୁଆଡ଼େ କାମରେ ଯାଇଥିଲେ; ଆସି ନୀଲୁଙ୍କୁ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇ ତାଙ୍କୁ ନିଜ ଘରଠାକୁ ଘେନିଗଲେ ।

\+ + + + +

ସେହିଦିନ ଉପରଓଳିର କଥା । ନୀଲୁବାବୁ ବାଲ୍ୟକାଳର ସେହି ଭିଣୋଇଙ୍କ ଘରେ ଶୋଇ ଶୋଇ କ'ଣ ଭାବୁଅଛନ୍ତି । ଗଲା ରାତିଟା ସାରା ଅନିଦ୍ରା, ତଥାପି ଶତ-ଚେଷ୍ଟାରେ ସୁଦ୍ଧା କୌଣସି ମତେ ନିଦ୍ରାକର୍ଷଣ ହେଉନାହିଁ—ଶତ ଶତ ସତି ଆସି ତାଙ୍କ ଉପରେ ଅଜାଡ଼ି ହୋଇ ପଡୁଅଛି । ଭାବୁଅଛନ୍ତି, ଦୁଇ ଆଖିରୁ ଅଶ୍ରୁଧାରା ଗଡ଼ିଗଡ଼ି ଯାଉଅଛି । ହଠାତ୍ ଉଠି ବସି ପ୍ରତିଜ୍ଞାର ବଦ୍ଧମୁଷ୍ଟି ଉନ୍ନତ କରି ଗଭୀର ସ୍ୱରରେ କହିଲେ—'ନା !' ଏହି ସମୟରେ ନିତେଇବାବୁ ଆସି କହିଲେ, "ଆରେ ନୀଲୁ, ହରିବାବୁ ତତେ ଡାକୁଛନ୍ତି । ଟିକିଏ ଯା, ମୁଁ ଟିକିଏ ଗଡ଼ପଡ଼ ହେଉ ଯାଉଚି । ନିଦ କେତେବେଳେ ଭାଙ୍ଗିଲା ?" ନୀଲୁବାବୁ 'ଏଇକ୍ଷଣି' ବୋଲି କହି ଧୀରେ ଧୀରେ ଉଠି ବାହାରିଗଲେ ।

ହରିବାବୁ ଦାଣ୍ଡ ପିଣ୍ଡାରେ ବସିଥିଲେ । ନୀଲୁଙ୍କୁ ଅତ୍ୟନ୍ତ ଆଦର ସହିତ ଗ୍ରହଣ କରି ନାନାପ୍ରକାର କଥା କହିଲେ; ତାଙ୍କ ଘରଠାରେ ସେହି କେତେଦିନ ରହିବା ପାଇଁ ମଧ ଅନୁରୋଧ କଲେ । ଆହୁରି ମଧ କହିଲେ ଯେ, ସେ ନିଜେ ଇଚ୍ଛା କରି ବିବାହ ବିଷୟ ତାଙ୍କଠାକୁ ଲେଖିନଥିଲେ । ଏହା କହି ପ୍ରଶ୍ନ କଲାପରି ଦୁଇ ଆଖି ନୀଲୁଙ୍କ ଉପରେ ସ୍ଥାପିତ କଲେ । ନୀଲୁବାବୁ ସେ ଚାହାଣିର ଅର୍ଥ ବୁଝିପାରି ମସ୍ତକ ଅବନତ କଲେ । ଅନେକକ୍ଷଣ କଥାବାର୍ତ୍ତା ପରେ ହରିବାବୁ କହିଲେ, "କିରେ, ଏବେ ଘର ଆଡ଼କୁ ଯା ! ନୂଆବୋଉ ତୋତେ ଡାକୁଥିଲା !"

ନୀଲୁବାବୁ ଉଠି ଭିତରକୁ ଗଲେ; ଯାଇଁ ହରିବାବୁଙ୍କ ଶୋଇବା ଘରେ ଦେଖିଲେ— ନୂଆବୋଉ ଅକାତର ନିଦ୍ରାରେ ମଗ୍ନ । ତାଙ୍କୁ ଡାକିବା ଠିକ୍ ବିବେଚନା ନକରି ସେ ଦାଣ୍ଡକୁ ଫେରି ଯାଉଥିଲେ, କିନ୍ତୁ ବୁଲି ପଡ଼ିଲା ବେଳକୁ ଦେଖିଲେ, ସେପଟ

କ'ଣଘରେ କିଏ ଗୋଟିଏ ବସି କ'ଣ କାରବାର କରୁଅଛି । ଛାତି ନାଚି ଉଠିଲା । ସେହିଠାରେ ସେହି ବଉଳ ଗଛ— କେତେ ବାଲ୍ୟକ୍ରୀଡ଼ାର ମୂକସାକ୍ଷୀ, ସେହିଠାରେ ସେହିପରି ରହିଅଛି । ଅନେକକ୍ଷଣ ସେହିଠାରେ ଛିଡ଼ା ହୋଇ ଭାବିଲେ । ଶେଷରେ ଗୋଟିଏ ଦୀର୍ଘ ନିଶ୍ୱାସ ତ୍ୟାଗ କରି ସେହି ଗଛ ଆଡ଼କୁ ଚାଲିଲେ ।

ସେ କ'ଣଘର ଦୁଆରେ ଛିଡ଼ା ହୋଇ ଅତି କଷ୍ଟରେ ଶୁଷ୍କ ହସଟିଏ ହସି କହିଲେ, ''କି ଲୋ କନକ, ଜିନିଷପତର ବନ୍ଧାଛନ୍ଦା ହେଉଚି ପରା ? ଯାହା ହେଉ, ଶ୍ୱଶୁରଘରକୁ ତ ବଡ଼ ମାୟା !'' କନକ କ'ଣ ଭାବୁଥିଲା—ଅନ୍ୟମନସ୍କ —କର୍ଣ୍ଣକୁ ଏ କଥା ଗଲାନାହିଁ; କିଛିକ୍ଷଣ ପରେ ଚମକିତ ହେଲାପରି ସେ ଫେରି ଚାହିଁଲା—କ୍ଷଣକେ ହାତେ ଓଢ଼ଣା ଟାଣି ଦେବାକୁ ବସିଲା; କିନ୍ତୁ ଓଢ଼ଣା ଟଣା ହେଲା ନାହିଁ । କନକ ଉଠି ଛିଡ଼ା ହେଲା, ଭଙ୍ଗା କ'ଣ୍ଠରେ କହିଲା —କ'ଣ ଭାବି କହିଲା କେଜାଣି—କହିଲା, ''ନୀଳୁଭାଇ, ତମେ ଆସିଚ କି ?'' ନୀଳୁବାବୁ ଏତେବେଳଯାଏଁ କନକ ଆଡ଼କୁ ନିର୍ନିମେଷ ଲୋଚନରେ ଚାହିଁଥିଲେ । ଏହି କଥା ଶୁଣି ତାଙ୍କ ଆଖିରେ କିପରି ଗୋଟାଏ ଜ୍ୟୋତି ଦେଖାଗଲା । କହିଲେ, ''ନ ଆସିଥିଲେ ଭଲ ହୋଇଥାନ୍ତା, ନୁହେଁ କନକ ?'' କନକ କିଛି ଉତ୍ତର କଲା ନାହିଁ, ଗର୍ବିତ ଭାବରେ ମୁଣ୍ଡ ଟେକି ଅବନତ ଚକ୍ଷୁଯୋଡ଼ିକ ଗୋଟାଏ ଅପାର୍ଥିବ ଭାବରେ ପୂର୍ଣ୍ଣ କରି ନିଷ୍ପନ୍ଦଭାବରେ ନୀଳୁବାବୁଙ୍କ ମୁଖ ଉପରେ ସ୍ଥାପନ କଲା । ସେ ଆଖିରୁ କରୁଣ କଠୋରତା ଠିକରି ବାହାରୁଥାଏ । ନୀଳୁବାବୁ ନିର୍ବାକ୍ ନିଷ୍ପନ୍ଦଭାବରେ କନକ ମୁଖ ପ୍ରତି ଚାହିଁ ରହିଲେ; ଶେଷରେ ସେ ଅବସରରେ ବୋଧହୁଏ କନକର ଚେତନା ହେଲା । ସେ ତାଙ୍କୁ ସେହି ଅବସ୍ଥାରେ ସେହିଠାରେ ଛାଡ଼ି ଚାଲିଯିବାର ଉପକ୍ରମ କରୁଥିଲା, କିନ୍ତୁ ପୁଣି ହଠାତ୍ କ'ଣ ଭାବି ଫେରିଲା —ଧୀରେ ଧୀରେ ଓଢ଼ଣାଟି ଛାତି ପର୍ଯ୍ୟନ୍ତ ଟାଣି ଧରି ଝଟ୍‌କରି ଆସି ନୀଳୁବାବୁଙ୍କ ଗୋଡ଼ ପାଖରେ ବସି, ତାଙ୍କ ଦକ୍ଷିଣ ହସ୍ତର ଆଙ୍ଗୁଳି ଗୋଟିଏ ଧରି ''ଭାଇ, ଭାଇ'' ବୋଲି ବାହୁନିବାକୁ ଲାଗିଲା । ନୀଳୁବାବୁ ଚମକି ପଡ଼ିଲେ । ସେ କାଳର କନକକୁ ମନେ ପଡ଼ିଲା; ଆଉ ବିନା ଦ୍ୱିଧାରେ ଅଜସ୍ର ଅଶ୍ରୁଧାରା ତାଙ୍କ ଦୁଇ ଆଖିରୁ ବହି ତଳେ କନକକୁ ତିନ୍ତାଇବାକୁ ଲାଗିଲା । ଏଣେ ପୁଣି ମନ କାହିଁକି କେଜାଣି ଆନନ୍ଦରେ ନାଚି ଉଠିଲା । ଧୀରସ୍ଥିରଭାବରେ ସେ କାନ୍ଦଣା ଶୁଣିବାକୁ ଲାଗିଲେ ।

ଅନେକ କ୍ଷଣ ପରେ ଅନେକ ଚେଷ୍ଟାରେ ଗାଁ ଝିଏ କନକକୁ ତୁନି କଲେ । ନୂଆବୋଉ ନିଜେ ମଧ ଉଠିଆସି ନୀଳୁବାବୁଙ୍କୁ ଦେଖି ହସିବେ କି କାନ୍ଦିବେ, କିଛି

ସ୍ଥିର କରି ନପାରି ଟିକିଏ ହସିଦେଲେ । ନୀଲୁବାବୁ ତାଙ୍କୁ ଗୋଟିଏ ମୁଣ୍ଡିଆ ମାରି ତାଙ୍କ ପଛେ ପଛେ ତାଙ୍କ ଘରକୁ ଚାଲିଗଲେ । ପାନ ଖାଇ ଗପସପ ହୋଇ ଦାଣ୍ଡକୁ ବାହାରିଲାବେଳେ ପୁଣି ସେହି କ'ଣଘର ଉପରେ ତାଙ୍କର ନଜର ପଡ଼ିଲା । ଦେଖିଲେ, ସେହି ଉଦ୍ଦୀପ୍ତ ଦିଓଟି ଦିବ୍ୟଚକ୍ଷୁର ସ୍ଥିର ଚାହାଣି ତାଙ୍କରି ଉପରେ ସ୍ଥାପିତ । ଦଣ୍ଡକେ ଆତ୍ମବିସ୍ମୃତ ହୋଇ, ଆଉ ଦଣ୍ଡକେ ସମ୍ମତି-ସୂଚକ ମୁଣ୍ଡ ହଲାଇ ସେ ସେଠାରୁ ଧୀର ଗମ୍ଭୀରଭାବରେ ବାହାରିଗଲେ । ସେ ଚାହାଣିର ଅର୍ଥ କ'ଣ ? କି ଶିକ୍ଷା, କି ପରାମର୍ଶ, କି ଆଦେଶ ବା ଦେଲା ସେ ! ଏ ଚାହାଣିରେ କ'ଣ ଥିଲା, କି ଭାଷାରେ ସେ ମନ କଥା ବ୍ୟକ୍ତ କଲା ?

ଦାଣ୍ଡରେ ଯାଇଁ ଦେଖିଲେ, ବରଧରା ଯିବାପାଇଁ ସମସ୍ତ ପ୍ରସ୍ତୁତ; କେବଳ କିଏ ବରଧରା ଯିବ, ସେହି ବିଷୟରେ ତର୍କବିତର୍କ ଲାଗିଛି । ହରିବାବୁଙ୍କ ଛଡ଼ା କାହାରି ଯିବା ଅବଶ୍ୟ ଉଚିତ ନୁହେଁ, କିନ୍ତୁ ସେ ଗଲେ ଯେ ଆଉ କିଛି ହୋଇ ପାରିବ ନାହିଁ । ତଥାପି ହରିବାବୁ ଏମାନଙ୍କ ଉପରେ ଭାର ଦେଇ ଯିବାକୁ ବାଧ ହେଉଛନ୍ତି—ନଗଲେ ତ ନ ହୁଏ । ଏହି ସମୟରେ ନୀଲୁଙ୍କୁ ଦେଖି ହରିବାବୁଙ୍କ ମନରେ ଆଉ ଗୋଟିଏ ଭାବର ଉଦୟ ହେଲା, କିନ୍ତୁ ସେ ସାହସ କରି କିଛି କହିପାରିଲେ ନାହିଁ । ଏତିକିବେଳେ ନୀଲୁବାବୁ ନିଜେ ଗମ୍ଭୀର ଭାବରେ ହରିବାବୁଙ୍କ ନିକଟକୁ ଆସି ଅତ୍ୟନ୍ତ କରୁଣ ସ୍ୱରରେ କହିଲେ, "ଭାଇ, ମୁଁ ଯାଏଁ !" (ନୀଲୁବାବୁ ହରିବାବୁଙ୍କୁ ଆଜି ସୁଦ୍ଧା 'ହରିଭାଇ' ବୋଲି ଡାକି ଆସୁଥିଲେ ।) ଏହା କହି ଅତ୍ୟନ୍ତ କରୁଣଭାବରେ ସମାଗତ ଭଦ୍ରବ୍ୟକ୍ତିଙ୍କ ମୁଖ ଆଡ଼କୁ ଚାହିଁଲେ । ହରିବାବୁ ନିତାନ୍ତ ଆନନ୍ଦ ସହିତ ପ୍ରସ୍ତାବଟି ଗ୍ରହଣ କଲେ ଦେଖି ସମସ୍ତେ ସମସ୍ୱରରେ ପ୍ରସ୍ତାବଟିକୁ ଅନୁମୋଦନ କଲେ । ହରିବାବୁ ନୀଲୁଙ୍କ ମୁଖ ପ୍ରତି ଛଳଛଳ ନୟନରେ ଚାହିଁଲେ, ଦେଖିଲେ—ନୀଲୁଙ୍କ ଚକ୍ଷୁଯୋଡ଼ିକ ପୂର୍ଣ୍ଣ, ଉନ୍ନତ ଓ ଭାବପୂର୍ଣ୍ଣ । ହରିବାବୁ ସମ୍ଭାଳି ନପାରି ଧାଇଁ ଆସି ତାଙ୍କୁ କୋଳ କରି ଗଦ୍‌ଗଦ୍ ସ୍ୱରରେ କହିଲେ—"ମେରା ଭାଇ ରେ !"

+ + + + +

# ଦ୍ୱିତୀୟ ଖଣ୍ଡ

## ଠକ

### (୧)

ଶାଶୁଘରେ ଗୋଡ଼ ଦେଲାବେଳୁଁ କନକ ଦେଖୁଚି—କାହାର ଗୋଟାଏ ନୀରବ ହସ୍ତ ତା'ର ପ୍ରତି କାର୍ଯ୍ୟରେ ତାକୁ ସାହାଯ୍ୟ କରିଆସୁଚି, ନାନାଭାବରେ ତା' ପଛେ ପଛେ ରହି ପ୍ରତି ପଲକରେ କାହାର ଯୋଡ଼ିଏ ସ୍ନିଗ୍ଧ ଆଖି ତା'ର ନୂତନ ବଧୂଜୀବନର କଠିନ ପରୀକ୍ଷାକୁ ଲଘୁ କରିଆସୁଚି, କାହାର ଗୋଟିଏ ଆଶିଷପୂର୍ଣ୍ଣ ଶୁଭକାମନା ତା'ର ସମସ୍ତ ଅପ୍ରତ୍ୟାଶିତ ଜ୍ୱାଳାଯନ୍ତ୍ରଣାରୁ ତାକୁ ରକ୍ଷା କରିଆସୁଚି, ଅଥଚ ଆଶ୍ଚର୍ଯ୍ୟର ବିଷୟ, ସେ ମଙ୍ଗଳାକାଂକ୍ଷୀଟି ସାଙ୍ଗରେ ତା'ର ଆଳାପ ପରିଚୟ ହେବାକୁ ନାହିଁ । ଏମନ୍ତ କି, ସେ କିଏ, ତାହା ମଧ ତା' କଳ୍ପନାର ଅତୀତ ।

ପୂର୍ଣ୍ଣ ହୃଦୟର କୃତଜ୍ଞତା ସେ କାହାକୁ ଦେବ, ବୁଝିପାରୁନାହିଁ । ତା'ର ପୂର୍ଣ୍ଣ ନାରୀ ହୃଦୟ ଦେଇ ସେ ଖୋଜୁଚି, ଗୋଟାଏ ଅବଲମ୍ବନ—ସଜୀବ ସଶରୀର ଅବଲମ୍ବନ; କେବଳ ସାହାଯ୍ୟ ନୁହେଁ—ସହାୟ, ସାହା ।

+ + + + +

ଏପରି ସମୟରେ—ଯେତେବେଳେ ତା' ହୃଦୟ ଅଜ୍ଞାତ ମଙ୍ଗଳାକାଂକ୍ଷୀର ଅନ୍ୱେଷଣର ବୃଥା ପ୍ରୟାସରେ ବିମର୍ଷ ରହିଚି—ଆଜି 'ଚତୁର୍ଥୀ'ର ଏ ନାରୀସଭାରେ ଏତେ ଲୋକଙ୍କ ମଧରେ ସୁଦ୍ଧା ନିର୍ଜନ କାରାଦଣ୍ଡ ଭୋଗ କରୁ କରୁ କନକ ହଠାତ୍ ଓଢ଼ଣା ଭିତରୁ ଗୋଟିଏ ନୂଆ ମୁହଁ ଦେଖିଲା, ଯହିଁରେ ଚହ୍ଲାଅଚିହ୍ନାର ସମ୍ପର୍କ ମାତ୍ର ନାହିଁ—ସେ ମୁହଁଟି ତା'ର ଯେପରି କେଉଁ ଦିନରୁ ପରିଚିତ; ସେ ମୁହଁଟି ଯାହାର, ସେ ଯେପରି କେଉଁ ଦିନରୁ ତା'ର ଆପଣାର !

ସେ ମୁହଁଟି କଳା, କନ୍ତୁ ସେଥିରେ ଗୋଟାଏ ଅସାଧାରଣ ଗଠନରେ ଗୋଟାଏ ଅକଥନୀୟ ସୌନ୍ଦର୍ଯ୍ୟ; ସେ ମୁହଁଟି ଅଳଙ୍କାରହୀନ, କିନ୍ତୁ ଚକ୍ଷୁଯୋଡ଼ିକ ତାହାର ଦପ୍

ଦପ୍ ଜଳୁଛି । ରାଗରେ ନୁହେଁ, ତେଜରେ ନୁହେଁ, ଅଥଚ ଜଳୁଛି—ସ୍ନେହରେ, ସହାନୁଭୂତିରେ ଓ ସହିଷ୍ଣୁତାରେ । ତାହାର ଚାହାଣିରେ ମଦିରା ନାହିଁ, ଗରଳ ନାହିଁ, ଚଞ୍ଚଳତା ନାହିଁ—ଅଛି କେବଳ ଗୋଟାଏ ସ୍ଥିର ସଂଯତ କୋମଳତା; ସ୍ଥିର, ସଂଯତ—ଅଥଚ ନିଶ୍ଚେଷ୍ଟ ନୁହେଁ—ପୂର୍ଣ୍ଣ; ଜୀବନୀଶକ୍ତିର ସଞ୍ଚାର ସେଥିରେ ଆଲୋକିତ ଜୀବନର ନିଭୃତ ପୁଲକର ଆଭାସ ଦେଉଅଛି ।

କନକ ଥରେ ମାତ୍ର ଚାହିଁ ସେହି ସ୍ଥିର, ସଦୟ, କରୁଣ ମୁଖଟିର ମର୍ମ ବୁଝିନେଲା । ସେ ମୁହଁଟି ଗଉରୀର ।

କନକ ଯେତେବେଳେ ସୁବିଧା ଦେଖି ଓଢ଼ଣା ଭିତରୁ ଗଉରୀକୁ ଆପାଦମସ୍ତକ ପରୀକ୍ଷା କରିନେଲା, ସେ ଗୋଟିଏ 'ମାତାଜୀ' ବୋଲି ତା'ର ଆଉ ସନ୍ଦେହ ରହିଲା ନାହିଁ । ତା' ପରିଧାନରେ ଖଣ୍ଡେ ମୋଟା ଥାନ, ମୁଣ୍ଡବାଳଗୁଡ଼ାକ ମୁକୁଳା; ମୁଣ୍ଡରେ, ହାତରେ, ଗଳାରେ ରାମାନନ୍ଦୀ ଚିତା; ବେକରେ ତୁଳସୀକ'ଣ୍ଠି ଛଡ଼ା ଆଉ କିଛି ନାହିଁ । ଏହି 'ମାତାଜୀ'ଟି ପାଖରେ ଛୋଟବଡ଼ ପିଲାମାନଙ୍କର ସମାଗମ ବେଶି । ସମାଗତ ବହୁ, ଝିଅ, ଘରଣୀ ଇତ୍ୟାଦିଙ୍କ କଥାବାର୍ତ୍ତା, ହସଖୁସି ଓ ବକ୍ତୃତାଦି ପ୍ରତି ତା'ର ଟିକେ ମାତ୍ର ମନୋଯୋଗ ନାହିଁ ।

କ୍ଷଣକ ମଧ୍ୟରେ କନକର ହୃଦୟ 'ମାତା'ଟି ପ୍ରତି ଆକୃଷ୍ଟ ହୋଇଗଲା । ଇଚ୍ଛା ହେଲା, ତାହା ସହିତ ଦି'ପଦ କଥା ହୁଅନ୍ତା, କିନ୍ତୁ ନାଚାର—ଏଇଟା ଯେ ଚତୁର୍ଥୀର ନାରୀସଭା । ଏଥିରେ କଥାବାର୍ତ୍ତା ତ ଦୂରର କଥା—ନବବଧୂର ଟିକିଏ ହଲଚଲ ହେବାର ମଧ୍ୟ ସାଧ ନାହିଁ । ହେଲେ ନିନ୍ଦା, ଅପଯଶ, କଳଙ୍କ ଓ ତଦୁପରି ଲାଞ୍ଛନା ଏବଂ ଗଞ୍ଜଣା ।

ଏ ବିଷୟରେ ଟିକିଏ ବିଶଦ ବ୍ୟାଖ୍ୟା ଆବଶ୍ୟକ । ହିନ୍ଦୁ ଅନ୍ତଃପୁରର ଅସୂର୍ଯ୍ୟମ୍ପଶ୍ୟା ନବବଧୂର ସୁ-ଆବୃତ ମୁଖମଣ୍ଡଳର ପ୍ରଥମ ଓ ଶେଷ ଦର୍ଶନ—ଅବଶ୍ୟ ଜନସାଧାରଣଙ୍କ ପକ୍ଷରେ—ତଥା ପରୀକ୍ଷାର ଏକମାତ୍ର ଅବସର ହେଉଚି ବିବାହର ଚତୁର୍ଥ ଦିବସ—ଚତୁର୍ଥୀ ବା ଚଉଠି । ବନ୍ଧୁବାନ୍ଧବ, ସୂର୍ଯ୍ୟମଇତ୍ର, ସାଇପଡ଼ିଶା, ଜ୍ଞାତିକୁଟୁମ୍ବ, ଆଇଲାଗଲା—ସମସ୍ତଙ୍କର ଆଜି ସୁବର୍ଣ୍ଣ-ସୁଯୋଗ, ଅର୍ଥାତ୍ ସୁବର୍ଣ୍ଣ-ବିୟୋଗ । କାରଣ, ବିନା ଦକ୍ଷିଣାରେ ଦେବ-ଦେବୀ-ଦର୍ଶନର ବିଧି ହିନ୍ଦୁଶାସ୍ତ୍ରରେ ନାହିଁ; ତଥୈବ ବିନା ଦକ୍ଷିଣାରେ ଗୃହଲକ୍ଷ୍ମୀ ଦର୍ଶନ ଗୃହସ୍ଥ-ନୀତିର ବହିର୍ଭୂତ ।

ଆଜି ପୁରୁଷ-ସ୍ତ୍ରୀ ସମସ୍ତେ ବହୂର ମୁହଁ ଦେଖିବେ ଓ ନିଜ ନିଜ ସମ୍ବନ୍ଧ ଏବଂ ସମ୍ପର୍କ ଅନୁସାରେ—ଅନ୍ୟ କୌଣସି ବିଚାରନିରପେକ୍ଷ—'ମୁହଁ ଚୁହାଁ' ଦେବେ । ପୁରୁ—ସ୍ତ୍ରୀ ସମସ୍ତେ ଦେଖିବେ ବୋଲି ଯେ ଦୁଇ ଜାତି ଲଜ୍ଜାସରମ ଭୁଲି ଏକାବେଳକେ କାର୍ଯ୍ୟ ସମାଧା କରିବେ, ଏହା ଭାବିବାର ବାଟଟି ପର୍ଯ୍ୟନ୍ତ ରଖାଯାଇନାହିଁ । ଇଯେ ତ କିଛି ଗଙ୍ଗା ବୈତରଣୀର ବାରୁଣୀ-ଯୋଗ ନୁହେଁ ! ଏଥିରେ ପୁରୁଷମାନଙ୍କ ପାଇଁ ଏକ ବନ୍ଦୋବସ୍ତ ତ, ସ୍ତ୍ରୀମାନଙ୍କ ପାଇଁ ଦୋସରା । ଚତୁର୍ଥୀର ବେଦୀ କାର୍ଯ୍ୟ ଶେଷ ହେଉ ନ ହେଉଣୁ ପଡ଼ିବ ପୁରୁଷମାନଙ୍କ ସୁବର୍ଣ୍ଣ-ବିୟୋଗ (ଆପଣ ଯଦି କହିବେ ତ ସୁଯୋଗ) ଓ ଦି'ପହର, ଦଶଘଡ଼ି ସରିକି ପଡ଼ିବ ଯାଇଁ ସ୍ତ୍ରୀମାନଙ୍କର ।

ନିଃସନ୍ଦେହ, ଏସବୁ ବିଷୟରେ ସ୍ତ୍ରୀମାନେ ହେଲେ ହର୍ତ୍ତାକର୍ତ୍ତା, ଦୈବବିଧାତା (privileged class); ଦୃଶ୍ୟ-ଦର୍ଶକ-ଭେଦ ଥିବାରୁ ପୁରୁଷମାନଙ୍କର ସୁଯୋଗ ନାମ ମାତ୍ର-ଦକ୍ଷିଣା ଦେବାହିଁ ସାର; କିନ୍ତୁ ସ୍ତ୍ରୀମାନଙ୍କ କଥା ହେଲା ନିଆରା । ସେମାନଙ୍କ ମୁହଁଦେଖା, ତଥା ପରୀକ୍ଷାର ଆୟୋଜନ, ଘଟା ଓ ଆଡ଼ମ୍ବର ସେ ସ୍ଥଳରେ ବର୍ଣ୍ଣନାତୀତ । ତୁଳନା କରିବାକୁ ଗଲେ, ପୁରୁଷମାନଙ୍କ ଦେଖାଟା ବଡ଼ ଡାକ୍ତରଖାନାର ବଡ଼ ସାହେବଙ୍କ post-mortem ମଡ଼ା ପ୍ରତି ଦସ୍ତୁର କଟାକ୍ଷପାତ ସଙ୍ଗେ ସମାନ ପଡ଼ିବ; ଆଉ ସ୍ତ୍ରୀମାନଙ୍କର ହେଉଛି ବାସ୍ତବ post-mortem ଓ dissection; ତେଣୁ ପୂର୍ବୋଲ୍ଲିଖିତ ନାରୀସଭାକୁ ଉକ୍ତ dissectionର ଅନ୍ତିମ ଶକୁନି ସଭା କହିଲେ ଅତ୍ୟୁକ୍ତି ହେବାର ସମ୍ଭାବନା ଅଛି ।

ଉକ୍ତ ନାରୀସଭା ସ୍ୱଭାବତଃ ମତ-ନବିସ୍ ଗ୍ରାମ୍ୟ କୁଳାଙ୍ଗନାଙ୍କର ରଙ୍ଗଭୂମି । ପ୍ରଥମ ଦଳ ମଧ୍ୟରେ ଧରି ନିଅନ୍ତୁ, ପ୍ରାଚୀନା ଚତୁର୍ଥାବସ୍ଥାପନ୍ନାଙ୍କଠାରୁ ଆରମ୍ଭ କରି ବୃଦ୍ଧାଭାବାପନ୍ନା ପ୍ରୌଢ଼ାମାନଙ୍କ ପର୍ଯ୍ୟନ୍ତ; ଦ୍ୱିତୀୟ ଦଳରେ ଦେଖନ୍ତୁ, ଓଢ଼ଣାତିକ୍ରାନ୍ତା (ଅର୍ଥାତ୍ ଯେଉଁମାନେ ବଧୂଜୀବନର ଉତ୍ତର ସନ୍ଧ୍ୟାରେ ମୁହଁରେ ଲୁଗା ନ ଦେଇ ସମସ୍ତ ସ୍ତ୍ରୀଜାତି ସହିତ ମୁକ୍ତ ଭାବବିନିମୟ କରିବାର ଅଧିକାର ପାଇଗଲେଣି) ସଧବା ବିଧବାଙ୍କଠାରୁ ଓଳିଯାରୁ ପଡ଼ି ଗଢ଼ା କୌଣସି କୌଣସି ଯୁବତୀପୁଙ୍ଗବ ପର୍ଯ୍ୟନ୍ତ । ଏହି ଦୁଇ ଦଳ ହେଲେ ପ୍ରଧାନ । ଯା ଛଡ଼ା ବିବାହିତା ଓ ଅବିବାହିତା ଝିଅଝୁଆଣୀ ଏବଂ ମାତୃକ୍ରୋଡ଼ଠାରୁ ଆରମ୍ଭ କରି ସମ୍ଭବ ଅସମ୍ଭବ ଯାବତୀୟ ସ୍ଥାନ ଅଧିକାର କରି ସଭାର ଶାନ୍ତିବର୍ଦ୍ଧନ କରୁଥିବା ବାଳୁତ 'ପିଲା ପରମେଶ୍ୱର' ତ ଅଛନ୍ତି ।

ଦର୍ଶକମାନଙ୍କୁ ଛାଡ଼ି ଏବେ ଦୃଶ୍ୟଟି ବିଷୟରେ ପଦେ ଅଧେ ନ କହିଲେ ଚଳିବ ନାହିଁ । ସଭା ଓ ସଭ୍ୟମାନଙ୍କୁ ପୂର୍ବବର୍ଣ୍ଣିତ ଅବସ୍ଥାରେ ଛାଡ଼ି ଏବେ ଏ ସବୁର କେନ୍ଦ୍ରୀଭୂତା ନବବଧୂଟି ପ୍ରତି ଟିକିଏ ଦୃଷ୍ଟି ଦେବାକୁ ହେବ ।

ବହୂ ଥିବ ଘରକୋଣରେ । ସମ୍ଭବତଃ, ଟିକିଏ ଅବସର ପାଇ ଆପାଦମସ୍ତକ ସର୍ବାଙ୍ଗରୁ ଅଳଙ୍କାର ଓହ୍ଲାଇ ବଧୂଚିତ ଶଙ୍କିତ ଭୋଜନ ପରେ ଦିବ୍ୟ ଆରାମରେ ଦୁଇଟା ଦୀର୍ଘ ନିଃଶ୍ୱାସ ମାରୁଥିବ, ଅଥବା ଭେଳକା ମାରି ଯାଇଥିଲେ ନିଶ୍ଚେଷ୍ଟ ଭାବରେ ସେହିପରି ଅଳଙ୍କାରପିଷ୍ଟା, ଆହାର-ନିଦ୍ରା ଅଭାବରୁ ପ୍ରକୃତିକ୍ଲିଷ୍ଟା ହୋଇ କୁଣ୍ଢେଇଟି ପରି ବସି ଗୃହତଳ ସିକ୍ତ କରୁଥିବ, ଏପରି ସମୟରେ ବ୍ୟସ୍ତସମସ୍ତ ହୋଇ ଶାଶୂ ବା ତତ୍‌ସ୍ଥାନୀୟା କେହି ସଦଳବଳରେ ଆସି ଆପାଦମସ୍ତକ ଅଳଙ୍କାର ପରୀକ୍ଷା କରି, ଭ୍ରମାଦି ସତିରସ୍କାର ସଂଶୋଧନ କରି ବହୂଟିକୁ ଯାଡ଼ମ୍ବରରେ ସାଙ୍ଗୋଳି ଘେନିଯିବେ ।

ବହୂ ଚାଲିଲାବେଳେ ତାଙ୍କ ପାଦଯୋଡ଼ିକ ଯେ ଭୂମିରେ ଲାଗେ, ଏହା ମୁଁ ଶପଥ କରି କହିପାରେ; କିନ୍ତୁ କାହାରି ଦେଖିବାର ସାଧ ନାହିଁ । କାରଣ, ପଛ ଆଡ଼େ ସାହାଯ୍ୟକାରିଣୀ ବାହୁବେଷ୍ଟନରେ ବହୂର ନତ କଟିକୁ ଆହୁରି ନତ କରି କରି ଆଣୁଅଛନ୍ତି ଏବଂ ଆଗରେ ନବ ବଧୂର ସର୍ବସ୍ୱରୂପିଣୀ ଓଢ଼ଣା "ବାଟ ଓଳାଇ ଓଳାଇ, ଧୂଳି ଉଡ଼ାଇ ଉଡ଼ାଇ" ଚାଲିଅଛି । ଜ୍ୟାମିତିକ ଭାଷାରେ କହିବାକୁ ଗଲେ, ବହୂର ପାଦଠାରୁ କଟି ପର୍ଯ୍ୟନ୍ତ ସରଳରେଖା ଯଦି ଯେନକେନ ପ୍ରକାରେଣ ଭୂମି ସଙ୍ଗରେ ସମକୋଣ ସ୍ଥାପନ କଲା, ତେବେ ନିଃସନ୍ଦେହ, ଉକ୍ତ ରେଖା ଓ (କଟିଠାରୁ ମସ୍ତକ ପର୍ଯ୍ୟନ୍ତ) ମେରୁଦଣ୍ଡ ଦ୍ୱାରା ବେଷ୍ଟିତ କଟିସ୍ଥ କୋଣଟି ସମକୋଣ ଛଡ଼ା ଆଉ କିଛି ନୁହେଁ । ଉକ୍ତ ପ୍ରକାରେ ପ୍ରମାଣିତ କରାଯାଇପାରେ ଯେ ଶିରୋଲମ୍ବୀ, ଧରାଚୁମ୍ବୀ ଓଢ଼ଣା ଓ ପୂର୍ବକାୟ ଦ୍ୱାରା ବେଷ୍ଟିତ କୋଣ ମଧ୍ୟ ସମକୋଣ ଅଟେ । ଅର୍ଥାତ୍ ସିଦ୍ଧାନ୍ତ ଏହି ଯେ, ଗମନକାଳୀନ ନବବଧୂ ଭୂମିସଂଲଗ୍ନ ଥିବାରୁ ଜ୍ୟାମିତିକ ଦୃଷ୍ଟିରେ ସର୍ବଦା ସମାନ୍ତରାଳ କ୍ଷେତ୍ରରେ ପରିଣତ ହୁଅନ୍ତି (ଯେଉଁ ଜ୍ୟାମିତି ବିନ୍ଦୁଠାରେ ବିସ୍ତୃତି ଦେଖିବାକୁ ଅକ୍ଷମ, ତାହା ପକ୍ଷରେ ନବବଧୂର ଗତିରେ ସ୍ଥିତିମାତ୍ର ଦେଖିବା ସ୍ୱାଭାବିକ ସ୍ୱତଃସିଦ୍ଧ) —ବର୍ଗକ୍ଷେତ୍ରରେ ପରିଣତ ହେବା କେବଳ ବଧୂର ଆକାରସାପେକ୍ଷ ।

ହାୟ ! ଓଡ଼ିଆଘର ନବବଧୂର ତିଳେମାତ୍ର ସ୍ୱାତନ୍ତ୍ର୍ୟ ବା ସ୍ୱାଧୀନତା ନ ଥିବାର ଗୌରବ ଅନୁଭବ କରିବାର ସମୟ ବା ସୁବିଧା ନ ଥିବାରୁ ବଧୂଜୀବନର ପ୍ରାରମ୍ଭରେ

କେତେ କେତେ 'ବୀରରମଣୀ' ନିଜର ସହଜ ସହିଷ୍ଣୁତାକୁ ଭୁଲି, ନାରୀଜନ୍ମ ପ୍ରତି ଧିକ୍କାର ଦେଇ ମୃତ୍ୟୁକାମନା କରି ନଥାନ୍ତି ! ସେମାନେ କାହୁଁ ଜାଣିବେ—ବଧୂର କାଷ୍ଠପୁତ୍ତଳିତ୍ୱରେ ଶାଶୁଶଶୁରଙ୍କର କେଡ଼େ ଗର୍ବ, କେତେ ମାନ, କେତେ ଆନନ୍ଦ । ପାଞ୍ଚଜଣଙ୍କ ମୁହଁରେ କି ପ୍ରଶଂସା, କି ସାଧୁବାଦ ! ଆଉ ତାହାଠାରେ ଟିକିଏ ସ୍ୱାଧୀନ ଭାବ, ଟିକିଏ ସ୍ୱେଚ୍ଛାଚାରିତା, ଟିକିଏ ଆତ୍ମାବଲମ୍ବନ, ଟିକିଏ ମନୁଷ୍ୟତ୍ୱ ଦେଖାଗଲେ କି ମର୍ଯ୍ୟାଦାହାନି, କେଡ଼େ ଲୋକହସା ! ଧନ୍ୟ ସେ ବଧୂ, ସାର୍ଥକ ତାହାର ନାରୀଜନ୍ମ—ଯେ ଯନ୍ତ୍ରଚାଳିତ ହେବାର ଗୌରବ ଲାଭ ପାଇଁ ନିଜର ନିଜତ୍ୱ ଭୁଲି କୁଣ୍ଢେଇଟିରେ ପରିଣତ ହୋଇପାରେ ଓ ଦୁଷ୍ପ୍ରାପ୍ୟ ଲୋକପ୍ରଶଂସା ଆଶାରେ ନିଜର ଅସ୍ତିତ୍ୱ ସୁଦ୍ଧା ଭୁଲି ଯାଇପାରେ ।

ହଁ, ବହୂଟିକୁ ତ 'ନ ଯଜ୍ଞୌ ନ ତସ୍ଥୌ' ଭାବରେ ପହୁଣ୍ଡି ବିଜେ କରାଇ ଅଣାଗଲା । ଏବେ ସଭାର ଅବସ୍ଥା ଟିକିଏ ଦେଖାଯାଉ । ମାଇପିପିଲା ସମସ୍ତେ ଉଦ୍‌ଗ୍ରୀବ ହୋଇ 'ପୀବନ୍ତ ଇବ ଚକ୍ଷୁଷା' ଅନାଇ ରହିଛନ୍ତି—କାହାରି ତୁଣ୍ଡରେ କଥା ନାହିଁ । କିନ୍ତୁ ବହୂଟିର ଆବରଣ ଛଡ଼ା ଆଉ କିଛି ଦେଖିବାର ବାଟ କାହିଁ ? ବହୂଟିକୁ ଆଣି ଗୋଟାଏ କୌଣସି ପାଖ ବା କୋଣରେ ଥୋଇଲେ । ସମସ୍ତେ ଆସନ ଗ୍ରହଣ କରି ସାରିଲେ, ତେବେ ଯାଇଁ ବହୂଦେଖା ବା ମୁହଁଦେଖାର ସମୟ ଆସିଲା ବୋଲି ଜାଣିବ ।

ଏ ସ୍ଥଳରେ ମଧ ବହୂଟିର ସିଧା ବସିବାର ସାଧ ନାହିଁ—ସେହିପରି ନତଭାବରେ ଅଧୋବଦନରେ ରହି ନିଜର ଗୁଣଗ୍ରାମର ପରିଚୟ ଦେବାକୁ ପଡ଼ିବ । (କହିଛି ପରା—"ନମନ୍ତି ଫଳିନୋ ବୃକ୍ଷାଃ, ନମନ୍ତି ଗୁଣିନୋ ଜନାଃ ।" ନମନ୍ତି ସୁକୁଳବଧ୍ୱୋ, ନମନ୍ତି କୁତ୍ର ଚେତରାଃ ।) ଗୃହକର୍ତ୍ତ୍ରୀ ତପ୍ରରେ ପ୍ରତିବେଶିନୀମାନଙ୍କର ଗୁରୁତ୍ୱ ହିସାବରେ (in order of importance) ଅର୍ଥାତ୍ ପ୍ରତ୍ୟାଶିତ ଦକ୍ଷିଣାର ଗୁରୁତ୍ୱ ହିସାବରେ ଜଣ ଜଣ କରି ସମସ୍ତଙ୍କୁ ବହୂ ମୁହଁ ଦେଖାଇବେ ଓ ଦର୍ଶନୀ ଗ୍ରହଣ କରିବେ । ତପ୍ରରେ ସମସ୍ତେ ବହୂର ମୁଣ୍ଡଠାରୁ ଗୋଡ଼ଯାକ ଅଳଙ୍କାର ପରୀକ୍ଷା କରି ତୁଳନା ଦ୍ୱାରା ଭଲମନ୍ଦ ସାବ୍ୟସ୍ତ କରିବେ । ସେହିଥିରୁ କେତେ ଦଳର ସୃଷ୍ଟି ହେବ, କେତେ କଥା ବାହାରି ପଡ଼ିବ, କେତେ ଆଲୋଚନା ଆରମ୍ଭ ହୋଇଯିବ । କେତେ ଘରର ବହୂମାନଙ୍କ ପ୍ରସଙ୍ଗ ଉଠିବ, ତାହାର କଳ୍ପନା ହୋଇ ନପାରେ । ବହୂଟି କିନ୍ତୁ ଆଦ୍ୟପ୍ରାନ୍ତ ସେହି ସ୍ଥାନରେ ସେହି ଭାବରେ ନୀରବ ନିଷ୍ପନ୍ଦ ହୋଇ ବସି ରହି ନିଜକୁ ଧନ୍ୟ ମଣିବାକୁ ବାଧ ।

ଏତେଗୁଡ଼ାଏ କଥା ମୋତେ କହିବାକୁ ପଡ଼ି ନଥାନ୍ତା, ଯଦି ମୁଁ ଆଜିକାଲିକାର କଥା କହୁଥାନ୍ତି, ଅଥବା ଯଦି ସଭ୍ୟତା-ପ୍ରଭାବରେ ଲୋକେ ଆଜି ଏ ସମସ୍ତ ସାମାଜିକ ସଦନୁଷ୍ଠାନମାନ ଭୁଲିବାକୁ ବସି ନଥାନ୍ତେ । କିନ୍ତୁ କ'ଣ କରିବି ? ମୁଁ ଯେଉଁ ସମୟର କଥା କହୁଛି, ସେତେବେଳେ ସଭ୍ୟତା କଅଁଳା ପିଲା—କାନ୍ଥବାଡ଼ ଆଶ୍ରୟ ନ କରି ଚାଲି ବୁଲି ପାରିବ, ସେ ଶକ୍ତି ତା'ର ସେତେବେଳକୁ ହୋଇନାହିଁ ।

\+ + + + +

ଗୋଟିଏ ପାଞ୍ଚ ଛ' ବର୍ଷର ଝିଅ ଖଣ୍ଡେ ରଙ୍ଗ ଲୁଗା ପୁଅଙ୍କ ପରି ପିନ୍ଧି ମୁହଁଦେଖା ସରିଲାବେଳୁଁ କନକ ଆଗରେ ବସି ତା' ମୁହଁକୁ ତରାଟିମରାଟି ଚାହୁଁଥାଏ ଓ ଯେତେବେଳେ ଦୈବାତ୍ ତା' ଆଖି ଯା ଆଖିରେ ପଡ଼ିଯାଏ ତରବର ହୋଇ ତଳକୁ ମୁହଁ କରିଦିଏ । କନକ ସେହି ଝିଅଟିର ପିନ୍ଧାକାନି ଧରି, ପାଖକୁ ଟାଣି ଆଣି ଗଉରୀକୁ ଦେଖାଇ ତା' କାନରେ କହିଲା; ''ସେ ମାତାଟି କିଏ ?'' କନକ ଅବଶ୍ୟ ଅନେକ କ୍ଷଣ ଯାଡ଼େ ସ୍ୟାଡ଼େ ଅନାଇ ସୁବିଧା ଦେଖି—ଯେତେବେଳେ କାହାରି ନଜର ତା' ଉପରେ ନାହିଁ, ସେହି ଅବସରରେ ଏଡ଼େ ଗର୍ହିତ କାର୍ଯ୍ୟଟାଏ କରିବାକୁ ସାହସ କରିଥିଲା । କିନ୍ତୁ ଭାଗ୍ୟ କ୍ରମେ ସେଥିରେ ବିଷମ ଫଳ ଫଳିଲା । ଝିଅଟି ତ ପ୍ରଥମେ କିଛି ବୁଝି ନ ପାରିଲା ପରି ଯାଡ଼େ ସ୍ୟାଡ଼େ ଅନାଇ ପୁଣି କନକ ମୁହଁକୁ ଚାହିଁଲା । କନକ ଆଙ୍ଗୁଳି ଠାରି ଗଉରୀକୁ ଦେଖାଇ ଦେଲାରୁ ପିଲାଯି ଆଗ କରି ଖାଲି ହସିଲା ପରସ୍ତେ । କନକ ଏଥିରେ ସୁଦ୍ଧା ଭୀତ ହୋଇ ନତମସ୍ତକରେ ରହିଲା । ଝିଅଟି ଏଣେ ହସି ହସି ଯାଇ ଗଉରୀ ବେକରେ ଦୁଇ ବାହୁ ବେଷ୍ଟନ କରି ତା' ଆଗକୁ ଝୁଲି ପଡ଼ି, ତା' ମୁହଁ ପାଖକୁ ତା' ଟିକି ରଙ୍ଗା ମୁହଁଟି ନେଇ ହସୁ ହସୁ ଏଡ଼େ ପାଟି କରି କହିଲା ''ଗଉଲି, ଅପା, ନୂଆବଉ ତତେ ମାତାଦି କଉଚି ।'' ଗଉରୀ ଟିକିଏ ହସି ଝିଅଟି ମୁହଁରେ ହାତ ଦେଇ ତାକୁ ବନ୍ଦ କଲା । କିନ୍ତୁ ହେଲେ କ'ଣ ହେବ, ଯେଉଁ ଅନିଷ୍ଟ ହେବାର ତାହା ସେତେବେଳକୁ ହୋଇ ସାରିଲାଣି —କଥାଟା କ୍ଷଣକେ ସଭା ମଧ୍ୟରେ ବ୍ୟାପ୍ତ ହୋଇଗଲା ।

କନକର ଶାଶୁ ବହୂ ଦେଖାଇ ସାରି ଅନ୍ୟ ପ୍ରସ୍ଥରେ କାମଧନ୍ଦାରେ ଲାଗି ଯାଇଥିଲେ । ପୂର୍ବବର୍ଣ୍ଣିତ ଘଟଣାର ଅଳ୍ପକ୍ଷଣ ପରେ ବତାସ ପରି ସେ ସଭାରେ ଅବତୀର୍ଣ୍ଣ ହୋଇ ବହୂକୁ ଲକ୍ଷ୍ୟ କରି କହିଲେ - ''ହଇଲୋ, ବେମହତୀ ଘର ଝିଅ !

ଏଁ-ଆଲୋ, ମ' ଝିଅ—ମୋ ଝିଅ ତୋତେ ମାତାଜୀ ପରି ଦିଶିଲା, ନାଇଁ ? କଉ କେଳାଘରେ ବଢ଼ିଥିଲୁ ଲୋ-ଯାଁଲୋ, ଏଁ ? ?'' କନକ ଅତି କାତର ଭାବରେ କାନ୍ଥ ଦିହରେ ମିଶିଗଲା ପରି ହୋଇଗଲାଣି । ହଠାତ୍ ଏହି ସ୍ଥାନରେ ଗଉରୀ ଉଠି ଆସି ବୋଉହାତ୍ ଧରି ଝିଙ୍କି ନେଇ କଡ଼ା ସ୍ୱରରେ କହିଲା-''ଛି, ବୋଉ, ପିଲାଟା !'' ବୋଉ କିନ୍ତୁ ଶୁଣିବାର ଲୋକ ନୁହନ୍ତି । ସେ ସେହିପରି ବାତୁଳପ୍ରାୟ ଗଉରୀକୁ ଆଗରୁ ହଟାଇ ନ ପାରି କୁଣ୍ଢାଇ ଧରି କନକର ଆହୁରି ପାଖକୁ ତଡ଼ି ଯାଇ କହିଲେ, ''ଦେଖିଲୁ, ଦେଖିଲୁ ? ହଇ ଲୋ ସୁନ୍ଦରୀ ସୁନା; ମୋ ଝିଅ ପରା ମାତାଜୀ ପରି ଦିଶୁଚି, ନାଇଁ ଲୋ ?'' ଏହି ସ୍ଥାନରେ ହିତରେ ବିପରୀତ ଦେଖି; ଅନ୍ୟ ଉପାୟ ନ ପାଇ ଗଉରୀ ବୋଉ ମୁହଁରେ ହାତଟା ଗୁଞ୍ଜିଦେଇ ''ତୁନି ହ, ତୁନିହ-ଢ଼େର ହେଲାଣି !'' ବୋଲି କହି ତାଙ୍କୁ ଅନ୍ୟ ଦିଗକୁ ତଡ଼ି ନେଇଗଲା । କନକ ସେହିପରି ତଟସ୍ଥ ପରି ବସିଥାଏ, କିନ୍ତୁ ଗଉରୀ ବୋଉ କ'ଣ ଏପରି ଭାବରେ ବିଧ୍ୱସ୍ତ ହୋଇଯିବେ । ଗଲାବେଳେ ମହଁ ବୁଲାଇ ବହୂକୁ ଓ ସଂସାରକୁ ଏକାବେଳେକେ ଲକ୍ଷ କରି କହିଦେଇ ଗଲେ- ''ହାଡ଼ୀଚମାର ଘର ଝିଅ; ସହରିଆ ବଜାରିଆଗୁରାକ— ମାନମହତ କାହୁଁ ଶିଖିବେ ? ଆଲୋ, ତୋର ପସନ୍ଦ ବି ଟିକିଏ ନାହିଁ ଲୋ କଜାକାନୀ ! ଛିଆ ଲୋ ଛିଆ ! କ'ଣ କହନ୍ତି ଆଉ ! ଯାଃ !'' ଏତିକିରେ ଗଉରୀର ଚୂଡ଼ାନ୍ତ ଚେଷ୍ଟାରେ ବୋଉ ଅଦୃଶ୍ୟ ହୋଇଗଲେ ।

କିନ୍ତୁ ଏଥିରେ କନକର ଭାଗ୍ୟ ପୂର୍ଣ୍ଣ ପରିବର୍ତ୍ତିତ ହୋଇଗଲା । ଶାଶୁଘରେ ଏ ଦୁଇ ଦିନ କନକର ସୁଖରେ ନଯାଉ, ପରିହାସ ବା ନିନ୍ଦାକ୍ସାଜାରେ କାନ୍ଦୁ କାନ୍ଦୁ କଟି ନାହିଁ । ତାହାର କାରଣ, ଗ୍ରାମର ପ୍ରଧାନ ମତନବିସ୍ ମାଇକିନାମାନେ କଳହପଟୁ ଥିଲେ ମଧ ପଟନାହାକ ଘରର ଏ ଉଗ୍ରଚଣ୍ଡୀଙ୍କ ସମକକ୍ଷ କେହି ଆଜିଯାକେ ହୋଇ ପାରିନାହାନ୍ତି । ସାଇ କଥାରେ ନିଧିବୋଉ ଯାହା କହିବେ, ସେଇଟା ବେଦର ଗାର - କାହାରି ବାଧା ଦେବାର ଶକ୍ତି ନାହିଁ; କାରଣ ଏବଂ ଯୁକ୍ତି ଥାଇପାରେ, କିନ୍ତୁ ସାଧ ନାହିଁ । ଆଉ ତାଙ୍କ ନିଜ ଘରକଥାରେ କିଏ ତାଙ୍କୁ ବାଧା ଦେବ ? ପ୍ରଥମ ଦର୍ଶନରେ ତାଙ୍କ ଶ୍ରୀମୁଖରୁ କନକ ଉପରେ ଏହି ମତ ଜାରି ହୋଇଥିଲା - ''ଆଚ୍ଛା ବହୂ !'' ଅତଏବ ସାଇପଡ଼ିଶାଙ୍କ ମୁହଁରେ ଏପର୍ଯ୍ୟନ୍ତ ଖାଲି କନକର ପ୍ରଶଂସା କେବଳ ଉଛୁଳି ପଡୁଥିଲା । ବର୍ତ୍ତମାନ ମହାମାୟାଙ୍କ ମତ ପରିବର୍ତ୍ତନରେ ସମବେତ ପ୍ରତିବେଶିନୀଗଣ ଏକାବେଳକେ ବଦଳିଗଲେ । କିଏ କହିଲା - ''ପଟନାହାକ ଘର ଉଜଳ ହେବ; ବହୂ ଭାରି ଦମ୍ଭୀ ।''

କିଏ କହିଲା - "ଇଲୋ ମା', ଏ ଘରକୁ ଆଉ କିଏ ଆସିବ ଲୋ ମା' ! କାହାର ଗରଜ ପଡ଼ିଚି - କିଏ ମାତାଜୀ, ଦାରୀ, କସବୀ ନା ଶୁଣିବ ମ ।" କେହି ବା ଦୟାର୍ଦ୍ର ହୋଇ ମନେ ମନେ କହିଲେ - "ଆହା ! ବହୂ ପିଲାଟିର କପାଳରେ କ'ଣ ଅଛି କେଜାଣି" । ଏହିପରି ଅପ୍ରତ୍ୟାଶିତଭାବରେ ଅକାଳେ ସଭାଭଙ୍ଗ ହେଲା ।

(୨)

ଏଣେ ଗଉରୀ ବୋଉକୁ ଠେଲି ଠେଲି ନେଇ ହାଣ୍ଡିଶାଳ ପରସ୍ତରେ ଢେର ବୁଝାଇଲା, କହିଲା - "ବହୂଟି ପିଲା, ବୁଦ୍ଧିଶୁଦ୍ଧି ହୋଇ ନାହିଁ । ମୁଁ ତୋ ଝିଅ ହେଲେ ସେ ବି ତ ଝିଅ - ବହୂ କିଏ, ଆଉ ଝିଅ କିଏ ?" ଶେଷରେ ଏତେ କରୁଣଭାବରେ ଗଉରୀ କନକର ହୋଇ ନଡ଼ିଲା ଯେ, ବୋଉ କାନ୍ଦି ପକାଇ ଗଉରୀକୁ କୁଣ୍ଢାଇ ପକାଇଲେ - ସେଇ କ୍ଷଣକ ପାଇଁ; ଗଉରୀ ଆଖିରେ ଯେ ପ୍ରକାର ସ୍ନେହର ଦୀପ୍ତିଟା ସବୁବେଳେ ଲାଗି ରହିଥାଏ, 'ନିଧିବୋଉ'ଙ୍କ ଆଖିରେ ଲୋତକ ଉପରେ ସେହି ପ୍ରକାର ଗୋଟିଏ ଜ୍ୟୋତି ଦେଖାଗଲା - ସେଇ କ୍ଷଣକ ପାଇଁ । ହଠାତ୍ କିଏ ଗୋଟିଏ 'ନିଧିବୋଉ', 'ନିଧିବୋଉ', ବୋଲି ଡାକି ଡାକି ଆସି ସେହି ପରସ୍ତରେ ପଶିବାରୁ ନିଧିବୋଉ ଲୁହ ପୋଛାପୋଛି କରିଦେଇ ପଲକମାତ୍ରକେ ପୂର୍ବ ସ୍ୱରୂପ ଧାରଣ କରି ପକାଇଲେ ।

ଗଉରୀ ବୋଉକୁ ଏହି ପ୍ରକାର ବଶ କରି ପ୍ରଫୁଲ୍ଲ ମନରେ ଧାଇଁ ଆସି କନକକୁ ଏକାବେଳକେ କୋଳ କରି ସେ ପରସ୍ତକୁ ନେଇଯାଇ କହିଲା, 'ପଖାଳ ଦେ ବୋଉ ! ମୁଁ ବହୂକୁ ଖୁଆଇ ଦିଏଁ ।"

ଏ ପର୍ଯ୍ୟନ୍ତ ଗଉରୀ କାହିଁକି କନକ ସହିତ ଆଳାପ ପରିଚୟ କରି ନଥିଲା, ତାହା ଏଠାରେ କହି ନଦେଲେ ଅଡୁଆ ଅଡୁଆ ଲାଗିପାରେ । ଏକେ ତ ଗଉରୀର ସମୟ ଧର୍ମକର୍ମରେ ବାରପଣ କଟିଯାଏ, ତା' ପରେ ପୁଣି ମାଘ ମାସ, ଠାକୁର ଖଞ୍ଜାରେ ମାଘମାହାତ୍ମ୍ୟ ପୋଥି ଶୁଣିବାକୁ ମଧ ପଡ଼େ । ଆହୁରି ମଧ, ବହୂ ଯେତେବେଳେ କାଲିରାତିରେ ଆସି ଘରେ ପ୍ରବେଶ କଲା, ଗଉରୀବୋଉ ଏକୁଟିଆ ବେଳେ ଗଉରୀକୁ ଚୁପ୍ କରି ଡାକି ବିଶେଷ ସାବଧାନ କରି ଦେଇଥିଲେ ଯେ - "ନୂଆବୋହୂଟି ସାଙ୍ଗରେ କଥାଭାଷା ହେବୁ ନାହିଁ ଏଇଲାଗେ - ଦେଖାଯାଉ", ଇତ୍ୟାଦି । କାରଣ କ'ଣ, ତାଙ୍କୁ ଗୋଚର । ବୋଧହୁଏ, ଝିଅଟି ତାଙ୍କର ବିଧବା - ଏଇଥି ପାଇଁ । ହାୟ ! ମା' ହେଲେ

ତାକୁ ପୁଅର ହେବାକୁ ହୁଏ, ଝିଅର ବି ହେବାକୁ ହୁଏ । କିନ୍ତୁ ଯାହାର ଦୁଃଖ ବେଶି, ଯେ ବେଶ୍ ଦୁର୍ବଳ, ମା'କୁ ଯେ ତାହାରି ଦିଗୁଣ ହେବାକୁ ହୁଏ ।

\+ + + + +

ଗଉରୀ କନକକୁ ବସାଇ ତାହାର ଲୁହ ପୋଛି ଦେଉଁ ଦେଉଁ ଅଜ୍ଞାତରେ ଓ ବିଜୟୋଲ୍ଲାସରେ ବୋଉ ମୁହଁକୁ ଚାହିଁଲା । ବୋଉ କିନ୍ତୁ ମୁହଁଟିକୁ ଶୁଖାଇ ଦେଇ, ପଖାଳ ବାଢ଼ି ଆଣି ଥୋଇ ଦେଇ ଚୋରଙ୍କ ପରି କନକନ ହେଉଥାନ୍ତି ଓ ଅନ୍ୟ କିଛି କଥା ନପାଇ କହୁଥାନ୍ତି - "ସେ ରଙ୍ଗୀ ଟୋକୀଟା ଆଜି ଗଲା କୁଆଡ଼େ । ଆସୁ ସେ ଆଜି, ସେ ଚିହ୍ନିବ କି ମୁଁ ଚିହ୍ନିବି" ଇତ୍ୟାଦି । (ରଙ୍ଗୀ ତାଙ୍କ ସାନ ଝିଅ - ଅବିବାହିତା - ବୟସ ୧୨ କି ୧୩ ହେବ !)

ୟା'ଡ଼େ ଦୁଇଗୁଣ୍ଡା ଭାତ ଗଉରୀ ହାତରୁ ନେଇ ସାରି କନକ ହଠାତ୍ ଗୁଣ୍ଡାଏ ଭାତ ନିଜ ହାତରେ ଚିପୁଡ଼ି, ଲଜ୍ଜାପାଟଳ ମୁଖଟି ଗଉରୀ ମୁଖ ପ୍ରତି ଉନ୍ନତ କରି ତା ବେକ ଧରି ଝୁଙ୍କାଇ ଆଣିଲା । ବୋଉ ସେହିଠାରେ ଟିକିଏ ଦୂରରେ ଥିଲେ, "ହାଁ ହାଁ, ସେ ଅଇଣ୍ଠା ଖାଏ ନାହିଁ" ବୋଲି କହି ସେଠାକୁ ଧାଇଁ ଆସିଲେ । କିନ୍ତୁ ଗଉରୀ ହସହସ ମୁଖରେ ବୋଉ ଆଡ଼କୁ ଚାହିଁ ନୀରବରେ ଆଁ କରିଦେଲା ।

ଏହି ସମୟରେ ସ୍ୟାଡୁ ବାର/ତେର ବର୍ଷର ଝିଅଟିଏ ଖଣ୍ଡେ କନାଧଡ଼ିରେ ଗୋଟିଏ ବିଲେଇ ଛୁଆକୁ ବାନ୍ଧି ଓଟାରି ଓଟାରି ଧାଇଁ ଆସୁଥିଲା; ଗଉରୀକୁ କନକ ହାତରୁ ଗୁଣ୍ଡା ନେବାର ଦେଖି ନିଜ ପ୍ରତି ସବେଗରେ ଧାବମାନ ବୋଉକୁ ବେଖାତିର କରି, ଅତି ବିଜ୍ଞଭାବରେ କଙ୍କାଳରେ ହାତ ଦେଇ ଛିଡ଼ା ହୋଇ ଗଉରୀ ଆଡ଼କୁ ଅନାଇ, ଦୁଷ୍ଟ ହସି ହସି କହିଲା - "କିଲୋ ଦେଈ, ଭାରିତ ଭଲେଇ ହଉଥିଲୁ, ଆଜି ଭଦ୍ରଖିଆଣୀ ଅଇଣ୍ଠାତ ମାହାପ୍ରସାଦ କଲୁଣି । ମୁଁ ଜାଣିଲି ଯେ ହଉ ହଉ ! କାଲି ଯଦି ମୋ ଅଇଣ୍ଠା ତତେ ନଖୋଇଚି, ଫେର୍ ଦେଖିବୁ ।" ସ୍ୟାଡୁ ବୋଉ ଇତିମଧ୍ୟରେ ଆସି ପଗଡ଼ି ଓଟାରି ଓଟାରି ସ୍ୟାଡକୁ ନେଇ ଯାଉଥିଲେ । ଏତିକିରେ ଝିଅଟି ଭେଁ ଭେଁ କରି ରଡ଼ି ଛାଡ଼ିଲା । ନୂଆବୋଉ ଆଗେ ଦେଈ ସାଙ୍ଗରେ ଖାଇଲା, ଏଥିଯୋଗେ ଅପମାନ; ଦେଈ ତା' ସାଙ୍ଗରେ ଖାଇବା ନାଁ ଶୁଣିଲେ ମାରି ଗୋଡ଼ାଏ, ଆଜି ନୂଆବୋଉ ସାଙ୍ଗେ ଖାଉଛି, ସେଥିଯୋଗେ ବି ଅଭିମାନ । ତଦୁପରି ବୋଉର ଏ ଆଚରଣ ପିଲାଟା ଆଉ କେତେ ସହିବ ? ଏଡ଼େ ପାଟି କରି ରଡ଼ିଲା । କନକ ସବୁ ଦେଖୁଥାଏ । ଝିଅଟିକୁ

କାନ୍ଦିବାର ଦେଖି ଖାଇଲାଠଉଁ ଚଟ୍ ଉଠିଯାଇ, ତା' ଖାଲି ହାତଟି ଧରି ଟାଣି ଆଣି ବେଲା ପାଖରେ ବସାଇ ତାକୁ ମଧ ଖୁଆଇ ଦେବାକୁ ପ୍ରୟାସ କଲା । କିନ୍ତୁ ରଙ୍ଗୀକୁ ପାରେ କିଏ ? ସେ ନ ଖାଇଲେ ସରିଲା —ପାଟିଟାକୁ ବୁଜି ଯଥାସମ୍ଭବ ଜୋରରେ ଚିହ୍ଲାର କରୁଥାଏ । ଗଉରୀ ମଧ ଶେଷରେ ଗୁଣ୍ଡାଏ ଭାତ ନେଇ ତା' ପାଟିରେ ପୂରାଇବାର ଚେଷ୍ଟା କଲା, କିନ୍ତୁ ପାରିଲା ନାହିଁ । ବୋଉ ବିରକ୍ତ ହୋଇ ଆସି କହିଲେ, ''ଲୋ ବହୂ, ଗୁଣ୍ଡାଏ ଭାତ ନେଇ ତା' ନାକରେ, କାନରେ ପୂରେଇ ଦବୁଟି । ତତେ ସେ ଢ଼େର୍ ହଇରାଣ କରିଚି, ତୁ ଛାଡୁନୁ କାହିଁକି ?'' ରଙ୍ଗୀ ମୁହଁ ଫିଟିଗଲା, କହିଲା, ''ସତେ ? ଭାରି ତ ଭଦ୍ରଖିଆଣୀ । ହଉ, ହଉ, ହଉ । ବୋଉ, ତୋତେ ବି ଦେଖିବି ରହ !'' ଏହି ସୁଯୋଗରେ କନକ ଗୁଣ୍ଡାଏ ଭାତ କୌଶଳରେ ରଙ୍ଗୀ ପାଟିରେ ପୂରାଇ ଦେଲା । ସେଇଠୁ ରଙ୍ଗୀ ହସିଉଠିଲା, ଗଉରୀକୁ ପୁଳାଏ ଦିପୁଳା ଚିମୁଟିଲା, ବିଲେଇ ଛୁଆଟାକୁ ଓଟାରି ଆଣି ନୂଆବୋଉ ମୁଣ୍ଡ ଉପରେ ଥୋଇଦେଇ । ଚକା ପକାଇ ଖୁସିରେ ଆଁ କରିଦେଲା ଏଥର, କିନ୍ତୁ ଗଉରୀ ହାତରୁ ଗୁଣ୍ଡା ନ ନେଲା କେଭେଁ ।

ଗଉରୀ କହିଲା, ''ରହ, ରାଣ୍ଡ ରହ; ଦେଖିବି, ଏ ନବାବୀ ମିଜାସ ତୋର କେତେଦିନ ରହିବ ! ବୋଉ, ରଙ୍ଗୀ ବାହାଘରକୁ ମତେ ନ ଆଣିଲେ ଫେର ଦେଖିବୁ—ହଁ !''

ବୋଉ କହିଲେ-''ମତେ କାହିଁକି କହୁଚୁ ଲୋ ଝିଅ । ବହୂକୁ (ଅର୍ଥାତ୍ କନକକୁ କହ) !''

(୩)

ଦୁଇ—ତିନି ଦିନ ପରର କଥା । ବାହାଘର ଗୋଳମାଳ ଭାଙ୍ଗିଗଲାଣି । ରାତି ଚାରିଘଡ଼ି ସରିକି ହେବ, ବାହାର ପିଣ୍ଡା ଉପରେ ଖଣ୍ଡେ ସଉପମସୁଣି ଉପରେ ଶୋଇଥିଲେ ନିଧିବୋଉ; ମୁଣ୍ଡ ପାଖରେ କାନ୍ଥକୁ ଆଉଜି ବସି ପାନ ଚୋବାଉ ଚୋବାଉ ବିଞ୍ଚଣା ଖଣ୍ଡିକରେ ବିଞ୍ଚି ହେଉଥିଲା ଗଉରୀ । କଥାବାର୍ତ୍ତା କିଛି ନାହିଁ । ଏହି ସମୟରେ ସ୍ୟାତୁ କନକ ଚୁପ୍ ଚୁପ୍ ଆସି, ଖଣ୍ଡିଏ ପାନ ଗଉରୀ ମୁହଁରେ ସବଳେ ଗୁଞ୍ଜି ଦେଇ, ଟିପାଏ ଛେଚା ପାନ ଶାଶୁଙ୍କ ପାଟିରେ ଦେବାକୁ ଯାଉଥିଲା, କିନ୍ତୁ ଶାଶୁ ତା' ହାତରୁ ନେଇ ନିଜେ ପାଟିରେ ଦେଲେ । କନକ ପୁଣି ସେହିପରି ଧୀରେ ଧୀରେ ବାହାରି ଯାଉଥିଲା; କିନ୍ତୁ ଶାଶୁ କହିଲେ, ''ବହୂ, ଏଇଠିକି ଆ, ଶୁଣ !'' କନକ ଶାଶୁଙ୍କ ଗମ୍ଭୀର ଭାବ

ଦେଖି ଓଢ଼ଣା ଭିତରୁ ତାଙ୍କ ମୁହଁକୁ ଚାହିଁ କିଛି ବିସ୍ମିତ ହେଲା; କିନ୍ତୁ ଧୀରେ ଧୀରେ ଆସି ତାଙ୍କ ପାଖରେ ଛିଡ଼ା ହେଲା । ନିଧିବୋଉ ସେହିପରି ନୀରବ ଭାବରେଶୋଇଥାନ୍ତି । କନକକୁ ଏପରି ଭାବରେ ଛିଡ଼ା ହେବାକୁ ଅଡୁଆ ଅଡୁଆ ଲାଗିଲା । ତେଣୁ ସେ ବସି ପଡ଼ି ଶାଶୁଙ୍କ ପଦସେବାର ଆୟୋଜନ କଲା । କିନ୍ତୁ ଗଉରୀ ଓ ବୋଉ ଦୁହେଁ ସମସ୍ୱରରେ ମନା କଲେ-''ମଲା, ଅଷ୍ଟମଙ୍ଗୁଳୀ ଯାଇନାହିଁ । ଏ କ'ଣ ମା!'' ନିଧିବୋଉ ଏଥର ଉଠି ବସି ବହୂର ଗୋଟିଏ ହାତ ଧରି କହିଲେ– ''ଝିଅ, ମୁଁ ଆସି ବୁଢ଼ୀ ହେଲିଣି । ମୋର ବା ଆଉ କେତେ ଦିନ । ଏ ଘରଦୁଆର ସବୁ ତୋର—ତୁହି ତ ଲୋ ଝିଅ, ସଂସାର କରିବୁ । ମୁଁ ପୁଅକୁ କହିଚି, ତୋତେ ବି କହିଲି —ମତେ ଏବେ ଠାକୁରଦରାକୁ (ପୁରୀ) ବିଦା କରିଦିଅ । ସେଠି ଗଉରୀର, ମୋର ରହିବୁଁ । ଏକାରେ ଗଉରୀକୁ ବି କଷ୍ଟ ପଡୁଚି । ସେମିତିଟାରେ ରଖେଇବାକୁ ମଧ ମନ ବଳୁ ନାହିଁ; ଶାଶୁଘର ହେଲେ କ'ଣ ହେଲା, କିଏ ଅଛି ? ତହିଁକି ପୁରଷ୍ତମ ପରି ଯାଗା । ତା' କପାଳ ତ ଜଳି ଯାଇଚି ଲୋ ଝିଅ । ଜୋଇଁକି ଦେଖି ଦେଇଥିଲି ସିନା, ନଇଲେ କାହିଁ କପଳିଶର, ନା କାହିଁ ପୁରଷ୍ତମ । ସେ ତ ମୋ କରମ ଦୋଷ, କାହାକୁ କହିବି ?'' ଏତକ କହି, ଆଉ ଗୋଟାଏ ହାତ ବଢ଼ାଇ ଗଉରୀର ଗୋଟିଏ ହାତ ଆଣି, କନକ ହାତରେ ଦେଇ କହିଲେ,- ''ଦେଖେ, ଝିଅ, ମୋର ଆଉ କେତେ କାଳକୁ କେତେ କଥା ! ଏହି ଫଟାକପାଳୀଟି ତୋତେ ଲାଗିଲା । ମୁଁ ପୁରଷ୍ତମରେ ମରିବି । ମୋ ମଲା ଖବର ପାଇଲା ବାସି ଗଉରୀକୁ ତୁ ନେଇ ଆସିବୁ —ମୋ ଦିହ ଛୁଇଁ କରି କହନି ।'' ଏହିଠାରେ ଗଉରୀ ଛାଟିପିଟି ହୋଇ ପଳାଇଗଲା । କନକ ନିହାତି କଞ୍ଚା ବହୂ । ଏ କଥାର ପ୍ରତିବାଦ ମୂଳରୁ ଶେଷ ପର୍ଯ୍ୟନ୍ତ ସେ କରିପାରିଥାନ୍ତା, କିନ୍ତୁ ଏ ସ୍ଥଳରେ ଖାଲି ଚୁପ୍ କରି ଶୁଣିବାକୁ ବାଧ ବୋଲି କିଛି କହିଲା ନାହିଁ । ଏଇ କେତେଦିନରେ ଏ ଘରର ସେ କ'ଣ ବା ବୁଝିବ ? ତେବେ କାଲି ରାତିରେ ସ୍ୱାମୀଙ୍କଠାରୁ ଏ ବିଷୟରେ ଆଭାସ ପାଇଥିଲା । ତା' ମନରେ ବର୍ତ୍ତମାନ ପ୍ରଥମ ଚିନ୍ତା ହେଲା —ତେବେ କ'ଣ ଏହି ଦୟାର ପ୍ରତିମାଟି ମଧ ଚାଲିଯିବେ — ଗଉରୀ ଅପା, ଯାହା ଯୋଗେ ସେ ଶାଶୁଘରକୁ ଶାଶୁଘର ବୋଲି ଜାଣି ନାହିଁ, ସେ ଚାଲିଯିବେ ! ହୃଦୟର ନିଭୃତ କୋଣରେ ମଧ ଆଉ ଗୋଟାଏ କଥା ରହି ରହି ଏହା ସଙ୍ଗେ ମିଶି ଯାଉଥିଲା । ଯାହାଙ୍କ ଜୀବନ ସହିତ ତା' ଜୀବନ ସୁଦୃଢ଼ ଭାବରେ ବନ୍ଧାହେଲାରୁ ଏ ସବୁ, ସେ ମଧ ଅଳ୍ପ ଦିନେ ଚାଲିଯିବେ କହୁଥିଲେ —ଚାକିରି ସ୍ଥାନକୁ । ତେବେ କ'ଣ ତା'ର ଦୁଇଟିଯାକ ଅବଲମ୍ବନ ଏକାବେଳକେ ଖସିଯିବ !

କନକ ଭାବି ଦେଖିଲା —ଅନ୍ତରର ଅନ୍ତସ୍ତମ ପ୍ରଦେଶକୁ ନିର୍ମମ ଚାହାଣିରେ ଚାହିଁ ଦେଖିଲା - ସେଠାରେ ଗୋଟାଏ ସଦ୍ୟ କ୍ଷତଚିହ୍ନ; ଓଦା ମାଟିରେ ଲଙ୍ଗଳ ଚାଲିଗଲେ, ଯେପରି ଦୁଇପାଖକୁ ମେଲା ହୋଇ ଚିହ୍ନପଡ଼ିଯାଏ, ସେହିପରି ଆଁ କରି ରହିଚି; ଆଉ ଦୁଇ ଦିଗରୁ ଦିଓଟି ହାତ ସେ ନିଜ ଚେଷ୍ଟାରେ ଧରିଆଣି ଦୁଇ ପାଖରୁ ଲଗାଇ ନିଜ ହାତରେ ସଜୋରରେ ଚାପି ଧରି ସେଇ ଫାଙ୍କ ବୁଜିବାର ପ୍ରୟସ ପାଉଛି। ଆଜି ସୁଦ୍ଧା ସେ ସଜୀବ ଚଞ୍ଚଳ ହାତ ଯୋଡ଼ିକର ସଦ୍ୟ ଛାୟାରେ ଚିହ୍ନଟି ତା' ଆଖି ଆଗରୁ ଅକାଳ-ଘନ-ମେଘଢ଼ଙ୍କା ଛାୟାପଥ ପରି ଲୁଚି ରହିପାରିଛି। ନିଜ ପ୍ରତି ତା'ର ବିଶ୍ୱାସ ହୋଇପାରୁନାହିଁ। ମନରେ ବିବାହ ପୂର୍ବରୁ ସେ ଯେଉଁ ଦମ୍ଭ କରିଥିଲା, ସେଇଟା କୁଆଡ଼େ ପାଣି ହୋଇଗଲାଣି। ସେ ଦୁଇଟିଯାକ ହାତ ଏତେ ଚଞ୍ଚଳ ଅପସାରିତ ହୋଇଗଲେ ତା' ଅବସ୍ଥା କ'ଣ ହେବ ?

ପତିଦେବତାଙ୍କ ସମ୍ମୁଖରେ ସ୍ଥାପିତ ହୋଇ, ଦେବୀସ୍ୱରୂପିଣୀ ବିଧବା ନଣନ୍ଦଟିର ସଙ୍ଗସୁଖ ଉପଭୋଗ କରି, ନୂତନ ଜୀବନର ନୂତନତ୍ୱରେ ଅତୀତ ଜୀବନର କାହାଣୀ କିଞ୍ଚିତ୍ ବିସର୍ଜନ କରିଦେଇ ପାରିଥିଲେ ସୁଦ୍ଧା କନକର ନିଜ ପ୍ରତି ବିଶ୍ୱାସ ନ ବଢ଼ି କ୍ରମେ କମି ଯାଇଅଛି। ଶାଶୁଘରେ ଏ କେତେଦିନ ସେ ଖାଲି ସଙ୍ଗ ଖୋଜି ବୁଲୁଛି, କାର୍ଯ୍ୟ ଖୋଜି ବଲୁଛି; କାହାରି ଗୋଟାଏ ଅବଲମ୍ବନ ପାଇଲାମାତ୍ରେ ତାକୁ ସର୍ବସ୍ୱଧନ କରିବାକୁ ବାଧ ହେଉଅଛି। ଏ ଦୁର୍ବଳତା ତା'ର ହେବ, ଏ ଧାରଣା କେଭେଁ କରିନଥିଲା। ଏ ଦୁର୍ବଳତାର କାରଣ ମଧ ସେ ବୁଝିଛି, ଅନ୍ତରେ ଅନ୍ତରେ ଅନୁଭବ କରୁଛି। ସେଥିଯୋଗୁଁ ଆଜି ଗଉରୀର ଯିବା ଖବରରେ ତା' ମୁଣ୍ଡରେ ବଜ୍ରପାତ ହେଲା କି ଆଉ !

ଏହିପରି କେତେ କ'ଣ ଭାବୁଭାବୁ ଅଜଣାରେ ତା' ଆଖିରୁ ଲୁହ ବହି ପଡ଼ିଲା। ଶାଶୁ ବୁଝି ପାରିଲେ, ବହୂ କାନ୍ଦୁଛି। ସାନ୍ତ୍ୱନା ସ୍ୱରରେ କହିଲେ, ''ଛି, ବହୂ, କାନ୍ଦୁଚୁ ? କ'ଣ ପେଇଁ ମ- ମୁଁ ତ ଏଇଲାଗେ ଆଉ ପୁରସ୍ତମ ବାହାରି ଯାଉନାହିଁ। ତୋର ବର୍ଷକ ଏଠାରେ ପୂରୁ, ଗଉରୀ ପଛକେ ଯିବ ଚାଲି ! ଏତେଦିନ ଏକାରେ ଚଳିଲା, ଆଉ ବର୍ଷେ ଏବେ ଚଳିବ, ଆଉ ହବ କ'ଣ ? ପୁଣି, ରଙ୍ଗୀଟି - 'ହଇ ଲୋ ରଙ୍ଗୀ, ରଙ୍ଗୀ ମ - ମଲୁ କି ଲୋ ? ଆ, ଆ ଟିକିଏ ଯାଡ଼େ, ଶୁଣି ଯା, ମୋ ସୁନାଝିଅଟି ପରା।' ହଁ, ରଙ୍ଗୀଟି କିମିତି ପାର ହୋଇଯିବ, ସେଇ ଚିନ୍ତା ତ ମତେ ବଳେଇଲାଣି, ମୁଁ କ'ଣ ପୁରସ୍ତମ ଯିବି ? ମତେ ବା ସେ ଯୋଗ କାହିଁ ? ଏଇଠି ଘାଣ୍ଟି ହେଇ ମରିବି ସିନା !'' ଯା କହି ବୁଢ଼ୀ ପୁଣି ମୌନ ହୋଇ କ'ଣ ଭାବିବାକୁ ଲାଗିଲେ। କନକ

ସେହିପରି ନୀରବରେ କାନ୍ଦୁଥାଏ । ଇତି ମଧ୍ୟରେ ରଙ୍ଗୀ ଧାଇଁ ଧାଇଁ ଆସି ବୋଉ ପେଟ ଉପରେ ଲଥ କରି ପଡ଼ି ବୋଉ ପାଟିରେ ଆଙ୍ଗୁଠି ପୂରାଇବାର ଚେଷ୍ଟା ଆରମ୍ଭ କଲା । ବୁଢ଼ୀ ବିରକ୍ତ ହୋଇ କହିଲେ, "ମଲା ! ଏ ଝିଅଖଣ୍ଡ କ'ଣ ହଉଚି ମ !" ଏବଂ ପରେ ରଙ୍ଗୀକୁ ହାତରେ ଆଡ଼େଇ ଦବାକୁ ଗଲେ । କିନ୍ତୁ ରଙ୍ଗୀ କ'ଣ ଛାଡ଼ିବା ଲୋକ ? ସେ ବୋଉ ପାଟିରେ ଆଙ୍ଗୁଠି ପୂରାଇବ । ଶେଷରେ ବୁଢ଼ୀ ହାର ମାନିଲେ । ଝିଅ ବି ଆଙ୍ଗୁଠିରୁ ଯୋଡ଼ାଏ ତିନିଟା ତାଙ୍କ ପାଟିରେ ପୂରାଇ ସେଠାରୁ କିଛି ଜିନିଷ ଆଣି ଯାହା କଲା, ଖୋଲି କହିଲେ ଚଳିବ ନାହିଁ —ସେଇଟା ନିହାତି ବିଜ୍ଞାନ ଅସମ୍ମତ ।

ରଙ୍ଗୀ ପାନବୋଳା ରଙ୍ଗା ହାତକୁ ଲୁଚାଇ ଲୁଚାଇ କନକ କାନିରେ ପୋଛିଲାବେଳେ ନିଧିବୋଉ ଉଠି ବସି ତା' ହାତଟି ଧରି, କନକ ହାତଟି ମଧ୍ୟ ଭିଡ଼ି ଆଣି ସେଥିରେ ଥୋଇଲେ ଓ କହିଲେ —"ଝିଅ ! ଏ ବାଲୁତ ପିଲାଟି ବି ତତେ ନାଗିଲା । ମୁଁ ତ ଆଜି ଅଛି, କାଲି ନାହିଁ । ତାକୁ ବାହାଚୋରା କରିବ !" ଏତିକିରେ କିନ୍ତୁ ରଙ୍ଗୀ ମହାରାଗ ହୋଇ ବୋଉ ଓ କନକ ଉଭୟଙ୍କୁ ଦୁଇ ହାତରେ ବିଧା ଚାପଡ଼ା ମାରି ବ୍ୟସ୍ତ କରିପକାଇଲା । ସ୍ୟାତ୍ର ଗଉରୀ ଆସି ରଙ୍ଗୀର ଖୋଷାଟି ଧରି ଟାଣୁ ଟାଣୁ କହିଲା,— "ମଲା ମୋର, ବାହା ହବ ନେଇଁ ପରା !" ରଙ୍ଗୀ କୌଣସିମତେ ନିଜକୁ ମୁକ୍ତ କରି ନେଇ ପଳାଇ ଯିବାର ଉପକ୍ରମ କରୁକରୁ କହିଲା —"କି, ମୁଁ କାହିଁକି ବା' ହେମି ? ତୁ ବା' ହଉନୁ !" ଝିଅଟିର ରାଗ ଦେଖି କନକ ତାକୁ ଧରିବାକୁ ଯାଉଥିଲା, କିନ୍ତୁ ରଙ୍ଗୀ ତାକୁ ଜୋର୍‌ରେ ଠେଲିଦେଇ ପଳାଇ ଯାଉଁ ଯାଉଁ କହିଗଲା —"ଓ, ଭାରିତ ନୂଆବୋଉ ଯା ଯା; ତବେ ତମ ଗଉରୀ ଅପା ଚଉଁରୀମୁଣ୍ଡି ପାଖକୁ ଯା !"

ରଙ୍ଗୀର ଭାରି ଅଭିମାନ ଯେ, ନୂଆବୋଉ ଉପରେ ତା'ର ଷୋଳପଣ ଅଧିକାରରୁ ତାକୁ ଅନ୍ୟାୟରେ ବଞ୍ଚିତ କରୁଚି ସେଇ ଗଉରୀ ।

+ + + + +

ଏଣେ ଗଉରୀ ଓ କନକ ମଧ୍ୟରେ ଗୋଟାଏ ଘନିଷ୍ଠ ଭାବ ହୋଇଆସୁଥିଲା । ଗଉରୀର ଯିବା କଥାରେ ସେଟା କ୍ରମେ ଆହୁରି ଚଞ୍ଚଳ ଚଞ୍ଚଳ ବଢ଼ିବାକୁ ଲାଗିଲା । ଅବଶ୍ୟ କନକ ମନେ ମନେ ସ୍ଥିର କରି ସାରିଥିଲା ଯେ, ସେ ତା' ପାରୁପର୍ଯ୍ୟନ୍ତ କେବେଁ ଗଉରୀ ଅପାଙ୍କୁ ଛାଡ଼ିବ ନାହିଁ ।

ଗଉରୀ ନ ଥିଲେ କନକର ଶାଶୁଘର ଯେ କଠୋର କାରାବାସଠାରୁ ବଳିଯିବ, ଏକଥା ଆଉ କେହି ବୁଝନ୍ତୁ ବା ନ ବୁଝନ୍ତୁ, କନକ ବେଶ୍ ବୁଝି ପାରିଥିଲା । ଆଉ କନକକୁ ପାଇ ଗଉରୀର ଚିରସମାନ ନୀରସ ଜୀବନ ମଧ୍ୟ ଅନେକାଂଶରେ ପରିବର୍ତ୍ତିତ ହୋଇ ଆସିଥିଲା —ତାହାର ସୁନ୍ଦର ମୁହଁଟିରେ ଦୟା ଓ ସରଳତା ସହିତ ଯେଉଁ ବିଷାଦର ମଳିନ ଛାୟାଟିକ ଲାଖି ରହିଥାଏ, ସେଟା କ୍ରମେ ଅନେକ ପରିମାଣରେ ଊଣା ହୋଇ ଆସିଥିଲା ।

ନୂତନ ପ୍ରଣୟର ପ୍ରଥମ ଭାଗଟା ଉଭୟଙ୍କର ବେଶ୍ ସୁଖରେ କଟିଲା । ଏହି ସମୟରେ ମନ କିଣାକିଣି ପାଇଁ ଗୋଟାଏ ଅରି ଉଭୟଙ୍କ ହୃଦୟରେ ଅଜ୍ଞାତଭାବରେ ନିତ୍ୟ ଜାଗ୍ରତ ରହି ସ୍ନେହବନ୍ଧନକୁ ଦୃଢ଼ରୁ ଦୃଢ଼ତର କରି ପକାଇଲା । ବାହ୍ୟ କଥାରେ ଅତି ଅଳ୍ପ ସମୟ ମଧ୍ୟରେ ଯେତେଦୂର ସମ୍ଭବ ମନ କିଣାକିଣି ହୋଇଗଲା, କ୍ରମେ ହୃଦୟ ଆଉ ସେତିକିରେ ତୃପ୍ତ ହୋଇ ରହିପାରିଲା ନାହିଁ —ଅନ୍ତରର କଥା ଲୋଡ଼ା ପଡ଼ିଲା । ହୃଦୟ ଖୋଜିଲା ହୃଦୟ ସହିତ ଏକାବେଳକେ ଗ୍ରଥିତ ଓ ମିଶ୍ରିତ ହୋଇଯିବାକୁ ।

ଉଭୟେ ଉଭୟଙ୍କର ବାହ୍ୟ ସୁଖ ପ୍ରତି ଯଥାସମ୍ଭବ ଦୃଷ୍ଟି ରଖି, ଖୋଜିଲୋଡ଼ି ଆଣିଥୋଇ, ଏ ମଧୁର ପ୍ରତିଦ୍ୱନ୍ଦ୍ୱିତାରେ ହାରି ଖୁସି, ଜିତି ଖୁସି ହେଲେ ସତ୍ୟ, କିନ୍ତୁ ଏଥିରେ ତୃପ୍ତି ହେବା ତ ଦୂରର କଥା; ବରଂ ନିଜ ପ୍ରତି ମମତା ସଙ୍ଗେ ସଙ୍ଗେ ପରସ୍ପର ପାଇଁ ଚିନ୍ତା ବଢ଼ିବାକୁ ଲାଗିଲା । ଉଭୟେ କି ଗୋଟାଏ ଦୁର୍ବୋଧ, ଅଲଙ୍ଘ୍ୟ ନିୟମରେ ଚାଳିତ ହୋଇ ପ୍ରତ୍ୟେକେ ଅପରର ନିଭୃତ ଜୀବନ ପ୍ରତି —ହୃଦୟର ଜୀବନ ପ୍ରତି, —ବିଚଳିତ ଓ ଶଙ୍କିତଭାବରେ ଚାହିଁ ଉଦଗ୍ରୀବ ହୋଇ ରହିଲେ ।

ସୁଖରେ, ଆନନ୍ଦରେ, ଜୀବନର ଅସାର ବାହାର ଚାକଚକ୍ୟରେ ମନବୋଧ ହେଲା ନାହିଁ । ଲୋଡ଼ା ପଡ଼ିଲା ପରଦା ସେ ପଟର ଦୃଶ୍ୟ । ହସଖୁସିରେ ପ୍ରଣୟାବେଗ ଯେତିକି ଭାସି ବଢ଼ି ବଢ଼ି ଗଲା, ଅନ୍ୟର ଦୁଃଖକୁ ନିଜର କରି କାନ୍ଦିବାକୁ, ବାଣ୍ଟିନେବାକୁ, ପ୍ରାଣ ତେତିକି ବ୍ୟାକୁଳ ହୋଇଉଠିଲା । ଏଡ଼େ ଗଭୀର ପ୍ରଣୟ, ଏତେ ଅଳ୍ପ ସମୟ ମଧ୍ୟରେ ବୋଧହୁଏ କେବଳ ନାରୀ ନାରୀ ମଧ୍ୟରେ ହିଁ ସମ୍ଭବ ।

କନକ ସମୟ-ଅସମୟରେ ତା' ବାପଘର କଥା ଉଠାଏ । ପୁଣି ବେଳେବେଳେ ଭାବେ, ଯାଙ୍କର ବା ସେଥିରେ କ'ଣ ଅଛି ? କିନ୍ତୁ ଗଉରୀର ଟିକିଏ ଆଗ୍ରହ

ଦେଖିଲେ ସେ ପ୍ରସଙ୍ଗ ଉଠେ । ଗଉରୀ ତା' ନିଜ ବିଷୟ ଖୁବ୍ କମ୍ କହେ —ବୋଧ ହୁଏ, ଭାବେ ବି ଖୁବ୍ କମ୍ । ସେ ବିଷୟରେ କନକ ବି ସାହସ କରି କିଛି କହିପାରେ ନାହିଁ । ତେବେ ବେଳେବେଳେ ତା' ଶାଶୁଘର କଥା ପଚାରେ, କିନ୍ତୁ ଗଉରୀର ମନୋଭାବ ଏ ବିଷୟରେ ଠିକ୍ ନ ଧରି ପାରିବାରୁ ଆଉ ବେଶି ଅଗ୍ରସର ହୋଇପାରେନାହିଁ ।

ଦିନେ ଏହିପରି କୌଣସି କଥା ପଡୁଁ ପଡୁଁ ଗଉରୀ ହଠାତ୍ ଉଠି କନକକୁ ସ୍ନେହରେ ଠେଲି ଦେଇ କହିଲା —"ହଇ ଲୋ ବନ୍ଧୁ, ତୁଇ ପରା ମୋ ଧର୍ମକର୍ମ ସବୁ ଛଡ଼େଇଲୁ, ତୋରି ଲାଗି ମୋର ସବୁ ଗଲାଣି !" ଏହା କହି ହସି ହସି ସେଠାରୁ ବାହାରିଗଲା; କନକକୁ କିନ୍ତୁ ମହାଭାବନାରେ ପକାଇ ଦେଇଗଲା ।

ଏହିପରି ସନ୍ଧିସ୍ଥଳରେ ପଡ଼ିଲା ଅଷ୍ଟମଙ୍ଗଳା । ସପ୍ତମଙ୍ଗଳାଠାରୁ ତିନିଦିନ କନକକୁ 'ବିଷ'ରେ ଲୁଚି ରହିବାକୁ ହେବ—ଗୋଟାଏ ଘରେ କୟେଦ ହୋଇ ରହିବାକୁ ପଡ଼ିବ । ଶାଶୁଘରର କେହି ତାକୁ ଦେଖିବେ ନାହିଁ, କି ସେ କାହାରିକୁ ଦେଖିବ ନାହିଁ —ଏହିପରି କାଳେ ଶାସ୍ତ୍ରରେ ଲେଖାଅଛି । ତେବେ ନଣନ୍ଦ ପକ୍ଷରେ ଏ ନିୟମଟା ଖଟେ ନାହିଁ ବୋଲି ମଧ କୌଣସି କୌଣସି ମୁନିଙ୍କ ମତ । ଏ ସ୍ଥଳରେ ଗଉରୀ ସ୍ୱଚ୍ଛନ୍ଦରେ ପୂର୍ବବତ୍ କନକ ସଙ୍ଗରେ ମିଳିମିଶି ପାରିଥାନ୍ତା । କିନ୍ତୁ ସେ ଧରି ବସିଲା—"ପରଘରିୟାଣୀ ବୋଲି ସିନା ନଣନ୍ଦ ଭାଉଜର 'ବିଷ' ଦୃଷ୍ଟିରେ ପଡ଼ିଲେ ମଧ କୌଣସି ଦୋଷ ନାହିଁ । ଏଟା ବା ରଙ୍ଗୀଠେଇଁ ଖଟିବ । ମୁଁ ତ ତମରି ବେକରେ ବନ୍ଧା, ମୋ ଠେଇଁ ଖଟିବ କିପରି ?"

କନକ କହିଲା, "ଅପା, ମୁଁ ତମକୁ ଛାଡ଼ି କିପରି ଘରୁଟାରେ ପଶି ତିନିଦିନ ଚଳିମି ?"

ଗଉରୀ— କି, ରଙ୍ଗୀ ନାହିଁକି ? ସେ ତ ମୁଁ ନାହିଁ ବୋଲି ଜାଣିଲେ ସଂସାରଯାକ ନୂଆବୋହୂକୁ ଛାଡ଼ି ତୋରି କୁକୁର ହୋଇ ରହିବ !

କନକ—ଆଚ୍ଛା, ତୁମେ କ'ଣ ଅପା ଜମାରୁ ଟିକିଏ ବି ଆସିବ ନାହିଁ ?

ଗଉରୀ—ନାଇଁ ମ, ତିନିଟା ଦିନ ତ, ଏଇଥିପାଇଁ ଏତେ କଥା ? ନା ନା, ମୁଁ ଏ ଦୁଆର ବି ମାଡ଼ିବି ନାହିଁ । ତୁ ମତେ ଦେଖିଲେ 'ବିଷ' ପରି କରିବୁ ।

କନକ—ଇସ୍ 'ବିଷ' ନା ଆଉ କିଛି ? ସତେ ଇମିତି ସବୁ ହୁଏ ନା, ଅପା ? ନା ଲୋ ମା, କାଳେ ହଉଥିବ—କ'ଣ କରୁଥିବ । ତୁମେ ମତେ ଦେଖି ପକେଇଲେ ମୁଁ ତୁମର ବିଷ ହୋଇଯିମି । ନା, ମୋର ଆଉ !

ଅତଏବ ଏଇ ବନ୍ଦୋବସ୍ତ ଠିକ୍ ହେଲା । ସାତମଙ୍ଗଳା ରାତିରେ ଗଉରୀ କନକକୁ ନେଇ ତା' ଶୋଇବା ଘରେ ଜବରଦସ୍ତି ପୂରାଇଲାବେଳେ କନକ ତା' ହାତଟି ଧରି ପକାଇ କହିଲା, ''ଯା' ଅପା, ତମୁକୁ ଏବେ ଧର୍ମକର୍ମ କରିବାକୁ ଢେର୍ ବେଳ ମିଳିବ ଯେ ' ଏକା ମୋ ନାଗି ତମ ଠାକୁରଙ୍କୁ ପଦେଅଧେ. କହୁଥିବ । ମୁଁ ବଡ଼ ଦୁଃଖୀ !'' ଏତିକିରେ କନକ ଘରଭିତରେ ପହଞ୍ଚିଗଲା ଓ ଭିତରୁ କିଏ ଗୋଟିଏ ଦୁଆର ବନ୍ଦ କରିଦେଲା । ଗଉରୀ ସେହିଠାରେ ଥକ୍କା ହୋଇ କିଛିକ୍ଷଣ ଛିଡ଼ା ହୋଇ ରହିଗଲା । କନକର ତ ଏ ଭାବ ସେ କେବେ ଦେଖିନାହିଁ - ଏପରି କଥା ତ ମାଇକିନାମାତ୍ରେ କହିଥାନ୍ତି, କିନ୍ତୁ କନକ ପରି ତ କେହି କହେନାହିଁ । କଥାଠାରୁ କନକର ମୁଖଭାବ ଓ କ'ଣ୍ଠସ୍ୱରଟା ହିଁ ଗଉରୀକୁ ଅଧିକ ସ୍ତମ୍ଭିତ କରିପକାଇଥିଲା । ସେ ଆନ ମନରେ ଭାବୁଁ ଭାବୁଁ ଧୀରେ ଧୀରେ ସେଠାରୁ ଚାଲିଗଲା । କିନ୍ତୁ କନକର ସେ ଭାବ, ସେ କ'ଣ୍ଠସ୍ୱର ଓ ସେ କଥା ସେ କୌଣସିମତେ ମନରୁ ଦୂର କରିପାରିଲା ନାହିଁ । ସେ ସବୁର ସଜୀବ କରୁଣତାଟି ତା' ନିଜ ହୃଦୟତନ୍ତ୍ରୀର କୌଣସି ଗୋଟାଏ ଗୂଢ଼ ମୂର୍ଚ୍ଛନା ସହିତ କି ଅଜ୍ଞାତ ସାମଞ୍ଜସ୍ୟବଳରୁ ଏକ ତାନରେ ବାଜି ଉଠିଲା; ତା' ନିଜ ଅନ୍ତରର କେଉଁ ଗୁପ୍ତ ପ୍ରଦେଶରେ ଚିରସୁପ୍ତ କି ଗୋଟାଏ ସଜୀବ ହାହାକାର ଏ ସ୍ୱରରେ ହଠାତ ଜାଗି ଉଠି ଏହା ସହିତ ମିଳିତ ଓ ଏକୀଭୂତ ହେବାକୁ ଚାହିଁଲା ।

ମନରେ ଘୋର ଅଶାନ୍ତି ଓ ଦୁର୍ବହ ବିଷାଦର ଭାର ଘେନି ଗଉରୀ ଗଲା ଶୋଇବାକୁ । ଅତି କରୁଣଭାବରେ ବିଛଣାରେ ଲୋଟି ହୋଇ ପଡ଼ି, ସାଶ୍ରୁନୟନରେ ସାଷ୍ଟାଙ୍ଗ ପ୍ରଣାମ କରି ସେ ତାହାର ଠାକୁରଙ୍କୁ ଏକମନରେ ଡାକିଲା—କେବଳ ନିଜ ପାଇଁ ନୁହେଁ, କନକ ପାଇଁ ଏକା ମଧ ନୁହେଁ —ସାରା ସଂସାରର ଜଣାଅଜଣା ଯାବତୀୟ ଦୁଃଖିନୀ ନାରୀଙ୍କ ପାଇଁ ।

ନାରୀ ଛଡ଼ା ନାରୀ-ହୃଦୟର ମର୍ମ ଆଉ ବୁଝିବ କିଏ ?

\+ + + + +

## (୪)

ଦଶମଙ୍ଗଳା ଦିନ ସକାଳେ ଗଉରୀ ଯେତେବେଳେ କନକ ଯେଉଁ ପରସ୍ତରେ ଗାଧୋଉଥାଏ, ତାହାରି ଦୁଆରେ ଉଣ୍ଟି ଉଣ୍ଟି ଚାହୁଁଥାଏ, କନକ ସେତେବେଳେ ବ୍ୟସ୍ତସମସ୍ତ ହୋଇ ଖଣ୍ଡେ ପାଟଲୁଗା ଦେହରେ ବେଢ଼ାଇ ଦେଇ ଓଦା କେଶ ଝାଡ଼ିବାରେ ବ୍ୟସ୍ତ । ସେ କେତେବେଳେ ବାହାରିବ, ଏହି ଅପେକ୍ଷାରେ ଗଉରୀ ଦୁଆରେ ଉଦ୍‌ଗ୍ରୀବ ହୋଇ ଠିଆ ହୋଇଥାଏ । ଅତଏବ ଭିତରୁ ଦାସୀଟା ଦୁଆର ଖୋଲିବାମାତ୍ରେ କନକ ଆଖି ପ୍ରଥମେ ସଳଖେ ପଡ଼ିଲା ଗଉରୀ ଉପରେ । ସଲ୍ଲଜ ହସ ହସି ହସି କନକ ଗୁଡ଼ତାଟିଆଟା ହାତରେ ଧରି, ଧାଇଁ ଆସି ଗଉରୀ ଆଗରେ ଥୋଇ ଦେଇ ବିଧିମତେ ଦଣ୍ଡବତ ହେବାକୁ ଯାଉଥିଲା, କିନ୍ତୁ ଗଉରୀ ଏକାବେଳକେ ତାକୁ କୁଣ୍ଢାଇ ପକାଇ ଭିତରକୁ ଟାଣି ନେଇଗଲା; ପୁଣି ଗଦ୍‌ଗଦ୍ ସ୍ୱରରେ କହିଲା, ‘‘ହଇ ଲୋ ଟୋକୀ, ତୁ ତ ବହୂ ହେଲୁ ! ‘ବିଷ’, ଲୁଚାଲୁଚି, ସବୁ ତୋତେ ସାଜେ —ତୋଠେଇଁ ବି ଏ ସବୁ ସହଯ୍ୟ ହେଇଯିବ ! ନିଆଁ ନଗା ମୁଁ କାହିଁକି ଏ ତିନି ଦିନ ଛଟପଟ ହେଇ ମରୁଚି କି ଲୋ ! ତୋଠେଇଁ କ’ଣ ଅଛି ମ, ଦିନ ପାଞ୍ଚୁଟା ଛଅଟାରେ ମୋତେ ଏକଦମ୍ —!’’ କନକ ଗଉରୀ କଥାରେ ତା’ର ଆନ୍ତରିକ ସ୍ନେହଭାବଟାକୁ ହିଁ ଦେଖିଲା, ବୁଝିଲା, ବୁଝିଲା; ଜାଣିଲା ଏ ସ୍ନେହର ପ୍ରତିଦାନ କେଡ଼େ ଅମୂଲ୍ୟ !

ପ୍ରକୃତରେ ‘ବିଷ’ ପୂର୍ବ ଚାରି—ପାଞ୍ଚ ଦିନର ସଙ୍ଗମେଳ ଯାହା କରିପାରିନାହିଁ, ଏ ‘ବିଷ’ ତିନିଦିନର ଅଦର୍ଶନ ତାହା ଅତି ସହଜରେ ସାଧିତ କଲା । ଇତିପୂର୍ବରୁ ଗଉରୀ କନକକୁ ‘ବହୂ’ ‘ତମେ’ ଇତ୍ୟାଦି ଶିଷ୍ଟାଚାରର ବହିର୍ଭୂତ କରି ପାରିନଥିଲା; କିନ୍ତୁ ଏଇ ତିନିଦିନରେ କୁଳାଚାର, ଶିଷ୍ଟାଚାରସବୁ ତା’ ମନରୁ ପୋଛିହୋଇଯାଇଛି ।

କନକ ବି ବୁଝିଲା; ଏଇ ତିନିଦିନଯାକ ଗଉରୀ କେତେ ଆପଣାର କରି ତାକୁ ଭାବିଛି । କହିଲା, ‘‘ଅପା, ମୋଠେଇଁ ତ ସବୁ ସହଯ୍ୟ ହଉଚି, ହେବ; ଏକା ତମ ଯିବା ଦିନ ମୁଁ ମରିବି —ଏଇଆ ଜାଣିଥା !’’ ଗଉରୀ ହସି ହସି ‘‘ହଉ, ଦେଖିବା କେମିତି ମରିବୁ’’ କହି କନକକୁ ପାଖକୁ ଟାଣିଆଣିଲା ।

କନକ ଅନଭ୍ୟସ୍ତ ହାତରେ ସିନ୍ଦୂର ଘେନୁଥିଲା, ଗଉରୀ ଦେଖିନାହିଁ । ହଠାତ୍ ଝିଙ୍କାଟା ଖାଇ କନକ ହାତରୁ ସିନ୍ଦୂରଫରୁଆ ଓ ସିନ୍ଦୂରକାଠିଟି ଅଗରେ ସାବଧାନରେ

ରକ୍ଷିତ ସିନ୍ଦୂରଗୁଣ୍ଡିତକ ପଡ଼ିଯାଇ ତା'ର ସଦ୍ୟସ୍ନାତା ମୁଖଟିକୁ ରାଗରଞ୍ଜିତ କରିଦେଲା । ଗଉରୀ ଅସ୍ତବ୍ୟସ୍ତ ହୋଇ ସିନ୍ଦୂର ଝାଡ଼ି ଦେଉଁ ଦେଉଁ କହିଲା, "କ'ଣ କଲୁ ?" ଏହା କହିକି ଅଜ୍ଞାତ ଅମଙ୍ଗଳ ଆଶଙ୍କାରେ କେଜାଣି, ତରବର ହୋଇ ନିଜେ ସିନ୍ଦୂରକାଠିଟାଏ ନେଇ କନକ ମୁଣ୍ଡରେ ସିନ୍ଦୂର ପିନ୍ଧାଇଦେଲା । ତାକୁ ଜଣା ନାହିଁ, ସାଇମାଇକିନା କିଏ ଗୋଟିଏ ଆସି ଦୁଆର ପାଖରେ ଛିଡ଼ାହୋଇ ତାହାର ଶେଷ କଥା ଶୁଣିଲା ଓ କାର୍ଯ୍ୟ ବି ଦେଖିଲା । ହଠାତ୍ ବଜ୍ରପାତ ପରି ତା' କାନରେ ସାବୀଅପାର କ'ଣ୍ଠସ୍ୱର ପଡ଼ିଲା । ଦୁମୁଦୁମୁ ହୋଇ ଚାଲି ଯାଉଁ ଯାଉଁ ସାବୀଅପା କହିଯାଉଛି —"ଅ, କିଛି ହଉ, ଇଏ କି ଢ଼ଙ୍ଗ ଲୋ ମା' ଏ ଘର ଝିଅବହୂଙ୍କର । ଶୁଭ କଥା ନା ନିଆଁ କଥା ! ନିଜେ ଯିଏ ନ ବୁଝିବ, ତାକୁ ଆଖିରେ ଆଙ୍ଗୁଠି ଦେଇ ବୁଝାଇବ କିଏ ? ଯା ହଉ, ଭାଗିଅ ବଢୁଚି —।" ଅନ୍ୟ ଅଗଣାରୁ ଆଉ ଗୋଟିଏ କିଏ ଏହିଠାରେ ପଚାରି ବସିଲା —"କି ସାବୀଅପା, କଥା କ'ଣ ? କାହିଁକି ସକାଳଟାରୁ ଗର ଗର ହଉଚୁ କି ଲୋ ?" ସାବୀଅପା ଅପେକ୍ଷାକୃତ ନିମ୍ନସ୍ୱରରେ କହିବାର ଶୁଣାଗଲା —"କଥା ? ଦେଖିବ ଯା —ଦେଖିବ ଯା ଲୋ ମାଇପେ —ୟାଙ୍କମାନଙ୍କର ବୁଦ୍ଧି ଦେଖିବ ଯା !"

ଗଉରୀ ଆଉ ଶୁଣିପାରିଲାନାହିଁ — "ପୋଡ଼ାମୁହିଁ, କ'ଣ କଲି ମୁଁ ।" ବୋଲି କହି ହାତେ ଜିଭ କାଢ଼ି ପକାଇ, କନକକୁ ପ୍ରାୟ ଠେଲି ଆଡ଼େଇ ଦେଇ ସେ ଘରୁ ଦଉଡ଼ି ପଳାଇଗଲା । କି ଲଜ୍ଜା, କି ଅପମାନ, କି ଘୋର ବିଷାଦ ତା' ମନକୁ କ୍ଷଣକେ ଅଧିକାର କରି ପକାଇଲା, ତାହା କେବଳ ତାହାର ଗୋଟିଏ କଥାରୁ ବୁଝାଯିବ । ସେ ଖାଲି ମନେ ମନେ ନିଜକୁ ଧିକ୍କାର ଦେଇ କହି କହି ଗଲା - "ଛି ଛି, ମୁଁ ଯେ ବିଧବା, ଅମଙ୍ଗୁଳୀ, ଅଲକ୍ଷଣୀ, ପୋଡ଼ାମୁହାଁ ବିଧବା !"

କିଛିକ୍ଷଣ ପରେ ମାଇକିନା ପିଲାସବୁ ପଲ ପଲ ହୋଇ ଆସି କନକ ହାତରେ ଗୁଡ଼ତାଟିଆ ଦେଖି ଯାହାର ଜୁହାର ପ୍ରାପ୍ୟ ସେ ତାହା ପାଇ ଯେ ଯାହାର ବାହାରିଗଲେ । ଗଉରୀବୋଉ ଗୁଣ୍ଡେ ବାଢ଼ି ଆଣି ପିଣ୍ଡାରେ ଥୋଇ ଦେଇ କହିଲେ "ଆଲୋ, ଗୁଣ୍ଡେ ଖାଇଦେ ମ, ପିତ ପଡ଼ିଯିବ !" କନକ ପାଖରେ ବସିଥିବା ରଙ୍ଗୀକୁ କହିଲା, "ଗଲ ଟିକିଏ ଅପାଙ୍କୁ ଡାକି ଆଣିବ । ଗଲ !" ରଙ୍ଗୀ ମୁହଁଟାକୁ ଏଡ଼େ କରି "ଓଃ ମୁଁ ଯାଇପାରେ ନା, ଯାଅ !" କହି କାନ୍ଥ ଆଡ଼କୁ ବୁଲି ବସିଲା । ପୁଣି କନକ ଉଠି ଗୋଟାଏ ଛୋଟ ଗିନାଟିରେ ପାଣି ମନ୍ଦାଏ ନେଇ ଆସି ରଙ୍ଗୀକୁ ଜୋର କରି ଛିଡ଼ା କରାଇ କହିଲା, "ମୋ ରାଣ, ମୋ ମୁଣ୍ଡ ଖାଇବ, ଯା ଟିକେ ଅପାଙ୍କଠଉଁ ପାଦୁକ

ନେଇ ଆସିବ । ଆଉ ତାଙ୍କୁ ମୋ ରାଣ ପକେଇ କହିବ, ସେ ଏଠିକି ଟିକିଏ ଆସିବେ । ସେ ମୋ ସଙ୍ଗେ ଖାଇବେ ନାହିଁ । ଯା, ତମେ ପଛେ ଖାଇବ !'' ରଙ୍ଗୀ ମନେ ମନେ ଖୁସି ହୋଇ ଛଳକ୍ରୋଧରେ କହିଲା, ''ମୁଁ ଏଇ ନୂଆବୋଉଟା ସଙ୍ଗେ ଖାଉଥାଏଁ ତ ! ଇଃ !'' ଏହା କହି ସେ ଗିନାଟି ନେଇ ପଳାଇଗଲା । ଶାଶୁ ବିରକ୍ତ ହୋଇ କହିଲେ, ''କି ପାଦୁକା ଲୋ ! ଥ, ତୁ ଖାଇ ବସ !'' କନକ ଠାର ଦ୍ୱାରା ଜଣାଇଲା —ରଙ୍ଗୀ ଆସୁ !

ଏହି ସମୟରେ ଦାଣ୍ଡଆଡୁ ଗୋଟାଏ ଏକୁଟିଆ ମହୁରୀ ପେଁ ପେଁ କରି ବାଜି ଉଠିଲା । ଗଉରୀବୋଉ ଉତ୍‌ଫୁଲ୍ଲ ହୋଇ କହିଲେ—''ହେଇଟି, ତମର ଗୁଡ଼ଦେଖା ଭାର ଆସିଲାଣି ପରା । ଦେ ଦେ, ତୁ ଖାଇ ବସ୍—ମୁଁ ଯାଏଁ !'' ଏହା କହି ଚାଲିଯାଉଥିଲେ, କନକ ହାତରେ ମନ୍ଦାଏ ପାଣି ନେଇ ଯାଇ ତାଙ୍କ ଗୋଡ଼ ଧରି ଅଟକାଇ ଦେଇ; ଡାହାଣ ଗୋଡ଼ ବୁଢ଼ା ଆଙ୍ଗୁଳିଟାକୁ ଟାଣି ଟାଣି ଆଣି ସେହି ପାଣିରେ ମାଡ଼ି ଦେଇ ଛାଡ଼ିଦେଲା । ଶାଶୁ ଚାଲିଗଲେ । ସେହି ପାଦୁକ ପାଇ କନକ ଉହଣ୍ଠିତ ଭାବରେ ବସି ରହିଲା । କିଛି କ୍ଷଣ ପରେ ଗୋଟାଏ ପିଲା ଧାଇଁ ଧାଇଁ ଆସି, ରଙ୍ଗୀ ନେଇଯାଇଥିବା ଗିନାଟି ଆଣି କନକ ଗୋଡ଼ ପାଖରେ ଫିଙ୍ଗିଦେଲା ପରି ଥୋଇଦେଇ, ଧାଇଁ ବାହାରି ଯାଉଥିଲା, କନକ ତା ହାତଟି ଧରିପକାଇ କହିଲା, ''ରଙ୍ଗୀ କାହିଁ ? ଅପା କୁଆଡ଼େ ଗଲେ ?'' ସେ କହିଲା, ''ସମସ୍ତେ ଠାକୁରଖଞ୍ଜାରେ ଦେଖୁଚନ୍ତି - ଭାର କେତେ ଆସିଚି ! ତମେ ଛାଡ଼ ମତେ ବଡ଼ାପା ମତେ କହିଲେ, ମୁଁ କୁଣିଆ ନାଗି ପାନ ନେଇଯିବି, ଛାଡ଼ !'' ଏହି ସମୟରେ ଗଉରୀ ହସହସ ମୁଖରେ ସ୍ୟାଡୁ ଆସି ପିଲାଟିକୁ ଦେଖି କହିଲା, ''ଶୁଣ୍‌ବେ ରମ, କିଏ ସେ ସାନ୍ତ ଆସିଚି କି ବେ ? ମୁଁ ସେଟାକୁ ସୁଆରିରୁ ଓହ୍ଲାଇବା ବେଳେ ଭଲକରି ଦେଖିପାରିଲି ନାହିଁ ।'' ପିଲାଟି ଅଳ୍ପରେ କହିଲା, ''ବାବୁ —ନିଧିଭାଇଙ୍କ ପରି କୋଟ ପିନ୍ଧିଚି !'' ''ଆଲୋ ବହୂ, କିଏ କହନି ସିଏ ?'' କହି ଗଉରୀ ଟିକିଏ ଦୂରରୁ କନକ ଆଡ଼କୁ ଚାହିଁଲା । କନକ ନିଜେ ବୁଝିପାରି ନାହିଁ —କିଏ ସେ । ହରିବାବୁଙ୍କ ଛଡ଼ା ଆଉ କିଏ ଆସିବ ? କିନ୍ତୁ ସେ ସ୍ଥିର କରିପାରୁ ନାହିଁ ଯେ ସେ ଭାଇ; କିଏ ଯେପରି ପାଟିର କଥା ଛଡ଼ାଇ ନେଉଚି, କହୁଚି - ନା, ସେ ଆଉ କିଏ ! କନକ ପିଲାଟିକୁ ପୁଣି ଡାକି ପଚାରିଲା, ''ଯିଏ ଆସିଚି ତା'ର ନିଶ ଅଛି ନା ?'' ପିଲାଟି କହିଲା, ''ଦେଖି ଆସେଁ !'' ଏହା କହି ଏକ ନିଃଶ୍ୱାସରେ ଦଉଡ଼ି ପଳାଇଗଲା ।

ଗଉରୀ କହିଲା, ''ଯିଏ ଆସୁ, ଏଇନାଗେ ପୁଣି ଦେଖି ହବାକୁ ଆସିବ । ତୁ ଗଣ୍ଡାଏ ଖାଇଦବୁ ଟି !'' ଏହା କହି କନକକୁ ଟାଣି ଆଣି ଭାତବେଲା ପାଖରେ ବସାଇ ଦେଲା । ସକାଳର ଘଟନା ଯୋଗୁଁ ଦୁହିଁଙ୍କୁ ଦୁହେଁ ଗୋଟାଏ ଅସ୍ୱଚ୍ଛନ୍ଦତା ଅନୁଭବ କରୁଥିଲେ, କିନ୍ତୁ ଏ ନୂତନ ଉତ୍ତେଜନାରେ ସେଟା ଅନେକାଂଶରେ କମିଗଲା । ପୁଣି ଖାଇ ବସି କନକ ଗଉରୀକୁ ଟାଣି ଆଣି ବସାଇଲା । ଦୁହେଁ ଖୁଆଇ ଦିଆଦିଇ ହେଲେ । କ୍ଷଣିକ ଚଞ୍ଚଳତା ବଶତଃ ଦୁହେଁ ଖାଇଲେ ବି ବେଶି । ଦୁହିଁଙ୍କ ମନର ଗୁରୁ ଭାରଟା ବି ନିର୍ମଳ ହୋଇ ଦୂର ହୋଇଗଲା । ଏହି ସମୟରେ ସ୍ୟାତୁ ରଙ୍ଗୀ ଧାଇଁ ଧାଇଁ ଆସି, ହସି ହସି କହିଲା, ''ଦେଖ ଲୋ, ସେଇ ଖଣ୍ଡିଆଟା ଫେରେ ଆସିଚିମ ! ସେଇ - ଯେଉଁଟା ବରଧରା ହୋଇ ଆସିଥିଲା !''

ରଙ୍ଗୀକୁ ଦେଖିଲା ମାତ୍ରେକେ କନକ ଉଠିପଡ଼ି ତାହାକୁ ଓଟାରି ଆଣି ବେଲା ପାଖରେ ବସାଇ ଦେଇ ସାରିଥିଲା । ରଙ୍ଗୀ ତାହାର କମ୍ପମାନ ହାତରୁ ଗୁଣ୍ଡାଟିଏ ନଉଁ ନଉଁ ପଚାରିଲା, ''ନୂଆ'ଉ, ସେଇ—ବରଧରା ଯିଏ ଆସିଥିଲା, ସିଏ କିଏ ?''କନକ ହାତରୁ ଗୁଣ୍ଡାଟା ଭାଙ୍ଗି ଯାଇ ରଙ୍ଗୀ ଦିହମୁଣ୍ଡ ହୋଇଗଲା । ଭାତଗୁଡ଼ାକ ଝାଡ଼ି ଦଉଁ ଦଉଁ ଗଉରୀ ବିରକ୍ତ ଭାବରେ କହିଲା, ''ମରୁ ନହୁଁ; ଦଶା ଝିଅଟା । ସିଏ କିଏ, ସିଏ କିଏ—ସିଏ ତୋ ଘଇତା, କିଏ ।'' ରଙ୍ଗୀ ରାଗି ଉଠି ଗଉରୀକୁ ଧକାଏ ମାରି, ନୂଆବୋଉକୁ ପୁଣି ଧରି ପଚାରିଲା, ''ସତେ ନୂଆ'ଉ, ସେ କିଏ ?'' କନକ ଇତିମଧ୍ୟରେ ଆତ୍ମସମ୍ବରଣ କରି ନେଇଥିଲା, ଅଳ୍ପ ଅଳ୍ପ ହସି କହିଲା, ''ସିଏ ପରା ତମ ବର ଗୋ !'' ରଙ୍ଗୀ ଅସମ୍ଭାଳ ହୋଇ ଦୁଇ ହାତରେ ଗଉରୀ ଓ କନକକୁ ବିଧାଚାପୁଡ଼ା ମାରୁ ମାରୁ କହିଲା,- ''ସିଏ ମରୁ, ନିଆଁ ନଗା ପୋଡ଼ାଟା ମରୁନାହିଁ ! କି, ମୋର ବର କାହିଁକି ହବ ? ତମରି ବର ହଉ !'' ଗଉରୀ ଦେଖିଲା, ରଙ୍ଗୀ କଥାରେ କନକ ମୁହଁ ଶୁଖି ହଠାତ୍ କଳା ପଡ଼ିଗଲା । କଥାଟା ତାକୁ ବାଧିଲା ଭାବିକି କ'ଣ, ଗଉରୀ ଆଖି କାଢ଼ି ରଙ୍ଗୀକୁ ମାରିବାକୁ ଗଲା । ରଙ୍ଗୀ କିନ୍ତୁ ହସି ହସି ଦଉଡ଼ି ପଳାଇ ଯାଉଁ ଯାଉଁ କହିଲା, ''ଇସ୍ ମାରିବୁ ? ଭାରି ମାରିଳାବାଲୀଟା ! ରହ ରହ, ମୁଁ ନୂଆ'ଉ-ବରକୁ ଡାକି ଆଣେ । ରହ ତମକୁ ସବୁ ଦେଖୁଚି !''

ଗଉରୀ ତା' ପଛେ ପଛେ ଦୁଆର ପର୍ଯ୍ୟନ୍ତ ଗୋଡ଼ାଇ ଯାଇଁ କହିଲା —''ଦୂର୍ ହ, ଦୂର୍ ହ, ନିର୍ଲଜ୍ଜୀ, ବଜ୍ଜାତିଆଣୀଟା । ବୁଦ୍ଧି ଶିଖୁଚି !'' କନକ ପାଖକୁ ପୁଣି ଆସି କହିଲା, ''ଗେହ୍ଲା କରି କରି ବୋଉ ଏ ଝିଅଟାକୁ ସାରିବ ପରା, ମୁଁ ଜାଣେ !'' କନକ

ପ୍ରକୃତିସ୍ଥ ହୋଇ ହସି ହସି କହିଲା, "ପିଲାଟା, ଏଇନାଗେ ତାଙ୍କର ଏତେ ବୁଦ୍ଧିଶୁଦ୍ଧି କେଉଁଠୁ ହବ, ଅପା ତମେ କହୁଚ !" ଗଉରୀ ମନରେ ହଠାତ୍ ରଙ୍ଗୀ ଯେଉଁ ପ୍ରଶ୍ନ କରିଥିଲା, ସେହି ପ୍ରଶ୍ନ ହିଁ ଉଠିଲା, କିନ୍ତୁ କେଜାଣି ମୁହଁ ଖୋଲି ସେ ଆଉ ପଚାରି ପାରିଲା ନାହିଁ । କିଛିକ୍ଷଣ ପରେ ଗଉରୀ ମନ୍ଦ ମନ୍ଦ ହୋଇ ଉଠି କହିଲା, "ଆ, ଆ ଲୋ, ମୁଁ ଯାଏଁ ! ସେଇଟା ପୁଣି ଆସିବ ଦେଖା କରିବାକୁ ଏଇନାଗେ !" କନକ ଚମକି ପଡ଼ି କହିଲା, "କିଏ ?" "ସେଇ ଯେ ଆସିଚି ତୋ ଭାଇ !" "ଓଃ, ନୀଳୁଭାଇ - ନୀଳୁଭାଇ ?" ସେ ନାମଟା ଉଚାରଣ କଲାମାତ୍ରକେ କନକ କିପରି ଗୋଟାଏ ବିଚଳିତ ହୋଇଉଠିଲା । ଗଉରୀକୁ ହଠାତ୍ ଧରି ପକାଇ କହିଲା, "ନା ଅପା,ତେମେ ଯା ନେଇଁ, ଏଇଠି ଆଗେ ଟିକିଏ —" । ଗଉରୀ ହସିଉଠିଲା, କହିଲା - "କି ଲୋ, ତୋ ଭାଇଟା ତୋ' କତିକି ଆସିବ ! ମୁଁ ଏଠି କ'ଣ କରିମି ?" କନକ ଲଜ୍ଜିତ ହେଲାପରି ଧଡ଼୍କରି କାନ୍ଥଆଡ଼କୁ ଆଉଜି ବସିପଡ଼ିଲା, ଟିକିଏ ଅନିଶ୍ଚିତ ଭାବରେ କହିଲା, "ନା ନା ମୁଁ ଭାବୁଥିଲି, ଆଉ କିଏ କାଳେ ତାଙ୍କ ସାଙ୍ଗରେ ଆସିବେ ।" "ଆଉ କିଏ, ନିଧି ?" କନକ ଚଞ୍ଚଳ ଭାବରେ କହିଲା, "ହୁଁ ! ଗଉରୀ ଗମ୍ଭୀର ଭାବରେ ସେଠାରୁ ବାହାରିଗଲା ।

(୪)

ମନୁଷ୍ୟ ହୃଦୟ ସ୍ୱଭାବତଃ ଭୀରୁ । ବିଶେଷତଃ ଯାହାର ସ୍ନେହ ଯେତିକି ଗଭୀର, ତାହାର ସାହସ ସେତିକି କମ୍ । ପ୍ରିୟବସ୍ତୁକୁ ପାଇବାର ଆଶା ବା ଆକାଂକ୍ଷା ମନରେ ଯେତିକି ପ୍ରବଳ, ପାଇଲେ, ତାହାକୁ ଗ୍ରହଣ କରିବାର କ୍ଷମତା ମଧ୍ୟ ତେତିକି ଅଳ୍ପ । ମନର ବଳ କହ, ନୈତିକ ବଳ କହ, ସେ କେବଳ ପ୍ରିୟ ବସ୍ତୁଟି ପାଇବା ପର୍ଯ୍ୟନ୍ତ ରହେ —କାମରେ ଲାଗେ । ତା' ପରେ ସେ କେବଳ ନାମମାତ୍ର । ଆଶାଆଶଙ୍କାର ଖେଳ ଯେଉଁଠି, ସେଠି ଭୟ ହିଁ ପ୍ରଧାନ । ସାଧନାର ସିଦ୍ଧିରେ ବି ଭୟ ଛଡ଼ା ଆଉ କିଛି ନାହିଁ । ବଳ, ସାହସ କେବଳ କଥାର କଥା ।

ପୂର୍ଣ୍ଣ ହୃଦୟ ଦେଇ ମନୁଷ୍ୟ ଯାହା ଚାହେଁ, ସେଇ ପର୍ଯ୍ୟନ୍ତ ଆସିଲେ, ବ୍ୟବଧାନ ଟିକକ ପାରହେଲେ, ତାହାର ଆଉ ତିଳେ ଅଗ୍ରସର ହେବାର ସାଧ କାହିଁ ?

ମାନବ ହୃଦୟ ମାତ୍ରକେ ଏହା ଅନୁଭବୀ ! କିନ୍ତୁ ଆହୁରି କେତେକଙ୍କ ହୃଦୟରେ ଭୟଟା ଏତେ ବେଶି ଯେ, ଠିକ୍ ସିଦ୍ଧି ମୁହୂର୍ତ୍ତରେ ହିଁ ତାଙ୍କର ସାଧନା ହାହାକାର କରି ପୃଷ୍ଠ ପ୍ରଦର୍ଶନ କରି ପଳାଏ । କି ଦୁର୍ବଳତା ! କେଡ଼େ ବିଡ଼ମ୍ବନା !

ବହୁ ଯତ୍ନରେ, ଶତ ଚେଷ୍ଟାରେ ପ୍ରାଣ ପର୍ଯ୍ୟନ୍ତ ପଣ କରି ପର୍ବତର ଉଚ୍ଚତମ ଶିଖର ଆରୋହଣ କଲି—କେବଳ ସେଠାରୁ ଉପତ୍ୟକାର ଦୃଶ୍ୟ ଅନୁଭବ କରିବି ବୋଲି, କିନ୍ତୁ ଶିଖର ଆରୋହଣ କରି ସାରିଲା ମାତ୍ରକେ ମସ୍ତକ ବିଘୂର୍ଣ୍ଣିତ ହେବା ଭୟରୁ ଯଦି ମୋର ଦୃଷ୍ଟିଶକ୍ତି, ଅନୁଭବଶକ୍ତି —ମୋର ଗ୍ରହଣ କରିବାର ସମସ୍ତ ଶକ୍ତି, —ଅପହୃତ, ଲୁପ୍ତ ହୋଇଗଲା, ତା' ହେଲେ ଯାଠାରୁ ବଳି ଆଉ ଦୁଃଖର ବିଷୟ କ'ଣ ହୋଇପାରେ ?

ଦୁଃଖର ବିଷୟ ହେଉ ବା ଯା' ହେଉ, ହୃଦୟରାଜ୍ୟରେ ଏପରି ଘଟନା ବିରଳ ତ ନୁହେଁ, ବରଂ ନିତ୍ୟନୈମିତ୍ତିକ ଘଟନା ବୋଲି ମୋର ବିଶ୍ୱାସ !

ଆଜି ନୀଳୁବାବୁଙ୍କର ସେହି ଦଶା !

ଆଜିକୁ ପ୍ରାୟ ଦଶଦିନ ପୂର୍ବେ ଲୋକଚକ୍ଷୁରେ ଯେଉଁ ଧନ ସେ ହରାଇଥିଲେ, ବାସ୍ତବରେ ନିଜ ଅନ୍ତରର ଅନ୍ତସ୍ତମ ପ୍ରଦେଶରେ ସେ ତାହାରି ପ୍ରାପ୍ତି ଓ ପ୍ରାପ୍ତିର ଆନନ୍ଦ ଉପଭୋଗ କରିଥିଲେ । ସାଫଲ୍ୟରେ ହୃଦୟ ନାଚି ଉଠିଥିଲା, ସିଦ୍ଧିରେ ମନ ମାତିଯାଇଥିଲା । କନକ ଅପରର ହସ୍ତ ଧରି ବାହାରି ଯାଇ ସୁଦ୍ଧା ତାଙ୍କ ଅନ୍ତରର ନିଭୃତତମ ପ୍ରଦେଶରେ କି ଗୋଟାଏ ମାଧୁର୍ଯ୍ୟ ବୁଣି ଦେଇଗଲା, ସେଥିରେ ଗ୍ଲାନି ନାହିଁ, ଦ୍ୱିଧା ନାହିଁ ! ବାହାର ଶୂନ୍ୟ କରିଗଲା ସତ୍ୟ, ମାତ୍ର ଭିତରେ ସେ ଯେଉଁ ପୂର୍ଣ୍ଣତାର ସୁଧା ଢ଼ାଳି ଦେଇଗଲା, ସେହିଥିରେ ସେ ମତୁଆଲା ହୋଇଗଲେ । ସାଫଲ୍ୟର ଦୀପ୍ତିମୟ ଟୀକା ଲଲାଟରେ ପିନ୍ଧି ତାଙ୍କର ଆଶା —ଆକାଂକ୍ଷା ସବୁ ଏକାବେଳକେ ପ୍ରୀତିପ୍ରତିମାଟିର ପାଦତଳେ ଲୋଟିହୋଇପଡ଼ିଲା ।

କିନ୍ତୁ ପୂର୍ଣ୍ଣତାର ଆନନ୍ଦ ସଙ୍ଗେ ସଙ୍ଗେ ଆହୁରି ଗୋଟିଏ ବସ୍ତୁ ମଧ ତାଙ୍କୁ ମିଳିଥିଲା —ମମତାର କଠୋର କର୍ତ୍ତବ୍ୟ । ପୂର୍ଣ୍ଣତାର ଉଚ୍ଛଟ ଆନନ୍ଦକୁ ମମତାର କଠୋର କର୍ତ୍ତବ୍ୟରେ ପରିଣତ କରିବାର ଆଦେଶ ଓ ଶିକ୍ଷା କନକ ତାଙ୍କୁ ଗୋଟିଏ ମୁହୂର୍ତ୍ତରେ ଅପୂର୍ବ ଭାଷାରେ ଦେଇଯାଇଥିଲା । ମନୁଷ୍ୟର ସମସ୍ତ ପୂର୍ଣ୍ଣତା ଯେ କେଡ଼େ ଅପୂର୍ଣ୍ଣ; ତାହା ବୁଝିବାର ଅବସର ନୀଳୁବାବୁ ପାଇଲେ ନାହିଁ । ପୂର୍ଣ୍ଣତାର ଜଡ଼ତାକୁ ସଜୀବ କର୍ତ୍ତବ୍ୟର ଉତ୍ତେଜନା ଲଘନ କରିଗଲା ଓ ତାଙ୍କୁ ନିତ୍ୟ ଜାଗ୍ରତ ଏବଂ ସତେଜ କରି ରଖିଲା ।

\+ + + + +

ହରିବାବୁ କହିଲେ, "ନୀଲୁ, ତୁ କଟକ ଯିବା ପୂର୍ବରୁ ଥରେ କଙ୍କି ଦେଖିଆ, ଗୁଡ଼ଦେଖା ଭାର ଯିବ କାଲି ! ମୋର ଯାଡ଼େ ରାଜ୍ୟର ଝଞ୍ଜଟ, ମୁଁ ତ ଏଇଠି ରହିଲି, ଯେତେବେଳେ ହବ, ଯିବି !"

ନୂଆବୋଉ (ହରିବାବୁଙ୍କ ସ୍ତ୍ରୀ) କହିଲେ, "ହଁ ହଁ, ନୀଲୁ ଯାଉ —ତେମେ ତ ଭାରି ଯୋଗ୍ୟ ଲୋକଟିଏ । ଗଲେ କାନ୍ଦିବ ସିନା ଆଉ କ'ଣ କି ? ହଇହେ ନୀଳ, ତମ ଭାଇ କେଡ଼େ ବୀର, ଜାଣିଚଟି କି ? ଝିଅଟା ବାହା ହେଇକରିଗଲା —ତେବେ ଇଏ ତା' ଆଡ଼କୁ ଥରେ ଚାହିଁଛନ୍ତି, ନା କଥା ପଦେ କହିଛନ୍ତି । ନାଇ ନାହିଁ, ଇଯେ ପୁଣି ବନ୍ଧୁଘର ଯିବେ । ନାଇଁ, ନୀଲୁ, ତେମେ ଯାଅ; ହବ ତ ଚାରି—ଛ' ଦିନ ରହିଯାଇପାରିବ । ପିଲାଟି କେମିତି ଚଳୁଚି, କ'ଣ କରୁଚି, ହେଲେ ଦେଖି ଆସିପାରିବ । ଇଯେ ତ ଦଶ ଲୋକଙ୍କଠେଇଁ ମୁଣ୍ଡ ବିକିଚନ୍ତି !"

ନୀଲୁବାବୁ 'ହଉ' ବୋଲି କହି ତୁନିହେଲେ, କିନ୍ତୁ ହୃଦୟ ଆନନ୍ଦରେ ନାଚି ଉଠିଲା । ନୂଆବୋଉ ପୁଣି କହିଲେ,"ହଇ ହେ ନୀଳ, ସେ ଥର ଯା ବରଧରା ଯାଇଥିଲ, କେଶୀଅପାକୁ ଦେଖିଥିଲ ନା ?"

"କେଶୀଅପା କିଏ ?"

"କି, କନକଶାଶୁ ପରା, ମୋର ପିଇସୀ ହୁଏ । ଆଉ କେତେଥର କହିବି ମ !"

"ନାଇଁ ତ, ମୁଁ ଦେଖିନାହିଁ । ମୁଁ କଉଁଠି ଘର ଭିତରକୁ ଯାଇଚି ଯେ, ଏତେ ଲୋକଙ୍କୁ ଦେଖିବି !"

"ରଙ୍ଗୀକି ଦେଖିଥିବ ନିଶ୍ଚେଁ । ସେ ଖରଖରୀଟା କ'ଣ ତମ ସାଙ୍ଗେ ନ ନାଗି ଛାଡ଼ିଥିବ କି ! କେତୁଟେ ହେଇ ଯିବଣି ସିଏ ! ରଙ୍ଗୀ ମ,—କେଶୀଅପା ସାନ ଝିଅ ସେ । (ହରିବାବୁଙ୍କ ପ୍ରତି) ମୋ ବାହାକୁ ଆସିଥିଲା ପରା—ଅଢ଼େଇ ବର୍ଷର ପିଲାଟି —ଆଛା ସୁନ୍ଦରଟିଏ ଯେ ! ଏକା କେଶୀଅପା ତାକୁ ଗେଲବସର କରି ଖାଉଚି ।"

"ହଁ ହଁ, ସେଥର ଗୋଟାଏ କିଏସେ ମୋ ଉପରେ କ'ଣସବୁ ଫୋପଡ଼ାଫୋପଡ଼ି କରୁଥିଲା । ଦଶ—ବାର ବର୍ଷର ପଲାଟିଏ, ନୁହେଁ । ଢ଼େର ଗାଳି ଖାଇଚି— ଏକା ସିଏ ମୋ ସାଙ୍ଗେ ନାଗିବା ଯୋଗୁଁ, —ହଁ ହଁ, ପୁଣି କହିଚି - ଆଉ ଥରେ ଆସିଲେ ଠିକ୍ କରିଦେବ !"

ଏହା କହି ନୀଲୁବାବୁ ବାହାରିଗଲେ । ନିତେଇଙ୍କୁ (ନୀଲୁଙ୍କ ଭିଣୋଇ) ଦୁଇ ଦିନ ହେଲା ବିଷମ କମ୍ପ ଜ୍ୱର, ଆଜି ଟିକିଏ ଭଣା ଥିଲା । ତାଙ୍କୁ ଦେଖିବାକୁ ତାଙ୍କ ଘର ଆଡ଼କୁ ଗଲେ ।

ଯାହେଁ ନୂଆବୋଉଙ୍କ ପାଟି ବନ୍ଦ ନହୁଏ । ବାପଘର ବା ସେ ସମ୍ପର୍କୀୟ କୌଣସି ପ୍ରସଙ୍ଗରେ ନୂଆବୋଉଙ୍କୁ ଦୁଇଥର କହିବାକୁ ହୁଏନାହିଁ । ଥରେ କଥା ଉଠିଲେ, ଅନର୍ଗଳ ଚାଲିଲା ତେଣିକି । କହିଲେ, "ହଇହେ, ତେମେ ସିନା ମୋକଥା ନ ଶୁଣିବ - ମୁଁ ଯାହା କହିଲି ସବୁ ଜାଣି ବିଷ ! ଆଚ୍ଛା କହିଲ ଭଲା, କଙ୍କି କି ମନ୍ଦ ଜାଗାଟାରେ ପଡ଼ିଲା ! ତାଙ୍କର ଘରବାଡ଼ି, ଜମି —କେଉଁ କଥା ନାହିଁ ? ଆଉ ବର, ତା' କଥା ତ ଜାଣିଚ, କେଉଁ ଗୁଣରେ ଏବେ ବାଛିବ ! ତେମେ ସିନା ମୋତେ ନିନ୍ଦିବ, ନ ହେଲେ, ଏଇ ନୀଲୁ କଥା ଯେ କହୁଥିଲ - ଛିଆଲୋ ଛିଆ, ତମ ଘରକଥା ଛାଡ଼ିଦେଲେ ତା'ର କିଏ ଅଛି ନା କ'ଣ ଅଛି ! ପୁଣି ତମର ଭାଇଟା ପରି ! ତାକୁ ବା କେଉଁ ମୁହଁରେ କଙ୍କିକି ଦେବାକୁ କହୁଥିଲ ? ଧନିଅ ତୁମ ବୁଦ୍ଧି ! ହଁ, ନୀଲୁଟି ଭଲ ପିଲାଟିଏ ଯେ, ସବୁଥିରେ ଭଲ, ହେଲେ —ତମ ପେଇଁ ତା'ର ସବୁ ନା—ତମକୁ ଛାଡ଼ିଦେଲେ ତାକୁ ପଚାରେ କିଏ ? ମୁଁ ପରା କହୁଛି, ଦେଖିବ, ପୁଣି ପଛରେ ମୋତେ କହିବ — କଙ୍କି କେଶାଅପା ଘରେ କେଡ଼େ ସୁଖରେ ରହିବ ! ଦେଖିବ ଚ ମୁଁ କହିଦେଲି ! ଥିଂ, କିଛି କହୁ ନାହଁ କାହିଁକି ମ ? ଏମିତିକା ଛଟାଣକୁ ମୋ ହାଡ଼ ଜଳେ । ଯେଙ୍କୁ ସବୁକଥା ଅପସନ୍ଦ, ମଲା ଲୋ !"

"ଆରେ ନାଇଁ ମ, ଅପସନ୍ଦ ନୁହେଁ ଯେ, —ମୁଁ ଭାବୁଥିଲି, ପ୍ରକୃତରେ ନୀଲୁଟା ତ ଭାଇପେରିକା, ମୋ ଘରର ଜଣେ; ଆମର ଆଉ କିଏ ଅଛି ? କଙ୍କିକି ବାହା ହେଇଥିଲେ ତ ଆଉ ମୋର ହୋଇ ରହିନଥାନ୍ତା, ବନ୍ଧୁ ହେଲାଠଉଁ କଥା ସଇଲା ନା ଆଉ କ'ଣ ! ମୋ ଘରେ ରହିବାକୁ ବି ଯଦି ମଙ୍ଗିଥାନ୍ତା ତେବେ ବି ରାଜ୍ୟର ଅସନ୍ତ, ଅତୁଆ —ସେଟା କ'ଣ ଭଲ ହୋଇଥାନ୍ତା କି ? ନା, ନା ଏଇ ଭଲ !"

"ହ, ଗୁଞ୍ଜାଗୁଅ ପରି କଥା ହୋଇଥାନ୍ତା ନା ଆଉ କ'ଣ ! ଘରଚୋଇଁ ଓଳିତଳ ଖୁଣ୍ଟ, ଯେତେ ହେଲେ କ'ଣ ହଉଚି ! ମତେ ସିନା ନିନ୍ଦୁଚ ! ନହେଲେ, ତମ ମିଣିପିଙ୍କର କ'ଣ କଡ଼ାକର ବୁଦ୍ଧି ଅଛି ନା ବଳ ଅଛି, ଘରକରଣା କ'ଣ ତମେ ଜାଣିଚ ?"

ନୂଆବୋଉ କ୍ରମେ ପଞ୍ଚମ ଆଡ଼କୁ ଅଗ୍ରସର ହେଉଚନ୍ତି ଦେଖି ହରିବାବୁ ମନେ ମନେ ଭୀତ ହୋଇ କଥା ମଝିରେ ଝଟ୍ କରି କହି ଉଠିଲେ —"ନାଃ, ନାଃ, ଆମେ କିଛି ଜାଣି ନାହୁଁ — ଆମେ କିଛି ନହୁଁ । ତମେମାନେ ସବୁ । ନା, ମୁଁ ଥଟ୍ଟା କରୁନାହିଁ ଯେ, ପ୍ରକୃତରେ ତମେମାନେ ଏସବୁ କଥା ଭଲ ବୁଝ ! ଏଇ ଦେଖ, ନୀଲୁଟି ଏଇଲାଗେ ପାଠଶାଠ ପଢ଼ି ବାହାରିବ, ଏଇଠି ଆସି ଓକାଲତି କରିବ, କି ଦୋପଟି ହବ —ଲୋକେ ତାକୁ ମୋ ଭାଇ ବୋଲି ଜାଣିବେ ନା—ଜାଣିବେ କ'ଣ, ଜାଣିଛନ୍ତି !"

"ଓଃ, ସେ କଥା କ'ଣ ମୁଁ ଜାଣେ ନାହିଁ , ଏତେ ନିଠୋଉଚ ! ନୀଲୁ ଏଇନାଗେ ଆମର ନା କାହାର ? କଙ୍କି ଗଲାଦିନଠଉଁ ମୁଁ ଆଉ ତାକୁ ଛାଡୁନାହିଁ କାହିଁକି କି — ଆମେ ଦଳ ଛଡ଼େଇବୁ, ଆଉ କିଏ କାହିଁକି କଉ ଖାଇବ ! ତେମେ ତା'ର କ'ଣ ନ କରିଚ ଭଲା !"

ହରିବାବୁ ନୀଲୁ ପାଇଁ କ'ଣ କରିଛନ୍ତି, ନ କରିଛନ୍ତି, ସେ କଥା ସେଇ ଜାଣନ୍ତି କି ତାଙ୍କ ଭଗବାନ ଜାଣନ୍ତି - ଗୃହିଣୀ ସେଥିର ଦୁଇଅଣା ବି ଶୁଣିନାହାନ୍ତି । ସେ ସବୁ କଥା ତାଙ୍କୁ କହିବାକୁ ହରିବାବୁଙ୍କର କେଉଁ ସାହସ ହୋଇନାହିଁ । କଟକକୁ ମାସକୁ ମାସ କେବେ ପାଞ୍ଚ କେବେ ଦଶ ପଠାଇବା, ଗାଁକୁ ଆସିଥିଲେ ଭଲ ଲୁଗାଯୋଡ଼ାଏ କି କମିଜ ଖଣ୍ଡେ — ବାହାରେ ବାହାରେ ଅବଶ୍ୟ —ଦବାନବା ସବୁ ଗୋପନରେ କରିଆଡି । ପାଠକେ ତ ଜାଣନ୍ତି, ନୀଲୁ ଉପରେ ନୂଆବୋଉଙ୍କର ଆଜି ସୁଦ୍ଧା କେଉଁ କୃପା ଦୃଷ୍ଟି ପଡ଼ିନଥିଲା । ତେବେ ଏତେ କରି ସୁଦ୍ଧା ହରିବାବୁ ନୀଲୁ ଉପରେ ତାଙ୍କର ଦଖଲସ୍ୱତ୍ୱ ଅଛି, ଏଟା କେଉଁ ସ୍ୱପ୍ନରେ ସୁଦ୍ଧା ଭାବିପାରିନଥିଲେ । ସ୍ନେହ କରନ୍ତି, ଅତି ଆପଣାର ଭାବନ୍ତି, ଏ ଧାରଣାରୁ ନୁହେଁ । ନୀଲୁକୁ ଷୋଳପଣୀ ଅଧିକାର କରି ବସିବା ତ ଦୂରର କଥା —ତେବେ, ଯଦି ସମ୍ଭବ ହୋଇଥାନ୍ତା, ତା' ହେଲେ କଙ୍କିଟିକୁ ତା' ହାତରେ ଦେଇପାରିଥିଲେ ସୁଖୀ ହୋଇଥାନ୍ତେ । ପରନ୍ତୁ ଏ ବିଷୟରେ ଗୃହିଣୀଙ୍କ ମତ ଯେ ପକ୍ଷପାତୀ ନୁହେଁ, ତାହା ସେ ଅନେକ ଦିନରୁ ଜାଣନ୍ତି, ଅଥଚ ନୀଲୁ ପ୍ରତି ତାଙ୍କ ଅନୁକୂଳ ମନୋଭାବ ବା ବ୍ୟବହାରର କୌଣସି ପରିବର୍ତ୍ତନ ଘଟିନାହିଁ । ନୀଲୁଟି ଗୁଣର ହେଲେ ଲୋକେ ତାଙ୍କରି ପ୍ରଶଂସା କରିବେ, ଏ ଭାବଟା ଅବଶ୍ୟ ଷୋଳଅଣା ତାଙ୍କ ମନରେ ଥାଏ । ତେବେ ଏଟା ଏପରି କିଛି ଅମାର୍ଜନୀୟ ଦୋଷ ନୁହେଁ ।

ଆଜି ହରିବାବୁ ନିଜ ସ୍ତ୍ରୀଙ୍କ କଥାରେ ଚମତ୍କୃତ ହୋଇଗଲେ । ପ୍ରକୃତରେ ସେ ତ ନୀଲୁ ପାଇଁ ଯଥେଷ୍ଟ କରିଛନ୍ତି —ନିଜର ଭାଇ ପ୍ରତି ଲୋକେ ଯାହା କରୁନାହାନ୍ତି,

ସେ ନୀଲୁ ପ୍ରତି ତାହାହିଁ କରିଛନ୍ତି । ନୀଲୁ ଏଣ୍ଟ୍ରାନସ୍ ପାସ୍ କରିବା ସମ୍ଭବ ନଥିଲା; ସେ ସାହାଯ୍ୟ କରି ତାକୁ ଉଠାଇଲେ, କ୍ରମେ କ୍ରମେ ସେ ଉନ୍ନତି କରି ଉଠିଲା —ସବୁ ତ ତାଙ୍କରି ଯୋଗେ । କିନ୍ତୁ ସେଥିଯୋଗେ କ'ଣ ନୀଲୁ ଉପରେ ତାଙ୍କର ଦଖଲସ୍ୱତ୍ୱ ହୋଇଗଲା । ଯେତେହେଲେ, ସେ ତା' ଉପରେ ନିଜର ଅଧିକାର ସାବ୍ୟସ୍ତ କରିପାରିଲେ ନାହିଁ । ଗୃହିଣୀ ନୀଲୁ ଉପରେ ଯେଉଁ ଅମିତ ଅଧିକାର ବିସ୍ତାର କରି କହିଲେ, ସେଟା ନୀଲୁ ମାନିବା ଉପରେ କେତେ ବେଶି ନିର୍ଭରକରେ, ସେଟା ସେ ବୁଝିଲେ; କିନ୍ତୁ —

ଏହିସବୁ କଥା ଭାବୁ ଭାବୁ ତାଙ୍କ ହୃଦୟର କେଉଁ ନିଭୃତ ପ୍ରଦେଶରେ କି ଗୋଟାଏ ଗୁରୁତର ଅଭାବ ହଠାତ୍ ଉତ୍ତେଜିତ ହୋଇ ହାହାକାର କରିଉଠିଲା । ବାସ୍ତବିକ ତାଙ୍କ ଜୀବନରେ ତ କିଛି ନାହିଁ ! କଙ୍କିଟି ଥିଲା ଯେ, ଗୃହର ତଥା ହୃଦୟର ସମସ୍ତ ଶୂନ୍ୟତା ସେ ଉଡ଼ାଇ ଦେଉଥିଲା । ସେ ତ ଗଲା । ଆଉ ତାଙ୍କର କିଏ ଅଛି—ଦଶ ବର୍ଷର ବିବାହିତ ଜୀବନରେ !

ନାଃ, ନୀଲୁ ତ ପିତୃମାତୃହୀନ, ହରିବାବୁ ନିଜେ ତ ଅପତ୍ୟହୀନ; ତେବେ !

ଏତେବେଳେ ସେ ବୁଝିଲେ, ଗୃହିଣୀ କାହିଁକି ନୀଲୁ ପ୍ରତି ଅନୁରକ୍ତ ହୋଇ ଉଠିଚନ୍ତି, କାହିଁକି ତାକୁ ଷୋଳପଣ ଅଧିକାର କରିବାକୁ ଚାହାନ୍ତି । ତାଙ୍କ ମନରେ ସାଂସାରିକ ଚିନ୍ତା ଓ ଆର୍ଥିକ ସୁବିଧାଟା ଯେତେ ପ୍ରବଳ ଭାବରେ ଆଘାତ କରିଥାଉ ପଛକେ, ମୂଳରେ ଶୂନ୍ୟ ହୃଦୟର ମୌଳିକ ଅଭାବଟା ହିଁ ଅଜଣାରେ କାର୍ଯ୍ୟକରୁଅଛି । ନାରୀର ମାତୃଭାବ ଉପରେ ସଂସାରର ଯାବତ୍ ଭସ୍ମ—ଅଙ୍ଗାର ଅଜାଡ଼ି ହେଲେ ମଧ ମୂଳରେ ମାତୃଭାବ ମାତୃଭାବହିଁ ରହିବ ।

\+ + + + +

ନୀଲୁବାବୁ କନକର ଶାଶୁଘରକୁ ବାହାରିଲା ବେଳୁଁ ନିଜଠାରେ ନିଜେ ନାହାନ୍ତି । ସବାରୀ ଭିତରେ ପ୍ରାୟ ତିନି—ଚାରି ଘଣ୍ଟା କାଳ ଆତ୍ମବିସ୍ମୃତ ହୋଇ କେବଳ ଭାବୁଚନ୍ତି — କନକ କ'ଣ କରୁଥିବ, ଏଇ କେତେଦିନ ତା' ଉପରେ କେତେ ପରିବର୍ତ୍ତନ ଏହି ଅଳ୍ପ ସମୟ ମଧ୍ୟରେ ଚାଲିଯାଇଥିବ, କେତେ କ'ଣ ନୂଆ ନୂଆ ଘଟୁଥିବ, ତା' ଭିତରେ ବୋହୂ ହୋଇ କନକ ଓଢ଼ଣାଟିଏ ପକାଇ ଅନଭ୍ୟସ୍ତ ଗାମ୍ଭୀର୍ଯ୍ୟରେ ଚଲପେର୍ କରୁଥିବ, ସେ କିପରି ଦିଶୁଥିବ, ତା'ର ସ୍ୱଭାବିକ ମଧୁମୟ ହସ ଟିକକ ତା' ମୁହଁରେ

ଥିବ କି ନାହିଁ । —ମୋଟ ଉପରେ ସେ ସୁଖରେ ଥିବ କି ନାହିଁ, ଇତ୍ୟାଦି । ଥରେ ତା' ମୁହଁଟି ଦେଖିଲେ ସବୁ ବୁଝି ପାରିବି ବୋଲି ଭାବୁ ଭାବୁ ମନେ ପଡ଼ିଲା, ବିବାହ ପୂର୍ବ ତାହାର କାନ୍ଦଣା କଥା । ଏତେ କଥା କନକ କାହୁଁ ଜାଣିଲା । ଏକାବେଳକେ ଏତେ କଥା କନକ ଭାବି ପାରିବ, ଏହା ତାଙ୍କ କଳ୍ପନାର ଅତୀତ ଥିଲା । ତା' କାନ୍ଦଣା ଶୁଣି ସେ ଦିନ ସେ ବୁଝିଥିଲେ, କେତେ ଗଭୀରରେ ଅଥଚ କେତେ ଅଳ୍ପ ବୟସରେ ନାରୀମାନଙ୍କ ହୃଦୟରେ ବାକ୍‌ସ୍ଫୂର୍ତ୍ତି ହୁଏ । ସେଇ କନକ ତ ! ସେଇ ଯେଉଁ ଦୃଷ୍ଟିରେ ସେ ତାକୁ ଚାହିଁଥିଲା — ତାହାର ଭାବ ବୁଝିବାକୁ ତାଙ୍କୁ ଆଜି ସୁଦ୍ଧା ଭୟ ହୁଏ । ସେ ଦୃଷ୍ଟି ଯେ କନକ ଆଖିରେ ଥିଲା, ସେ କେବେଁ କଳ୍ପନା କରିନାହାନ୍ତି । ଆଜି ସେ ଯେତିକି ଭାବୁଚନ୍ତି, ସେତିକି ସେ ଦୃଷ୍ଟିର ମହିମା ଉପଲବ୍ଧି କରି ପାରି ନିଜକୁ ଧନ୍ୟ ମଣୁଚନ୍ତି । ସେହି ଦିନୁ ନାରୀ ହୃଦୟର ଉଚ୍ଚତା ପ୍ରତି ଶ୍ରଦ୍ଧାରେ ଓ ସମାଜର ସୀମାବଦ୍ଧ ନୀଚତା ପ୍ରତି ଘୃଣାରେ ତାଙ୍କ ହୃଦୟ ଭରିଯାଇଚି ।

କେଡ଼େ ପରୀକ୍ଷାରେ ବାପଘରେ କନକ ଜୟଧ୍ୱଜା ଉଡ଼ାଇ ଚାଲିଆସିଥିଲା, ତାହା ନୀଳୁବାବୁଙ୍କ ପରି ଆଉ କିଏ ବୁଝିଚି ? ତାହା ତୁଳନାରେ ଶାଶୁଘର ପରୀକ୍ଷାଟା ତ କିଛି ନୁହେଁ । ତାଙ୍କର ଇଚ୍ଛା ହୁଏ, କନକର ସ୍ୱାମୀ ନିଧିବାବୁଙ୍କ ସହିତ ସାକ୍ଷାତ ହେଲା ମାତ୍ରକେ କନକକୁ ସେ କିପରି ଦେଖୁଛନ୍ତି ବୋଲି ପଚାରିବେ । ହୃଦୟ ତାଙ୍କର ଗର୍ବରେ ନାଚି ଉଠେ —ଏତେ ମହାନ୍ ହୃଦୟ କନକର ! ଆଉ ସେ କନକର ଭାଇ ! ଭାଇ —ଭାଇ ତ ! ସେଥିରେ ମାୟା ନାହିଁ, ଛନ୍ଦ ନାହିଁ, କପଟ ନାହିଁ । କନକ ପ୍ରତି ତାଙ୍କର ଆବାଲ୍ୟ ମମତା, ସ୍ନେହ ଓ ଶ୍ରଦ୍ଧା ଯେ କେବଳ ଭ୍ରାତୃସ୍ନେହର ଗଣ୍ଡିରେ ଆବଦ୍ଧ ନୁହେଁ, ତାହା ସେହିଥିରେ ଥାଇ ସୁଦ୍ଧା ଯେ, ତା'ଠାରୁ ଅନେକ ଉଚ୍ଚରେ —ଅନେକ ଗଭୀରରେ, ଏହା ସେ ବୁଝୁଚନ୍ତି । କିନ୍ତୁ ବାସ୍ତବିକ,କନକର ସେହି ଦୃଷ୍ଟିଟିଠାରୁ ତାଙ୍କର ପୁନର୍ଜନ୍ମ । ଆଖିର ଭାଷାରେ, ତଥା କାନ୍ଦଣା ଭାଷାରେ ତାଙ୍କର ଚକ୍ଷୁ ଖୋଲି ଯାଇଥିଲା । ସେତେ ଦିନଯାଏଁ ସେ ଖୋଜି ପାଇ ନଥିଲେ କନକ ତାଙ୍କର କିଏ, କାହିଁକି ତାଙ୍କ ହୃଦୟରେ ତା'ର ଏତେ ଅଧିକାର ଓ ରାଜତ୍ୱ, କ'ଣ ତା'ର ସମ୍ବନ୍ଧ ! ସେ ଦିନ କନକର ସମାଧାନକୁ ସେ ନତ ଶିରରେ ଗ୍ରହଣ କରିଥିଲେ; ତାଙ୍କ ମନରୁ ଯଥେଷ୍ଟ ଗ୍ଲାନି ପରିଷ୍କାର ହୋଇଯାଇଥିଲା । କଥାଟାର ସମାଧାନ ଅନ୍ୟଭାବରେ ହୋଇପାରିଥାନ୍ତା— ସେ ନିଜେ ସେଥିପାଇଁ ଯେ ଅନ୍ୟ ଦିଗରେ ଆଖି ନ ପକାଇଥିଲେ, ତାହା ବି ନୁହେଁ, ତେବେ କନକର ଯେ ନିର୍ଦ୍ଦେଶ, ସେଟା ସମାଧାନର ଶେଷ —ନାରୀର ନାରୀତ୍ୱ ଦେଖାଇ କନକ ଚାଲିଗଲା । ନୀଳୁବାବୁ ସେ ଆଦର୍ଶ ଗ୍ରହଣ କରି ପୁରୁଷତ୍ୱ

ଦେଖାଇବାର ସଂକଳ୍ପ କରି ରହିଲେ । ସଂକଳ୍ପଟି କାର୍ଯ୍ୟରେ ପରିଣତ କରିବାର ଦିନରେ ସେ ସ୍ଥିରଭାବରେ ହୃଦୟଙ୍ଗମ କରିପାରିଲେ ଯେ ଅନ୍ତରେ ଅନ୍ତରେ ତାଙ୍କର ସଂକଳ୍ପ ସିଦ୍ଧି ହୋଇସାରିଲାଣି—ବାକି କେବଳ ବାହାରଟା ମାତ୍ର ।

ଶତ ଆଶା, ଶତ ଆଶଙ୍କାର ଭାର ଘେନି ସେ ସବାରୀରୁ ଓହ୍ଲାଇଲେ, କିନ୍ତୁ ଏ କ'ଣ ? ସଂକଳ୍ପ କୁଆଡ଼େ ଗଲା, ପୁରୁଷତ୍ୱ କୁଆଡ଼େ ଗଲା, 'ଯାକୁ ଯା କରିବି, ତାକୁ ତା' କରିବି', ଏପରି ଯେ କେତେ କଅଣ ଭାବିଆସିଥିଲେ, ସେ ସବୁ କୁଆଡ଼େ ଗଲା । କିପରି ଗୋଟାଏ କାପୁରୁଷତା ତାଙ୍କୁ ଭିଡ଼ି ଭିଡ଼ି ପୁଣି ସବାରୀରେ ନେଇ ବସାଇ ଦେଲା ! ସମ୍ମୁଖରେ ନିଧିବାବୁ ହସି ହସି କୁଶଳ ପଚାରି ଭିତରକୁ ଆହ୍ୱାନ କଲେ । ମୂକବତ୍ ଯନ୍ତ୍ରଚାଳିତ ହେଲାପରି ନୀଳୁବାବୁ ଉଠି ତାଙ୍କ ପଛେ ପଛେ ଘର ଭିତରକୁ ଗଲେ । କି ଗୋଟାଏ ମୋହରେ ଆବିଷ୍ଟ ହୋଇ ଦୁର୍ବଳତାର ଅନ୍ଧାରରେ ଦେଖିଲେ ନିଜକୁ; ବୁଝିଲେ, ତାଙ୍କ ହୃଦୟର ବଳ କେତେ କମ୍; ଜାଣିଲେ, ତାଙ୍କ ମନରେ ନିଭୃତରେ ପାପଅଗ୍ନି ଭସ୍ମାବୃତପ୍ରାୟ ହୋଇ ରହିଚି—ଲିଭିନାହିଁ । ସେ କନକର ଆଦର୍ଶ ଗ୍ରହଣ କରି ପାରିନାହାନ୍ତି, ଆଉ ନିଜଠାରେ ତାଙ୍କର କ୍ଷମା ନାହିଁ । ସ୍ଥିର କଲେ, ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାର ଶକ୍ତି ଉତ୍ପନ୍ନ ନ ହେବାଯାଏଁ ସେ ପରୀକ୍ଷାସ୍ଥଳ ଛାଡ଼ି ପଳାଇବେ ନାହିଁ । ହଠାତ୍ ତାଙ୍କ ମନରେ ଗୋଟାଏ ଘୃଣିତ ଭାବ ଖେଳିଗଲା, କିନ୍ତୁ ତାକୁ ସେ ଘୃଣିତ ବୋଲି ମନରୁ ଦୂର କରିଦେଲେ । ଛି, ଛି, କନକକୁ ସେ ଭଉଣୀ ଛଡ଼ା ଆଉ କିଛି ବୋଲି ତ କେବେଁ ଭାବି ନାହାନ୍ତି, ତେବେ ତାଙ୍କର ଏ ଦୁର୍ଦ୍ଦଶା କାହିଁକି ! ହାୟରେ ମୂଢ଼ ମନ, ତୁ ଭାବିଚୁ କି ନାହିଁ, ତୁ ଜାଣିଲୁ କିପରି ? ମନେକର —ଯେତେବେଳେ କନକକୁ ଭାବିଚୁ, ସେତେବେଳେ ପ୍ରାଣପଣ କ୍ଷିପ୍ରଗତିରେ 'ଭଉଣୀ ଭଉଣୀ' ବୋଲି ଜୋର କରି କହିଚୁ; ମନେକର ତୋ ନିଜର ଭବିଷ୍ୟତ୍ ଚାଳନା ପାଇଁ ତୁ କୁଆଡୋରି କରି, କନକର ପଛଆଡୁ ଆଉ ସବୁ ନିଭାଇ ପକାଇ ଅକ୍ଷରେ ଅକ୍ଷରେ 'ଭଉଣୀ' ବୋଲି ଲେଖି ରଖିଚୁ ! ତୋର ସେ ଭଉଣୀ ନୁହେଁ, ମାନିଲି —ତୁ ତାକୁ ପତ୍ନୀ କରି ଚାହିଁ ନାହୁଁ, ଦାସୀ କରି ଦେଖି ନାହୁଁ, କୁତ୍ସିତ ଇନ୍ଦ୍ରିୟସୁଖଭାଗିନୀ କରି ମଧ୍ୟ ଦେଖିନାହୁଁ । ତିନି ପ୍ରସ୍ଥ ପାପରୁ ତୋ'ଠାରେ ଦୁଇ ପ୍ରସ୍ଥ ନଥାଇପାରେ, କିନ୍ତୁ ମିଥ୍ୟାଜନିତ ପାପ ଅବଶ୍ୟ ଅଛି । ସେ ତୋର ଭଉଣୀ ବୋଲି ତୋର ତା'ର ସମ୍ବନ୍ଧ ନୁହେଁ—ଠିକ୍ ବିପରୀତ; ତୋର ତା'ର ସମ୍ବନ୍ଧ ମଧ୍ୟ ମିଥ୍ୟା ନୁହେଁ —ବାସ୍ତବ ସତ୍ୟ । ସେ ସମ୍ବନ୍ଧ ଏ ଜଗତର ଭାଇ ଭଉଣୀ ସମ୍ବନ୍ଧଠାରୁ ଢ଼େର ଉପରେ; ସେଟା ମନୁଷ୍ୟ ରକ୍ତର ସମ୍ବନ୍ଧ ନୁହେଁ —ବିଶ୍ୱରକ୍ତର, ସୃଷ୍ଟି ରକ୍ତର ସମ୍ବନ୍ଧ ।

ତାହା ମୂଳରେ ସେହି ଅନନ୍ତ ପ୍ରେମ —ଯାହାର ପ୍ରବାହରେ ତୁ ଓ ତୋର ସବୁର ଜନ୍ମ ! ତେବେ ନିଶ୍ଚିତ ହୁଅ । ଭୁଲ୍‌ରେ ଯଦି ସେ ପ୍ରେମକୁ ଆଣି ବିବାହ ଉପରେ ରଖିଥାଉ, ତା'ହେଲେ ସେ ଦୋଷ ତୋର ନୁହେଁ —ଦେଶର, ସମାଜର, କାଳର ଦୋଷ । ଏ ପ୍ରେମକୁ ନ ବୁଝି ଯଦି ପାଇଛୁ, ତେବେ ତୁ ଧନ୍ୟ । ବାସ୍ତବ ଜଗତର କୌଣସି ସମ୍ବନ୍ଧରେ ତାକୁ ପୂରାନାହିଁ, କାହିଁରେ ସେ ଧରିବାର ନୁହେଁ ।

ମେଘ କଟିଗଲା । ଏତେବେଳେ ନୀଲୁବାବୁ ବୁଝିଲେ, ସେ କେଉଁଠି । ବାସ୍ତବିକ ତ, ସେ ନ ବୁଝି ନିଜକୁ ଦୋଷୀ ମଣୁଥିଲେ ଓ ବାହ୍ୟ ଜଗତର ଖାତିରିରେ ନିଜକୁ ନିଜେ ଠକାଉଥିଲେ । ତାଙ୍କ ପ୍ରେମରେ ଆଉ ବିବାହ କାହିଁ ? ତାଙ୍କ ପ୍ରେମରେ ଯଦି ସଂସାରର କୌଣସି ସମ୍ବନ୍ଧର ସ୍ଥାନ ନାହିଁ, ତେବେ ସେ ତ ଏହି ବିବାହ ସମ୍ବନ୍ଧ ! ନହେଲେ, କନକ ତ ଯେକୌଣସି ଭାବରେ ତାଙ୍କ ଆଗରେ ଠିଆହୋଇପାରେ —କେବଳ ସ୍ତ୍ରୀ ଭାବରେ ନୁହେଁ । ତେବେ ତ ଅତି ଉତ୍ତମ, ସଂସାରର ଦୃଷ୍ଟି ତାଙ୍କଠାରୁ ପ୍ରତିହତ ହୋଇ ଫେରିଯିବ ! ପ୍ରେମର ପ୍ରଧାନ ପ୍ରତିବନ୍ଧକ ବିବାହ ତ ଯାଇଚି, ତେବେ ଆଉ କାହିଁକି ଏ ଦୁର୍ବଳତା !

ନୀଲୁବାବୁ ଶାନ୍ତ ହେଲେ ।

(୬)

ନିଧିବାବୁଙ୍କ ସହିତ ପୁଣି ଦେଖାହେଲାମାତ୍ରକେ ନୀଲୁବାବୁ ହସି ହସି ତାଙ୍କୁ ଗୋଟାଏ ଆଡ଼କୁ ଝିଙ୍କି ଆଣି, ଓଡ଼ିଆ ଇଂରାଜୀ ମିଶା ଭାଷାରେ ପଚାରିଲେ, "ହଇ ହୋ ! କଙ୍କିଟି କଅଣ କେମିତି କରୁଥିବ ଏଠି, ମୋତେ ବଡ଼ ସନ୍ଦେହ ଲାଗୁଚି; ପିଲାଟା ।"

"ନା, ନା, ବେଶ୍ ଭଲ ତ !" —ଏହା କହୁଁ କହୁଁ ନିଧିବାବୁଙ୍କ ମୁହଁ ରଙ୍ଗା ପଡ଼ିଗଲା ।

"ସମସ୍ତେ ଖୁସି ଅଛନ୍ତି ତ ? ତମ ବୋଉ ? ମୁଁ ସମସ୍ତଙ୍କଠାରୁ ଦୋଷ ମାଗି ନେଇଯିବି । ପିଲାଟା-ତା'ର କେହି ଯେପରି ଦୋଷ ନ ଘେନ !—"

"ନା, ନା—ସେ ଗୋଟାଏ କ'ଣ ? ପ୍ରକୃତରେ ବୋଉ କ'ଣ, ଆଉ କିଏ କ'ଣ, ସମସ୍ତେ ଖୁସି ଅଛନ୍ତି ।"

ହଠାତ୍ ନୀଳୁବାବୁ ପଚାରି ବସିଲେ, ''ଆଉ ତମେ ନିଜେ ?''

ନିଧିବାବୁଙ୍କ ମୁହଁ ପୁଣି ରଙ୍ଗା ପଡ଼ିଗଲା - ଆଖିରେ ନିଭୃତ ସୁଖର ଦୀପ୍ତି କହିଲେ, ''ମୁଁ ବି, ମୋ କଥା ଛାଡ଼ି ଦିଅ—''

ଏହି ସମୟରେ ସ୍ୟାତୁ କିଏ ଗୋଟାଏ ଆସି ନିଧିବାବୁଙ୍କୁ କହିଲା, ''ଦେଖା ହବାକୁ ଯିବେ ପରା !'' ''ହଁ, ହଁ, ଆଗ ଜଳଖିଆ କରି ସାରନ୍ତୁ । ଦେଖା ହବତ, ଆଉ କ'ଣ !'' ''ନାଇଁ, ମା' କହିଲେ— ଭିତରେ ଯାଇ ଜଳଖିଆ କରିବେ ।'' ''ତେବେ ନେଇ ଯା'' କହି ନିଧିବାବୁ ଛପି ଛପି ଯାଇ ହଠାତ୍ ଦୁଆର କୋଣରୁ ଗୋଟିଏ ଦଶ-ବାର ବର୍ଷର ଝିଅଟିକୁ ଭିଡ଼ି ବାହାର କରିଆଣିଲେ । ତା' ହାତରେ ଗୋଟାଏ ବଡ଼ ବେଲାଖଣ୍ଡିକରେ ମନ୍ଦାଏ ଗୋବର ପାଣି—ଆଉ ସେ କବାଟ କୋଣରେ ଗୋଟାଏ ଖଣ୍ଡିଆ ଛାଞ୍ଚୁଣୀ ମଧ ଥିବାର ଦେଖାଗଲା । ଝିଅଟି ବେଲାଟାକୁ ଧଡ଼୍ କରି ଖସାଇ ପକାଇ କାନ୍ଦିବାକୁ ଲାଗିଲା; ଝିଅଟି-ରଙ୍ଗୀ ।

ନିଧିବାବୁ ରାଗିଲା ପରି ହୋଇ ଆଖି କାଢ଼ି ଦାନ୍ତ କାମୁଡ଼ି ରଙ୍ଗୀକୁ ଧମକାଇ କହିଲେ, ''ହଇଲୋ ଦଶାମୁହାଁ, ତତେ ପରା ମନାକରିଥିଲି । ହଇ ଲୋ ପୁଣି ସେଇ ଥଙ୍ଗା !'' ନୀଳୁବାବୁ ଆସି ରଙ୍ଗୀହାତକୁ ଭିଡ଼ି ଆଣି କହିଲେ, ''ହାଁ, ହାଁ —ଛାଡ଼ିଦିଅ, ଛାଡ଼ିଦିଅ,—ପିଲାଟା । ଏଇ ପରା ରଙ୍ଗୀ ? ଓ ହୋ, ବୁଝିଲି, ହଇ ହୋ ନିଧିବାବୁ, ମୁଁ ରଙ୍ଗୀବର ଯେ । ସେଥିଯୋଗେ ସେ ଯାହା କରିବ କରୁ, ତାକୁ ଆଉ କିଛି କହ ନା । ଏଥର ମୁଁ ତାକୁ ଧରିଲିଣି-ଆଉ କ'ଣ ଛାଡ଼ୁଚି ! ଏଇ ଥର ସବାରୀରେ ବସାଇ ନେଇଯିବି ।'' ରଙ୍ଗୀ ପଳାଇଯିବା ପାଇଁ ଚୂଡ଼ାନ୍ତ ଚେଷ୍ଟା କରୁଥାଏ, କାନ୍ଦଣା ତ ନୀଳୁଙ୍କ ହାତକୁ ଆସିଲା ବେଳୁଁ ବନ୍ଦ, —ନେଇ ଯିବା କଥା ଶୁଣି ''ବୋଉ, ବୋଉ'' ବୋଲି ଚିହାର କରିବାକୁ ଆରମ୍ଭ କରିଦେଲା । ପ୍ରକୃତ ଭୟରେ ତା' ମୁହଁ ଶୁଖିଗଲା । ନୀଳୁବାବୁ ତାକୁ ଛାଡ଼ି ଦେଉ ଦେଉ କହିଲେ, ''ଆଚ୍ଛା ହଉ, ତୁ କହ-ମୁଁ ତୋ ବର; ତା ହେଲେ ଏଇନାଗେ ଛାଡ଼ିଦେବି ।'' ରଙ୍ଗୀ ନ କହେ ! ଅଧିକ ''ବୋଉ, ବୋଉ' ବୋଲି ଚିହାର କଲା ! ନୀଳୁବାବୁ ଛାଡ଼ିଦେବାକୁ ବସିଲାକ୍ଷଣି ନିଧିବାବୁ କହିଲେ- ''ନା, ନା, ସେ କହୁ ଆଗ ! ମାନିବ, ତେବେ ଛାଡ଼ିବ । ପୋଡ଼ାମୁହାଁ ଜଦ ହଉ ! କଥା ଶୁଣିବୁ ନାହିଁ, ନା-ଯେମିତି ନ ଶୁଣିବୁ ସେମିତି ପା ! ତେମେ ଆସୁଥା, ମୁଁ ଦେଖେଁ, ଜଳଖିଆ ପତର କଅଣ ହେଲା—'' ଏହା କହି ନିଧିବାବୁ ଭିତରକୁ ଚାଲିଗଲେ । ରଙ୍ଗୀ ଡରେ ଧୀରେ ଧୀରେ କହିଲା, ''ଓଃ, ଭାରି ତ ଭାଇ-ରହ ରହ, ନୂଆ'ଉକୁ କହି

ଦଉଚି ଯେ !'' ନୀଳୁବାବୁ ଦେଖିଲେ, ଏଥର ରଙ୍ଗୀକୁ ନ ଛାଡ଼ିଦେଲେ କଥାଟା ଖରାପ ହେବ । କହିଲେ, ''ଆଚ୍ଛା ହଉ, କଥାରେ ନ କହିଲୁ ନାହିଁ, ମନେ ମନେ କହି ଦେ- ମୁଁ ତୋ ବର !'' ଏହା କହି ଛାଡ଼ିଦେଲେ । ରଙ୍ଗୀ ଦଉଡ଼ି ପଳାଉ ପଳାଉ କହିଲା, ''ଓଃ, ଭାରି ତ ଉଦ୍ରୁଖିଆ ! ଏଇଟା କାଳେ ମୋ ବର, ଉ, ହି-ତେମେ ତ ନୂଆ'ଉ ବର !'' ''କାହା ବର ?'' ''ନୂଆ'ଉ, ନୂଆବଉ, ନୂ-ଆ-ବ-ଉ-ବ-ର ।'' ଏହା କହି ରଙ୍ଗୀ ଛାଞ୍ଚୁଣୀ ମୁଠାଟା ତାଙ୍କ ଉପରକୁ ଫୋପାଡ଼ିଦେଇ, ବେଲାଟା ଘେନି ଦଉଡ଼ି ପଳାଇଗଲା - ଆଉ ଗୋବରପାଣି ଆଣିବା ପାଇଁ ବୋଧହୁଏ । ନୀଳୁବାବୁ ସ୍ତମ୍ଭିତ ହୋଇଗଲେ; ଯାର ଅର୍ଥ କ'ଣ କିଛି ବୁଝି ପାରିଲେ ନାହିଁ । ଏଟା ଥଟ୍ଟା, ପରିହାସ, ରହସ୍ୟ, ନା ବ୍ୟଙ୍ଗ— କ'ଣ କିଛି ବୁଝି ପାରିଲେ ନାହିଁ । ଏଡ଼େ ଟିକିଏ ପିଲା- ! ବାରିକଟି କହିଲା, ''ତେମେ ଚାଲ ବାବୁ, ରଙ୍ଗୀ ବାୟାଣୀଟା କଥାରୁ କ'ଣ ପାଇବ ?'' ଏହା କହି ଅଗ୍ରସର ହେଲା । ନୀଳୁବାବୁ କ'ଣ ବୋଲି କ'ଣ ଭାବୁ ଭାବୁ ପଛେ ପଛେ ଚାଲିଲେ ।

+ + + + +

ଗଉରୀ ବିରକ୍ତ ହୋଇ କହିଲା, ''କାନ୍ଦଣା ଶୁଣିବେ ବୋଲି ମଲେ ଏ ମାଇପିଗୁଡ଼ାକ—ଯା, ମର । ସଇଲା ତ, ଏଥର ଯା ।'' ସଂସାରର ମାଇପି ପିଲାଏ ରୁଣ୍ଡ ହୋଇ କନକର କାନ୍ଦଣା ଶୁଣୁଥିଲେ— ଏଇଥିରୁ କାଳେ ବହୂର ଭଲମନ୍ଦ ସବୁ ପରଖା ଯାଏ । ଏଇଟା ହେଲା ଶାଶୁଘରେ କନକର ପ୍ରଥମ କାନ୍ଦଣା । ଏକାଗ୍ର ମନରେ ଖୁନ୍ଦାଖୁନ୍ଦି ହୋଇ ସମସ୍ତେ ଶୁଣୁଥିଲେ-କାନ୍ଦଣା ସରିଲାରୁ ସମସ୍ତେ ଛତ୍ରଭଙ୍ଗ ଦେଲାପରି ଯାଡ଼େ ସ୍ୟାଡ଼େ ହୋଇଗଲେ ।

କନକକୁ ବୁନି କରି ଦେଇ ପୂର୍ବୋକ୍ତ ସାବୀଅପା (ଏଇ ଗାଁ ଝିଅ, ବିଧବା, କୋଠପୁଅ ଘରର- ସେ ସଂସାରଯାକର ଅପା) ଆସି ସମସ୍ତଙ୍କ ଆଗରେ ବ୍ୟକ୍ତ କରିଦେଲା—''ପୁଅଟି ଭାରି ନାକକୁଳା, ମୁହଁକୁ ଚଳକୁ କରି କାନ୍ଦୁଚି-ବହୂଟାକୁ ବୁନି ହବାକୁ ବି କହୁ ନାହିଁ । ନାଃ, ବହୂଟିକୁ କାନ୍ଦଣା ଆସେ-ପାଠ ପଢ଼ିଚି, ତମେ କ'ଣ କହୁଚ । ଦେଖୁ ନା - କେଡ଼େ ଶୁଧିଅ କଥା !''

ଭଲ କାନ୍ଦଣାରେ ଗଛରୁ ପତ୍ର ଝଡ଼ି ପଡ଼େ ବୋଲି ଶୁଣାଯାଏ—ସେ କାନ୍ଦଣା କି ଧାଚ୍ଚର, ମୋତେ ସମ୍ପୂର୍ଣ୍ଣ ଅଜଣା । ତେବେ ଆଜି କନକର କାନ୍ଦଣାରେ ଗଛରୁ ପତ୍ର ନ

ଝଡ଼ିଥିଲେ ସୁଦ୍ଧା ସମସ୍ତେ ଭଲ କାନ୍ଦଣା ବୋଲି ପ୍ରଶଂସା କଲେ । ନୀଲୁବାବୁଙ୍କର ତ ଆଖିରୁ ଲୁହ ଗଡ଼ି ପଡ଼ିଲା ।

ନିଜ ଆଖିରୁ ଲୁହ ପୋଛି ଦେଇ ଗଳା ସଫା କରି ନୀଲୁବାବୁ କନକର ସୁ-ଆବୃତ ଅବନତ ମୁଖଆଡ଼କୁ ଥରକୁ ଥର ଅନାଇ କହିଲେ, "ତୁ କାନ୍ଦୁ ଗୋଟାଏ କଅଣ ମ କନି । କାନ୍ଦିବାର କଥା କ'ଣ ମୁଁ କିଛି ବୁଝି ପାରୁନାହିଁ ।" କନକ ସେହିପରି ମୌନ ରହିଲା—ସମ୍ଭବତଃ ନିଜକୁ ସଂଯତ କରୁଥିଲା । କିଛିକ୍ଷଣ ମୁଣ୍ଡ ଟେକିଲା ନାହିଁ —ମୌନ ଭାବରେ କିପରି ଗୋଟାଏ ମୋହରେ ଆଚ୍ଛନ୍ନ ହେଲା ପରି ବସିରହିଲା । କେବଳ ଗୃହ ତଳରେ ତାହାର ହସ୍ତାଙ୍କିତ ଗଭୀର ରେଖାରୁ ତା' ଅନ୍ତରର ଘୋର ଯୁଦ୍ଧର ଯତ୍‌କିଞ୍ଚିତ ଅଭାସ ମିଳୁଥାଏ ।

କିଛିକ୍ଷଣ ଉତ୍ସୁକ ନେତ୍ରରେ ତା' ଆଡ଼କୁ ଚାହିଁ ଚାହିଁ ନୀଲୁବାବୁଙ୍କୁ ଭାରି ଅଡୁଆ ଲାଗିଲା-ଅବସ୍ଥାଟାର ଅସ୍ୱାଭାବିକତାଟିକ ତାଙ୍କୁ କନକ ପରି ଜଡ଼ କରିବାକୁ ଚାହିଁଲା, କିନ୍ତୁ, ସେ କିଛି କହିବାକୁ ହେବ, ଏଇଥିପାଇଁ କଥା ଆରମ୍ଭ କରିଦେଲେ-"କନି, ମୁଁ ଯା ଭିତରେ —ଏଇ ଏଠଉଁ ଫେରି କଟକ ଚାଲିଯିବି ଆଉ ବୋଧହୁଏ, କିଛି ଦିନ ଯାଡ଼କୁ ଆସିବି ନାହିଁ । ସେଇଥି ପାଇଁ ମୁଁ ଭାଉଜଙ୍କି କହିଲି-ମୁଁ ଯାଉଛି ଥରେ ବୁଲି ଆସେଁ, ତେମେ ତ ଏଇଠି ଅଛ, ଯିବ ଆସିବ ।" ଏଇଥର କନକ ନତମସ୍ତକ ଟେକି ଥରେ ନୀଲୁବାବୁଙ୍କ ମୁହଁକୁ ଚାହିଁଲା-ଗୋଟାଏ କିଛି ପ୍ରଶ୍ନ କଲାପରି ଟିକିଏ ଚକିତ ଭାବରେ ଚାହିଁଲା, ମୁହୂର୍ତ୍ତକ ପାଇଁ, ମୁହଁ ସଙ୍ଗେ ସଙ୍ଗେ ପୁଣି ତଳକୁ ହୋଇଗଲା । କିନ୍ତୁ କନକ କଥାରେ କହିଲା, "କି, କାହିଁକି ଆସିବ ? ମୁଁ ତ ମରିଚି - ତମର ଏଠି କିଏ ଅଛି କି ?" ସେ ଚାହାଁଣି, ଏ କଥା—ନୀଲୁବାବୁ ଯାର ଅର୍ଥ ଗ୍ରହଣ କରିପାରିଲେ ନାହିଁ । ଏପରି କଥା ତ ବାପଘର ଲୋକ ଦେଖିଲେ ବନ୍ଧୁମାନେ କହିଥାନ୍ତି-ଓ, ସେଥିରେ ଲୋକ ଖୁବ୍ କମ୍ ଆସ୍ଥା ଦିଅନ୍ତି; କିନ୍ତୁ ଏ ଚାହାଁଣି, ପୁଣି ଏ କଥା ! କିଛିକ୍ଷଣ ଭାବି ଭାବି କନକର ମନୋଭାବ ନ ବୁଝିପାରି ନୀଲୁବାବୁ ଗୋଟାଏ ଗଭୀର ଦୀର୍ଘନିଃଶ୍ୱାସ ପକାଇଲେ । ହଠାତ୍ କନକ ମୁଣ୍ଡଟେକି ଅନାଇଲା—ମୁହଁରେ ଲୁଗା ନଥିଲା, ନୀଲୁବାବୁ ବି ଚାହିଁଲେ । ଚାରି ଚକ୍ଷୁ ପ୍ରାୟ ଦଣ୍ଡେକାଳ ମିଳିତ ହୋଇ ରହିଲା; କାହାରି ଦୃଷ୍ଟି ପ୍ରତିହତ ହୋଇ ଫେରିଲା ନାହିଁ । ଦୁହେଁ ଦୁହିଁଙ୍କୁ ପ୍ରାୟ ବୁଝିନେଲେ; ଏକା ମୁହୂର୍ତ୍ତରେ ଦୁହେଁ ହସି ଉଠି ଦୃଷ୍ଟି ଫେରାଇଲେ । ନୀଲୁବାବୁ ଆଗ୍ରହ ସହିତ କହିଲେ, "ଦୁଷ୍ଟା ଟୋକୀ, (ଏଟା, ଗୋଟାଏ ପିଲା ଦିନର ବ୍ୟାକରଣ ସାଧନା) ଢଙ୍ଗ କରୁଚି !

ଗୋଟାଏ କାନମୋଡ଼ା ଦେବି ଯେ ଫେରେ —ମରିଚି ! ସତେ ମଲା କି ଆଉ !'' କନକ ଆନନ୍ଦରେ ଉଠି ପାନ ଭାଙ୍ଗିବାକୁ ଗଲା । ନୀଲୁବାବୁ କହିଲେ, ''ତୋ ଶାଶୁଟି କେମିତିକା ଲୋକ କିଲୋ ? ଆଉ ନଣନ୍ଦଟିମାନେ କିପରି —ଗୋଟାଏ ତ ମତେ ବରିଚି । ବଡ଼ୁଟି ପରା ବିଧବା, ନୁହେଁ ?'' କନକ, ''ସମସ୍ତେ ଆଚ୍ଛା ଭଲ'' ବୋଲି କହି ପାନ ବଢ଼ାଇ ଦେଲା । ନୀଳୁବାବୁ ପାନ ନେଇ ପୁଣି ପଚାରିଲେ, ''ନିଧିବାବୁ କହୁଥିଲେ, ଅଳ୍ପଦିନେ ଛୁଟି ସରିଯିବ, କଟକ ଚାଲିଯିବେ ବୋଲି,—ତତେ ନବାର କଥା ହଉଚି ନା କ'ଣ ମ ?'' କନକ ମୁହଁ ଫେରାଇ ଲଜ୍ଜିତ ହୋଇ ତା' କୋଣଟିରେ ଯାଇ ବସିଲା । ନୀଲୁବାବୁ ପୁଣି କହିଲେ ହସି ହସି, ''କି ଲୋ, କିଛି କହୁନାହୁଁ କାହିଁକି ମ, ପୋଡ଼ାଟା !'' ''ମୁଁ କାହାରିକି ଜାଣେ ନାହିଁ, ଯା; ମୋର ଦୁଃଖ ଯାଉ ନଥିଲା ! ମୁଁ କାହିଁକି କାହା ସଙ୍ଗେ କୁଆଡ଼େ ଯାଉଥିଲି-ଯା !'' ଏହା କହି କନକ କାନ୍ଥ ଆଡ଼କୁ ମୁହଁ ବୁଲାଇ କାନ୍ଦିଲା ସ୍ୱରରେ କହିଲା, 'ଏଁ ଏଁ-ମତେ ତେମେ କିଛି କହିବ ନାହିଁ; ଯା ତମେ ବଡ଼ ଜଣେ ! ଏଁ ଏଁ''— କହି ଧଡ଼ପଡ଼ ହୋଇ କାନ୍ଥରେ ବିଧା ମାରିବାକୁ ଲାଗିଲା । ନୀଲୁବାବୁ ହସି ହସି କହିଲେ, ''ଭାରି ବହୂ ହବୁ ତ ତୁ ଜଣା ଯାଉଚି ! ସେହି ପିଲା ମତି ଆଜିଯାଏ ଗଲା ନାହିଁ - ଆଉ ଛେନା ବହୂଟେ ହବୁ ତୁ !'' ''କି, ତେମେ କାହିଁକି ମତେ ଯା ତା କଥା କହିବ ? ମୁଁ କାହିଁକି ବହୂ ହେମି-ଭାରି ଚଲାଖି-ମୁଁ ତ ଝିଅଟେ ।'' ''ଓଃ ହୋଃ, ତୁ ପରା ବହୂ ନହୁଁ ! ଝିଅଟେ ? ଓଃ-ହୋଃ !'' କହି ନୀଲୁବାବୁ ହସି ଉଠିଲେ । ଏହିପରି ସମୟରେ ଗଉରୀବୋଉ ସେହି ଦୁଆର ପାଖକୁ ଆସି ଭିତରକୁ ଉଦ୍ଦେଶ୍ୟ କରି କହିଲେ, ''ଆଲୋ ବହୂ, ପୁଅଟିକୁ ପାନପାନ ଖଣ୍ଡେ ଦଉନଉଁ ?''

ଏ ଅପରିଚିତ କ'ଣ୍ଠସ୍ୱରଟି ଶୁଣି ନୀଲୁ କନକକୁ ଚୁପ୍ କରି ପଚାରିଲେ, ''ଏଇ ତୋ ଶାଶୁ କି ଲୋ ?'' ''କନକ 'ହଁ' ବୋଲି କହି ମୁଣ୍ଡ ଟୁଙ୍ଗାରିଲା । ସେହିଠୁ ନୀଳୁବାବୁ ''ହଁ, ମୁଁ ପାନ ଖାଉଚି ଯେ'' ବୋଲି କହୁ କହୁ ଉଠି ଯାଇ ଗଉରୀବୋଉଙ୍କ ଗୋଡ଼ ପାଖରେ ମୁଣ୍ଡିଆ ମାରି ପାଞ୍ଚଟି ଟଙ୍କା ସେହିଠାରେ ଥୋଇଦେଲେ । 'ଉଠୁ ବାବା' ବୋଲି କହି ବୁଢ଼ୀ ତାଙ୍କ ମୁଣ୍ଡରେ ହାତଦେଇ ଉଠାଇଦେଲେ । ପୁଣି ତାଙ୍କୁ ନେଇ ତାଙ୍କ ଆସନରେ ବସାଇ ଘର ହାଲଚାଲସବୁ ପଚାରିଲେ ଏବଂ ନିଜ କଥା ମଧ ଯାହୁ ସ୍ୟାହୁ କହିବାକୁ ଲାଗିଲେ । କଥା କଥାରେ ନୂଆବୋଉଙ୍କ କଥା ଉଠିଲା । ବୁଢ଼ୀ ପଚାରିଲେ, ''ହଇ ହେ ବାପ, ଜୋଇଁ ଭଲ ଅଛନ୍ତି ନା ? ସେ କାହିଁକି ଟିକିଏ ଆସିଲେ ନାହିଁ ? ଆଉ ମୋ ସରଟି (ହିରିବାବୁଙ୍କ ସ୍ତ୍ରୀ) - ହାୟ, ହାୟ, ତା' ବାହାଘରକୁ ଯା ତାକୁ ଦେଖିଥିଲି, ଜୋଇଁଙ୍କୁ ବି ସେଇ ଯା ଦେଖିଚି ।'' ନୀଲୁବାବୁ ଯାହା କହିବାର

କହିଲେ । ବୁଢ଼ୀ ସେଠଉଁ ଉଠି "ମୁଁ ଯାଏଁ ଦେଖେଁ, ଖିଆପିଆ ଯୋଗାଡ଼ କ'ଣ ହେଉଚି । ବସ ବାପ" ବୋଲି କହି ବାହାରିଲେ । ନୀଲୁବାବୁ ଟିକିଏ ଗମ୍ଭୀରଭାବରେ ପଚାରିଲେ, "ମାଉସୀ, କଳିଟି ଆମର ପିଲା—ଖେଳବୁଦ୍ଧି ତା'ର ଯାଇ ନାହିଁ । ତା' ଦୋଷଗୁଣ ବାଛିବ ନାହିଁ । ଯେମିତି ଶିଖେଇବ, ବହୂ ତମର ସେମିତି ହବ । ତା'ର ସବୁ ଦୋଷ ମୁଁ ମାଗି ନଉଚି ।" "ନା ନା, ବାପ, ଇୟେ ଗୋଟାଏ କଉଁ କଥା—ପୁଅ କିଏ ଆଉ ବୋହୂ କିଏ-ଇକ୍ଷେ ଅବିଗୁଣ ହେଲେ ବି ସେହି ପେଟ ପୋକ ତ । ଆଉ, ମୋ ବହୂଟି କ'ଣ ନାଙ୍କରା କି ! ହଉ ବାପ, ଖିଆପିଆ ସରୁ, କଥାଭାଷା ହବା ଯେ; ମୁଁ ଏଇନାଗେ ଯାଏଁ " ଏହା କହି ବାହାରୁ ଥିଲେ, ପୁଣି ନୀଲୁବାବୁଙ୍କ ମୁଣ୍ଡରେ ଟିକିଏ ଦୁଷ୍ଟାମି ପଶିଲା । ସେ ଇତିମଧ୍ୟରେ ଏଠାରେ ବେଶ୍ ନିଜ ଘର ପରି ସ୍ୱଚ୍ଛନ୍ଦତା ଅନୁଭବ କଲେଣି; କହିଲେ, "ମାଉସୀ, ଶୁଣୁଚି, ତମ ପୁଅ କାଲେ ଅଳ୍ପ ଦିନେ କଟକ ଚାଲିଯିବେ । ହଁ, ଚାକିରି କଥା, ନଯିବେ ବା କେମିତି ! ତମେ ବି ଯାଉନା । ସେଠେଇଁ ତ ମୁଁ ଦେଖିଚି, ତାଙ୍କର ବେଶ୍ ଭଲ ବସା-ଘର ବାଡ଼ି କୂଅ, ପାଇଖାନା ସବୁ ଅଛି, ବେଶ୍ ଚଳି ପାରିବ !"

"ହଁ ରେ ପୁତ, ପୁଅ ବି ଡାକୁଚି ତ; ତେବେ ବହୂଟା ଘରେ ଗୋଡ଼ ଦଉ ନ ଦଉଣୁ କେମିତି ବିଦେଶ ଯିବ, କହିଲୁ ଭଇ ! ଏବେ ଏଣିକି ତ ତମେ ପାଠ ପଢ଼ିକରି ଏସବୁ କଥା ମାନୁ ନା । ଆମେ ଆସି ବୁଢ଼ୀହାଡ଼ୀ ହେଲୁଁ, ଆମ କାଳେ ବହୂ ପୁଣି ବିଦେଶ କେବେ କରୁଥିଲେ ! ଏଇ ତ ମୋତେ ଆସି ଦୁଇକୋଡ଼ି ପୂରିଲା । ଥରେ ତମ ମଉସା ପୁରଷତମ ନେଇ ଯାଇଥିଲେ, ଏଇ ତିରସ୍ତା—ନ ହେଲେ, ଏଇ ଚୁଲିମୁଣ୍ଡକୁ ଆଶ୍ରା କରି ପଡ଼ିଛି । ବାହା ବର୍ଷେ ନ ଯାଉଣୁ କିଏ କେଉଁକାଳେ କୁଆଡ଼େ ଯାଉଥିଲା ଲୋ ମା !"

"ନା, ନା ଆଜିକାଲି ଯୁଗ ତ ହେଲାଣି ଓଲଟା, ମାଉସୀ ! କିଏ କ'ଣ କରିବ ? ଏକାଳ ଟୋକାଟୋକୀ କ'ଣ କରଣଘର ଧାଡ଼ି ମାନି ଚଲୁଛନ୍ତି ? ଆଉ ତେମେ ବା କ'ଣ କରିବ, ପୁଅବହୂ ବି କ'ଣ କରିବେ, ନା ଆଉ କିଏ କ'ଣ କରିବ !"

"ନାଇଁବାପ, ମୋର କ'ଣ ଅଛି ? ପୁଅ କହିବ ଯଦି ଯିବି, ମୋର ସେଥିରେ କଅଣ ଅଛି ? ପୋଡ଼ା ପାଠ ପଢ଼େଇ ତ ଖାଇଚି —କାହାକୁ କହିବି । ଗୋଟାଏ ବୋଲି ପୁଅ—ଘରେ ତାକୁ ବର୍ଷରେ ମାସେ ପାଇଲେ ଢ଼େର । ଏଡ଼ିକଟି ବେଳୁ ଖାଲି ବିଦେଶ । ବାହାଦେଲି ଯେ, ପୁଅ କଟକରେ, ବହୂ ଘରେ ରହିଲେ ମୋର କଉଁ ସୁଖ, ନା ପୁଅର

କଉଁ ସୁଖ ! ହଇ ହେ ବାପ, ତେମେ ବି ତ ପଢୁଚ ! ନିଧି ପରି ତେମେ ବି କ'ଣ ଘର ମୁହଁ ଦେଖ ନାହିଁ ନା ?''

''ନାଇଁ ମାଉସୀ, ମୁଁ ଏଇ ତିନି ବର୍ଷ ହେଲା ବିଦେଶରେ ଅଛି— ସେଇ କଟକରେ; ନିଧିଙ୍କୁ ମୁଁ ସେଇଠି ଦେଖୁଥିଲି ନା ? ତାଙ୍କ ଇସ୍କୁଲ ଆମ କଲେଜ ପାଖରେ ହେଇକିରି ଟ— ଲାଗିଚି ।''

''ହଁ ବାପ, ତମେ ଆଠ-ଦଶ ଦିନ ରହିବଟି ଏଠି ? ନିଧିର ତ ଆଉ ଆଠ-ଦଶ ଦିନ ଛମାରୁ ରହିଲା । ତମେ ବି ରହିଯା, ସାଙ୍ଗ ହୋଇ ଯିବ ।''

''ହଉ, ହଉ, ସେ କଥା ଦେଖାଯିବ ।''

''ମୁଁ ଯାଏଁ-ଦେଖେଁ'' ବୋଲି କହି ବୁଢ଼ୀ ନିଜ ମନରେ କ'ଣ ଚବର ଚବର ହୋଇ ବାହାରିଗଲେ ।

କନକ ଏ ପ୍ରସଙ୍ଗ ଉଠିଲାବେଳୁଁ କୋଣରେ ପଶି କାନ୍ଥ ସାଙ୍ଗରେ ମିଶିବାର ଯତ୍ନ କରୁଥିଲା । ସମୟ ସମୟରେ ମୁହଁ ବୁଲାଇ ନୀଲୁବାବୁଙ୍କ ଆଡ଼କୁ କାତର ଦୃଷ୍ଟିରେ ଚାହିଁଲେ, ସେ ଆହୁରି ଅଧିକ ଏ କଥା ପକାନ୍ତି, ସେ ବିଚାରୀ ନାଚାର ହୋଇ ସବୁ ଶୁଣୁଥାଏ । ବୁଢ଼ୀଗଲାମାତ୍ରକେ ବି ସେ କୋଣରୁ ବାହାରିଲା ନାହିଁ-ସେହିପରି ମୁହଁକୁ କାନ୍ଥଆଡ଼କୁ କରି ବସିଥାଏ । ନୀଲୁବାବୁ ହସି ହସି କହିଲେ, ''କିଲୋ ?ଏଇଟା ମଲାଣି ନା କ'ଣ ମ ! ହଇ ଲୋ, ଭିତରେ ଭିତରେ ଏତେ କଥା ହଉଚି, ଆଉ ମୁଁ ପଚାରିଲାବେଳକୁ କ'ଣ ନା-'ମୁଁ କାହାରିକି ଜାଣେନାହିଁ ।' 'କାହାର ଦୁଃଖ ଯାଉ ନଥିଲା'- ନା? ମୋ ସାଙ୍ଗେ ଚାଲାଖି, ନୁହେଁ ? ହଉ, ହଉ, ରହ । ହଇ ହୋ ନିଧିବାବୁ, ଯାଡ଼େ ଟିକିଏ ଶୁଣିଗଲା !'' କନକ ହଠାତ୍ ସେ କାନ୍ଥକୋଣରୁ ବାହାରି ଅତି ବିକଳ ହୋଇ କହିଲା ''ଏ ନୀଲୁଭାଇ, ତମକୁ ଜୁହାର କରୁଚି, ତମ ଗୋଡ଼ତଳେ ପଡୁଚି-ମୁଁ ତମକୁ ସବୁ କହୁଚି, ତେମେ ଆଉ କାହାରିକି ଡାକ ନା ଭଲା ଏଠିକି । ତମକୁ ମୋର ରାଣ !'' ''କ'ଣ ?'' ବୋଲି କହି ସେ ପ୍ରଶ୍ନରେ ନିଧିବାବୁ ଗୋଡ଼ ଦେଇ ପଚାରିଲେ, ''କ'ଣ କିହେ ନୀଲୁଭାଇ, ତମ ଯୋଗ୍ୟ ଭଉଣୀ ସେଠେଇଁ ଅଛନ୍ତି ନା ?'' ''ହଁ, ନାହାନ୍ତି କ'ଣ-କାଇଁ, କାନ୍ଥବାଡ଼ ଦିହରେ କେଉଁଠି ପଶିଲେଣି —ଦେଖା ପଡୁ ନାହାନ୍ତି । ମଲେ ନେଇଁ ଓଡ଼ିୟାଣୀ ! ମୁଁ କ'ଣ କହୁଥିଲି କି ! ବୋଉଙ୍କ ସାଙ୍ଗେ ଏଇନାଗେ କଥା ହଉଥିଲା ଯେ -କଟକ ଯିବା କଥା । ବୋଉ ତ ଏକଦମ୍ ଅମଙ୍ଗ,

କ'ଣ ଏବେ କରୁଚ ?'' ''ଦେଖାଯିବ, ଦେଖାଯିବ । ବୋଉକୁ ତେମେ ଚିହ୍ନିନା । ଖିଆପିଆ ସରୁ, କଥା ହବା, ରହିଥା ! ତମେ ଆସିଚ, ବଡ଼ ଭଲ ହେଇଚି ପରା !'' ଏହା କହି ବୋଉଙ୍କ ଡାକରେ ନିଧିବାବୁ ଚାଲିଗଲେ । ''ଗଲାଣି ନା, ଗଲାଣି ନା ସେଟା ?'' ବୋଲି ଅତି ଆଗ୍ରହରେ କହୁ କହୁ କନକ ଅବ୍ୟକ୍ତ ଆନନ୍ଦରେ ଦୁଆରପାଖକୁ ଧାଇଁ ଆସି ବାହାରକୁ ଟିକିଏ ଚାହିଁଦେଇ ନୀଲୁବାବୁଙ୍କୁ କହିଲା, ''ଏଇନାଗେ ଯଦି ଘର ଭିତରକୁ ଚାଲିଆସିଥାନ୍ତା, ମୁଁ କ'ଣ କରିଥାନ୍ତି । ଛି ଛି, ନୀଲୁଭାଇ, ତୁମେ ବଡ଼ ଛଣେ ! (ଗମ୍ଭୀର ହୋଇ, ଓଠ ଫୁଲାଇ) ଓଃ, ସତେ ଯେମିତି ମୋତେ ନିହାଲେ କରିଦେବେ କି୍ ଆଉ ! ଯାକୁ ଡାକ, ତାକୁ ଡାକ—ଏକଥା, ସେ କଥା—ଭାରି ଉପୁଗାରିଯା ଭାଇ ତ ! ମଲା ଗଲା ବୋଲି ବର୍ଷେ ଛ' ମାସକେ ଖବର ନଥାଏ ।'' (କହୁ କହୁ କନକର ମୁହଁ ତଳକୁ ହୋଇଗଲା, ଆଖି ଛଳଛଳ ।) ଇୟେ ପୁଣି କି ଭୟଙ୍କର କଥା । ନୀଲୁ ମୁଣ୍ଡରେ ବଜ୍ରପାତ ହେଲା ପରି ବୋଧ ହେଲା । ସେ ଜାଣନ୍ତି, ତାଙ୍କ ପାଖରେ କନକ କେତେବେଳେ କେତେବେଳେ ଏହିପରି ରାଗେ, ରୂଢ଼ ବ୍ୟବହାର କରେ, କଠିନ କଥା କହେ; କିନ୍ତୁ ଏ ଯେ ଆଉ ରକମର—କି କାରଣରୁ ଛଳେଇ କରି କହୁଚି ? ବାହାଘରର ମାତ୍ର ଆଠଦିନ ହୋଇଚି । ଛ' ମାସ, ବର୍ଷେ କୁଆଡ଼େ ଆସିଲା । ଓଃ, ପୂର୍ବ କଥା ପରା !

ନୀଲୁବାବୁ ବୁଝିଲେ, ସେ କନକର ନିହାତି ଆପଣା କଥାରେ ଅନଧିକାର ଚର୍ଚ୍ଚା କରିଛନ୍ତି—ତା'ର ଗୁପ୍ତ ରାଜ୍ୟର ପ୍ରାଚୀରକୁ ଭ୍ରମରେ ଉଲ୍ଲଙ୍ଘନ କରିଯାଇଛନ୍ତି । ବୁଝିଲେ, ତାଙ୍କର ବି ଅଧିକାରର ଗୋଟାଏ ସୀମା ଅଛି, ଭବିଷ୍ୟତ୍ ପାଇଁ ସାବଧାନ ହୋଇ ରହିଲେ । ଆହୁରି କନକ ଆଗରେ ତା'ର ଉପକାର କରିବାକୁ ଚେଷ୍ଟା କରିବା ତାଙ୍କର ଭୁଲ ହୋଇଚି । କିନ୍ତୁ ସେ ଖାଲି ଫୂର୍ତ୍ତି କରୁଥିଲେ ମାତ୍ର, ଉପକାରଟା ତା' ଭିତରେ କିପରି ପଶିଗଲା ଭୁଲରେ, କଥା ଛଳରେ; ଛାଡ଼୍—କହିଲେ, ''କି ଲୋ, ଭାରି ତେଜ ତ ହେଲାଣି ତୋର ! ରହ, ରହ, ଠିକ୍ କରି ଦଉଚି, ରହ । ତୁ କଟକ ଚାଲେ—ସେତେବେଳେ ଯାଇ ଯଉଁ କଥା ।'' ତାଙ୍କ ମୁହଁରେ ଶୁଷ୍କ ହସଟା ହସ ତ ନୁହେଁ, ହସର ଭୂତପରି ବି ଦିଶୁ ନଥାଏ । କନକ ଦେଖିଲା, ବୁଝିଲା ନୀଲୁଙ୍କ ମନରେ କଷ୍ଟ ହୋଇଅଛି; କିନ୍ତୁ ଜୋର କରି କହିଲା, ''ହଁ, ମୁଁ ତ କଟକ ଯାଉଥାଏଁ । ଗଲେ ବୋଉ, ଗଉରୀ ଅପା, ରଙ୍ଗୀ—ଏମାନେ ସବୁ ଯିବେ, ତେବେ ଯାଇଁ ଯିବି ।''

''ହଉ ହଉ, ଦେଖାଯିବ । ହଇ ଲୋ, ରନ୍ଧାବଢ଼ା କରୁଚୁ ନା ? ତୋର ତ ଏପରି ଶାଶୁଟିଏ । ସେ କ'ଣ ତତେ ରନ୍ଧାବଢ଼ା କରେଇ ଦଉଥିବେ କି !''

''ୟେଙ୍କର ସବୁ କ'ଣ, ମୋତେ ପାନଭଙ୍ଗା ଛଡ଼ା ଆଉ କିଛି କରେଇ ଦଉଛନ୍ତି କି !''

'' ତୁ ଢୋର କରି କରୁନାହୁଁ ? ବୁଢ଼ୀଟାତ ସବୁ କରୁଥିବେ । ଯା, ଯା, ଅଭି ଯିବୁଟି ରୋଷେଇଘରକୁ । ବାବୁ ହବୁ—ନାଇଁ ? ଘର କୋଣରେ ବସି କୋଢ଼ିୟା ଧରିଗଲୁଣି କିଲୋ ? ଯା, ଅଭି ଯା !''

କନକ ବିସ୍ମିତ ହୋଇ ନୀଲୁବାବୁଙ୍କ ମୁହଁକୁ ଚାହିଁଲା-ଏ ହୁକୁମର ମର୍ମ କିଛୁ ସେ ବୁଝିପାରିଲା ନାହିଁ । କଥାଟା କିଛି ନୁହେଁ, ତେବେ ସ୍ୱରଟା-ଯେଉଁ ଭାବରେ ନୀଲୁବାବୁ ଆଜ୍ଞା କଲେ, ସେଇ ଭାବଟା । କନକ କେବଳ ଏତିକି ବୁଝିଲା—ହୁକୁମଟା ମିଛ ହୁକୁମ ନୁହେଁ, ମାନିବାକୁ ହେବ । ନୀଲୁବାବୁ ପୁଣି କହିଲେ, ''ଚାଲେ, ତତେ ମୁଁ ନେଇ ହାଣ୍ଡିଶାଳରେ ଛାଡ଼ିଆସିବି, ଚାଲେ—ଉଠ୍ ।'' ଏହା କହି ନୀଲୁବାବୁ ଉଠିଲେ । କନକ ହାଣ୍ଡିଶାଳକୁ ଯାଇ କାମ କରିବାକୁ ସମ୍ପୂର୍ଣ୍ଣ ପ୍ରସ୍ତୁତ ଥିଲେ ମଧ ଉଠି ପାରିଲାନାହିଁ—ଖାଲି ବିକଳଭାବରେ ନୀଲୁବାବୁଙ୍କ ପାଣ୍ଡୁର ମୁଖ ପ୍ରତି ଥରକୁ ଥର ଅନାଇବାକୁ ଲାଗିଲା । ସେ ବୁଝିଲା, ଅଭିମାନୀ ନୀଲୁଭାଇଙ୍କୁ ତାହାର କଠିନ କଥା କେଡ଼େ ବାଧିଚି-ସେ କଥାଟା ଏ କଥାରେ ଢ଼ାଙ୍କି ହୋଇ ପଡ଼ିଲେ ମଧ କେଉଁଠି ହେଲେ ଲାଖିରହିଚି । ଧୀରେ ଧୀରେ ଉଠୁ ଉଠୁ କହିଲା, ''ନୀଲୁଭାଇ, ରାଗିଲ କି ?'' ''କଉଁ କଥାରେ ?'' ''ଏଇ ଉପୁଗାରିୟା ଫୁପୁଗାରିୟା କ'ଣ କହିଦେଲି !'' ଏତକ କଷ୍ଟରେ କହି କନକ ତଳକୁ ମୁହଁ କରିଦେଲା । ନୀଲୁବାବୁ କହିଲେ, ''ନାଇଁ ମ, ରାଗିବି କାହିଁକି ? ତୋର ସେ କଥା କହିବା ଠିକ୍ । ମୁଁ ସାବଧାନ ହେଲିଣି—ଏତେ ଦୂରକୁ ଯିବା ମୋର ଉଚିତ ନୁହେଁ । ଏବେ ଚାଲେ !'' ''ଓଃ, ସେଇଥିପାଇଁ ଏଇ ଅଳ୍ପ କଥାରେ ମୋ କାନ ମୋଡ଼ଉଚ ନା ?'' ''କାନ ମୋଡ଼େଇଲି କ'ଣ ମ ? ରନ୍ଧାବଢ଼ା କରିବା କ'ଣ ତୋର ଉଚିତ ନୁହେଁ ?'' ''ହଁ, ମୁଁ କ'ଣ ମନା କରୁଚି ? ତେମେ କାହିଁକି ଏମିତି ଭାବେ ମୋତେ ରାଗିଲା ପରି ହୁକୁମ କରୁଚ ନା !'' ''ସେତକ ମୋତେ ଫାବେ, ସେ ପର୍ଯ୍ୟନ୍ତ ମୁଁ କରିପାରେଁ !'' ଏହା କହି ନୀଲୁ କନକର ସ୍ଥିର ଦୃଷ୍ଟିରୁ ନିଜ ଦୃଷ୍ଟି ଫେରାଇ ଆଣିଲେ । କନକ କିଛିକ୍ଷଣ ସେହିପରି ଚାହିଁ ଚାହିଁ ଶେଷରେ ଦୀର୍ଘ ନିଃଶ୍ୱାସଟାଏ ପକାଇ କହିଲା, ''ହଉ ଚାଲ !''

ହାଣ୍ଡିଶାଳ ଦୁଆରେ ଗଉରୀ ବସି ପରିବା କାଟୁଥିଲା । ନୀଲୁବାବୁ ଯାଇଁ କନକକୁ ତା' ପାଖକୁ ଠେଲିଦେଇ କହିଲେ, ''ନିଅ, କୋଢ଼ିୟାଣୀଟାକୁ ଖଟାଅ,

ନିଅ !'' ବୁଢ଼ୀ ବାହାରି ଆସିବାରୁ କହିଲେ, ''ନାଇଁ ମାଉସୀ, ବହୂଟାକୁ ମାଟିକର ନାହିଁ—କାମରେ ଲଗାଅ ! ନହେଲେ, ମାଉଁସମେଞ୍ଚାଟିଏ ଶେଷକୁ ହୋଇଯିବ । ତାକୁ ଯଦି ରାନ୍ଧିବାକୁ ନଦେବ, ତାହେଲେ ଫେରେ ନିଧିକୁ ଏମିତି ଶିକ୍ଷା ଶିଖାଇବି ଯେ, ଫେରେ ବୁଝୁଥିବ—'' ଏହା କହି ନୀଲୁବାବୁ ଚାଲି ଯାଉଥିଲେ; ଗଉରୀ ହାଣ୍ଡିଶାଳ ଦୁଆରକୋଣରୁ ଗୋଟାଏ ଭଣ୍ଡା ଖୋଳପା ଧରି ତାଙ୍କ ପିଠି ଉପରକୁ ଫିଙ୍ଗିଲା । ସେଟା ତାଙ୍କର କେଶ ପର୍ଯ୍ୟନ୍ତ ସ୍ପର୍ଶ ନ କରି ମୁଣ୍ଡ ଉପରେ ଯାଇଁ କାନ୍ଥରେ ବାଜି ଆସି ଲେଉଟି ତାହାରି ଆଗରେ ପଡ଼ିଲା । ନୀଲୁବାବୁ ଫେରି ଚାହିଁଲା ବେଳକୁ ଗଉରୀ ଲୁଚିବାକୁ ଧାଇଁଚି । ନୀଲୁବାବୁ କହିଲେ, ''ହାଁ ହାଁ, ବାଜିବ, ବାଜିବ । ଏଇ ପରା ଗଉରୀ ଅପା ? ଓଃ, ହୋଃ, ମୋର ଜୁହାର ଏଇଠି । ତମେ ମାତାଜୀ କି ଆମେ ବାବାଜୀ— ନିଅ ଏବେ !'' ଗଉରୀ ଏହା ଅର୍ଥ କିଛି ବୁଝିଲା ନାହିଁ-ଖାଲି ଥଟ୍ଟା ବୋଲି ଭାବିଲା, କିନ୍ତୁ କନକ ଏଥିରୁ ଅନେକ କଥା ବୁଝିନେଲା ।

(୭)

ତହିଁ ଆରଦିନ ଉପରଓଳି ପର୍ଯ୍ୟନ୍ତ ବି ନୀଲୁବାବୁ ଆଉ ଭିତର ଖଞ୍ଜା ମାଡ଼ିଲେ ନାହିଁ । ଖାଇଲା ବେଳେ ଯାହା ଆସନ୍ତି- ହସଖୁସିରେ, ଗେଲନାଟକରେ ଘଣ୍ଟାଏ ଅଧଘଣ୍ଟାଏ ଚାଲିଯାଏ । ତା' ନହେଲେ, ସବୁବେଳେ ବାହାରେ ନିଧିବାବୁ ଓ ସେ ଦୁହେଁ ବସି କ'ଣ ଗପ ସପ ହୁଅନ୍ତି; କେତେବେଳେ ବା ଗାଁ ବୁଲି ବାହାରନ୍ତି—ଏହିପରି । କନକ ମଧ ଓଳିଏ ରୋଷାଇବାସ କରେ —ଜୋର କରି ଏବେ କରୁଚି,— ଉପରଓଳି ରନ୍ଧାରେ ସାହାଯ୍ୟ କରେ; କିନ୍ତୁ ସବୁବେଳେ ଭାବୁଥାଏ —ନୀଲୁଭାଇ ଏଇ ଆସିଲା ପରା, ଡକାଇଲା ପରା ! କିନ୍ତୁ ନୀଲୁବାବୁ ଏ ପର୍ଯ୍ୟନ୍ତ ଆସିଲେ ନାହିଁ । ନିହାତି ଅସହ୍ୟ ହେବାରୁ ଗୋଟାଏ ସାଇ ପିଲାଟି ହାତରେ ସେ ଆଜି ଡକାଇ ପଠାଇଲା । ପିଲାଟି ଯାଇ ଦାଣ୍ଡରେ କାହାରିକୁ ନ ପାଇ ଫେରିଆସି କହିଲାବେଳେ ଗଉରୀ ସେଠାରେ ଥିଲା, କହିଲା—''ମୁଁ ଜଗାମା'କୁ ପଠେଇଦଉଚି, ଡାକି ଆଣିବ ।'' ଜଗାମା' ଗଲାରୁ କନକ ଉଦ୍‌ବିଗ୍ନ ହୋଇ ବସିରହିଲା । ନୀଲୁବାବୁ ସେ ଆଡ଼ୁ ଖଣ୍ଡେ ବାଟରୁ ଡାକ ମାରି ମାରି ଆସିଲେ-''କିଏ କୁଆଡ଼େ ଅଛ, ବାହାରି ଯା, ଆମେ ଯାଉଛୁଁ ।''ଏଟା ଗଉରୀ, ରଙ୍ଗୀ ପ୍ରଭୃତିଙ୍କୁ ସାବଧାନ କରିଦେବା ପାଇଁ । ଗଉରୀ ବାହାରି ଯାଉ ଯାଉଁ କହିଲା—''ଅ, ଏଇଟା କିଏ ମ ! ଏଟାକୁ ଡ଼ରି ସମସ୍ତେ ବାହାରିଯିବେ !'' ତଥାପି ବାହାରି ପଳାଇଲା । ରଙ୍ଗୀ ଅନୁପସ୍ଥିତ ।

ନୀଲୁବାବୁ ସେ ଘରେ ପ୍ରବେଶ କଲାମାତ୍ରକେ କନକ ଧଡ଼ପଡ଼ ହୋଇ ଆସି ତାଙ୍କ ହାତ ଧରି କହିଲା, "ନୀଲୁଭାଇ, ତୁ ରାଗିଚୁ ?"

ନୀଲୁ—ନା, ରାଗିଥିଲି !

କନକ—ନା, ତୁ ରାଗିଚୁ ନିଶ୍ଚେ । ନହେଲେ ଏଇଠି ଥାଇକରି ବି ଏ ଦି-ଦିନ ମୁହଁଲୁଚା ଦେଇ ରହିଚୁ କିପରି ।

ନୀଲୁ—ନା ମ, ମୁଁ ସ୍ୟାଡ଼େ—ବାହାରେ ଥିଲି । କାଲି ରାତିଟା ତ ନିର୍ଧୂମ ଶୋଇଚି, ଆଜି ସକାଳେ ତ ଇସ୍କୁଲ ଦେଖିବାକୁ ଯାଇଥିଲୁଁ, ଆଉ ଏଇନାଗେ ତୁ ନ ଡାକିଥିଲେ ବି ମୁଁ ଆସିଥାନ୍ତି ।

କନକ—ମିଛ କଥା । କାଲି ମୁଁ କ'ଣ କହିଲି ବୋଲି ରାଗିଲୁ । ମୁଁ ଜାଣେ, ତୁ ରାଗିଚୁ । ମୁଁ ପରା ତୋ ସାନ ଭଉଣୀଟା, ଗୋଟାଏ ଦୋଷ କରିଚି, ତୁ ଇମିତି ଧରି ବସିଲେ ମୁଁ ଆଉ କ'ଣ କରିବି ।

ନୀଲୁ—ନା, ନା, ମୁଁ ରାଗିଥିଲି-ସତ କଥା । ଆଜି ପୁଣି କେତେ କଥା ଭାବି ଦେଖିଲି—ରାଗ କୁଆଡ଼େ ଗଲାଣି ନା ଆଉ ଅଛି । ତୁ ଆଉ ମୋତେ ଏମିତି କଥା କହିବୁ ନାହିଁ କଳି, - ମୋ ସୁନାଭଉଣୀଟି ପରା ।

କନକ—ଆଚ୍ଛା, ସେ କଥା କ'ଣ ହେଲା ?

ନୀଲୁ—କଉଁ କଥା ?

କନକ—ସେଇ କଥା, କଉଁ କଥା-ସେଇ ଯଉଁ କଥା କାଲି ତୁ କହୁଥିଲୁ ମୋତେ, ଆଉ ଯେଙ୍କର ସମସ୍ତିଙ୍କି ।

ନୀଲୁ—କଉଁ କଥା ନା-ସେଇ କଥା ଯଉଁ କଥା । ବିଷୟଟା କ'ଣ କହ ହେଲେ—

କନକ—ଯା, ତୁ ବଡ଼ ଇଣେ ! ମୁଁ କହି ପାରେଁ ନେଇଁ— ଯା ! ବୁଝିପାରିକିରି ମତେ ଖାଲି ଫଟୋଉଚି । ସେଇ-କଉଁଠିକି ଯିବା କଥା କହୁଥିଲୁ ।

ନୀଳୁ—କାହାର ? କିଏ କଉଁଠିକି ଯିବ ? କାହାରି ତ କଉଁଠିକି ଯିବାର ନାହିଁ—ଏକା ମୁଁ କାଲି ପ'ରି ଦିନ ଚାଲିଯିବି ।

କନକ—ଯା ମ, ଖାଲି ବେଲି କରୁଚୁ ! ନ କହିଲୁ ନାହିଁ ଯା, ଫେରେ କଟକ ନାଁ ମୋ ଆଗରେ କିଏ କହିବ ତ-ଫେରେ କାନ୍ଦିବି, ହଁ—

ନୀଳୁ—ଓଃ, କଟକ ଯିବା କଥା ପରା କହୁଚୁ । ସେଇଯା ସେତେବେଳେ କହିଥିଲେ ତ ଛିଣ୍ଡି ଯାଇଥାନ୍ତା ।

କନକ—ଏତେବେଳେ ଯାଇଁ ହେଲା । ଏଡ଼େ ହଟ ତୋର ନା ! ସୁଆଙ୍ଗିଯା-ଊଃ, ଏଇଟା କାଳେ ମୋ ବଡ଼ ଭାଇ । ହଁ, କ'ଣ ହେଲା ସତେ ?

ନୀଳୁ—କ'ଣ କିଛି ସାର ଛିଣ୍ଡି ପାରିନାହିଁ ।

କନକ—ଆଜି ସକାଳେ ଏତେ ବେଳଯାଏ କ'ଣ ସବୁ କଥାଭାଷା ହଉଥିଲ । ମୁଁ ପରା କିଛି ଜାଣି ନାହିଁ—ନୁହେଁ ? ରଙ୍ଗୀକି କିଏ ସେ ସେଠିକି ଧରି ନେଇଗଲା—ପିଲାଟି କେତେ କାନ୍ଦୁଚି । ତାକୁ କିଏ କହିଲା, ସେ ତୋତେ ଏଇନାଗେ ବାହା ହୋଇ ନ ପଡ଼ିଲେ ଆଉ କଟକ ଯିବା ହୋଇ ପାରିବ ନାହିଁ । ସାନ ଭଉଣୀ ଜନମ ପରା ମଣିଷ ପାଇବ ନାହିଁ। ସବୁ ତାନ ସାନ ଭଉଣୀଙ୍କ ଉପରେ ଛିଣ୍ଡେଇ ଜାଣନ୍ତି ଏ ମିଣିପଗୁଡ଼ାକ ।

ନୀଳୁ—ନା, ସେଇ ରଙ୍ଗୀତ ! ଅତୁଆ କରୁଚି ସତେ ! ମାଉସୀ କହୁଚନ୍ତି ପରା, ରଙ୍ଗୀଟି ପାର ହୋଇ ନଗଲେ ସେ ଏଠା ଛାଡ଼ି କୁଆଡ଼େ ଯାଇପାରିବେ ନାହିଁ—ରଙ୍ଗୀ ବାହାଘର ପରେ ଯୁଆଡ଼େ ନବ, ସିଆଡ଼େ ଯିବେ । କଥାଟା ବି ଠିକ୍, ସେଇଥି ପାଇଁ ମୁଁ କହିଲି, 'ତାରି ପାଇଁ ଯଦି ଏତେ କଥା, ଆଣ ତାକୁ, ମୁଁ ଏଇନାଗେ ବାହାହେଇ ପଡୁଚି ।'

କନକ—ସେଇଠୁ ଭାଇ ପରା ଆସି ଭଉଣୀକୁ ଧରି ନେଇଗଲେ । ମୁଁ ଜାଣିଥିଲେ ଗୋଟାଏ ଶଙ୍ଖ ବଜେଇ ଦେଇଥାନ୍ତି ପରା ! ଇମିତିକା ଉତ୍ପାତିଆ ଭାଇ ସବୁ କାହୁଁ ଆସି ଜୁଟୁଚନ୍ତି ! ନା ସତେ, ନୀଳୁଭାଇ, ରଙ୍ଗୀଟିକୁ ଆମର ନୂଆବୋଉ କରନ୍ତେ—

ଏହିପରି ସମୟରେ କିଏ ଗୋଟାଏ ଦୁଆର ପାଖରେ ଉଣ୍ଡିବାର ଦେଖି କନକ ଝଟ୍ କରି ଯାଇଁ ରଙ୍ଗୀକୁ ଧରି ଜବରଦସ୍ତି ଭିତରକୁ ଟାଣିଆଣିଲା, କହିଲା, "କି ନୂଆବୋଉ, ଏଡ଼େ ନାଜ କାହିଁକି କରୁଚ ମ !" ରଙ୍ଗୀ ଛାଟିପିଟି ହୋଇ ପଳାଉ ପଳାଉ କହିଲା, "ଯା ହଉ । ଏ ଦଶା ନୂଆବୋଉଟା—ତମ ଭାଇ ମରୁ, ତମରି ଭାଇ ମରୁ, ତାକୁ ବାଡ଼ୀ ଖାଉ ।"

କନକ କାନମୋଡ଼ି ଗାଲଚାପୁଡ଼ା ଖାଇ ହୋଇ କହିଲା, "ଥରେ କାଲି ସକାଳେ ଠକିଥିଲି, ପୁଣି ଆଜି ଠକିଲି । ଯେଙ୍କ ସାଙ୍ଗେ ଆଉ କେଉଁ ଲାଗିବି ନେଇଁ ପରା !"

(୮)

ସେହି କଥା ସାର ହେଲା—ରଙ୍ଗୀଟିକୁ କୌଣସିମତେ ବାହାକରାଇ ଦେଇପାରିଲେ କଥା ଛିଣ୍ଡିଯିବ । ନିଧିବୋଉଙ୍କର ଇଚ୍ଛା—ବାର ଯାଇ ତେର ପଶିଲାଣି, ଆଉ କ'ଣ—ଏଇ ଫଗୁଣ ମାସରେ ସମ୍ଭବ ହେଲେ କରିପକାଇଲେ ଯାଏ । ପୁଅ ବାହାଘର ଯାଇଚି; ପେଡ଼ି, ଭାର, ଥୋର ଚାଲିଚି; ଆଉ ଯାହା ମାଲମତା ବି ଅଛି- କେମିତି ହେଲେ ହୋଇଗଲେ ଅଳ୍ପରେ କଥା ଛିଣ୍ଡିଯାଆନ୍ତା । ଖାଲି ବର । ମା—ପୁଅ ଦୁହେଁ ବସି ବିଚାର କଲାବେଳେ ବୁଢ଼ୀ କହିଲେ, "ଏଇ ନୀଲୁଟି ହୁଅନ୍ତା କି, କେଡ଼େ ସୁନ୍ଦର ହୁଅନ୍ତା । ତେବେ ବନ୍ଧୁ, ତାଙ୍କର କରିବେ କି ନାହିଁ କେଜାଣି । ଏମିତି କ'ଣ ସଂସାରରେ ହଉ ନାହିଁ ନା କ'ଣ । ଏଇତ ସେ ଦିନ ମୋ ଭଣଜାର ଝିଅକୁ ତା'ର ନିଘନ ଭିଣେଇଟା ବାହା ହେଲା ।" ନିଧିବାବୁ କହିଲେ, "ନାଇଁଲୋ ବୋଉ, ତାଙ୍କର ଅମଙ୍ଗ ହେବେ ନାହିଁ ଯେ—ଏକା ଏଇ ନୀଲୁ କଥା, ସେଇ ମଙ୍ଗିଲେ ହୁଏ । ମୋତେ ପରା ଅପା (ହରିବାବୁଙ୍କ ସ୍ତ୍ରୀ) ଦହିତୋରାଣି ବେଳେ ଚୁପ୍ କରି ଏହି କଥା କହୁଥିଲା । ହେଲେ ଭଲ ହୁଅନ୍ତା ଏକା ବୋଉ । ମୁଁ ତାକୁ ଏ ଦି ଦିନ ହେଲା ବୁଲେଇ ବୁଲେଇ କହୁଚି । ତୋ ବହୂ ଏଥିରେ ଆଗ ନା । ତେବେ ସିଏ ବି ଯାହା କହୁଥିଲା, ମୁଁ ବି ସେଇୟା ଦେଖୁଚି—ନୀଲୁର ଇଚ୍ଛା ନୁହେଁ ପରା । ତେବେ ଥରେ ଚେଷ୍ଟା କରିବା । ସେ କାଲି ଯିବ କହୁଚି, ଯାଉ ବାହାରି, ତାରି ସାଙ୍ଗରେ ଜାତକ ନେଇ କରି କିଏ ଯାଉ, ହରିଭାଇ କ'ଣ କହୁଛନ୍ତି ଦେଖ, ଏଣେ ମୁଁ ବି ଜାଗା ଦି ଜାଗା ନଜର ପକଉଚି-ଯୁଆଡୁ ହେଲେ ହୋଇଗଲେ ଯାଏ । ମୋର ବି ଛୁଟି ଅଛି, ୟାରି ସାଙ୍ଗରେ ଆଉ ପନ୍ଦର ଦିନ କି ମାସେ ବି ମିଳିଲେ ମିଳିଯାଇପାରେ ।" ବୁଢ଼ୀ କହିଲେ, "ନାଇଁ ପୁଅ, ତୁ ସେଇ

ନୀଳୁ କଥା ବୁଝୁ । ତୁ ନିଜେ ଖଣ୍ଡେ ହରିପାଖକୁ ଚିଠି ଦେ, ମୁଁ ବି ଢ଼େରେ କରି ସର ପାଖକୁ କହିବି—ଦେଖ, ରଙ୍ଗୀର ଭାଗ୍ୟ—ତା' କପାଳରେ ଥିଲେ ଯା ପରି ବର ପାଇବ । ଏମିତି ହୀନିକରମୀଗୁରାଙ୍କୁ ପେଟରେ ଧରିଥିଲି ଯେ, ତାଙ୍କରି ପେଇଁ ମୋ ହାଡ଼ରୁ ମାଉଁସ ମିଳେଇଯାଉଚି ।''

ନିଧିବାବୁ କହିଲେ, ''ନାଇଁ ବୋଉ, ତୁ କିଛି ଚିନ୍ତା କର ନା । ମୋତେ ତ କେମିତି ଜଣାଯାଉଛି- ଏହି ଥର ହୋଇଯିବ— ନିଶ୍ଚେ ହବ, ତୁ ଦେଖେ ।'' ସେଇଠୁ ନିଧିବାବୁ ବଡ଼ ପାଟିକରି ହାକିଲେ—''ହଇରେ ଜଗା, ରଘୁ ଦାସକୁ ଟିକିଏ ଡାକି ଆଣିଲୁ, ଗଲୁ । ସେ ଟିକିଏ ଯିବ, କନ୍ଦରପୁରିୟା ବେହେରାଙ୍କୁ ବଇନା ଦେଇ ଆସିବ— କାଲି ବାବୁ ଭଦ୍ରକ ଯିବେ, ଗାଧୁଆ ବେଳକୁ । (ଚୁପ୍ କରି) ଆଉ ସେଇ ବାଟେ ଭାବନ ଅବଧାନଙ୍କୁ ବି ଡାକି ଦେଇ ଆସିବୁ—ଶୁଣିଯିବେ, କଥା ଅଛି ।'

ତହିଁ ଆରଦିନ ବଡ଼ି ସକାଳୁଁ ଲୋକ ଜାତକପତ୍ର ନେଇ ଭଦ୍ରକ ବାହାରିଗଲା । କନକ ବି ଖଣ୍ଡେ ଚିଠି ସ୍ୱାମୀଙ୍କ କଥା ଅନୁସାରେ ତା' ନୂଆବୋଉ ପାଖକୁ ଦେଲା । କାଲି ରାତିଠଉଁ ନୀଳୁବାବୁ କ'ଣ ଗୋଟାଏ ଭିତରେ ଭିତରେ ହେଉଚି ବୋଲି ଜାଣି ସାରିଥିଲେ, ଆଜି ସକାଳୁ ଉଠି ମଧ କିଛି କିଛି ସନ୍ଧାନ ପାଇଲେ,କିନ୍ତୁ ଠିକ୍ କିଛି ସ୍ଥିର କରି ପାରିଲେ ନାହିଁ । ଚଞ୍ଚଳ ଚଞ୍ଚଳ କାମଦାମ ସାରି ତିଆରି ହେଉଁ ହେଉଁ ପ୍ରାୟ ନଅଟା । କନକଠାରୁ ବିଦାୟ ନେବା ପାଇଁ ଗଲାବେଳେ ମନ କାହିଁକି ନିହାତି ଖରାପ ହେଲା । ଗଲାବେଳେ ଯାଡ଼େ ସ୍ୟାଡ଼େ ଚାହିଁଲେ, କିନ୍ତୁ ରଙ୍ଗୀ ବା ଗଉରୀ କାହାରିକୁ କେଉଁଠି ଦେଖିଲେ ନାହିଁ । ଏପରି ନିର୍ବିଘ୍ନରେ ଏ ଘରେ ଯିବାଆସିବା କରିବାର ତାଙ୍କର ଏଇ ପ୍ରଥମ । ଭାବିଲେ, ରଙ୍ଗୀ ବୋଧହୁଏ ଡରେ ଲୁଚିଚି—କାଳେ ସବାରୀରେ ବସାଇ ନେଇଯିବେ ବୋଲି । ଶେଷରେ ବଡ଼ ପାଟିରେ ଡାକି କହିଲେ, ''ଆମେ ବାହାରିଲୁ ଏବେ, ଆମ ପାତ୍ରୀଟି କାହାନ୍ତି ? ଶୀଘ୍ର ଶୀଘ୍ର ସବାରୀକୁ ବିଦା କରିଦିଅ—ଯାତ୍ରାବେଳ ଗଡ଼ି ଯାଉଚି !'' କେହି ଯାର ଉତ୍ତର ଦେଲେ ନାହିଁ—ଦୂରରୁ ଟିକିଏ ଟିକିଏ କିଏ ସବୁ ଚାପି ଚାପି ହସିଲା ପରି ଶୁଣାଗଲା ମାତ୍ର ।

ନୀଳୁବାବୁ ଛପି ଛପି କନକ ଘରେ ପହଁଚିଲେ । ସେ ସ୍ଥିର ଜାଣିଥିଲେ, ଗଲା ମାତ୍ରକେ କନକ ବାହୁନି ବସିବ-ଏଇ ତ ନିୟମ । କିନ୍ତୁ ଛପିକରି ଯିବାର କୌଣସି ପ୍ରୟୋଜନ ନଥିଲା । କନକ ପାନଗୁଡ଼ିଏ ଭାଙ୍ଗି ହାତରେ ଧରି ଅପେକ୍ଷା କରି ଛିଡ଼ାହୋଇଥିଲା । କାନ୍ଦିବା ତ ଦୂରେ ଥାଉ, —ହସି ହସି କହିଲା, ''ଭାଉ, ଭାଉ,

ଫେରେ କେବେ ଆସିବୁ ?'' ନୀଳୁ କିଞ୍ଚିତ୍ ଅପ୍ରତିଭ ହୋଇଗଲେ, କହିଲେ, ''ହଁ, ମୁଁ ଆସୁଚି—ତମକୁ ସବୁ କଟକ ନେଇ ହରଡ଼ଘଣାରେ ପକେଇବି ନା ! ଏଠିକି ଆଉ ଆସିବି କାହିଁକି ମ !'' କନକ ହସିଲା—ତା'ର ଆଉ ହସ ବନ୍ଦ ହେଉ ନାହିଁ । ନୀଳୁବାବୁ ବିସ୍ମିତ ହୋଇଗଲେ—କ'ଣ, କଥା କ'ଣ ? ପୁଣି କନକ ପଚାରିଲା, ''ନୀଳୁଭାଇ । ତୁ କଟକ ଯିବୁ କେବେ ?'' ନୀଳୁବାବୁ କହିଲେ, ''ଏଇ ଏଠଉଁ ଯାଇ, ନିତେଇଭାଇଙ୍କ ଦେହ କଅଣ ହେଲା ଦେଖି ଶୁଣି, ଯେତେ ଚଞ୍ଚଳ ହେବ ପଳେଇବି-ଆଉ କ'ଣ ।'' ''ତୁ କଟକରେ ସେଇ ହଷ୍ଟେଲରେ ଅଛୁ ନା ? ଗୋଟାଏ ବସାରେ ତ ରହିଲେ ଭଲ ହୁଅନ୍ତା । କେଉଁଠି ଗୋଟାଏ ଭଲ ବଡ଼ ବସାଘର କାହାର ଅଛି ପରା ସେଦିନ କହୁଥିଲୁ ? ସେଇଠି ରହୁନାହୁଁ ?'' ''କାହାର, ନିଧିବସା ? ମୁଁ କାହିଁକି ସେଠି ରହିବି ?'' ପୁଣି କନକ ହସିବାକୁ ଲାଗିଲା । କ'ଣ ଭୟେ ! ନୀଳୁବାବୁ କହିଲେ, ''କି ଲୋ, ତୋର ଆଜି କ'ଣ ହୋଇଚି କି, ଇମିତି ହସୁଚୁ କାହିଁକି ? କଥା କ'ଣ ?'' କନକ ଖାଲି ହସି ଉଠୁଥାଏ—କଷ୍ଟରେ ହସ ବନ୍ଦକଲା । ପୁଣି କହିଲା, ''ତୁ କ'ଣ କହୁଥିଲୁ ରଙ୍ଗୀ କଟକ ଯିବନାହିଁ । ରଙ୍ଗୀ ତ କଟକ ଯିବ । ଯିବନାହିଁ କେମିତି । ମୁଁ ତାକୁ ନିଶ୍ଚେ ନେଇଯିମି କହିଦଉଚି ।'' ''ହଉ, ନେଇ ଯା କିଏ ମନା କଲା । ତୁ କାହିଁକି ଏତେ ହସୁଚୁ କହିବୁଟି ।'' ''ନା, ମୁଁ ଆଉ ହସୁ ନାହିଁ, ଯା, ଏବେ ହେଲା ।'' କିଛିକ୍ଷଣ ଚୁପ୍ ରହି କନକ ପୁଣି ପଚାରିଲା, ''ନୀଳୁଭାଇ, ତୁ ଆଉ କେତେଦିନ ପାଠ ପଢ଼ିବୁ, କେବେ ସରିବ, କେବେ ଚାକିରି କରିବୁ ?'' ପୁଣି ସେହି ହସ । ନୀଳୁବାବୁ ଏ ସବୁର ଅର୍ଥ କିଛି ବୁଝିପାରିଲେ ନାହିଁ—ବକ୍ଟା ହୋଇ ଚାହିଁଲେ । କନକ ଦେଖିଲା, ସେ ବଡ଼ ଅନ୍ୟାୟ କରୁଚି— କଥାଟା ଯେତେବେଳେ ଗୁପ୍ତ, ସେତେବେଳେ ଆଉ ଅଧିକ ବଢ଼ାଇବା ଭଲ ନୁହେଁ; ଅତଏବ କନକ ସ୍ୱଭାବଗାମ୍ଭୀର୍ଯ୍ୟରେ ଧୀରେ ଧୀରେ କହିଲା, ''ନୀଳୁଭାଇ, ଆଜି ତମେ ଚାଲି ଯାଉଚ-ମୋର କାହିଁକି ଏତେ ଆନନ୍ଦ ହଉଚି କେଜାଣି ! ପୁଣି ନିକଟରେ ଆସିବ ପରା ।'' ''କି ତୁ କଟକକୁ ଯିବୁ କି କ'ଣ, କିଏ ଜାଣେ ! ତୋର ଆନନ୍ଦ ହବାର କଥା । ତୁ ଏଠି ନୂଆବୋହୂ—ଗେହ୍ଲା—ମୁଁ ଆସି ତୋ ଉପରେ ଜୁଲୁମ କରି ତୋତେ ଖଟେଇ ହଇରାଣ କରୁଥିଲି । ଗଲେ ଭଲ—ଆନନ୍ଦ ହବାର କଥା ତ ।'' ''ନା, ନୀଳୁଭାଇ, ତା' ନୁହେଁ—ତା' ନୁହେଁ ଭାଇ । ସତଏକା, ମୁଁ ଏଠି ନୂଆ ମଣିଷ ପରି ଚଳୁଥିଲି ସିନା । ତମେ ଆସିଲା ଦିନଠୁଁ ମୋ ଛାତି ଏଡ଼େ ମୋଟ ହୋଇଗଲା । ମୁଁ ଏଠି ଏଇ କେତେ ଦିନରେ ଯେତେ ଘର ପରି ମଣିଗଲିଣି, ଯା ତମେ ନ ଆସିଥିଲେ କେଉଁ ହୋଇ ପାରି ନ ଥାନ୍ତା । ତମେ ଥିବା ଯୋଗେ

ମୋ ଗୋଡ଼ ଭୂଇଁରେ ଲାଗୁ ନାହିଁ ଟି । ତମେ ଯା କହିବ ନାହିଁ, ଆଉ କ'ଣ-'' ''ସତେ ? ମୁଁ ଏଡ଼େ ଉପୁଗାରିଯାଟେ ତା' ହେଲେ । ଆରେ !'' କନକ ମୁହଁ ଶୁଖି କଳା ପଡ଼ିଗଲା । ନୀଲୁ କଥାଟି କହି ସାରି ସାଙ୍ଗେ ସାଙ୍ଗେ ଭାବିଲେ,-ଛିଃ, କ'ଣ କହିଲି । ତାଙ୍କ ମୁହଁ ବି ଶୁଖିଗଲା । କନ୍ତୁ କହି ତ ସାରିଲେଣି—ଏବେ କ'ଣ କରାଯିବ । କନକ କିନ୍ତୁ ସାଙ୍ଗେ ସାଙ୍ଗେ ସ୍ଥିର ହୋଇ କହିଲା, ''ନୀଲୁଭାଇ, ମୋର ସବୁ ଦୋଷ ତୁ ମାଫ୍ କର, ଏହି ସାମାନ୍ୟ କଥାଟି ଭୁଲିପାରୁନାହୁଁ ? ଛି, ମୁଁ ପରା ମାଇକିନା ଝିଅଟା—ତୋ ସାନ ଭଉଣୀ । ଦୋଷ ମାଗି ନେଲି—ଆଉ କେତେ ଦଣ୍ଡ ଦେବୁ ।'' ''ନା, ନା, କଙ୍କି—ମୋ ତୁଣ୍ଡ ଖସିଗଲା । ମୁଁ ତା ଭାବି ନାହିଁ, ତୁ ମନଦୁଃଖ କରନା । କହି ତ ପକାଇଚି, ଏବେ କ'ଣ କରିବି । ସତ ସତ, ମୁଁ ଆଉ ଟିକିଏ ବି ରାଗିନାହିଁ । ମୋ ରାଣ, ମନ ଦୁଃଖ କର ନା ।'' କନକ ବୁଝିଗଲା, ଭାବିଲା,—ହଁ, ସତେ ତ ନୀଲୁଭାଇ ତ ଏମିତିକା ନୁହେଁ କେଭେଁ । କଥାଟା ଚାଲିଗଲା, କିନ୍ତୁ ଦୁହିଁଙ୍କ ମନ ଭିତରେ କିପରି ଗୋଟାଏ ଆଞ୍ଚ ରହିଗଲା—ସେଯୋଗେ ମୂଳରୁ ଯେପରି ଫୂର୍ତ୍ତିରେ ଆରମ୍ଭ ହୋଇଥିଲା, ବିଦାୟଟା ସେପରି ଛିଡ଼ିଲା ନାହିଁ ।

ନୀଲୁବାବୁ କନକ ହାତରୁ ପାନତକ ନେଇ କହିଲେ, ''ହଉ ତେବେ, କଙ୍କି, ମୁଁ ଯାଉଚି । କାମଦାମ କରୁଥିବୁ, ଆଉ ନିଧିଙ୍କ କଥାରେ ଚଳୁଥିବୁ ।'' କନକ କହିଲା, ''ଓଃ !'' ପୁଣି ନୀଲୁବାବୁ କହିଲେ, ''ତୋ ନଣନ୍ଦଟିମାନେ ଆଚ୍ଛା ଭଲ, ସେମାନଙ୍କ ମନ ନେଇ ଚଳିବୁ, ବୁଝିଥା ।'' କନକ କହିଲା, ''ଫେରେ କେବେ ଆସବୁ ? ଭାଇକି କହିବୁ, ଟିକିଏ ଆସିବ, ନ ହେଲେ ମୁଁ ମଲା ବୋଲି ପିତା ଭାତ ଖାଇବ । ଆଉ, ଆଉ—ତୋ ବା'ଘରକୁ ମୋତେ ମୁକୁର ନବ ।''

ନୀଲୁ— କାହା ବାହାଘର ?

କନକ—କି, ତୋ ବାହାଘର-କା'ର !

ନୀଲୁ—(ହସି ହସି)-ମୋ ବା'ଘର ! ଓଃ, ମୋ ବା'ଘରକୁ ତୋତେ ନବାପାଇଁ ଭାଇଙ୍କୁ କହି ପଠାଉଚୁ । ମତେ ଏଇଠି ସିଧାସିଧା କହୁନାହୁଁ କାହିଁକି ମ ?

କନକ—ତୋତେ ବି କହୁନାହିଁ କି ?

ନୀଲୁ—କାହିଁ, କଉଁଠି କହୁଚୁ ?

କନକ—(ଅଧୋବଦନରେ) ତୋତେ କହନ୍ତି ଯେ—ଏକା ତୋତେ କହିଲେ—ହଁ, ତୁ ତ ଆଗେ ନେଇଯିବୁ । ମୁଁ ଜାଣି ନେଇଁ ପରା । ତୁ ଭାରି ଜଣେ—ଭାରି ଗୋଟିଏ—

କନକ ଏହିଠାରେ ବନ୍ଦ ହୋଇଯାଇ ଭୟରେ ନୀଲୁମୁହଁକୁ ଚାହିଁଲା । ନୀଲୁ ମୁହଁ ଶୁଖିଗଲା, ଚମକିତ ହୋଇ କହିଲେ, ''ଭାରି ଗୋଟିଏ । ଭାରି ଗୋଟିଏ କ'ଣ ? ନାଃ, ଭାରି ଗୋଟିଏ କ'ଣ ମୁଁ — ନ କହିବା ଯାଏଁ ଛାଡ଼ିବି ନାହିଁ । କ'ଣ ମୁଁ, କହ ।'' କନକର ମୁଣ୍ଡ ଘୂରେଇଗଲା—ପାଟି ଆଫାଫା ମାରିଗଲା । ବିଚାରୀ ଡରେ କହିଲା—ଖାଲି ବାଧରେ—''ନା, ମୁଁ କହୁଥିଲି କି, ତମେ ଭାରି ଗୋଟିଏ ଭଦ୍ରଲୋକ—ଆଉ କିଛି ନା ।''

ନୀଲୁ—ହୁଁ, ନିଶ୍ଚେ ଆହୁରି କ'ଣ କହୁଥିଲୁ । କହ, ନ ହେଲେ ମାଡ଼ ।

କନକ—ମାର ପଛେ । ନାଃ, ମୁଁ କହୁଥିଲି-ତମେ ଭାରି ଗୋଟିଏ ଠକ ବୋଲି । ସତ କଥା—ତମେ ଗୋଟିଏ ଠକ ତ ! ଏହା କହି କନକ ଅଧୋବଦନରେ ରହିଲା । ତା'ର କମ୍ପମାନ ସ୍ଫୀତ ଅଧରୌଷ୍ଠରୁ ତା' ମନର ଅଭିମାନ କି ସେହିପରି କୌଣସି ଗୋଟାଏ ଭାବ ଥରି ଥରି ଫୁଟି ଉଠୁଥାଏ । ନୀଲୁବାବୁ ଦୂରଦୃଷ୍ଟିରେ ଅନ୍ୟମନସ୍କଭାବରେ କ'ଣ ଭାବିଲେ । ହଠାତ୍ କ'ଣ କହୁଁ କହୁଁ ରହି ଯାଇ କିଛିକ୍ଷଣ ପରେ କହିଲେ, ''ଆଚ୍ଛା ତେବେ କକି, ଏବେ ଯାଉଚି ।'' କନକ ନୀରବରେ କାନ୍ଦିବାକୁ ଲାଗିଲା । ପୁଣି ନୀଲୁବାବୁ ଧୀରସ୍ଥିର ଭାବରେ କହିଲେ, ''ହଁ, କକି, ତୁ ମୋତେ ଠିକ୍ ଚିହ୍ନିଚୁ । ଏବେ ଏଥର ନିଶ୍ଚେଁ ନିଶ୍ଚେଁ ତୋତେ ନେବି—କେଉଁ ଠକିବି ନାହିଁ । ମୋ ବା'ଘରକୁ ତୋତେ ନିଶ୍ଚେଁ ନେବି ।'' ଏହା କହୁଁ କହୁଁ ନୀଲୁବାବୁ ବାହାରି ଗଲେ । କନକ କାତର ଭାବରେ ଡାକିଲା ''ନୀଲୁଭାଇ ।'' ସେ ଆଉ ଶୁଣିଲେ ନାହିଁ ।

+ + + + +

# ତୃତୀୟ ଖଣ୍ଡ

# ଠକପଣ

## (୧)

ନୀଲୁବାବୁ ଚାଲିଗଲା ବେଳୁଁ କାହିଁକି, ବିବାହ ପ୍ରସଙ୍ଗ ବିଧିମତେ ଉଠିଲାବେଳୁଁ ଗଉରୀ ଓ କନକ ଦୁହେଁ ରଙ୍ଗୀ ସଙ୍ଗରେ ଲାଗିଚନ୍ତି— ସେ ବିଚାରୀକୁ ଆଉ ରଖିଥୋଇ ଦଉନାହାନ୍ତି । ଗଉରୀ ରଙ୍ଗୀକୁ ଯେପରି ନାବାଳକ ତଳେ ଆଜି ସୁଦ୍ଧା ନିଏ, ସେ ତାହା ସଙ୍ଗେ ଲାଗନ୍ତା ନାହିଁ—ତେବେ, ବାହା ପ୍ରସଙ୍ଗ ଉଠିଲା ବେଳୁଁ କନକ ମୁହଁରେ ସବୁବେଳେ ସେହି କଥା—କେଜାଣି କେତେ ଥର ନିଭୃତରେ ଗଉରୀ ସଙ୍ଗରେ ଏ ବିଷୟରେ ତା'ର କଥା ହୋଇଥିବ । ଏଥିରେ ଗଉରୀ ମଧ ଟଳିଯାଇଚି । କନକର ଆଉ ଗୋଡ଼ ତଳେ ଲାଗୁ- ନାହିଁ—ରଙ୍ଗୀକୁ ସବୁବେଳେ କାନିଗଣ୍ଠିଲା କରି ମହା ଆନନ୍ଦରେ ଅଛି । ଏ ଆନନ୍ଦଟା ଯେ କେତେଦୂର ରଙ୍ଗୀ ବାହାଘର ପାଇଁ, ସେତକ ଖାଲି ତାକୁ ବେଳେବେଳେ ସନ୍ଦେହ ଲାଗେ । ନୀଲୁ ଆସି ତାକୁ ପ୍ରକୃତରେ ଏ ଘରର ଜଣେ କରି ଦେଇଗଲାଦିନୁଁ ତା' ହୃଦୟ କି ନୂତନ ବଳରେ ଯେ ପୂରିଯାଇଚି- କି ଆନନ୍ଦରେ, କି ଗର୍ବରେ ତା' ମୁଣ୍ଡ ଯେ କେତେ ଟେକି ହୋଇଯାଇଚି, ତାହା ବର୍ଣ୍ଣନାତୀତ । ଯେଉଁ ଘରେ ସେଦିନମାତ୍ର ପରଙ୍କ ପରି ଆସି ଚୋରଙ୍କ ପରି ଏ କେତୁଟା ଦିନ ସେ କଟାଇଥିଲା, ସେ ଘର ଆଜି ତା'ର, ସେ ଏହା ସ୍ପଷ୍ଟ ହୃଦୟଙ୍ଗମ କରିପାରିଲାଣି ।

ହଁ, ରଙ୍ଗୀ ସାଙ୍ଗରେ ଲାଗିବାର କାରଣ କ'ଣ ? କିଛି କାରଣ ଥାଉ ବା ନ ଥାଉ, କନକକୁ ସେଟା ଭାରି ସୁଖ ଲାଗୁଚି । ଆଉ ତା'ର ମନେ ହେଉଚି, ସେଟା ଯେପରି ତାହାର ଗୋଟାଏ ବଡ଼ କର୍ତ୍ତବ୍ୟ । ନଣନ୍ଦଟିର ବିବାହ ହେବା ବିଷୟରେ ତାହାର ଦାୟିତ୍ୱ ସେ ଏତେ ଶୀଘ୍ର ବୁଝିପାରିବ, ଏଟା ସମ୍ଭବ ନୁହେଁ । କିନ୍ତୁ ନୀଲୁଭାଇଙ୍କ ବିବାହ ? ନୀଲୁବାବୁ ଗଲାଦିନଠାରୁ ସେ କେବଳ ଭାବି ଭାବି ସାରା ହୋଇଚି । ତା'ର ଷୋଳପଣ ବିଶ୍ୱାସ ଯେ, ନୀଲୁଭାଇର ବିବାହର ଭାର ତାହାରି ଉପରେ । ତାଙ୍କ ହାବଭାବ, କଥାବାର୍ତ୍ତାରୁ କନକ ମନରେ ଗୋଟିଏ ଭୟ ପଶିଯାଇଚି-ନୀଲୁଭାଇ ସମ୍ଭବତଃ ବାହାହେବାକୁ ନାରାଜ । ସେ ନିଜ ମନକୁ ଯାଠୁସ୍ୟାଠୁ ଯେତେ ବୁଝାଉଚି, ଏ ବିଶ୍ୱାସଟି

ତା'ର କେବଳ ଦୃଢ଼ରୁ ଦୃଢ଼ତର ହୋଇଯାଇଚି । ନାରୀ ହୃଦୟର ନ୍ୟାୟଶାସ୍ତ୍ର ସବୁ କଥା ଦେଖେନାହିଁ; ବୁଝେନାହିଁ କିନ୍ତୁ ଏକାଦମ୍‌ରେ ଯେଉଁ ଗୋଟାଏ ସିଦ୍ଧାନ୍ତରେ ଉପନୀତ କରାଇଦିଏ, ସେଟାକୁ ନ ମାନିବାର କ୍ଷମତା କୌଣସି ନାରୀର ନାହିଁ ।

କନକ ଦେଖିଲା, ରଙ୍ଗୀଟି ସୁନ୍ଦର, ଯୋଗ୍ୟ ମଧ—କିଛି ପାଠଶାଠ ବି ପଢ଼ିଚି, ତେବେ ଟିକିଏ ଢଙ୍ଗାଳିୟା, ଟିକିଏ ଚଗଲୀ । ହେଲେ, ପିଲାତ— ବୟସ ହେଲେ ବଦଳି ଯିବ ନାହିଁ କି ! କିନ୍ତୁ ମନଟି ତା'ର ବଡ଼ ପରିଷ୍କାର—ସଫା ସଫା କଥା, ଛନ୍ଦ ନାହିଁ, କପଟ ନାହିଁ । ନୀଳୁଭାଇଟି ପାଇଁ ଯଦି ହୁଅନ୍ତା-ହାୟ, ହାୟ, ସତେ କ'ଣ ନୀଳୁଭାଇ ରାଜି ହେବେ, କେଜାଣି । କନକ କେତେ ଦିଅଁଦେବତାଙ୍କୁ ମାନସିକ କରିପକାଇଲା ।

ନୂଆବୋଉଙ୍କର (ହରିବାବୁଙ୍କ ସ୍ତ୍ରୀ) ଇଚ୍ଛା ଅଛି ବୋଲି ତ ଏଠାରେ ଶୁଣିଲା, ଭାଇଙ୍କର ଆପତ୍ତି ନଥିବ—ତେବେ ସେଇ ନୀଳୁଭାଇ, ସେଇ ତ ଅସଲ । କୋଷ୍ଠୀପତ୍ର ନେଇ ଲୋକ ଗଲାବେଳୁ କନକ ଭାବିଲା, ନୀଳୁଭାଇ ରାଜି ହେଲେ ବି ତ ହୋଇ ପାରେ । ତେବେ, ରଙ୍ଗୀକୁ ମୁଁ ଯାଦୁ ତିଆର କରେଁ । ସେତିକିବେଳୁ ରଙ୍ଗୀସଙ୍ଗରେ ଲାଗିଲା—ନିଜେ ତ ଲାଗିଲା, ଗଉରୀଅପାକୁ ମଧ ସଙ୍ଗଦୋଷରେ ପକାଇ ରଙ୍ଗୀକୁ ଅସ୍ଥିର କରି ପକାଇଲା ।

ରଙ୍ଗୀ ବିଚାରୀ ଏ ସବୁଥିରେ ପଡ଼ି ଏକାବେଳକେ ବୋକା ବନିଗଲାଣି—ତା'ର ସବୁ ଫୂର୍ତ୍ତି, ସବୁ ହସଖେଳ କୁଆଡ଼େ ଗଲାଣି । ପ୍ରଥମ ପ୍ରଥମ ଫାଙ୍କାଡ଼ି ମାରି ପଳାଇ ବୁଲୁଥିଲା । କିନ୍ତୁ ବୋଉ ଗାଳି ମନ୍ଦ ଦେଇ ଉତ୍ତମ ରୂପେ ବୁଝାଇ ଦେବାରୁ, ଏବେ ଘରୁ ବାହାରକୁ ଯାଉନାହିଁ—ଆକଟରେ ଅଛି । ବିବାହର ଅର୍ଥ ସେ ବିଶେଷ ବୁଝିନାହିଁ; କିନ୍ତୁ ବର ଆସିବ, ତାକୁ ଘର ଛାଡ଼ି ଚାଲିଯିବାକୁ ହେବ ଓ ଯିବାର ମାସେ ଖଣ୍ଡେ ପୂର୍ବରୁ ସମସ୍ତଙ୍କୁ ଧରି ବାହୁନିବାକୁ ହେବ, ଏଟା ସେ ଭଲରୂପେ ଜାଣେ । ସେଥିଯୋଗେ ସେ ଯଥାସମ୍ଭବ ଖୁସି ମନରେ କାନ୍ଦଣା ଶିଖିବାରେ ବ୍ୟସ୍ତ । ସ୍ଥାନ ଓ ପାତ୍ର ଭେଦରେ ରକମ ରକମ କାନ୍ଦଣା ବ୍ୟବସ୍ଥା ଅଛି । ସେହି ସବୁର ଶିକ୍ଷା ପାଇବା ପାଇଁ ରଙ୍ଗୀ କନକକୁ ଦିବାରାତ୍ର ଅନୁସରଣ କରୁଚି । ଘରୁ ତ ବାହାରିବ ନାହିଁ—ଆଉ କାହାଠାରୁ ଶିଖିବ । ପୁଣି, ନୂଆବୋଉ କନକର ତ ସେ କିଛି ନ କହି ନ ବୋଲି କାନିଗଣ୍ଠିଲା ହୋଇ ସାରିଲାଣି, ଆଉ ଚିନ୍ତା କ'ଣ ? ତେବେ ସେଥିରେ ଟିକିଏ ଅଡୁଆ ହୁଏ—ରଙ୍ଗୀ କାନ୍ଦଣା ଶିଖିବାକୁ କହେ, ପଦେଅଧେ କନକ କହିବିଦିଏ, କିନ୍ତୁ ଅଧିକ ସମୟ କନକ

ଅନ୍ୟ ଅନ୍ୟ କଥା ସବୁ କହିବସେ—ସ୍ୱାମୀ ସ୍ତ୍ରୀ ସମ୍ବନ୍ଧ ଓ ବିଶେଷତଃ ନୀଳୁଭାଇଙ୍କ ସହିତ ରଙ୍ଗୀ ସମ୍ବନ୍ଧ ବିଷୟରେ ଗମ୍ଭୀର ଭାବରେ ଉପଦେଶ ଓ ବକ୍ତୃତା ଦେଇବସିଲେ, ରଙ୍ଗୀମୁଣ୍ଡରେ କେତେ ପଶେ, କେତେ ବା ପଶେ ନାହିଁ—ସେ ବକା ହୋଇ ଅନାଇଥାଏ । କେତେବେଳେ କିଛି କିଛି ଟିକିଏ ବୁଝି ପାରିଲେ ନୂଆବୋଉ ସାଙ୍ଗେ ଟିକିଏ ଦୁଷ୍ଟାମି ଲଗାଏ, ଅଝଟ ଧରେ । କନକ ପ୍ରାଣପଣ ଚେଷ୍ଟାକରେ—ନୀଳୁଭାଇଙ୍କର ରଙ୍ଗୀ କ'ଣ ହେବ, ଏହିତକ ତାକୁ ବୁଝାଇବାକୁ କିନ୍ତୁ, ରଙ୍ଗୀ ଏତେ କଥା ବୁଝିପାରେନାହିଁ । ସେ ତ ଜାଣେ—କିଏ ତ ଜଣେ ବର ହୋଇ ଆସନ୍ତା, ନୀଳୁ ବି ତ ସେଇଆ—ପାନିକିରେ ଚଢ଼ି, ଢୋଲଯମକ ବଜାଇ, ବାଣ ମାରି ଆସିବ; ଭାଇ ଯେମିତି ନୂଆବୋଉଙ୍କୁ ସେ ଦିନ ଆଣିଲେ, ସେହିପରି ତାକୁ କୁଆଡ଼େ ନେଇଯିବ । ଘର ଛାଡ଼ି ଯିବା କଥା ଭାବିଲେ ତାକୁ କାନ୍ଦମାଡ଼େ—ନହେଲେ, ବାହାଘରଟା ଭାରି ମଜା କଥା, ଏତକ ସେ ସ୍ଥିର ଜାଣିଛି । ନିଜ ବାହାଘରଟା କେମିତିକା, ସେଟା ନ ଜାଣିଲେ ମଧ ତା'ର ଗୋଟାଏ ମୋଟାମୋଟି ଧାରଣା ଯେ, ବାହାଘରଟା ମଜା କଥା । ଯେଉଁମାନେ ବାହା ହୁଅନ୍ତି ସେମାନଙ୍କର ମଜା ହୁଏ କି ନା, ସେ କଥା ଦିନେ ନୂଆବୋଉଙ୍କୁ ପଚାରିବାରୁ ନୂଆବୋଉ ଖାଲି ହସିଲା, ଆଉ କିଛି କହିଲା ନାହିଁ, ଗଉରୀଅପାକୁ ଯାଇଁ କହିଦେଲା । ସେଥିଯୋଗେ ଆଉ ସେ ବିଷୟ ରଙ୍ଗୀ ଉଠାଏ ନାହିଁ, ଭାବେ ନାହିଁ ।

ରଙ୍ଗୀକୁ ନୀଳୁଭାଇ ପାଇଁ ପ୍ରସ୍ତୁତ କରୁଁ କରୁଁ କନକ ତାକୁ କେତେ ଯେ ନିଜର କରି ପକାଇଲା ଦିନ ଦୁଇଟା, ତିନିଟା ଭିତରେ, ତାହା କହିଦେବ ନାହିଁ । ରଙ୍ଗୀ ବି ନୂଆବୋଉଙ୍କୁ ଅତି ନିକଟରେ ପାଇ ସର୍ବସ୍ୱପ୍ରାୟ କରି ପକାଇଲା । ଦୁହିଁଙ୍କ ଭିତରେ ଯେ ନୀରକ୍ଷୀର ଅଭେଦ ପ୍ରୀତି ହୋଇଗଲା, ତାହା ବୋଲାଯାଇ ନପାରେ; କାରଣ ଅସମାନ ଭିତରେ ସେଟା ସାଧାରଣତଃ ଅସମ୍ଭବ । କିନ୍ତୁ ଏତିକି ବୋଲାଯାଇପାରେ ଯେ, ରଙ୍ଗୀ ତା'ଠାରୁ ସାନ ହେଲେ ମଧ କନକ ତାକୁ ଏ ବିବାହ ପ୍ରସଙ୍ଗ ହେଲାଦିନଠାରୁ କାହିଁକି କେଜାଣି ସମାନସ୍କନ୍ଧ ଭାବରେ ହିଁ ଦେଖୁଛି । ଅନ୍ୟଭାବରେ ଦେଖିବାକୁ ତା'ର କିପରି ଗୋଟାଏ ଦୁଃଖ ଓ ଅଭିମାନ ହେଉଅଛି ।

ନୀଳୁବାବୁ ଯିବାର ଚାରିଦିନ ପରେ, ଦିନେ ସକାଳୁ ଗାଧୋଇ ଖିଆପିଆ କରି କନକ ରଙ୍ଗୀକୁ ନେଇ ତା' ନିଜ ଘରେ ନିର୍ଜନରେ ବସି କାନ୍ଦଣା ଶିଖାଉଚି, ଏପରି ସମୟରେ ଗଉରୀ ଆସି ପହଞ୍ଚିଗଲା । ରଙ୍ଗୀ ଆଗରୁ ଖଣ୍ଡେ ରାମାୟଣ ଖୋଲି ଆଗରେ ରଖି ଦେଇଥିଲା, —କେହି ଆସିଗଲେ ସେଇଟାକୁ ପଢୁଥିଲା ବୋଲି ଜଣାଯିବ

ବୋଲି, କିନ୍ତୁ କନକ ଗଉରୀ ଆସିବାର ନ ଜାଣିଥିଲା ପରି କହିଗଲା, ''ଯେଉଁପରି ଲଙ୍କାଗଡ଼ରେ—ଅସୁରୀପଲ୍ଲରେ—ଅଶୋକ ବନରେ—ସୀତାଙ୍କୁ ରାବଣ ନେଇ ରଖିଲା ଲୋ, ହଁ ମୋ ଅପା—ନୂଆବୋଉ—ଖୁଡ଼ୀ—ବଡ଼ମା-ମାନେ ଲୋ—ଏହିପରି ଲୟା କାନ୍ଦଣା କାନ୍ଦିବ ନା—ଲାଜ କଲେ କ'ଣ ହେବ । ପଦେ ପଦେ ଏଇଥିରୁ ଯୋଖିଦେଲେ ସିନା କାନ୍ଦିଲା ବୋଲି କହିବେ—ଆଉ ।'' ଗଉରୀ କହିଲା, ''ଓଃ, ଏଇୟା ହଉଚି ପରା । ସେଇଥି ପାଇଁ ପରା ଦଶାମୁହାଁଟା ସବୁବେଳେ ତୋ କତିରେ ପଶିଚି ।'' ରଙ୍ଗୀ କହିଲା, ''ନୂଆବୋଉ ବଡ଼ ଜଣେ । ମୁଁ କ'ଣ ତମ ପାଖରୁ କାନ୍ଦଣା ଶିଖିବା ପାଇଁ କହୁଥିଲି ନା—ମୁଁ କାହିଁକି କାନ୍ଦଣା ଶିଖିମି, ହଁ ।'' ଗଉରୀ କହିଲା, ''ନାଇଁ, କିଛି ଜାଣି ନାହୁଁ—ଅଜାଣୀ ଚମ୍ପାଟି ମୋର । ବାହାହବା ପାଇଁ ଖାଲି ଗୋଡ଼ ବଢ଼େଇକରି ଅଛି ! ଜାଣିଚତୁରୀଟିଏ । ହଇ ଲୋ, ହଇ ଲୋ, ନୂଆବୋଉର ତୁ କ'ଣ ହବୁ କି ? ସତେ ବହୂ, ରଙ୍ଗୀ ତୋ ନୂଆବୋଉ ହେଲା ନା ?'' କନକ କହିଲା, ''କେଉଁଠି ହଉଚି ଅପା ? (ଗଉରୀ ଠାରିଦେବାରୁ)— ହଁ, ହେଲେ ନାହିଁ ଆଉ କ'ଣ । ମୋର ନୂଆବୋଉ ତ—ଠିକ୍ କଥା । ଏବେ ଏଣିକି ନୂଆବୋଉ ବୋଲି ଡାକିବି ।'' ରଙ୍ଗୀ କନକ ପିଠିପଟେ ଯାଇଁ କନକର ମୁକୁଳା ବାଳକୁ ପୁଳାପୁଳା କରି ଭିଡୁଥାଏ । କିନ୍ତୁ କନକ ନ ଛାଡ଼େ । ବାହାଘର ପ୍ରସଙ୍ଗ ପୂର୍ବରୁ କନକ ରଙ୍ଗୀକୁ ନୂଆବୋଉ ବୋଲି ଥଟ୍ଟା କରୁଥିଲେ ମଧ, ତା' ପରଠୁଁ ସେ କଥା କୁଆଡ଼େ ଭୁଲି ଯାଇଥିଲା,—ହଠାତ୍ ଗଉରୀ କଥାରେ ତା' ଆଗରେ ଯେପରି ଗୋଟାଏ ସୁଖର ସ୍ୱପ୍ନରାଜ୍ୟ ଖୋଲି ହୋଇଗଲା । 'ନୂଆବୋଉ, ନୂଆବୋଉ' ବୋଲି ଡାକି, ତାକୁ ବୁଲାଇ ଭିଡ଼ିଆଣି, କୋଳ ଉପରେ ପକାଇ ଆବେଗରେ ଚୁମା ଖାଇଲା । ରଙ୍ଗୀ ଝଟ ବୁଲିପଡ଼ି ମୁହଁଟା ତା' କୋଳ ଭିତରେ ପୂରାଇ ଲୁଚିରହିଲା- ଅନେକ ବେଳଯାଏଁ ସେଠୁଁ ବାହାରିଲା ନାହିଁ ।

ଏହିପରି ସମୟରେ ସ୍ୟାତୁ ନିଧିବୋଉ ଆସି କହିଲେ, ''ଭଦ୍ରକର ବାମନ ଫେରି ଆସିଚନ୍ତି, ବହୂ ତମ କତିକି ସର ଚିଠି ଦେଇଚି, ନିଅ, ପଢ଼ ।'' ଯା କହି ବୁଢ଼ୀ ବିରସ ଭାବରେ ସେଠାରୁ ବାହାରି ଚାଲିଗଲେ । ଗଉରୀ ଧଡ଼ପଡ଼ ହୋଇ ଉଠି ପଚାରିଲା, ''ବୋଉ, କ'ଣ ହେଲା ? ଟିକିଏ କହି ଯା ଭଲା । ନାଇଁ—ସେ କ'ଣ ଶୁଣିବ କି । ବହୂ, ତୁ ପଢ଼ିବୁତି—କ'ଣ କଥା ।

କନକ ଇତିମଧ୍ୟରେ ଚିଠି ଖୋଲି ଧାଡ଼ିଏ ଦି'ଧାଡ଼ି ପ୍ରାଧାନ କଥାଟି ଜାଣି ସାରିଲାଣି । ଶାଶୁଙ୍କ ମୁହଁଭାବ ଓ କଥାରୁ ମଧ ସେ ଏବଂ ଗଉରୀ ଦୁହେଁ ଏଇଆ

ଆଶଙ୍କା କରିସାରିଥିଲେ । ଗଉରୀ ମଧ ଆସି କନକ ସାଙ୍ଗରେ ଚିଠି ପଢ଼ିବାକୁ ଲାଗିଲା । ରଙ୍ଗୀ ବି ଦେଖାଦେଖି ଆସି ଚିଠି ଉପରେ ଝୁଙ୍କିପଡ଼ିଲା । ଗଉରୀ ଚିଡ଼ି ଉଠି କହିଲା, "ମରୁ ନହୁଁ । ବା'ଘର ଖବର ଶୁଣିବା ନାଗି କଅଣ ହଉଚି ସିଏ । ଦେଖିଲୁ, ଦେଖିଲୁ ? ଏବେ ହେଲା ? ତୋ ଘଇତା ମନା କରୁଚି, ତତେ ଆଉ ନବ ନାହିଁ, ଯା ।" ରଙ୍ଗୀ କୌତୁହଳ ଦପ୍ କରି ନିଭିଗଲା । ସେ ବିଚାରୀ କିଛି କହି ନ ପାରି ସେଠାରୁ ଦୌଡ଼ି ପଳାଇଗଲା । ଗୋଟାଏ ଅଗଣା ପାର ହୋଇ ଆଉ ଗୋଟାଏ ପରସ୍ତରେ ପଶିଲା ବେଳକୁ ହଠାତ୍ ପୁଣି ନିଧିବାବୁଙ୍କୁ ହାବୁଡ଼ିଲା । ଝଟ୍ ଜିଭ କାମୁଡ଼ି ପକାଇ ସେ ସେଠାରୁ ଫେରିଲା, କିନ୍ତୁ ସେଇତକ ଭିତରେ ସ୍ପଷ୍ଟ ବୁଝିନେଲା ଯେ, ବୋଉକୁ ଭାଇ କାହିଁକି କ'ଣ ବୁଝାଉଅଛନ୍ତି । ଦୁହିଁଙ୍କ ମୁହଁ ଶୁଖି ଯାଇଚି—ବିରସ ବିରସ ଭାବ । ତେବେ କ'ଣ ସତେ ବାହାଘର ବନ୍ଦ ହେଲା । ବାହାଘର ବନ୍ଦହେବା କଥା ଭାବିବା ମାତ୍ରକେ ରଙ୍ଗୀର ମନଟା କାହିଁକି ଚୂନା ହୋଇଗଲା । ଆହା, ବିଚାରୀ କେତେ କାନ୍ଦଣା ଶିଖିଥିଲା—ଆଉ କ'ଣ ହେବ, ନିଆଁ ନା ଚୁଲି । ତା' ମନଟା ଫାଟିଯିବା ଯୋଗରୁ ତାକୁ ଭାରି ଅତୁଆ ଅତୁଆ, ଲାଜ ଲାଜ ଲାଗିଲା । ସେ ପଳାଇଯାଇ ଗୋଟାଏ ଖାଲି ଘରେ କବାଟ କିଳି ପଶିଲା । ବାହାଘର ପ୍ରସଙ୍ଗ ଲାଗିଥିଲା ବେଳେ ତାକୁ ଯେଉଁ ଲାଜ ସ୍ପର୍ଶ କରି ନଥିଲା, ବର୍ତ୍ତମାନ ଭାଙ୍ଗିଯିବା କଥାରେ ସେ'ଟା କିପରି କୁଆଡୁ ଆସି ତା' କ୍ଷୁଦ୍ର ମନଟିକୁ ଏକାବେଳକେ ଅଧିକାର କରି ବସିଲା । ସେହିଠାରେ ସେହିପରି ଭାବରେ ସେ ମୁହଁରେ ଲୁଗା ଦେଇ ଚୁପ୍ କରି ବସି କ'ଣସବୁ ଭାବିବାକୁ ଲାଗିଲା । ଆଜି ରଙ୍ଗୀର ଏ କି ଭାବ ।

ୟାଡ଼େ ଚିଠି ପଢ଼ିସାରି କନକ ଓ ଗଉରୀ ଦୁହେଁଯାକ କିଛିକ୍ଷଣ ଚୁପ୍ କରି ରହିଲେ । ପରେ କନକ ହଠାତ୍ କହିଲା, "କିଛି ଡରନାହିଁ ଅପା, ନୂଆବୋଉ ଲେଖିଚି—ନିଶ୍ଚେ ହବ । ନୀଳୁଭାଇ ମଙ୍ଗୁ ନାହିଁ ବୋଲି ତ କଉଁଠି ଲେଖିନାହିଁ । ଦେଖ, କ'ଣ ହଉଚି ।" ଗଉରୀ କହିଲା, "ଆଚ୍ଛା ହଉ, ମୁଁ ବୁଝି ଆସେ । ବାମନ ଅଛି କି କ'ଣ, ଦେଖେଁ, ତାଠଉଁ ସବୁ ଖବର ଜଣା ପଡ଼ିବ ।" ଏହା କହି ଗଉରୀ ସେଠାରୁ ଯାଇଁ, ଯେଉଁଠି ମା' ପୁଅ ଦୁହେଁ ବସି ବାମନଠଉଁ ଟିକିନିଖି କରି କଥା ସବୁ ବୁଝୁଥିଲେ, ସେଇଠି ଦୁଆର ପାଖରେ ଆଢୁଆଳରେ ଛିଡ଼ା ହେଲା । କିଛିକ୍ଷଣ ପରେ କନକ ମଧ ଆସି ତା' ପାଖରେ ଛିଡ଼ା ହେଲା ।

ବାମନ କହୁଥାଏ, "ନାଇଁ ବାବୁ, ମୁଁ କ'ଣ ଏଡ଼େ ଓଲୁ ହେଇଚି । ନା, ନା, ସେ ବାବୁର ଇଚ୍ଛା ନାହିଁ —ମୁଁ ସଫା କହିଦଉଚି । ଯଉଁ ଦିନ ମୁଁ ଗଲି, ବାସ୍ ହରିବାବୁ

ତାଙ୍କ ଏ ବିଷୟ ସଫା ସଫା କରି ପଚାରିଲେ; ସେ ଦିନ ତାଙ୍କୁ ଦେଖିଥାନ୍ତ କି, କହନ୍ତ । ଯେତେ କହିଲେ କ'ଣ ହବ ନା, ଯେତେ ବୁଝେଇଲେ କ'ଣ ହବ—ସେଇ 'ନା' ତ । ମୁହଁଟାକୁ ତଳକୁ କରି ବସିଥାନ୍ତି—ଖାଲି 'ନା' ଛଡ଼ା ଆଉ କିଛି କଥା ନ ବାହାରେ ଭଲା । ଫେରେ କହିଲେ ପରା-'ଭାଇ, ତମେ ଯଦି ମତେ ଏଥିରେ ବଳେଇବ, ତା'ହେଲେ ମୁଁ ପଳେଇବି କଟକ, ଆଉ ଆସିବି ନାହିଁ ।''

ନିଧି—ଆରେ ଯା'ମ, ନୀଲୁ କ'ଣ ଏମିତି କେବେ କହିବ । ଯାଃ—

ବାମନ—ଆଚ୍ଛା ହଉ, ମୋକଥା ଯଦି ମିଛ ହେଲା-ହେଲା, ତେମେ ଫେରେ ପଛକୁ ଶୁଣିବ ନାହିଁକି । କି ଖୁଡ଼ୀ, (ଗଉରୀବୋଉ ପ୍ରତି) ତମ ଝିଆରୀ ସିନା 'ହବ' ବୋଲି କହିଚନ୍ତି, ମୋତେ ଏକା ବିଶ୍ୱାସ ନାହିଁ । ଯା ହଉ, ଏବର୍ଷ କଥା ତ ମିଛ—ତାଙ୍କର କିଏ ସେ ଗୋଟାଏ ମରିଗଲା ପରା, ମୁଁ ଆସିଲାବେଳେ ଶୁଣି ଆସିଛି ।

ନିଧି—କିଏ ମଲା । କିଏ ମ ? ଏତେବେଳଯାଏଁ ଏ କଥା କହୁନାହୁଁ ? ତାଙ୍କ ନାଁ କ'ଣ ?

ବାମନ—କ'ଣ, ଭଲ ମଜାର ନାଁଟ । ଓଃ, ନୀଲୁଙ୍କର ଭିଣେଇ ନା କ'ଣ ହୁଅନ୍ତି ସେ । ଜର ହୋଇଥିଲା । ଏଠୁ ଯାଇଁ କରି ନୀଲୁବାବୁ କ'ଣ ତମ ଶଶୁରଘରେ ଦଣ୍ଡେ ରହିଚନ୍ତି କି । ସେଇ ତାଙ୍କରି ପାଖରେ କାଲେ—

ନିଧି—ଓଃ, ନିତେଇବାବୁ ହେବେ ପରା । ସେ କ'ଣ,—ସତେ । ଆଚ୍ଛା, ତମେ ଠିକ୍ ଖବର ଶୁଣିଚଟି କି ?

ବାମନ—ମଲା, ଯା ନାଁ ଗୋଟାଏ କଥା ଅବସ୍ଥା । ମୁଁ ପରା ବାହାରୁଥିଲି, କିଏ ଗୋଟାଏ ତାଙ୍କର ଚିଠି ଆଣି ଦେଇଗଲା, ବଟୁଆରେ ରଖିଲି । ଗୁଣ୍ଡି ଟିପାଏ ନେଇ ପାଟିରେ ପକେଇ ଯେମିତି ଗୋଡ଼ କାଢ଼ିଚି, ସେମିତି ସ୍ୟାଦୁ ଗୋଟାଏ କିଏ ଧାଇଁ ଧାଇଁ ଆସି ''ହରି କାହାନ୍ତି, ହରି କାହାନ୍ତି'' ବୋଲି ଡାକ ଛାଡ଼ିଲା । ମୁଁ ପଚାରିଲି, ''କଥା କ'ଣ ।'' ସେଇ ପରା କହିଲେ, ''ନିତେଇବାବୁ ମରିଗଲେ ।'' ହଁ, ନିତେଇବାବୁ ତ ! ଠିକ୍ ଠିକ୍—ନୀଲୁଙ୍କ ଭିଣେଇ । ମୁଁ ପରା 'ଜୟ ମା ଚଣ୍ଡଭୈରବୀ' ବୋଲି କହି ସାଙ୍ଗେ ସାଙ୍ଗେ ବାହାରି ପଡ଼ିଲି; ଭାବିଲି—ଏଟା ସିନା ବିଫଳ ହେଲା । ଏଥର ଫେରିଲା କ୍ଷଣି ପୁଣି କୁଆଡ଼କୁ ନିଶ୍ଚେ ଯିବାକୁ ପଡ଼ିବ । କହିଚି ପରା-'ହେଁ ଶବଃ ଶିବାଃ କୁମ୍ଭା ହା ।'

ନିଧି—ଆଚ୍ଛା ହଉ, ସେ କଥା ବୁଝିବା । ତେମେ ଯା, ଖିଆପିଆ କର ।

ବାମନ ଅନିଚ୍ଛା ସତ୍ତ୍ୱେ ଉଠୁ ଉଠୁ କହିଲେ, "ହଁ, ନ ଯିବି ଏପରି ଗୋଟାଏ କଥା ! ତମ କାମ ପାଇଁ ମୁଁ ନା ଆଉ କ'ଣ । ନ ଖାଇ ନ ପିଇ ମୁଁ ଲାଗିବି ନେଇଁ ତ କିଏ ଲାଗିବ ! ଯିବି ନାହିଁ ? ଏଇନାଗେ କହିଲେ ଏଇନାଗେ ଯିବି ।"

ବୁଢ଼ୀ କହିଲେ, "ହଁ, ହଁ, ତେମେ ବାମନ କ'ଣ ସେମିତିକା । ହଉ ହଉ, ଯା ଯା, ତେମେ ଗଣ୍ଡାଏ କ'ଣ ଖାଇବ ଯା ।"

କନକ ଗଉରୀକୁ କହିଲା, "ଅପା, ପଚାରିଲ, ଜାତକ ପଡ଼ିଚିକି ନାହିଁ ।" ଗଉରୀବାହାରିପଡ଼ି କହିଲା, 'ହଇରେ ନିଧି, ଜାତକ ପଡ଼ିଚି ତ ?' "ହଁ ଜାତକ ଖୁବ୍ ଭଲ ପଡ଼ିଚି, ରାଜ-ଯୋଟକ, ଏକା ରାଶି ତ ।" ବୁଢ଼ୀ କହିଲେ, "ହଁ, ସତେ ସେ ଟୋକୀ ଭାଗ୍ୟରେ ଥିବ, ସେଠି ହବ । କେଏ ଜାଣି, ମତେ ତ କେମିତିକା ଲାଗୁଚି । ହଇରେ ପୁଅ, ଆଉ କୁଆଡ଼େ କ'ଣ ଦେଖିବୁ ନା କ'ଣ ?"

ନିଧି—ନାଇଁ ମ, ସରଅପା ନେଖିଚି କ'ଣ ଶୁଣିଲୁ ପରା ? ନିଶ୍ଚେ ନିଶ୍ଚେ ସେଇଠି ହବ ।

ବୁଢ଼ୀ—ଯାଡ଼େ ଫେରେ କିଏ ମଲାଣି ପରାରେ । ଏ ସାଲତ ତା'ହେଲେ ଆଉ ହୋଇପାରିବ ନାହିଁ ?

ନିଧି—ଏ ସାଲ ନୋହିଲା ନାହିଁ । ରଙ୍ଗୀର କଉଁ ଏବେ ବଅସ ଗଡ଼ି ଯାଉଚି । ତେମେ ସବୁ ଚାଲ କଟକ, ଦେଖାଯିବ, ମୁଁ ଦେଖିବି—ନୀଲୁ କେମିତି ବାହା ନ ହେବ । ରଙ୍ଗୀକି ସେଠି ଇସ୍କୁଲରେ ଭର୍ତ୍ତି କରିଦେବି । ସେ ଭଲ କରି ପାଠଶାଠ ପଢ଼ୁ, ଦେଖାଯିବ—

ବୁଢ଼ୀ—ହଁ, ତୋ କଥା ତୁ ଜାଣୁ ରେ ପୁତ । ମତେ ଯଉଁଠିକି ନବୁ ନେ—ଗାତକୁ ଗଲା ଆଗରୁ ଯିମିତି ରଙ୍ଗୀଟି ପାର ହୋଇଯାଇଥାଏ, ଏଇୟା ଭଲା କର ।

ଏହା କହି ବୁଢ଼ୀ ମନେ ମନେ କ'ଣ ଗୁଣୁଗୁଣୁ ହେଉ ହେଉ ସେଠାରୁ ଚାଲିଗଲେ ।

ନିଧିବାବୁ କହିଲେ, ''ଅପା, ଟିକିଏ ଚାଲିବୁଟି ସ୍ୟାଡ଼ିକି, ପଣ୍ଡିତଙ୍କ ସାଙ୍ଗେ ବିଚାର କରିବା ।'' ଏହା କହି ସେଆଡ଼କୁ ଆସିଲେ, କନକ ଧଡ଼ପଡ଼ ହୋଇ ସେଠାରୁ ପଳାଇଗଲା । ଦିନୁଟା-ଛି ।

(୨)

ବାମନ ପ୍ରକୃତ କଥା କହିଥିଲା—ନୀଲୁଙ୍କର ଇଚ୍ଛା ନାହିଁ । ସେ ଭଦ୍ରକରେ ପହଞ୍ଚି ହରିବାବୁ ବା ସରସ୍ୱତୀ ଦେଈ କାହାରି ସହିତ କଥାବାର୍ତ୍ତା ହେବାର ବି ସମୟ ପାଇଲେ ନାହିଁ, ନିତେଇବାବୁଙ୍କର ପ୍ରାୟ ଶେଷ ଅବସ୍ଥା, ତେଣୁ ଚାଙ୍କର ସେବାଶୁଶ୍ରୁଷାରେ ଲାଗିଗଲେ । ତହିଁ ଆରଦିନ ଜାତକପତ୍ର ମିଳାଇସାରି ହରିବାବୁ ନୀଲୁବାବୁଙ୍କୁ ଡକାଇ ଏ ପ୍ରସଙ୍ଗ ଉଠାଇଲେ । ପ୍ରଥମତଃ ନୀଲୁବାବୁ ନିତେଇଙ୍କ ଦେହ କଥାରେ ପ୍ରସଙ୍ଗଟାକୁ ଉଡ଼ାଇ ଦେବାକୁ ବସିଲେ, ପରେ ବାଧ ହୋଇ ବିବାହରେ ତାଙ୍କର ପୂର୍ଣ୍ଣ ଅନିଚ୍ଛା ଯଥାସମ୍ଭବ ନରମଭାବରେ ହରିବାବୁଙ୍କୁ ଜଣାଇଦେଲେ ଓ ଏ ବିଷୟରେ ଆଉ କଥା ଉଠିଲେ ସେ କଟକ ପଳାଇବେ— ଫେରିବେ ନାହିଁ, ଏହା ମଧ୍ୟ ଶୁଣାଇଦେଲେ । ହରିବାବୁ ସଭୟରେ ଏସବୁ ସରସ୍ୱତୀ ଦେଈଙ୍କୁ କହିଲାରୁ ସେ ବଡ଼ ଗୋଟାଏ ହସ ହସି କହିଲେ, ''ଆଚ୍ଛା ହଉ, ଦେଖାଯିବ । ବା' ହେବେ ନାହିଁ, —ବଇଷମ ହେବେ, ନାଇଁ ? ତମକୁ ତ ମୁଁ ଦେଖିଲି ଗୋଟାଏ-ଆହା, ବୁଦ୍ଧି—ତମେ ବି ତା' କଥାରେ ସଳଖେ ବୁଝିଗଲ । ଏମିତି ମଣିଷ ଜନମ କାହିଁକି ବିଧାତା ଦେଇଥିଲା । ତମେ ଯିବତି—''

''ନାଇଁ, ନାଇଁ ମୁଁ ତାକୁ କିଛି କହିପାରିବି ନାହିଁ । ସ୍ୟାଡ଼େ ନିତେଇର ଏ ଦଶା, ନାଃ, ସେ ବ୍ରାହ୍ମଣକୁ ବିଦା କରିଦିଅ; ପରେ ଦେଖିବା ।''

''ଓଃ, ଇୟେ ପରେ ଦେଖିବେ । ତମକୁ ମୁଁ କିଛି କହିବାକୁ କହୁନାହିଁ, ତମେ ଖାଲି ନୀଲୁକୁ ମୋ କତିକି ଡାକିଦେଲ, ଗଲ । ମୁଁ କହିଦଉଚି ସାଙ୍ଗେ ସାଙ୍ଗେ । ହ, ଯା ଯା କହିଲ । ତାଙ୍କ ଦିହ କଥା, ସେଟା ବା ଗୋଟାଏ କଥା; ନହେଲେ, ବା' ହବ ନାହିଁ-ହବ ନାହିଁ ନା ହବ ନାହିଁ ।''

''ହଉ, ମୁଁ ପଛେ ନୀଲୁକୁ ଡାକି ଦଉଚି, ମୁଁ ଆଉ ଏ କଥାରେ ପଦେ ବି ପାଟି ଫିଟେଇ ପାରିବି ନାହିଁ, ଜାଣିଥା ।''

ଏହା କହି ହରିବାବୁ ନିତେଇଙ୍କ ଘର ଆଡ଼କୁ ବାହାରିଗଲେ । ସେଠାରେ କିନ୍ତୁ ଯାହା ହାଲ ଦେଖିଲେ, ସେଥିରେ ନୀଲୁକୁ ଆଉ କିଛି କହିବାକୁ, କି ଡାକିବାକୁ ତାଙ୍କର ଆଉ ମନ ବଳିଲା ନାହିଁ । ନିତେଇଙ୍କ ଅବସ୍ଥା ନିହାତି ଖରାପ—ଡାକ୍ତର ଡବଲ ନିମୋନିୟା ବୋଲି କହି ନିରାଶ ହୋଇ ଚାଲିଯାଇଚି । ନୀଲୁ ବି ହତାଶ ହୋଇ ବସିଚି । ସେ ଟିକିଏ ଖଣ୍ଡେ ସେଠାରେ ରହି ଚୁପ୍ କରି ଫେରି ଆସି ପତ୍ନୀଙ୍କୁ କହିଲେ ବାମନକୁ ବିଦାୟ କରି ଦେବାର ସ୍ଥିର ହେଲା । ସରସ୍ୱତୀ ଦେଈ କ'ଣ ସବୁ ଚିଠି ଲେଖିଲେ କନକ ପାଖକୁ । ବ୍ରାହ୍ମଣ ହରିବାବୁଙ୍କୁ ଗୋଟାଏ ସ୍ପଷ୍ଟ ଜବାବ ପାଇଁ ଢ଼େର କବୁଲେଇଲା, କିନ୍ତୁ ହରିବାବୁ ଖାଲି 'ପରେ ଦେଖାଯିବ' ବୋଲି କହି କ୍ଷାନ୍ତ ହେଲେ । ତହିଁ ଆରଦିନ ବଡ଼ିସକାଳୁ ବାମନ ଏକପ୍ରକାର ନିରାଶ ହୋଇ ଫେରିଲା ।

ଠିକ୍ ସେତିକିବେଳେ ହରିବାବୁ ଅନେକ ଡକାହକାରେ ବାହାରି, ନିତେଇଙ୍କ ମୃତ୍ୟୁ ଖବର ଶୁଣି, ତାଙ୍କ ଘର ଆଡ଼କୁ ଗଲେ । କାଲି ରାତିରେ ଶେଷ ଥର ନିତେଇଙ୍କୁ ଦେଖିବାକୁ ଗଲାବେଳେ ନିତେଇ ଟିକିଏ କଥା କହି ପାରୁଥିଲେ ଓ ନୀଲୁକୁ ଦେଖାଇ ହରିବାବୁଙ୍କ ଜିମା କରି ଦେଇଥିଲେ । ସେତେବେଳେ ନୀଲୁ ଓ ହରିବାବୁ ଦୁହେଁ କାନ୍ଦି ପକାଇ କୁଣ୍ଢାକୁଣ୍ଢି ହୋଇ ପୁଣି ଥରେ ଭାଇସମ୍ପର୍କ ଗାଢ଼ କରି ନେଇଥିଲେ । ହରିବାବୁ ଆହୁରି ମଧ୍ୟ ଦେଖିଥିଲେ ଯେ, ସେତେବେଳ ପର୍ଯ୍ୟନ୍ତ ନିତେଇଙ୍କ ଭାଇମାନେ କେହି ସେଠାକୁ ଶୁଭାଗମନ କରିନାହାନ୍ତି । ଆଜି ଯାଇଁ ଦେଖିଲେ, ସମସ୍ତେ କେତେବେଳୁଁ ଆସି ସତ୍କାରର ଯଥେଷ୍ଟ ଆୟୋଜନ କରି ପକାଇଲେଣି । ନିତେଇଙ୍କ ଘରବାଡ଼ି ନୀଲୁକୁ ଦେବା ପାଇଁ ତାଙ୍କର ଖୋଲପଣ ଇଚ୍ଛା ଥିଲେ ମଧ୍ୟ ହରିବାବୁ ସେଥିରେ ରାଜ୍ୟର ଝଞ୍ଜଟ ବୋଲି ତାଙ୍କୁ ବାରଣ କରିଥିଲେ । ନୀଲୁବାବୁ ମଧ୍ୟ ଏ କଥା ଶୁଣି ହସି ହସି କହିଲେ, "ମୋର କ'ଣ ହେବ ଘରବାଡ଼ି ଆଉ । କାହିଁକି ଗୋଟାଏ ବଳେଇ ମୁଁ ମୁଣ୍ଡରେ ନେବି ।" ତୁଚ୍ଛାକୁ ତ ଦଶ ଭଗାରୀୟା କଥା । ହରିବାବୁ ମାମଲତକାର ହେଲେବି ସେଥିରେ ଆଉ ବଳାଇଲେ ନାହିଁ । ସେତ ଜାଣନ୍ତି, ନୀଲୁ ସେଥିରେ ପଶୁ କି ନ ପଶୁ, ମାଲିମକଦ୍ଦମାର କିଛି ସୀମା ରହିବ ନାହିଁ । ନୀଲୁ ଭାବିଲେ, "ଗଲା, ଯେଉଁ ଟିକକ ବନ୍ଧନ ଆପଣାର ବୋଲି ମୋର ଥିଲା, ସେତକ ଗଲା । ଯାଉ—ମୁଁ ମୁକ୍ତ, ସ୍ୱାଧୀନ ।" ଦଶାହକ୍ରିୟା ଇତ୍ୟାଦି ବହୁ କଷ୍ଟରେ କୌଣସିମତେ ହୋଇଗଲା । ହରିବାବୁ ଗୁପ୍ତଭାବରେ ନୀଲୁକୁ କିଛି ଅର୍ଥ ସାହାଯ୍ୟ କଲେ । କିନ୍ତୁ ନିତେଇଙ୍କ କାର୍ଯ୍ୟ ପାଇଁ ନୀଲୁ ସେ ଟଙ୍କା ବ୍ୟୟ କରିପାରିଲେ ନାହିଁ; କାରଣ ତାଙ୍କ ଭାଇୟାଙ୍କ ମଧ୍ୟରୁ ସମସ୍ତେ ଏକନାଗେ ଟଙ୍କା କାଢ଼ିଦେବାକୁ ଆଗେଇ ବସିଚନ୍ତି । ଯାହା ଟଙ୍କାରେ କାର୍ଯ୍ୟ ହେବ

ତାହାର ଟିକିଏ ହେଲେ ଦାବି ରହିବ, ନିତେଇଙ୍କ ଅଂଶ ଉପରେ । ଏଥିକି ନୀଲୁଙ୍କ ଟଙ୍କା କେହି ସ୍ପର୍ଶ ବି କଲେନାହିଁ । ଏଗାର ଦିନରେ ବିମୁଖ ହୋଇ ନୀଲୁ ଚିରଦିନ ପାଇଁ ସେ ଘରୁ ବିଦାୟ ହୋଇ ଆସି, ହରିବାବୁଙ୍କ ଘରେ ରହିଲେ ଓ ସେହିଠାରେ ସାମାନ୍ୟ ବ୍ରାହ୍ମଣ ଭୋଜନଟିଏ ଦେଇଦେଲେ । ନିତେଇଙ୍କ ଭାୟାମାନେ ଆଖି ଠରାଠରି ହୋଇ ହସୁଥାନ୍ତି ।

ହରିବାବୁଙ୍କ ସହିତ ନୀଲୁର ବନ୍ଧନ ଦୃଢ଼ରୁ ଦୃଢ଼ତର ହୋଇ ଆସିଲା । ସେ ତାଙ୍କ ଘରକୁ ଆସିଲାବେଳୁଁ ନୂଆବୋଉଙ୍କର ଆଉ ଗୋଡ଼ ତଳେ ଲାଗୁନାହିଁ—କେତେ ଆଦରଯତ୍ନରେ ତାଙ୍କୁ ଖୁଆଇପିଆଇ, ସେ ଗୋଟିଏ ଦିନରେ ତାଙ୍କୁ ବଶ କରି ପକାଇଲେଣି । ଏବେ କଟକ ଯିବା କଥା; ନୂଆବୋଉ କିନ୍ତୁ ଆଜିକାଲି କରି ଦୁଇ ଚାରିଦିନ ଡେରି କରିଦେଲେ । ଶେଷରେ ଯିବା ଦିନ ଆସିଲା । ନୂଆବୋଉ କିଛି ପାନ ଓ ଦଶଟି ଟଙ୍କା ଆଣି ନୀଲୁଙ୍କ ହାତରେ ଦେଇ କାନ୍ଦିଲା ପରି ହୋଇ କହିଲେ, ''ନୀଳ, ତେମେ ଆଉ କେତେ ପଢ଼ିବ ? ଏବେ ଥାଉ, ଓକାଲତିଟା ଭଲା ପଢ଼ିଥାନ୍ତ; ଚଞ୍ଚଳ ଏଠିକି ବାହାରି ଆସନ୍ତ ହେଲେ । ଆଉ ଏ ଖାଲି ଘରେ କେତେ ଦିନ ଶୁଖିଲାରେ ରହିବି । କଳି ତ ଅନ୍ଧାର କରିଦେଇଗଲା । ତେମେ ଭଲା ଚଞ୍ଚଳ ବାହାଟିଏ ହୋଇ, ଗୋଟିଏ ବହୂ ଆଣି ଦିଅନ୍ତ ।'' ନୀଲୁ ହଠାତ୍ କନକର ଅନୁପସ୍ଥିତି ଉପଲବ୍ଧି କରି ହୃଦୟରେ ଗୋଟିଏ ଉତ୍ତାଳ କ୍ରନ୍ଦନରୋଳ ଅନୁଭବ କରୁ କରୁ ଏ ଶୂନ୍ୟ ଗୃହଟି ପ୍ରତି ସକରୁଣ ଦୃଷ୍ଟିନିକ୍ଷେପ କଲେ । ଏଇ ଦୁର୍ଦ୍ଧାନ୍ତ ନୂଆବୋଉଟିର ଦୁଃଖ ବୁଝିଲେ, ନୀରବରେ ଅଳ୍ପ ଦୂରରେ ବସି ବିଷର୍ଣ୍ଣ ଭାବରେ ତାଙ୍କରି ଆଡ଼କୁ ଚାହିଁଥିବା ହରିଭାଇଙ୍କ ମନକଥା ବି ବୁଝିଲେ ଓ ତତ୍‌ସଙ୍ଗେ ନିଜ ଅନ୍ତରର ପ୍ରଖର ଦାହଭୂମିପ୍ରାୟ ଭୀଷଣ ଦୃଶ୍ୟ ମଧ ଦେଖିଲେ । ମନେ ହେଲା—ହାୟ, ଏ ସଂସାରରେ କିଏ କାହାର ! ତେବେ ସ୍ନେହ ପାଇଁ, ଯତ୍ନ ପାଇଁ, ଅଦମ୍ୟ ପିପାସାରେ ପ୍ରାଣ କାହିଁକି ହାହାକାର କରେ । ତେବେ ମନୁଷ୍ୟ ମନୁଷ୍ୟ ପାଇଁ କାହିଁକି ଅନ୍ତରେ ଅନ୍ତରେ ଝୁରି ମରେ । ତେବେ ସ୍ନେହ, ମମତା, ହୃଦୟର ସମସ୍ତ ସରସତା, ସରାଗ କାହାରି ଉପରେ ଅଜାଡ଼ି ଦେବାକୁ ମନ କାହିଁକି ଏତେ ମାତି ଉଠେ । ଆଉ ସ୍ନେହ ଦେବାର କି ନେବାର ଲୋକ ଅଭାବରେ ପ୍ରାଣ କାହିଁକି ଶୁଷ୍କ ମରୁଭୂମି ପ୍ରାୟ ତପ୍ତଶ୍ୱାସରେ ମଉଳିପଡ଼େ । ଚିତ୍ତବୃତ୍ତିଚୟ କାହିଁକି ଊର୍ଦ୍ଧ୍ୱଜିହ୍ୱ ହୋଇ ସମସ୍ତ ଭସ୍ମୀଭୂତ କରିଦେବାକୁ 'ହୁ ହୁ' ହୋଇ ଜଳି ଉଠେ ।

ନୀଳୁବାବୁଙ୍କ ଆଖି ଲୁହରେ ଭରିଗଲା । ସେ କହିଲେ, ''ନୂଆବୋଉ, ତମେ ତ ଆଉ ମୋର 'ନୂଆ' ବୋଉ ନୁହଁ—ଭାରି ପୁରୁଣା ହୋଇଗଲଣି । ଏବେ ଆଉ

ମୁଁ ନୂଆବୋଉ ବୋଲି ତମକୁ ଡାକିବି ନାହିଁ—ଖାଲି 'ବୋଉ' ବୋଲି ଡାକିବି । ତେମେ ଏକା ମତେ ବହୂ ପଢ଼ ଆଣିବାକୁ କହିବନାହିଁ । ମୁଁ ଆଉ ନୂଆ କିଛି ଚାହେଁନାହିଁ—ମୋର ଯାହା ପୁରୁଣା ହୋଇଅଛି, ସେତିକି ମୋର ଢେ଼ର-ସେତିକି ମୋର ବହୁଭାଗ୍ୟ ।'' ଏହା କହି ନୀଳୁବାବୁ ମୁଣ୍ଡିଆ ମାରିବାକୁ ନଇଁପଡ଼ିଲେ । ସରସ୍ୱତୀ ଦେଈଙ୍କ ମୁହଁ ଆନନ୍ଦରେ ଉଜ୍ଜ୍ୱଳ ହୋଇ ଉଠିଥିଲା । ସେ ହଠାତ୍ ନୀଳୁକୁ କୋଳ କରି ପକାଇଲେ । ସ୍ୟାତୁ ହରିବାବୁ ମଧ ସାଶ୍ରୁନୟନରେ ଧାଇଁ ଆସି ତାଙ୍କୁ କୁଣ୍ଢାଇ ପକାଇଲେ । ସର ଦେଈ କହିଲେ, ''ଇମିତି କଥା କହ ନା ବାପ ! ପିଲାଟା, ତୁ, ମୋର ବହୂଟିଏ ନ ହେଲେ କିମିତି ହବ ? ହଉ, ଏଇନାଗେ ଯା, ଫେରେ ଗ୍ରୀଷମ ଛୁଟିକି ଆସିଲେ ଯଉ କଥା । ଚିଠି ଦେବୁ ।''

''ନାଇଁ ବୋଉ, ବହୂ ଆଣିବା କଥା ମୋତେ କହିବ ନାହିଁ । ମୁଁ ସେତକ ତମଠଉଁ ମାଗି ନଉଚି । ଗ୍ରୀଷ୍ମ ଛୁଟିକି ଆସିବି ।'' ଏହା କହି ନୀଳୁବାବୁ ଦୁହିଁଙ୍କୁ ଜୁହାର ହୋଇ କଟକ ଯାତ୍ରା କଲେ । ଏଥର ହୃଦୟର ବିରାଟ ଶୂନ୍ୟତା କୁଆଡ଼େ ପଳାଇଗଲା, ଗୋଟାଏ ମଧୁର ଆଲୋକରେ ହୃଦୟଟି ପୂର୍ଣ୍ଣ ବିଧୌତ ହୋଇଗଲା—ସେଥିରେ ଗୋଟାଏ କୋମଳ ଦୀପ୍ତି, ଗୋଟାଏ ଗୋଲାପୀ ଆମୋଦ, ଗୋଟାଏ ମଧୁର ସ୍ପନ୍ଦନ ଓ ଗୋଟାଏ ଆନନ୍ଦ—ଭାବରାଜ୍ୟର ଦ୍ୱିଧାହୀନ ମୁଗ୍ଧ ଅମୀୟ ଅସ୍ୱାଦ । ପାଇବାଠାରୁ ହରାଇଥିଲେ ସେ ବେଶି, ଦେଇଥିଲେ ବି ଶତ ଗୁଣ କରି—ତେବେ, ଏ ପୂର୍ଣ୍ଣତା କାହିଁରୁ ଜାତ ହେଲା ? ତେବେ କ'ଣ ପାଇବାଟା କିଛି ନୁହେଁ-ଦେବାଟା ହିଁ ସବୁ ! କ'ଣ ଏଡ଼େ ବଡ଼ ! ହୋଇପାରେ ।

## (୩)

କଟକ ଆସିବାରୁ ରଙ୍ଗୀର ଆଖି ଖୋଲିଗଲା । ଗ୍ରାମର ନିର୍ଜନ ଓ କର୍ମହୀନ ଜୀବନରେ ମୁକ୍ତ ହରିଣ ଶିଶୁଟି ପରି ସ୍ୱାଧୀନ ଭାବରେ ଧାଇଁ ଧାଇଁ ବୁଲୁଥିଲା ସେ; ବଞ୍ଚିବା ସୁଖରେ ବିଭୋର ହୋଇ, ସନ୍ତୋଷ ସ୍ୱଚ୍ଛନ୍ଦତାରେ ଅନ୍ଧ ହୋଇ, କୌଣସି ଅଭାବ, ଅଭିଯୋଗ ବା ଗୁରୁତର ଦାୟିତ୍ୱ ନ ଥିବାରୁ ନିର୍ବିକାର ଜଡ଼ତାରେ ମାତୃକ୍ରୋଡ଼ସ୍ଥ ଅବୋଧ ପିଲାଟି ପରି ସରଳ ହସ-କାନ୍ଦ-ଗଠିତ କ୍ଷୁଦ୍ର ଜୀବନଟି ତା'ର ମସୃଣ ଅବାଧ ଗତିରେ କଟି ଯାଉଥିଲା । ଅଧୁନା ପରିବର୍ତ୍ତନ ଉପରେ ପରିବର୍ତ୍ତନ ଆସି ତା'ର କ୍ଷୁଦ୍ର ନୀଡ଼ଟିକୁ ଛିଦ୍ରମୟ କରି ପକାଇଲା । ଘରୁ ବାହାର ହେବା ପୂର୍ବରୁ ସେହି ଯେ ବିବାହ

ପ୍ରସଙ୍ଗ ହଠାତ୍ ଉଠି, ତା' ହୃଦୟଟିରେ ଶତ ରଙ୍ଗୀନ ଚିତ୍ର କ୍ଷଣକେ ଆଙ୍କି ପକାଇ, ପରକ୍ଷଣରେ ସମସ୍ତ ପୋଛିପାଛି ଦେଇ କୁଆଡ଼େ ଉଭାଇ ଯାଇଥିଲା, ସେଇ ତା' ଜୀବନର ପ୍ରଥମ ସ୍ୱପ୍ନ, ପ୍ରଥମ ମୋହ, ପ୍ରଥମ ବାଧା ଓ ପ୍ରଥମ ଶିକ୍ଷା । ସେହି ଦିନଠୁଁ ତା' ମନରେ ଆଶାଆଶଙ୍କାର ପ୍ରଥମ ସୃଷ୍ଟି; ଭୟ-ଭ୍ରାନ୍ତି, ଲଜ୍ଜା-ସମ୍ଭ୍ରମ, ଶାନ୍ତି-ଅଶାନ୍ତି, ପ୍ରବୃତ୍ତି-ନିବୃତ୍ତି—ସମସ୍ତଙ୍କର ଜନ୍ମ ସେହିଦିନଠାରୁ; ହୃଦୟର ବାକ୍‌ସ୍ଫୂର୍ତ୍ତି ହେଉଁ ହେଉଁ ହେଉ ନଥାଏ, ତୁଣ୍ଡ ଲେଉଟୁଁ ଲେଉଟୁଁ ଲେଉଟୁ ନ ଥାଏ,— ତଥାପି, କଥାର ଉନ୍ମେଷ ସେହିଦିନଠୁଁ । କି ଭୟଙ୍କର ପରିବର୍ତ୍ତନ ! ଅଥଚ ରଙ୍ଗୀ ଲେଶମାତ୍ର ଜାଣି ପାରି ନଥିଲା କଟକ ଆସିବା ପୂର୍ବରୁ । କିନ୍ତୁ କଟକ ଆସିବାର ଅଳ୍ପ ଦିନ ଭିତରେ ସେ ଦେଖିଲା, ଜାଣିଲା; ତା' ଆଖି ଖୋଲିଗଲା, ତୁଣ୍ଡ ଲେଉଟିଗଲା । ତା' ଅନ୍ତର, ବାହାର ମଧ୍ୟରେ ଏହି କେତେ ଦିନର ଯଉଁ ସୂକ୍ଷ୍ମ ପରଦାଟି ଗହବି ଆସିଥିଲା, ସେଟା ଏବେ ତା' ଆଗରେ ମୁଗ୍ଧମନୋହର କେତେ ଛାୟାଚିତ୍ର ଧରି ବସିଲା । ସେ ସାବଧାନରେ ତାକୁ ହୃଦୟର ଆହୁରି ସନ୍ନିକଟକୁ ଟାଣି ଆଣି ବାହାରଠାରୁ ଅତି ନିଭୃତରେ, ଅତି ଦୂରରେ, ଅତି ସଂଗୋପନରେ ରଖିବାକୁ ଚାହିଁଲା । ନାରୀହୃଦୟର ଭାବରାଜ୍ୟର ସୃଷ୍ଟି ହେଲା— ହୃଦୟ ଉନ୍ମୁକ୍ତ କରିଦେଲେ ଏବେ କଥାର ଢେଉ ଖେଳିଯାଇପାରେ । କଥାର ଆଉ ଅଭାବ ନାହିଁ—କିନ୍ତୁ କଥା କୁହା ହେବନାହିଁ । ପବୃତ୍ତି ଓ ନିବୃତ୍ତିର ଯୁଗପତ୍ ଉନ୍ମେଷରେ ରଙ୍ଗୀର ନବୀନ ପ୍ରାଣ ପୂର୍ଣ୍ଣ ନାରୀତ୍ୱ ପ୍ରାପ୍ତ ହେଲା । ଏଣେ ବାଜିକରର ଇନ୍ଦ୍ରଜାଲରେ ବନ୍ୟା ପରି ଯୌବନ-ବସନ୍ତର ଢେଉ ରଙ୍ଗୀର ଅଙ୍ଗେ ଅଙ୍ଗେ ଖେଳିଗଲାଣି—ପ୍ରତି ଅଙ୍ଗରେ ନବୀନ ଜାଗରଣ, ନବୀନ ପୁଲକ, ନବୀନ କାନ୍ତି, ନବୀନ ଜ୍ୟୋତି ମାୟାହସ୍ତରେ ଯେପରି କିଏ ସମସ୍ତଙ୍କୁ ମଣ୍ଡିଦେଇ ଯାଉଛି । ନବ ବସନ୍ତର ପୁଲକିତ ବିକାଶ ବାହାରେ, ଚିର ବସନ୍ତର ସ୍ନିଗ୍ଧ ମଧୁର ଚିତ୍ର ଅନ୍ତରରେ ଧାରଣ କରି ପଲ୍ଲବିତା ମୁକୁଳିତା ଲତାଟି କଳ-କ'ଣ୍ଠ ପିକ ଗାୟକର ତାନଲହରୀ ଅପେକ୍ଷାରେ ମୁଗ୍ଧ ଆବେଶରେ ଢଳି ଢଳି ପଡ଼ିଲାଣି । ତେବେ ଆସ ରସିକରାଜ ! ତୁମର ବେଦୀ, ତୁମର ରାଜ୍ୟ, ତୁମର ପ୍ରଜା ପ୍ରସ୍ତୁତ ! ଏବେ ତାକୁ ଗ୍ରହଣକରି ସାର୍ଥକ କର ।

ଆସ ନୀଳୁ—ଏହି ତୁମର ସ୍ଥାନ, ଏହିଠାରେ ତୁମେ ରାଜା ।

ମତୁଆଲା ମଳୟ ବତାସରେ ହୃଦୟର ପୃଷ୍ଠା ଉଡ଼ି ଉଡ଼ି ଲେଉଟି ଲେଉଟି ଯାଉଛି; ଆଉ ପ୍ରତି ପୃଷ୍ଠାରେ, ପ୍ରତି ପ୍ରସ୍ଥରେ ଏ କାହାର ଛବି-ଏ କାହାର ସ୍ୱରୂପ ଅଙ୍କିତ ପ୍ରତିବିମ୍ବିତ ଦେଖୁଛି ରଙ୍ଗୀ ? ନୀଳୁ, ତୁମରି ଏକା ! ପିକବଧୂ ରସାଳମୁକୁଳର

ଅନ୍ତରାଳରୁ କାହାର ଆଗମନୀ ଝଙ୍କାରି ତୋଳୁଅଛି ? ଋତୁରାଜ, ତୁମରି ଏକା ନୀଲୁ ! ରଙ୍ଗୀ ନୀଲୁମୟ ପ୍ରାଣ ହୋଇ ନୀରବ ଗାମ୍ଭୀର୍ଯ୍ୟରେ ଦିନାତିପାତ କରେ କେବଳ ସନ୍ଧ୍ୟାରେ ନୀଲୁର ଦର୍ଶନ ଲାଭ କରିବ ବୋଲି—ନୀଲୁଙ୍କ କ'ଣ୍ଠର ମଧୁର ଛନ୍ଦଧ୍ୱନି ଶୁଣିବ ବୋଲି । ବାଳିକା ଇସ୍କୁଲରୁ ଗାଡ଼ି ତାକୁ ବସାଇ ଛାଡ଼ିଦେଇ ଗଲାବେଳେ ସେ ସଲଜ୍ଜ ଅଧୀର ଚରଣରେ ନୂଆବୋଉଙ୍କ ଘର ପାଖ ଦେଇ ନିଜ କ୍ଷୁଦ୍ର ପଢ଼ାଘରଟି ଆଡ଼କୁ ଅଗ୍ରସର ହେଉ ହେଉ ଅତି ପ୍ରତ୍ୟାଶିତ ନୀଲୁଙ୍କ କ'ଣ୍ଠ ସ୍ୱରଟି ଶୁଣି, ଚମକିତ ଓ ପୁଲକିତ ହୋଇ ଆଉ ସେ ଆଡ଼କୁ ଚାହିଁପାରେ ନାହିଁ-ଆକ'ଣ୍ଠ କମ୍ପମାନ ଭାବ-ଆଲୋଡ଼ନ ତା'ର ସେହି କ୍ଷୁଦ୍ର ପଢ଼ାଘରଟିରେ ନେଇ ଅବରୁଦ୍ଧ, ସଂଯତ କରି ରଖେ । ନୀଲୁଙ୍କର ଯାତାୟାତ ଦିନକୁ ଦିନ ଯେତେ ବଢ଼ି ଉଠିଲା, ରଙ୍ଗୀର ସୁଖଦୁଃଖ, ଶିକ୍ଷାପରୀକ୍ଷା ମଧ୍ୟ ସବୁ ସେତିକି ବଢ଼ି ଉଠିଲା । କିନ୍ତୁ ତା' ହୃଦୟର ଖବର କେହି ନେଲେ ନାହିଁ । ଭାଇ ଇସ୍କୁଲରେ ଭର୍ତ୍ତି କରାଇ ଦେଇଥିଲେ, ଶିକ୍ଷିତ ଓ ମାର୍ଜିତ ହେଲେ ସୁପାତ୍ର ହିସାବରେ ନୀଲୁଙ୍କ ଯୋଗ୍ୟ ହେବ ବୋଲି । ସେଥିଯୋଗେ ରଙ୍ଗୀ ପ୍ରାଣପଣ ଚେଷ୍ଟାରେ ପାଠ ପଢ଼ିବାକୁ ଲାଗିଲା । ନୂଆବୋଉ ଏ ସବୁ ବନ୍ଦୋବସ୍ତ କରାଇ, ନୀଲୁଙ୍କୁ କୌଣସିମତେ ବିବାହରେ ପ୍ରବର୍ତ୍ତାଇବା ପାଇଁ ସଚେଷ୍ଟ ରହିଲେ, ଏକଥା ରଙ୍ଗୀ ତାଙ୍କଠାରୁ ଶୁଣିଥିଲା । ନୂଆବୋଉ ହସି ହସି ତାଙ୍କର ଭାବୀ ନୂଆବୋଉଙ୍କୁ କୋଳ କରି ଗେଲ କଲେ, କିନ୍ତୁ ତା' ହୃଦୟର ଘାତପ୍ରତିଘାତ ଆଉ ବୁଝିଲେ ନାହିଁ । ବୋଉ, ଅପା ଅତି ଯତ୍ନରେ, ଅତି ସମାରୋହରେ ନୀଲୁଙ୍କୁ ଆପଣାର କରିବାକୁ ଚାହିଁଲେ, କିନ୍ତୁ ଏହି ଏକାନ୍ତ ଆପଣାର ସାମଗ୍ରୀଟିର ଦଶା ପ୍ରତି କେହି ଦୃଷ୍ଟି ଦେଲେ ନାହିଁ । ସେ କେବଳ ଭାଗ୍ୟ ଉପରେ ନିର୍ଭର କରି ସର୍ବତୋଭାବରେ ନିଜକୁ ପ୍ରେମସ୍ରୋତରେ ଭସାଇଦେଲା ।

ରଙ୍ଗୀର ମନକଥା କେହି ନ ବୁଝିଲେ ମଧ୍ୟ, ବୁଝିବାର ଉପାୟ ବି ନ ଥିଲା, ଯେଉଁମାନେ ଦେଖନ୍ତେ ବୁଝନ୍ତେ, ସେମାନଙ୍କର ସମୟ ଓ ସୁବିଧା ନଥିଲା,-ରଙ୍ଗୀ କିନ୍ତୁ ସମସ୍ତଙ୍କୁ ବୁଝିଲା, ଚିହ୍ନିଲା-ତା' ପ୍ରେମ-ପ୍ରଖର ଦୃଷ୍ଟିକୁ କିଛି ଏଡ଼ି ପାରିଲା ନାହିଁ । ନୀଲୁବାବୁ ତଥା କନକ, ଦୁହିଁଙ୍କର ମନକଥା ସ୍ପଷ୍ଟଭାବରେ ରଙ୍ଗୀ ହୃଦୟଙ୍ଗମ କରିପାରିଲା । ସେଥିରୁ ନୀଲୁବାବୁଙ୍କୁ ବିବାହିତ କରାଇବା ପାଇଁ କନକର ଯେଉଁ ସଂକଳ୍ପ, ତାହାର ମର୍ମ ମଧ୍ୟ ବୁଝିଲା । ନୂଆବୋଉ ପ୍ରତି ଶ୍ରଦ୍ଧାରେ ତା' ହୃଦୟ ଭରିଗଲା । ନୀଲୁ ଓ କନକଙ୍କ ମଧ୍ୟରେ ଯେ ଗୋଟିଏ ନିଜର ଭାବ-ଯାହା ଦୁହିଁଙ୍କୁ ଏକଯୋଗରେ ଟାଣେ, ଆଉ ପରସ୍ପ ର ପାଇଁ ଗୋଟାଏ ସହଜ, ସ୍ନିଗ୍ଧ ମଙ୍ଗଳ କାମନା-ଯାହା ଦୁହିଁଙ୍କର ବର୍ତ୍ତମାନ ଏକମାତ୍ର ବନ୍ଧନ ଓ ଅବଲମ୍ବନ, ଏ ଦୁଇଟି ମଧ୍ୟରେ ଅବିଶ୍ୱାସର ସ୍ଥାନ ନାହିଁ; ରଙ୍ଗୀ ଅବିଶ୍ୱାସ

କଲା ନାହିଁ । ନୀଲୁଙ୍କ ଉପରେ ତା'ର ଅବିଶ୍ୱାସ ମଧ୍ୟ ନାହିଁ । ଅବିଶ୍ୱାସ ବା କାହିଁକି ରହିବ ? ରଙ୍ଗୀ ତ ଆଉ ତାଙ୍କ ଉପରେ ଜୋର କରି ପ୍ରେମ ଚାପୁ ନାହିଁ । ଛିଃ—

କିନ୍ତୁ ଭାଇ (ନିଧିବାବୁ) ଯେ କାହିଁକି ଏ ବିବାହରେ ଲାଗି ପଡ଼ିଚନ୍ତି, ସେଟା ରଙ୍ଗୀ ଆଉ ବୁଝି ପାରିଲା ନାହିଁ । ଭଲ ବରପାତ୍ର ଢ଼େର ମିଳନ୍ତେ-ରଙ୍ଗୀ ପାଇଁ କ'ଣ ଏତେ ଭାବନା ଭାଇଙ୍କର ? ଆଉ ନୀଲୁ ଯଦି ବାହା ନ ହେବେ, ଭାଇଙ୍କର କ'ଣ ଗଲା ! ରଙ୍ଗୀ କୌଣସିମତେ ନିଧିଙ୍କ ମନକଥା ଧରିପାରିଲା ନାହିଁ ।

ହାୟ ନବୀନ ପ୍ରେମିକା ! ପ୍ରେମର କର୍ତ୍ତବ୍ୟ କ'ଣ ତୁହି ଏକା ବୁଝୁ, ପ୍ରେମର ଖରତର ଦଷ୍ଟି କ'ଣ ତୁହି ଏକା ପାଇଚୁ ? ତୁ କିପରି ନୀଲୁ ଓ କନକଙ୍କ ମର୍ମକଥା ଏତେ ସହଜରେ ବୁଝିନେଲୁ ? ନିଧିଙ୍କର ମଧ୍ୟ ଗୋଟିଏ ହୃଦୟ-ଦେବତା ଥାଇପାରେ, ତାଙ୍କର ମଧ୍ୟ ତୋ ପରି—

\+ + + + +

ତାଙ୍କରି ବାହାଘର ପାଇଁ ଯେ ଏତେ ଆୟୋଜନ ଚାଲିଚି ଏକଥା ନୀଲୁବାବୁଙ୍କୁ ମଧ୍ୟ ସମ୍ପୂର୍ଣ୍ଣ ଅଜଣା । ସେ କାହୁଁ ଜାଣିବେ, ଗ୍ରାମରୁ ଆସିଲାବେଳେ ହରିବାବୁଙ୍କ ସଙ୍ଗେ ନିଧିବାବୁ ଷ୍ଟେସନରେ ଦେଖା କରି ସବୁ ହାଲ ବୁଝିଆସିଥିଲେ ବୋଲି ! ନୀଲୁଙ୍କ ଅତୀତ କାହାଣୀ ଓ ବର୍ତ୍ତମାନ ଅବସ୍ଥା ସବୁ ଅବଗତ ହୋଇ ଏଣେ ନିଧିବାବୁଙ୍କୁ ତାଙ୍କ କର୍ତ୍ତବ୍ୟ ସ୍ପଷ୍ଟ ଭାବରେ ଦେଖାଗଲା । ସେ କଟକ ଆସିଲାବେଳୁଁ ନୀଲୁଙ୍କୁ କୌଣସିମତେ ବିବାହ ବନ୍ଧନରେ ବାନ୍ଧି ପକାଇବାର ଚୂଡ଼ାନ୍ତ ଚେଷ୍ଟା ଲଗାଇଦେଲେ । ଏଥିରେ କନକର ପୂର୍ଣ୍ଣ ସାହାଯ୍ୟ ଓ ସହାନୁଭୂତି ପାଇ ସ୍ୱାମୀସ୍ତ୍ରୀଙ୍କ ମଧ୍ୟରେ ମନେ ମନେ ଗୋଟିଏ ଅନୁକ୍ତ (tacit) ବୁଝାପଡ଼ା ହୋଇଗଲା । ଦୁହେଁ ବିନା ପରାମର୍ଶରେ, ବିନା ବିଚାରସାରରେ ଏକ ଉଦ୍ଦେଶ୍ୟସିଦ୍ଧି ପାଇଁ ଲାଗିପଡ଼ିଲେ ।

ନୀଲୁ ଏତେ ନିକଟରେ କନକକୁ ପାଇ ଭୀରୁ ହୃଦୟ ନେଇ କ'ଣ କରିବେ, ଏହିଟା ଭାବୁଁ ଭାବୁଁ, ନିଧିବାବୁଙ୍କର ଡାକ ଉପରେ ଡାକ ଆସିଲା—ହୃଦୟର ଦୁର୍ବଳତା ଫିଙ୍ଗିଦେଇ ନିଧିଙ୍କ ଘରଠାକୁ ଯିବାକୁ ପଡ଼ିଲା । ପ୍ରଥମ ପ୍ରଥମ ବିନା ଡାକରେ ସେ ଯାଆନ୍ତି ନାହିଁ, କିନ୍ତୁ ଥରେ ଦୁଇଥର ଯିବା ଆସିବା ପରେ ତାଙ୍କ ମନ ପରିଷ୍କାର ହୋଇଗଲା । ଜାଣିଲେ, କେଉଁଠାରେ ଦ୍ୱିଧା ବା କ୍ଲେଦ କିଲ୍‌ବିଶ ନାହିଁ । ଯେଉଁଥିପାଇଁ ଲଜ୍ଜା, ସେ ସମ୍ବନ୍ଧ

ତ ସେ ମୂଳରୁ ପ୍ରତ୍ୟାଖ୍ୟାନ କରିଛନ୍ତି, ପୁଣି ଏମାନେ ଯେ ତାହା ଉଠାଇବେ, ସେପରି ମଧ୍ୟ ଦେଖାଗଲା ନାହିଁ-ଏବେ ନିର୍ବାଧରେ ଗତାୟାତ କରିବାକୁ ଲାଗିଲେ ।

କନକ ସାଙ୍ଗରେ ଆଉ ବିବାହ ପ୍ରସଙ୍ଗରେ କୌଣସି କଥାବାର୍ତ୍ତା ନାହିଁ । ନୀଳୁବାବୁ ଆସିଲେ ଜୋର କରି ଜଳଖିଆ ଖାନ୍ତି, ଟିକିଏ ଜଞ୍ଜାଳ କରନ୍ତି, ଅତ୍ୟାଚାର ଉତ୍ପୀଡ଼ନ କରନ୍ତି, ପୁଣି ଚାଲିଯାଆନ୍ତି । ନିଧିବାବୁଙ୍କ ସଙ୍ଗରେ ଅଧିକ ସମୟ କଥାବାର୍ତ୍ତା ହୁଏ । ଦୁହିଁଙ୍କ ଭିତରେ ଅଜଣାରେ ଗୋଟାଏ ସୌହାର୍ଦ୍ଦ୍ୟ ସ୍ଥାପିତ ହୋଇଗଲାଣି । ମନ ଖୋଲାଖୋଲି ହେବାର ଏଡ଼େ ପ୍ରତିବନ୍ଧକ-କନକ ନିଜେ-ଥିଲେ ସୁଦ୍ଧା, ନୀଳୁଙ୍କ ସ୍ୱଚ୍ଛ ହୃଦୟର ସମସ୍ତ ରହସ୍ୟ ନିଧିବାବୁ ସହଜରେ ବାହାରକରି ନେଇସାରିଲେଣି । ନିଧିଙ୍କ ଦୃଷ୍ଟିରେ ନୀଳୁ ନିହାତି ପିଲା-ଇସ୍କୁଲରେ ସେ ଯେପରି ପିଲାମାନଙ୍କର ସରଳ ହୃଦୟ ମନର ଶିକ୍ଷାଭାର ପାଇଛନ୍ତି-ସେହିପରି ସରଳ ଏ ବୃଦ୍ଧ ପିଲାଟିର ମନ, ସେହିପରି ସ୍ୱଚ୍ଛ ନିର୍ମଳ ଯାର ହୃଦୟ । ନୀଳୁବାବୁ ମଧ୍ୟ ନିଧିଙ୍କୁ ପ୍ରଶଂସା-ନେତ୍ରରେ ନ ଦେଖି ରହିପାରନ୍ତି ନାହିଁ । ତାଙ୍କର ସ୍ଥିର ଗମ୍ଭୀର ଭାବ, ସଂଯତ ବ୍ୟବହାର, ସୂକ୍ଷ୍ମ ଦୃଷ୍ଟି ଓ ମାର୍ଜିତ ଧାରଣା, ତଥା କୋମଳ ହୃଦୟର ବହୁଳ ପରିଚୟ, ସବୁ ନୀଳୁଙ୍କ ମନରେ ଅତି ଉଚ୍ଚ ଆସନ ଧାରଣ କରିସାରିଲେଣି । ସମୟ ସମୟରେ ନୀଳୁଙ୍କ ମନରେ ଯଦି ଭୟ ହୁଏ ଯେ, ନିଧି କ'ଣ ଭାବୁଥିବେ ଅବା ତାଙ୍କର କନକର ସମ୍ବନ୍ଧ ବିଷୟରେ-ନିଜ ମନରେ କିଛି ନଥିଲେ ମଧ୍ୟ, ସ୍ୱଚ୍ଛ ନିଷ୍ପାପମନା ଲୋକ ମଧ୍ୟ ଆମ ଏ ସମାଜରେ ସମୟ ସମୟରେ ଏପରି ଆଶଙ୍କା କରିବାକୁ ବାଧ୍ୟ-ତେବେ, ନିଧିଙ୍କ ଶିଶୁପ୍ରାୟ ସରଳ ହସରେ ସେ ଭୟ କୁଆଡ଼େ ଉଡ଼ି ପଳାଏ ଓ ନୀଳୁଙ୍କୁ ନିଜେ ଲଜ୍ଜିତ, ବ୍ୟଥିତ ହେବାକୁ ପଡ଼େ ।

ଏଣେ ନିଧିବୋଉ ଓ ଗଉରୀ ଇତ୍ୟାଦି ସମସ୍ତଙ୍କ ଆଦର, ଯତ୍ନରେ ଓ କନକର ଅଳଟପଣ, ରୁଷା, ଅଭିମାନ, ଇତ୍ୟାଦିରେ ନୀଳୁ ଦ୍ୱିଗୁଣ ଉତ୍ସାହିତ ହୋଇ ଉଠିଲେ, -ଦିନମାନରେ ପ୍ରାୟ ଦୁଇ ତିନି ଘଣ୍ଟା ଯାଏଁ ବସାରେ କଟାଇବାକୁ ଲାଗିଲେ । କଲେଜରେ ଘଣ୍ଟାଏ ଘଣ୍ଟାଏ କ୍ଲାସ ନଥିଲେ, ଧାଇଁଲେ କନକ ପାଖକୁ-ବସା ନିକଟ । ନିଧିବୋଉ, ଗଉରୀ ପ୍ରଭୃତି ସମସ୍ତେ ପ୍ରାୟ ସ୍ଥିର ବିଶ୍ୱାସ କରି ନେଲେ ଯେ, ନୀଳୁର ରଙ୍ଗୀର ବାହାଘର ନିଶ୍ଚୟ ହେବ । ମନେ ମନେ ସ୍ଥିର ରଖିଲେ, ଆସନ୍ତା ମାଘ-ଫଗୁଣକୁ ନିଶ୍ଚୟ କରି ପକାଇବାକୁ ହେବ ।

ଏହିପରି ସମୟରେ ନିଧିବୋଉ ଧରି ବସିଲେ, ସେ ଗଉରୀ ସାଙ୍ଗରେ ଥରେ ଯାଇ ପୁରୀ ବୁଲି ଆସିବେ ଓ ଗଉରୀର ଘରଦୁଆରର ଗୋଟାଏ କିଛି ବନ୍ଦୋବସ୍ତ କରି

ଦେଇ ଆସିବେ । ରଙ୍ଗୀ ତ ଅଛି-ବହୂ ପାଖରେ ରହିବ । ଏମାନେ ମାସେଖଣ୍ଡେ ରହି ଫେରି ଆସିବେ । ନିଧିବାବୁ ମଙ୍ଗୁ ନଥିଲେ-ରଥଯାତ୍ରା ସମୟ, କେହି ପୁରୁଷ ଲୋକ ନାହାନ୍ତି ବୋଲି ! କିନ୍ତୁ ରଥ ଦେଖିବାକୁ ଯେ ବୁଢ଼ୀଙ୍କର ଏତେ ଆଗ୍ରହ । ଗଉରୀ ପୁଣି ଅଭୟ ଦେଇ କହିଲାଯେ, ସେଠାରେ ଯେଉଁ ଘର, ସେଟା ସହର ବାହାରେ ପ୍ରାୟ—ସ୍ୱର୍ଗଦୁଆର ଆଡ଼କୁ, ତା'ର ମଧ୍ୟ ଲୋକବାକ ଅଛନ୍ତି; କୌଣସି ଅସୁବିଧା ହେବ ନାହିଁ । ନିଧିବାବୁ ରଥ ଛୁଟିରେ ନିଜେ ପୁରୀଯିବେ, ଏଇୟା ମନେ ମନେ ସ୍ଥିର କରି, ଗାଁରୁ ଯେଉଁ ଦାସୀଟି ଆସିଥିଲା, ତାହାରି ସାଙ୍ଗରେ ଦୁହିଁଙ୍କୁ ନେଇ ପୁରୀରେ ଛାଡ଼ି ଦେଇ ଆସିଲେ ।

ଗଲାବେଳେ ବୁଢ଼ୀ କନକକୁ ଡାକି, ପୁଣି ଥରେ ରଙ୍ଗୀକୁ ତା' ହାତରେ ସଁଅପି ଦେଲେ ଓ କହିଲେ, ''ଝିଅ, ଏବେ ସେ ପୁଅଟିକୁ ସଫା କରି ପଚାର-ଯାହା ହବାର ଗୋଟାଏ କଥା ଛିଣ୍ଡିଯାଉ । ସତେ ଜଗନ୍ନାଥ କରିବେ, ସେ ମଙ୍ଗିବ ! କେଜାଣି ?'' କନକ ରଙ୍ଗୀକୁ ଗୋଟାଏ ପାଖକୁ ଭିଡ଼ି ଆଣି କହିଲା, ''କୁହ, ସେ କଥା ମୁଁ ବୁଝିମି ।'' ରଙ୍ଗୀ ନ କହେ ! ଏଟା ଯେ ତା'ରି ବର ବିଷୟର କଥା ! ସବୁଦିନେ ବୋଉ ନୂଆବୋଉଙ୍କ ମଧ୍ୟରେ କଥାବାର୍ତ୍ତା ହେଲେ ସେ ବା ଗଉରୀ ବା ଦାସୀଟି ନୂଆବୋଉଙ୍କଠାରୁ କଥା ନେଇ ବୋଉଙ୍କୁ କହନ୍ତି । ରଙ୍ଗୀ ଉପରେ ଏସବୁ ଚପଟ ବେଶି କରି ପଡୁଥିଲେ ସୁଦ୍ଧା, ସେ ଆଜି କଥାରେ କିପରି ମୁହଁ ଘେନି ତା' କାର୍ଯ୍ୟ କରି ପାରିବ ! ଶେଷରେ କହିଲା, ''ଓଃ, ତମର ବୁଝୁଥା, ମୁଁ ସେ ସବୁ କହି ପାରେ ନା-ଯାଃ ।'' ସ୍ୟାତୁ ଗୌରୀ ଆସି ''କଥା କ'ଣ ?'' ବୋଲି ପଚାରିବାରୁ, କନକ ଚୁପ୍ କରି କହିଲା-ରଙ୍ଗୀ ମଧ୍ୟ ଶୁଣି ପାରିବ, ଏହିପରିଭାବରେ -''କ'ଣ କି ଅପା, ମୋ ନୂଆବୋଉଙ୍କୁ ମୁଁ କହିଲି-ବୋଉଙ୍କୁ କହ, ସେ କିଛି ଚିନ୍ତା କରିବେ ନାହଁ । ତାଙ୍କ (ରଙ୍ଗୀର) ବର କଥା ମୁଁ ବୁଝିମି !'' ''ଓଃ, ସେଇଠୁ ତାଙ୍କୁ ନାଚ ଗନ୍ଧେଇଲା-ସେ ଆଉ କହିଲେ ନାହିଁ । ଓଃ, ବାହା ହବ ନାହିଁ ପରା, କିଛି ଜାଣେ ନାହିଁ, ଯା ଯାଃ ।''

ରଙ୍ଗୀ ପ୍ରକୃତରେ ରାଗିଯାଇ ଗଉରୀ ଆଡ଼କୁ ଛଳଛଳ ନୟନରେ ଚାହିଁଲା, କିଛି କହିପାରିଲା ନାହିଁ । ନିଧିବୋଉ ତାକୁ ପାଖକୁ ଟାଣିନେଇ କହିଲେ, ''ପିଲାଟି ସାଙ୍ଗରେ କେତେ ଲାଗିଚ ଲୋ ତମେ ସବୁ । ସେ କେମିତି ତା ବର କଥା ମୁହଁରେ ଧରିବ, କହିଲ ଭଲା । ନାଃ, ରଙ୍ଗୀର ଆମର ଢ଼େର୍ ବୁଦ୍ଧି ।'' ରଙ୍ଗୀ ମନରେ କି ଅଭିମାନ, କି ଦୁଃଖ ହେଲା ସେ କଇଁ କଇଁ କରି କାନ୍ଦି ପକାଇଲା । ସେ ଆଉ ତ ପିଲାଟି ନୁହଁ-

ସେ ସମସ୍ତଙ୍କ ପରି, ବରଂ କାହାରି କାହାରିଠାରୁ ମଧ୍ୟ ବେଶି, ବୁଝିଶୁଝିପାରିଲାଣି । ତେବେ, ସମସ୍ତେ ତାକୁ ଏପରି ଅନାସ୍ଥା ହୀନସ୍ତା କରୁଛନ୍ତି କାହିଁକି ? ଯେଉଁ ବିଷୟରେ କଥା କହିବାର ସମସ୍ତଙ୍କ ଠାରୁ ତା'ର ଅଧିକ ଦାବି, ସେ ବିଷୟରେ ତ ସେ ପାଟି ଫିଟାଇ ପାରିବ ନାହିଁ, ପୁଣି ସେହି ବିଷୟରେ ସମସ୍ତେ ତାକୁ ଥଟ୍ଟା କରିବେ, ତ୍ରୁଟି କରି କହିବେ, -ତା'ର କ'ଣ ମନ ନାହିଁ। ତାକୁ କ'ଣ ବାଧେ ନାହିଁ। ସବୁଠାରୁ ଅଧିକ ବାଧିଲା ତାକୁ ଆଜି ବୋଉର ସାନ୍ତ୍ୱନା । ସେ କ'ଣ ଏତେ ଅବୋଧ ଶିଶୁଟିଏ । ଇତିପୂର୍ବରୁ ନୀଳୁବାବୁଙ୍କ ଅନିଚ୍ଛା ଥିବାର ଜାଣିଲାବେଳୁଁ ତା' ଆତ୍ମ-ସମ୍ମାନରେ ବଡ଼ ଗୋଟାଏ ଧକ୍କା ଲାଗିସାରିଥିଲା । କଟକରେ ଏହି କେତେ ମାସ ଭିତରେ ନୀଳୁଙ୍କୁ ସେ ଅଧିକରୁ ଅଧିକ ଚାହିଁଲେ ସୁଦ୍ଧା ତାକୁ ନେଇ ତାଙ୍କ ଅଜ୍ଞାତରେ ଭାଇଭାଉଜ, ବୋଉଅପାମାନେ ଯେଉଁ ଖେଳ ଖେଳୁଚନ୍ତି, ସେଟା ତାକୁ ଅଧିକ ବାଧିଛି । ସେଥିଯୋଗେ ଗୋଟାଏ ନ୍ୟୂନତା, ଗୋଟାଏ କ୍ଷୁଦ୍ରତା ଅନେକ ସମୟରେ ଉପଲବ୍ଧି କରି ସେ ମର୍ମେ ମର୍ମେ ଲଜ୍ଜିତ ହୋଇ ପ୍ରକୃତରେ ମୃତ୍ୟୁକାମନା କରିଛି । ଆଜି ଏହି କ୍ଷୁଦ୍ର ଘଟନାରେ ତା'ର ରୁଦ୍ଧ ଭାବରାଶି ଉଦ୍‌ବେଳିତ ହୋଇ ଉଠିଲା । କଥାରେ ତାହା ପ୍ରକାଶ କରିବାର ସାଧ ତ ନାହିଁ, ସେଥିଯୋଗେ ସେ ଉଚ୍ଛ୍ୱସିତ ହୋଇ ବୋଉ କୋଳରେ ମୁହଁ ଗୁଞ୍ଜି ବିନା ଆଡ଼ମ୍ବରରେ କାନ୍ଦିଲା ଓ ଏତିକି ମାତ୍ର କହିଲା, "ମୁଁ ବା' ହେମି ନାହିଁ, ମୋର ଦରକାର ନାହିଁ !" "ନା, ନା, ତୁ ବାହା ହବୁ ନାହିଁ-ନାଃ, ତୋର ଗରଜ ?" ଏହା କହି ବୁଢ଼ୀ ତାକୁ ବୁଝାଇବାକୁ ଲାଗିଲେ-ସେହି ପିଲା ପରି —ଅଝଟ ଧରିବସିଲେ ସବୁଦିନେ ସେ ଯେପରି ତାକୁ ପ୍ରଶ୍ରୟ ଦେଇ ତାହାରି କଥାରେ ମଙ୍ଗି ଯାଆନ୍ତି—ଆଜି ମଧ୍ୟ ସେହିପରି ! ରଙ୍ଗୀର ଗରଜ ରଙ୍ଗୀ ଜାଣେ ! ଗଉରୀ ବନ୍ଧାଛନ୍ଦାରେ ବ୍ୟସ୍ତ ଥିଲା, "କିଏ ପାରିବ !" ବୋଲି କହି ମୁହଁ ମୋଡ଼ି ଦେଇ ଚାଲିଗଲା । କନକ ରଙ୍ଗୀ ପାଖୁ ଆସି କିଛି ବିସ୍ମିତ ହୋଇ, ତା' ହାତଟି ଧରି ତା' ମୁହଁକୁ ବୁଲାଇବାକୁ ଚେଷ୍ଟା କଲା; କିନ୍ତୁ ରଙ୍ଗୀ କୌଣସିମତେ ମୁହଁ ବୁଲାଇଲା ନାହିଁ-ଦ୍ୱିଗୁଣ ବେଗରେ କାନ୍ଦିବାକୁ ଲାଗିଲା । ଶେଷରେ ଅତି କଷ୍ଟରେ ରଙ୍ଗୀ ଯେତେବେଳେ ତୁନି ହେଲା, କନକ ଓଢ଼ଣା ଫାଙ୍କରୁ ଥରକୁ ଥର ତା' ମୁହଁକୁ ଚାହିଁବାକୁ ଲାଗିଲା । ଆଶା,-ଏଥର ରଙ୍ଗୀ ଟିକିଏ ହେଲେ ହସିଦେବ । କିନ୍ତୁ କାହିଁ, ଦୁଇ ତିନି ଥର ଆଖି ଆଖି ମିଳିତ ହେଲେ ସୁଦ୍ଧା ରଙ୍ଗୀ ତ ହସିଲା ନାହିଁ, ବରଂ ଅଧିକ ଗମ୍ଭୀର ହୋଇଗଲା । ଏପରିତ ରଙ୍ଗୀ କେବେ ରାଗେ ନାହିଁ। ରାଗିଲେ କାନ୍ଦେ, ତୁନି ହେଲା ମାତ୍ରକେ ପୁଣି ନିଜେ ନିଜେ ହସି ପକାଏ ! ଇଏ କ'ଣ । ଯା ଭିତରେ କ'ଣ କଥା ଅଛି ନିଶ୍ଚୟ । ତା' ନିଜ ପିଲାଦିନ କଥା ମନେ

ପଡ଼ିଲା, ବାହାଘରର ଆମୂଳ ଇତିହାସ ମଧ୍ୟ ତା'ର ମନେ ପଡ଼ିଲା । ହଠାତ୍ ତା'ର ସ୍ମରଣ ହେଲା,-ସେ ବି ତ ଏହିପରି ଦିନେ କାନ୍ଦୁଥିଲା, କିନ୍ତୁ ଗୋପନରେ । ତେବେ କ'ଣ ତା' ନିଜକଥା ଓ ରଙ୍ଗୀକଥାରେ କିଛି ହେଲେ ସାମଞ୍ଜସ୍ୟ ଅଛି ?

+ + + + +

ତିନି—ଚାରି ଦିନ ପର କଥା । ଏହି ତିନି-ଚାରି ଦିନଯାକ ରଙ୍ଗୀ ଏକା ଏକା କଟାଇଚି । ନୂଆବୋଉଙ୍କ ସଙ୍ଗରେ ନିହାତି ଆବଶ୍ୟକ ଛଡ଼ା କଥାଭାଷା ହୋଇନାହିଁ, ପ୍ରତ୍ୟୁତ ପଢ଼ାରେ ଲାଗିଛି; କିନ୍ତୁ ବାସ୍ତବରେ ପଢ଼ା ନାଁ ବି ଧରୁନାହିଁ-ବହିଟା ଆଗରେ ଖୋଲା ହୋଇପଡ଼ିଥାଏ, ଏହି ମାତ୍ର । ସେ ଦିନ ରଙ୍ଗୀ ଉପରଓଳି ଇସ୍କୁଲରୁ ଫେରି ଦେଖିଲା—ନୂଆବୋଉ ଘରେ ନାହାନ୍ତି, ଭାଇ ବି ଆସି ନାହାନ୍ତି । ପଚାରି ବୁଝିଲା, ହେଡ୍‌ମାଷ୍ଟରଙ୍କ ଘର ଝିଅମାନେ ଆସି ନୂଆବୋଉଙ୍କୁ ତାଙ୍କ ଘର ଆଡ଼େ ନେଇ ଯାଇଛନ୍ତି । ପଢ଼ାଘରେ ବହିପତ୍ର ଫୋପାଡ଼ି ଦେଇ, ଯାଇଁ ନୂଆବୋଉଙ୍କ ଘର ଝରକା ପାଖରେ ଛିଡ଼ା ହୋଇ ସେ ଘୋର ଚିନ୍ତାରେ ମଗ୍ନ ହୋଇଗଲା । କେତେବେଳଯାଏଁ ସେ ସେଠାରେ ସେହିପରି - ଭାବରେ ଛିଡ଼ା ହୋଇ ରହିଛି, ତାକୁ ମାଲୁମ୍ ନାହିଁ - ହଠାତ୍ କାହାର ଗୋଟାଏ ସୁପରିଚିତ କ'ଣ୍ଠସ୍ୱର ଦ୍ୱାର ସେ ପାଖରୁ ଆସି ତା' ଚିନ୍ତାସ୍ରୋତ ଭାଙ୍ଗିଦେଲା । ସେ କୁଆଡ଼େ ଯିବ କିଛି ଠିକ୍ କରି ପାରିବା ପୂର୍ବରୁ ନୀଳୁବାବୁ "କି ଲୋ, କୁଆଡ଼େ ପଶିଛୁ କି କଳି ?" ବୋଲି କହି ସେ ଘରେ ପ୍ରବେଶ କଲେ । ରଙ୍ଗୀ ଯେଉଁପରି ଝରକା ବାଡ଼କୁ ଧରି ଭିତର ଆଡ଼କୁ ପଛ କରି ଛିଡ଼ା ହୋଇଥିଲା, ସେହିପରି ରହିଗଲା-ହଲଚଲ ହେବାକୁ ମଧ୍ୟ ତା'ର ସାମର୍ଥ୍ୟ ହେଲା ନାହିଁ । କେବଳ ଝରକାର କବାଟ ଫାଳକ ସନ୍ଧିରେ ଲୁଚିବାର ସେ ବୃଥା ଚେଷ୍ଟା କଲା ମାତ୍ର । ସେତେବେଳକୁ ଘର ଭିତର ଟିକିଏ ଅନ୍ଧାରିଆ ହୋଇଗଲାଣି । ନୀଳୁବାବୁ ଘର ଭିତରକୁ ପଶି ଆସି କହିଲେ, "କି ଲୋ, ଆଜି କ'ଣ ହୋଇଚି କି ?" କିଛି ଉତ୍ତର ପାଇଲେ ନାହିଁ । କ୍ରମେ ନିକଟବର୍ତ୍ତୀ ହୋଇ ପୁଣି କହିଲେ, "କି ଲୋ-କଥା କ'ଣ ମ ?" ରଙ୍ଗୀ ହଠାତ୍ ମୁହଁ ବୁଲାଇ ନୀଳୁଙ୍କୁ ସଫା ଅନାଇଲା । ତା' ଆଖିରେ ଲଜ୍ଜା ବା ଭୟର ଚିହ୍ନ ଲେଶମାତ୍ର ନାହିଁ, ମୁହଁ ତା'ର ଅନ୍ୟ ଅନେକ ଭାବର ରଙ୍ଗଭୂମି - ତହିଁରେ ଗୋଟାଏ ଘୋର ଯୁଦ୍ଧର ଆଭାସ ମଧ୍ୟ ଅଛି, ଆଖିରେ ଲୁହ ଟଳଟଳ କରୁଛି । ନୀଳୁଙ୍କ ଆଡ଼କୁ ନିମିଷକ ପାଇଁ ସ୍ଥିର ଦୃଷ୍ଟିରେ ଚାହିଁ ରଙ୍ଗୀ ଧୀରେ ଧୀରେ ସେଠାରୁ ବାହାରି ଯିବାକୁ

ଉଦ୍ୟତ ହେଲା । ନୀଳୁବାବୁ ଏଣେ ଥକ୍କା ହୋଇ ରହି ଯାଇଥିଲେ, କହିଲେ, ''ଓଃ, ଇଯେ ରଙ୍ଗୀ ପରା । ମଲା, ମଲା । କି, ଏତେ ନାଚ କାହିଁକି ମ ? ଇଯେ କ'ଣ-ଇଯେ କାନ୍ଦୁଚି କାହିଁକି ?'' ସେତେବେଳକୁ ରଙ୍ଗୀ ଦୁଆର ପାଖରେ ହେଲାଣି । ସେ ଆଉ ଥରୁଟିଏ ମୁହଁ ବୁଲାଇ, ନୀଳୁଙ୍କୁ ପୂର୍ଣ୍ଣ ଦୃଷ୍ଟି ଦେଇ ଦ୍ୱାର ପାରି ହୋଇଗଲା । ଦ୍ୱାର ସେପଟର କମ୍ପମାନ ନିମ୍ନସ୍ୱରରେ କେବଳ ଏତିକି ମାତ୍ର କହିଲା ।''ନାଚ ନାହିଁ । ଛିଃ !'' ଏହା କହିଲା ମାତ୍ରକେ ତା' ଗୋଡ଼ ହାତରେ ଶହେଗୁଣ ବଳ ଆସିଗଲା ଓ ସେ ପ୍ରାଣପଣେ ଦଉଡ଼ି ପଳାଇ ଗଲା । ତା' ହୃଦୟରୁ ଯେଉଁ କୋହ ଉଠୁଥିଲା, ତାକୁ କୌଣସି ମତେ ସେ ଦମନ କରିପାରିଲା ନାହିଁ । ଏ ଘର ସେ ଘର, ୟାଡ଼େ ସ୍ୟାଡ଼େ ବୁଲି ବୁଲି ଦୈହିକ ପରିଶ୍ରମରେ ସେ ପ୍ରାଣର ସଞ୍ଚିତ ଆବେଗ ବ୍ୟୟ କରି ପକାଇବାକୁ ଚାହିଁଲା, କିନ୍ତୁ କାହିଁରେ କିଛି ଫଳ ହେଲା ନାହିଁ । ଏହିପରି ସମୟରେ ହେଡ଼ମାଷ୍ଟରଙ୍କ ସାନ ଝିଅ ଟେମ୍ପୀ ସଙ୍ଗରେ ନୂଆବୋଉ ଆସି ପହଞ୍ଚିଗଲେ । ଟେମ୍ପୀ ତାଙ୍କୁ ଛାଡ଼ିଦେଇ ଚାଲିଗଲା । ରଙ୍ଗୀ ଦେଖିଲା, ନୂଆବୋଉଙ୍କର ଅପୂର୍ବ ବେଶ-ଉଲଟା ବାଗେ ଲୁଗା ପିନ୍ଧା ହୋଇଛି, କାନ୍ଧ ପାଖେ ସେଫ୍ଟିପିନ୍ ମରା ହୋଇଛି-ଠିକ୍ ବାଙ୍ଗାଲୁଣୀଙ୍କ ପରି । ନିଧିବାବୁ ଏପରି ବେଶର ଆଦୌ ପକ୍ଷପାତୀ ନୁହନ୍ତି; ସେ ଏତକ ମନେ ମନେ ଭାବୁଁ ଭାବୁଁ କନକ ହସି ହସି ଆସି ତାକୁ ଧରି ଟାଣି ଟାଣି ନେଇ ଯାଉଁ ଯାଉଁ କହିଲା, ''ଚାଲିଲ, ଚାଲିଲ, ନୂଆବୋଉ, ଏଗୁରା ଟିକିଏ ଖୋଲିଖାଲି ଦେବ, ଚାଲିଲ ! ଭଲା ବଙ୍ଗାଳୀଘର ଝିଅଗୁରାକ-ଦେଖିଲଣି, କ'ଣ କରିଛନ୍ତି । ଛି, ଛି, ମତେ ଯେଉଁ ଅଡୁଆ ଲାଗୁଛି । ଲୁଗା ପିନ୍ଧିଚି କି ନାଇଁ, ମୋତେ ଜଣା ପଡୁନାହିଁ ପରା । ତମ ଭାଇସାନ୍ତ ଆସିଲେ, ପୁଣି ଟାଉଳି କରିବେ-'' ଏହା କହି ନିଜ ଘର ଆଡ଼କୁ ଚାଲିଲା । ରଙ୍ଗୀ ଜାଣେ, ସେ ଘରେ ନୀଳୁ ଅଛି, ଅଥଚ କି ସଂକୋଚ ହେତୁରୁ କେଜାଣି ସେ କଥା ସେ କହିପାରୁ ନାହିଁ, ୟାଡ଼େ ନ ଯିବାର ଅନ୍ୟ କାରଣ ମଧ୍ୟ ଦେଖାଇ ନ ପାରି ପଛକୁ ଟାଣି ହେଉଛି-ଗୋଡ଼ ତା'ର ଚଳୁନାହିଁ ! ନ ଜାଣିଲା ପରି ସେଠାକୁ ଗଲେ ମଧ, ନୀଳୁ ବୁଦ୍ଧିମାନ୍-କ'ଣ ପୁଣି ପଚାରିବ, କି କବୁଲେଇବ । ତା' ଆଗରେ ତ ଆଉ ସେ ଛିଡ଼ା ହୋଇପାରିବ ନାହିଁ, କି ତା' କଥା ଶୁଣି ପାରିବ ନାହିଁ । କନକ ଘରଟି ଯେତେ ନିକଟ ହେବାକୁ ଲାଗିଲା, ରଙ୍ଗୀ ତେତିକି ପଛକୁ ପଛକୁ ଭିଡ଼ିବାକୁ ଲାଗିଲା । ସେ ଅନ୍ତରେ ଅନ୍ତରେ ସ୍ଥିର ବୁଝିଲା-ନାଃ, ସେ ଘରକୁ ତା'ର ଯିବା ହେବ ନାହିଁ । କନକ ତା' ମନ୍ଦ ମନ୍ଦ ଭାବ ଦେଖି ପଚାରିଲା, ''କିଗୋ, ଇମିତି କାହିଁକି ହଉଚ କି । ମଲା, ମୁହଁଟା ତ କାହିଁକି କଳାକାଠ ପଡ଼ିଗଲାଣି । ଇଯେ କ'ଣ ମ ? କାନ୍ଦୁଥିଲ କି ?'' ରଙ୍ଗୀ ଭୋ

କରି କାନ୍ଦି ଉଠି କୌଣସି ମତେ କହିଲା, "ନାଇଁ, ନୂଆ'ଉ-ମୁଁ ସେ ଘରକୁ ଯିବି ନାହିଁ।" ଏହା କହି ସେ ଫେରିଲା। କନକ ଆଉ ଯେତେ ଯାହା ପଚାରିଲା, ଯେତେ ଓଟରା ଝିଙ୍କା କଲା-ରଙ୍ଗୀ ଆଉ ନଶୁଣିଲା। କନକ ଭାବିଲା ତା'ଘରେ ନିଧିବାବୁ ଅବା ଥିବେ—କିନ୍ତୁ କାନ୍ଦିବାର କାରଣ କ'ଣ ? ଗାଳି ମନ୍ଦ ଖାଇଥିବ ଅବା। କହିଲା, "ସେ ଘରେ ତମ ଭାଇ ଅଛନ୍ତି କି ?" ରଙ୍ଗୀ କିଛିକ୍ଷଣ କିଛି କହିଲା ନାହିଁ। କନକ ଭାବିଲା—ସେଇୟାତ; କହିଲା, "ସେଇ କଥା କହୁନାହଁ କାହିଁକି—କ'ଣ କିଛି ଗାଳି ମନ୍ଦ କଲେ କି ?" ରଙ୍ଗୀ ଲୁହ ପୋଛିପାଛି ସାରିଥିଲା, କିପରି ଗୋଟାଏ ଦୁଷ୍ଟ ହସ ହସି କହିଲା, "ମୋ ଭାଇ ସେ ଘରେ ନାହିଁ ଯେ, ତମରି ଭାଇ ଅଛନ୍ତି। ନାଇ ନାହିଁ ସେଟାକୁ ! ଅଲାଜୁକ, ଧିଟ୍ଟଟା-ସେଟା କାହିଁକି ଏଠିକି ଆସେ - ନିର୍ଲଜ୍ଜ ବେହିୟାଟା !" ସେ ଘରେ ନୀଳୁଭାଇ ଅଛି ଶୁଣି ଓ ରଙ୍ଗୀକୁ ଟିକିଏ ହସିବାର ଦେଖି, କଥାଟା ଗୁରୁତର ନୁହେ ଭାବି କନକ ଯଥେଷ୍ଟ ଆଶ୍ୱସ୍ତ ହୋଇଥିଲା, କିନ୍ତୁ ଇୟେ କ'ଣ, ରଙ୍ଗୀ ସତକୁ ସତ ନୀଳୁଭାଇକୁ ଗାଳିଦେଲା ପରିତ ବୋଧ ହେଉଛି - ଇୟେ ତ ଗେଲ ପରି ଜଣା ଯାଉନାହିଁ। କହିଲା, "କି ଗୋ, ମୋ ଭାଇଙ୍କି ତେମେ କାହିଁକି ଏତେ ଗାଳି ଦେଉଚ ! ମୋ ଭାଇ ତମର କ'ଣ କଲା କି !" "ସେଟା ମୋର କିଏ କି-ନିଆଁ ନା, ଚୁଲି ନା, ଗାତ ନା, କିଏ ! ମୋର ସେଟା କ'ଣ କରିବ। ମରୁ ନେଇଁ ସେଟା-ମଲେ ମୋର ଦକ ଯାଆନ୍ତା ପରା !" ଏହା ଅତି ତୀକ୍ଷ୍ଣଭାବରେ କହି ରଙ୍ଗୀ ନିଜେ କାନ୍ଥରେ ମୁଣ୍ଡ ବାଡ଼େଇବାକୁ ଲାଗିଲା। କନକ ତ ତାଟଙ୍କା। ନୀଳୁବାବୁ କନକ ପାଟି ଶୁଣି ବାହାରି ଆସି ଏ ଦୃଶ୍ୟ ଦେଖି କହିଲେ, "ଇୟେ କ'ଣ ହଉଚି ମ ? କଥା କ'ଣ ?" ରଙ୍ଗୀ ଶାନ୍ତ ହୋଇଗଲା, କିନ୍ତୁ କି ଗୋଟାଏ ଦୃପ୍ତ ତେଜରେ ନୀଳୁଙ୍କ ଆଡ଼କୁ ତୀବ୍ର କଟାକ୍ଷ ଦେଇ କହିଲା, "ଆପଣ ବୁଝି ପାରିବେ ନାହିଁ-ଚାଲି ଯାଆନ୍ତୁ ଏଠୁଁ।" କନକ ଭେଳକା ମାରିଲା ପରି ହୋଇ ସେଠାରେ ଚୁପ୍ କରି ଛିଡ଼ା ହୋଇଥାଏ। ନୀଳୁ ବି ବିସ୍ମିତ ହୋଇଗଲେ, କିନ୍ତୁ ଟିକିଏ ମୁରବିପଣିଆ କରି କହିଲେ, "ମଲା, ପାଠ ପଢ଼ି ପଢ଼ି ଏଟାର ମୁଣ୍ଡ ଖରାପ ହୋଇଗଲାଣିରେ-ଯାଃ।" ଆହୁରି କ୍ରୁଦ୍ଧ ସ୍ଥିର ଗମ୍ଭୀର ସ୍ୱରରେ ରଙ୍ଗୀ କହିଲା, "ତମରି ପରି, ନୁହେଁ ? ମୁଁ କହିଦଉଚି, ତମେ ଏହିଲାଗେ ଏଠଉଁ ଯିବ ତ ଯା, ନ ହେଲେ ମୁଁ ବିଷ ଖାଇ ମରିବି-ବୁଡ଼ି ମରିବି; ନ ହେଲେ" କନକ ଧାଇଁ ଆସି ଧରୁ ଧରୁ ରଙ୍ଗୀ ହଠାତ୍ ମୂର୍ଚ୍ଛିତା ହୋଇ ତଳେ ସଜୋରେ ପଡ଼ିଗଲା। ନୀଳୁବାବୁ ତା' ଅବସ୍ଥା ଦେଖି ମନେ ମନେ ଭୀତ ହୋଇ "ନିଧିବାବୁ, ନିଧିବାବୁ" ବୋଲି ଡକା ଛାଡ଼ିଲେ। ସ୍ୟାତ୍ ନିଧିବାବୁ ବି ଯୋଗକୁ ଆସି ପହଞ୍ଚିଗଲେ !

"ମୁଁ ରାମକୃଷ୍ଣ ଡାକ୍ତରକୁ ଏଇଠୁ ଡାକି ଆଣୁଚି !" ବୋଲି କହି ନୀଲୁ ଦଉଡ଼ି ପଳାଇଗଲେ । କନକ ଏଣେ ପାଣି ଆଣି ରଙ୍ଗୀ ମୁହଁରେ ଛଟାଛଟି କଲା, ଠିକା ଦାସୀଟା ପଙ୍ଖା କରି ବସିଲା । ନିଧିବାବୁ ତା' ଆଖିପତା ଓଲଟାଇ ଦେଇ 'କିଛି ନୁହେଁ' ବୋଲି କହି ସ୍ଥିର ଭାବରେ ସେହିଠାରେ ବସି ପଡ଼ିଲେ । ଅଳ୍ପକ୍ଷଣ ଭିତରେ ସତକୁ ସତ ରଙ୍ଗୀର ଚେତା ବସିଲା । ସେ ଆଖି ଖୋଲି ଯାଡ଼େ ସ୍ୟାଡ଼େ କାହାକୁ ଖୋଜିଲା ପରି ଚାହିଁଗଲା, ଥରେ ଦୁଇ ଥର ଉଠିବାକୁ ଚେଷ୍ଟା କଲା; କିନ୍ତୁ କନକ ତାକୁ ଜୋର କରି ଶୁଆଇ ରଖିଲା । ଭାଇଙ୍କ ଉପରେ ଆଖି ପଡ଼ିବାରୁ ରଙ୍ଗୀ ମୁଣ୍ଡରେ ଲୁଗା ଦେବାକୁ ଚେଷ୍ଟା କଲା, କିନ୍ତୁ କନକ ଦିଆଇଦେଲାନାହିଁ । ପୁଣି ରଙ୍ଗୀ କାହାକୁ ଖୋଜିଲା ପରି ଯାଡ଼େ ସ୍ୟାଡ଼େ ଚାହିଁଲା, କିନ୍ତୁ ସାଙ୍ଗେ ସାଙ୍ଗେ ପୁଣି ନିରାଶ ହେଲା ପରି ଆଖି ବୁଜିଦେଲା । କନକ ଓ ଦାସୀ ଦୁହେଁ ଧରାଧରି କରି ତାକୁ ଘର ଭିତରକୁ ନେଇଗଲେ ଓ ବିଛଣା ଉପରେ ଶୁଆଇଦେଲେ । ଇୟେ ସେଇ ଘର - କନକର ଶୋଇବା ଘର, ଯେଉଁଠି ସନ୍ଧ୍ୟାବେଳେ ରଙ୍ଗୀର ନୀଲୁଙ୍କର ଦେଖାହୋଇଥିଲା । ନିଧିବାବୁ କନକକୁ ଚୁପ୍ କରି ପଚାରିଲେ, "କ'ଣ, କାହିଁକି ଇମିତି ହେଲା ? କାହିଁ, ଫେର ତ ଚୁପ୍ କରି ଆଖି ବୁଜିକରି ରହିଗଲା-ଚେତା ଅଛି ତ, ଦେଖିବଟି ?" କନକ ଯାଇଁ ଲୁଗାତଳେ ହାତ ପୂରାଇ ରଙ୍ଗୀ ଛାତିରେ ହାତ ଦେଲାମାତ୍ରକେ, ରଙ୍ଗୀ ଧଡ଼ପଡ଼ ହୋଇ ଉଠି ବସି ଛାତିରୁ ସମ୍ପୂର୍ଣ୍ଣ ଲୁଗା କାଢ଼ି ପକାଇ କହିଲା, "ଦେଖ, ଦେଖ, ମୋର କ'ଣ ହଉଚି ଲୋ !" ଏହା କହି ଭୋ ଭୋ କରି କାନ୍ଦି ଉଠିଲା । କନକ ଧରି ଶୁଆଇ ଦେବାରୁ ସେ ଶୋଇ ରହିଲା । କନକ ତା' ଆଖିରୁ ଲୁହ ପୋଛିପାଛି ଦେଲା-ରଙ୍ଗୀ ଶାନ୍ତଭାବରେ ପଡ଼ି ରହିଲା । ନିଧିବାବୁ ଆସି ତା' ମୁଣ୍ଡରେ ହାତ ଦେଇ ଚମକି ପଡ଼ି କହିଲେ "ଓଃ, ଭାରି ତାତି-ଏତେ ଜର କେତେବେଳେ ହେଲା !" ତାଙ୍କର ସ୍ପର୍ଶରେ ରଙ୍ଗୀ ଆଖି ଖୋଲିଲା-ନ ଚିହ୍ନିଲା ପରି ନିଧିଭାଇଙ୍କୁ ଚାହିଁ ରହିଲା । କିଛିକ୍ଷଣ ପରେ ହଠାତ୍ ପୁଣି ଉଠି ବସି ଠୋ ଠୋ କରି ହସି ଉଠି କହିଲା-"ମଲା ଲୋ ଲାଜ ! ଅ-ହ-ଅ, ସେଇଠି ତ ସେଇ ଝରକା ପାଖରେ । ଆଲୋ, ମୁଁ ଅନେଇଚି ସେ ଆଡ଼କୁ, ସିଏ ଆସୁଛି ଏ ଆଡୁ (ଦୁଆରକୁ ଦେଖାଇ) । ମଲା, ଆସିବୁ ଯଦି, ସିଧା ଚାଲିଆ-ନାଃ, ବଙ୍କାଟେ, କୁଜାଟେ, ଛୋଟାଟେ, କ'ଣାଟେ, ନିଆଁଟେ ଚୁଲିଟେ-ହଁ ହଁ, ନାଃ, ମୁଁ କାହିଁକି ଯା କହନ୍ତି । ନାଃ, ମୁଁ କହିନାହିଁଲୋ—" କହୁଁ କହୁଁ ରଙ୍ଗୀ ଆଖି ଛଳଛଳ ହୋଇ ଉଠିଲା । ସେ ହଠାତ୍ ଚୁପ୍ କରି ରହି ଯାଇଁ ପୁଣି କାହାକୁ ଖୋଜିଲା ପରି ଯାଡ଼େ ସ୍ୟାଡ଼େ ଚାହିଁଲା । ନିଧିବାବୁ ହଠାତ୍ ଗୋଟାଏ ବଡ଼ ପାଟି କରି କହିଲେ, "ରଙ୍ଗୀ, ଏଇ, କ'ଣ

କହୁଚୁ ଚୁ-ଚୁପ୍ କରି ଶୁଅ । ନ ହେଲେ ମାଡ଼ ଦେମି ।'' ଏହା କହି ଦାନ୍ତକାମୁଡ଼ି ରଙ୍ଗୀକୁ ଭୟ ଦେଖାଇଲେ । ରଙ୍ଗୀ ଅତିଶୟ ଭୀତ ହେଲାପରି ନୂଆବୋଉଙ୍କୁ ପ୍ରାଣପଣେ କୁଣ୍ଢାଇ ଧରିଲା । ଠିକା ଦାସୀଟି କୁଆଡ଼େ ଥିଲା, ଏତିକିବେଳେ ଆସି କହିଲା, ''ବାବୁ, ତେମେ ଟିକିଏ ବାହାରି ଯିବଟି । ମୁଁ ଟିକିଏ ଦେଖେଁ !'' ଏହା କହି ନିଧିବାବୁ ଆଡ଼େଇ ନ ହେଉଣୁ ବିଛଣା ପାଖକୁ ଆସି ରଙ୍ଗୀ ମୁହଁକୁ ଧରି, ତା ଆଡ଼କୁ ବୁଲାଇ ଆରି କହିଲା, ''ମା, ତେମେ କଉଁ ଠାକୁରାଣୀ ବିଚେ କରିଚ ମା?'' ନିଧିବାବୁ ହସି ଉଠି କହିଲେ, ''ଯା, ଯା, ଗୋଟାଏ ଢ଼ଙ୍ଗ ବାହାରିଲା-ଯା ପଳା !'' କ୍ଷୁଣ୍ଣ ମନରେ ସେଠାରୁ ହଟିଯାଇ ସେ କହିଲା, ''ମୋ କଥା ସିନା ଅପସନ୍ଦ କଲେ ବାବୁ, ନହେଲେ ମୁଁ କହି ଦଉଚି-ଇୟେ ନିଶ୍ଚେଁ ମା କାଳୀ । ଇସ୍କୁଲ ତ ଇୟେ ଯାଉଚନ୍ତି- ସେଇ କାଳୀଗଳିରେ ମୋ କଥା ଯଦି ମିଛ ହେଲା, ତାଙ୍କୁ ପଚାର । ଇୟେ ନିଶ୍ଚେଁ ମା କାଳୀ, ବାବୁ ଫେରେ ବୁଝିବେ ନାହିଁକି ! ମୋରି ବହୂ କଥା ଶୁଣ, ଆଉ କଥା ତ ଯାଉ—'' ''ଆରେ ଯା ଯାଃ, ତୁ ଯିବୁଟି ଏଠୁ ବାହାରି—'' । ସ୍ତ୍ରୀ ଲୋକଟିର ମନ ଚୂନା ହୋଇଗଲା-ସେ କ୍ଷୁଣ୍ଣ ଅଭିମାନରେ ସେଠାରୁ ବାହାରି ଗଲା । ରଙ୍ଗୀ ଏଣେ ହଠାତ୍ ଉଠି ବସି କହିଲା, ''ନା, ନା ଯା ନେଇଁ । ମୋ ମୁଣ୍ଡ ଖାଇବ ମୁଁ ରାଗରେ କ'ଣ କହିଲି ବୋଲି-ଦେଖିଲ ନା ଦେଖିଲ ନା-ଏଡ଼େ ହଟ ଯାର ! ସତକୁ ସତ-''। କନକ ଜୋର କରି ତାକୁ ଶୁଆଇ ତା' ମୁହଁରେ ହାତ ଦେଇ ତାକୁ ବନ୍ଦ କଲା ଓ ନିଧିବାବୁଙ୍କୁ କହିଲା, ''ତେମେ ସବୁ ଟିକିଏ ଏଠଉଁ ବାହାରି ଯିବଟି । ସେ ଟିକିଏ ଶାନ୍ତିରେ ଶୁଅନ୍ତୁ । ଡାକ୍ତର ଆସିଲେ ପଛେ ନେଇକିରି ଆସିବ ।'' ନିଧିବାବୁ କହିଲେ, ''ହଁ, ସତେ, ନୀଳୁ ସେତେବେଳୁ ଗଲାଣି, କାହିଁ କୁଆଡ଼େ ଗଲା - ମୁଁ ଦେଖେଁ ।'' ଏହା କହି ସେ ଘରେ ଥିବା ସମସ୍ତଙ୍କୁ ତଡ଼ି ନେଇ ବାହାର କରି, ଦୁଆର ଆଉଜାଇ ଦେଇ ଚାଲିଗଲେ । ହଠାତ୍ ଏଣେ ରଙ୍ଗୀ ଉଠି ବସିଲା, କହିଲା-''ହଁ, ସେ ତ ଆସୁଥାଏ । ଆରେ, ଏଇ ନୁହେଁ କି କଙ୍କି ନୂଆ'ଉ । ଭଲା କହନି କଙ୍କି ତମେ, ମୋର କି ଦୋଷ ।'' ''ତମର କିଛି ଦୋଷ ନାହିଁ - ତେମେ ଶୁଅ !'' କିଛିକ୍ଷଣ ଚୁପ୍ କରି ଶୋଇ ପୁଣି ଧୀରେ ଧୀରେ କହିଲା, ''ତା'ର ବି ଦୋଷ କ'ଣ ! ନାଃ-ଆଲୋ, ସବୁ ଦୋଷ ତ ଇୟାରି, ଲୁଚି ଯାଉଚ କୁଆଡ଼େ !'' ଏହା କହି କନକ ଆଡ଼କୁ ଦେଖାଇ ହୋ ହୋ କରି ହସି ଉଠିଲା, ପୁଣି ହଠାତ୍ ଗମ୍ଭୀର ହୋଇ କହିଲା, ''ନା ଆଁ, ନା ଆଁ ! ନୂଆବୋଉଟି ତ ମୋର ଭଲ ! ସେଇ ତ ତାକୁ ଶରଧା କରେ -ଆଉ କେଇ ନା, କେଇ ନା ! ହଁ ଫେରେ ଦୋଷ କାହାର ? ଓହୋ, ଭୁଲି ତ ଗଲି, ଯାଃ - 'ଆସଇ ବସନ୍ତ ଶିଶିର ଅନ୍ତେ, ଦିଶଇ ଧରଣୀ ଚାରୁ କେମନ୍ତେ । ସୌନ୍ଦର୍ଯ୍ୟ- ତରଙ୍ଗେ ମହୀ ଭାସଇ'-ନା ନା, ମାଷ୍ଟ୍ରେ,- କାଲିକି ନିଶ୍ଚେଁ କରି ଆଣିମି ।

ମୋର କିଛି ଦୋଷ ନାହିଁ । ମୁଁ କ'ଣ ପଢ଼ି ପାରୁଛି କି ଘରପାଖେ-ସେହି ପରା ଖାଲି ଜଳଉଚି ମତେ ଦିବାରାତି -'' ।

ଏହି ସମୟରେ ସ୍ୟାଡୁ ନୀଳୁଙ୍କ ପାଟି ନିଧିଙ୍କ ପାଟି ସଙ୍ଗରେ ଆଉ ଗୋଟିଏ ଅପରିଚିତ କ'ଣ୍ଠସ୍ୱର ମିଶାମିଶି ହୋଇ ଶୁଣାଗଲା । ରଙ୍ଗୀ ହଠାତ୍ ଚମକି ପଡ଼ି କହିଲା, ''ହୋଇ, ହୋଇ, ଆସିଲାଣି ତ, ଆସିଲାଣି ତ - ଛାଡ଼ ନୂଆ'ଉ ମୁଁ ଯାଏଁ, ପଳାଏଁ, -କି ଗୋ, ତମ ଭାଇଟା ପରା ଆସୁଚନ୍ତି - କେମିତିକା ମ । ସିଏ ତା'ର ଆସିଲେ ଆସୁ - ମୁଁ କେମିତି ଏଠି ରହିମି କୁହନି ।'' ଏହା କହି ଧଡ଼ପଡ଼ ହୋଇ ଉଠିବାକୁ ତିଆର ! କିନ୍ତୁ ପାଂଶୁବର୍ଣ୍ଣ ମୁଖଟି ତା'ର ହଠାତ୍ ଉଜ୍ଜ୍ୱଳ ହୋଇଗଲା । କନକ କୌଣସିମତେ ଧରି ରଖି କହିଲା; ''ଚୁପ୍ କରି ଶୁଅ, ମୋ ମୁଣ୍ଡ ଖାଇବ, ପାଟିତୁଣ୍ଡ କର ନାହିଁ - ଡାକ୍ତର ଆସୁଚି ପରା !'' ନିଧିବାବୁ ଧୀରେ ଧୀରେ ପ୍ରବେଶ କରି କହିଲେ, ''ତେମେ ସେଆଡ଼କୁ ମୁହଁ କରି ସେଇଠି ବସ - ନାଇ କ'ଣ ମ ? ଆଉ ତାକୁ ଗୋଟିଏ ଭଲ କରି କ'ଣ ଘୋଡ଼େଇ ଘାଡ଼େଇ ଦିଅ ।'' କନକ ନିଧିବାବୁଙ୍କୁ ଚୁପ୍ କରି କହିଲା, ''ନୀଳୁଭାଇଙ୍କି ମନାକର; ସେ ସେଇ ପଟେ ଥାଉ, ଏଠିକି ଯେମିତି ନ ଆସେ !'' ନିଧିବାବୁ ସେହିପରି ଚୁପ୍ କରି କହିଲେ, ''ହଁ, ହଁ, ଠିକ୍ କଥା !'' ଏହା କହି ଦୁଆର ପାଖକୁ ଗଲେ । ରଙ୍ଗୀ କନକ ଆଡ଼କୁ କରୁଣ ଦୃଷ୍ଟିରେ ଚାହିଁଲା, ତା' ଆଖିରୁ ଲୁହ ଗଡ଼ିଲା ପରି ! କଷ୍ଟରେ କହିଲା, ''ତେମେ ଏଡ଼େ ନିଷ୍ଠୁର ନା କଙ୍କି ! ଟିକିଏ ଏବେ ଆସିଥିଲେ କ'ଣ ହୋଇଥାନ୍ତା । ମୁଁ ଟିକିଏ ଦେଖିଥାନ୍ତି - ଖାଲି ଟିକିଏ ନୂଆ'ଉ - ଟିକିଏ ।'' ''ଚୁପ୍, ଚୁପ୍ !'' ''ନାଃ, ମୁଁ ଦେଖିମି ନିଶ୍ଚେ - ଏତେ ନୁଚାଚୋରା କାହିଁକି, କି !'' ଏହା କହି କନକକୁ ଠେଲି ଦେଇ ରଙ୍ଗୀ ଯେମିତି ଉଠିଛି, ସେମିତି ପଡ଼ିଯାଇ ପୁଣି ଅଜ୍ଞାନ ହୋଇଗଲା । ଡାକ୍ତର ଓ ନିଧିବାବୁ ଦୁହେଁ ଧାଇଁ ଆସି ଧରି ପକାଇଲେ । ନୀଳୁବାବୁ ଦୁଆର ଫାଙ୍କରୁ ତଥାପି ନାକ ଦେଖାଇଥାନ୍ତି ।

(୬)

ଅଳ୍ପକ୍ଷଣ ପରେ ରଙ୍ଗୀର ଚେତା ଆସିଲେ ମଧ ସେ ସେହିପରି ଯାଡୁସ୍ୟାଡୁ ବକିବାକୁ ଲାଗିଲା । କେତେବେଳେ ସେ ଇଚ୍ଛାରେ ପଳାଇବାକୁ ଚାହେଁ; କେତେବେଳେ ଅଭିମାନରେ ମୁହଁ ମୋଡ଼ି ଦେଇ ଦଣ୍ଡେ ସ୍ଥିର ହୋଇ ଶୁଏ; କେତେବେଳେ କାନ୍ଦି କାନ୍ଦି କାହା ଉଦ୍ଦେଶ୍ୟରେ ଅନୁତାପ-ଅନୁଶୋଚନାପୂର୍ଣ୍ଣ କରୁଣ ଦୃଷ୍ଟି ଘରର ଚାରିଆଡ଼େ

ନିକ୍ଷେପ କରେ; କେତେବେଳେ ଅବା ହସି ହସି କାହାର କଳ୍ପିତ ଅସ୍ତିତ୍ୱ ଉପଲବ୍ଧି କରି ଆନନ୍ଦରେ ନୂଆବୋଉକୁ କୁଣ୍ଢେଇ ତାହାରି ପଛ ଆଡ଼େ ଲୁଚି ଲୁଚି ଯିବାକୁ ଚାହେଁ । କନକ ସେତେବେଳକୁ ରଙ୍ଗୀର ହୃଦୟ-ମନ ଅତି ପରିଷ୍କାର ଭାବରେ ଦେଖିପାରିଲାଣି; ଜାଣିଲାଣି, ନୀଲୁଙ୍କ ପାଇଁ ହିଁ ତାହାର ଏ ଦଶା, -ନୀଲୁଙ୍କ ପାଇଁ ବି ଏକା ନୁହେଁ, ସମାଜର ସଂକୀର୍ଣ୍ଣତା ଯୋଗୁଁ ହିଁ ତା'ର ଅଧିକ ଦୁଃଖ ! କନକ କ'ଣ ନିଜ କଥାରୁ ଜାଣିନାହିଁ, କେଡ଼େ ଭୟଙ୍କର ସେ ! ତା' ନିଜ ବିବାହରେ ତା'ର ଯେଉଁ ମହତ୍ ଶିକ୍ଷା ହୋଇଥିଲା, ସେଟା ତ ତା' ମନରୁ ଏତେ ଶୀଘ୍ର ଯାଇନାହିଁ । କିନ୍ତୁ ତା' କଥା, ରଙ୍ଗୀ କଥା ମଧ୍ୟରେ ଢ଼େର ପ୍ରଭେଦ । ବିବାହ ପୂର୍ବରୁ ତାକୁ ଗୋଟାଏ ପରୀକ୍ଷାରେ ପଡ଼ିବାକୁ ହୋଇଥିଲା ସତ୍ୟ, କିନ୍ତୁ କନକ ବର୍ତ୍ତମାନ ବୁଝିଲା, ସେଟା ରଙ୍ଗୀ ପରୀକ୍ଷାର ଏକ ନବମାଂଶ ସଙ୍ଗେ ମଧ୍ୟ ସମାନ ନୁହେଁ ! ସେ ତ ନୀଲୁବାବୁଙ୍କୁ ଆବାଲ୍ୟ ଭାଇ ବୋଲି ହିଁ ଜାଣି ଆସିଥିଲା, ସେହିପରି ସ୍ନେହ ମଧ୍ୟ କରିଥିଲା-ସେଟା ବିବାହବନ୍ଧନରେ ପର୍ଯ୍ୟବସିତ ନ ହେବାରୁ ତା'ର ଆତ୍ମବଳି ସେ ନାମର ଯୋଗ୍ୟ ମଧ୍ୟ ନୁହେଁ । କିନ୍ତୁ ରଙ୍ଗୀ, —ସେ ତ ନୀଲୁଙ୍କୁ ଜାଣି ନଥିଲା ତା' ପିଲାଦିନୁଁ । କୈଶୋର ଯୌବନର ସନ୍ଧିସ୍ଥଳରେ କନକ ନିଜେ-ସେ ଏକା କାହିଁକି, ଆଉ ସମସ୍ତେ ମଧ୍ୟ ସେଥିରେ ଥିଲେ—ରଙ୍ଗୀର ନବ ପିପାସାର ଶୁଷ୍କ ଦୃଷ୍ଟି ସମ୍ମୁଖରେ ଆଣି ଥୋଇ ଦେଇଥିଲା ନୀଲୁଙ୍କୁ ! ବିବାହ-ପ୍ରସଙ୍ଗ ତଥା ରଙ୍ଗରହସ୍ୟ ଦ୍ୱାରା ତା' ମନରେ କ'ଣ ବଦ୍ଧମୂଳ କରାଇ ଦିଆଯାଇ ନଥିଲାଯେ, ରଙ୍ଗୀ ନୀଲୁଙ୍କର ! ଏଥିରେ ରଙ୍ଗୀର କି ଦୋଷ, ଯଦି ସେ ପୂର୍ଣ୍ଣ ହୃଦୟ ଦେଇ ନୀଲୁଙ୍କ ପ୍ରଣୟାସକ୍ତ ହୋଇ ଉଠିଲା ! ସେମାନେ କ'ଣ ତା'ର କୋମଳ ହୃଦୟଟି ନେଇ ନିର୍ମମ ଖେଳଟିଏ ଖେଳିନାହାନ୍ତି କି ? କିନ୍ତୁ, ଆଉ କ'ଣ ଭଲା କରାଯାଇ ପାରିଥାନ୍ତା ? କରଣ ଘରେ ଆଉ କିଛି ଉପାୟ ତ ନାହିଁ, ତଥାପି, କରଣ ଘରେ ପ୍ରେମ କରିବାର ସ୍ୱାଧୀନତା ନଥିଲେ ସୁଦ୍ଧା ପ୍ରେମ କରିବାର ସୁବିଧାଟିକ ରଙ୍ଗୀକୁ ଦେବା କ'ଣ ବିଷମ ଭୁଲ ହୋଇନାହିଁ । ଅବଶ୍ୟ, ସେହିଟା ହିଁ ତା'ର ଦୋଷ-ସମସ୍ତଙ୍କର ଦୋଷ । ନାରୀ ହୃଦୟରେ ପ୍ରେମ ସଞ୍ଚାର କରାଇ, ତା' ମୁହଁରେ ଯୋଡ଼ାପଟି ଲଗାଇ, ତା' ଅସ୍ତିତ୍ୱ ପର୍ଯ୍ୟନ୍ତ ଭୁଲିଯିବାଟା କ'ଣ ଅବିକଳ ହାତଗୋଡ଼ ବାନ୍ଧି ଜଣକୁ ନିଆଁ ବା ପାଣିକୁ ଠେଲିଦେଲା ପରି ନୁହେଁକି। ତା' ପରେ ପୁଣି ନୀଲୁଙ୍କୁ ନେଇ ଦିନକୁଦିନ ଏ ରହସ୍ୟମୟ ଖେଳ !

କିନ୍ତୁ କନକ କୌଣସି ମତେ ପୂର୍ଣ୍ଣ ଅନୁଭବ କରିପାରିଲା ନାହିଁ-କେତେ ଦୁଃଖରେ, କେତେ ଅଭିମାନରେ କେତେ ନିଭୃତ, ଅବ୍ୟକ୍ତ ଯନ୍ତ୍ରଣା ଭୋଗ କରି କରି ରଙ୍ଗୀର ଏ ଦଶା ଶେଷକୁ ହୋଇଅଛି; ପଳେ ପଳେ ଦଗ୍ଧ ହୋଇ ତା'ର ମସ୍ତିଷ୍କ ବିଗିଡ଼ିଯାଇଛି,

ହୃଦ୍‌ଯନ୍ତ୍ର ସେ ଦାହ ସହ୍ୟ କରି ନ ପାରି ଆଜି ତା'ର କ୍ଷୁଦ୍ର ପ୍ରାଣଟିକୁ ବାହାର କରି ଦେବାକୁ ନିଜେ ନିଜେ ଦ୍ୱିଧା ହେବାକୁ ବସିଛି !

ଡାକ୍ତର ସେହି କଥା କହିଲେ —କୌଣସି ଗଭୀର ଦୁଃଖର ଅବ୍ୟକ୍ତ ଯନ୍ତ୍ରଣା ରଙ୍ଗୀର ହୃଦ୍‌ରୋଗର କାରଣ । ହିଷ୍ଟିରିଯାର (ମୃଗୀରୋଗ) ମୂଳ ଏଇଠି ।

ନିଧିବାବୁ ଓ କନକ ଦୁହେଁ ସେହି ରାତିସାରା ରଙ୍ଗୀକୁ ଜଗିବସି, ଏ ବିଷୟରେ ଗଭୀର ଗବେଷଣା କରି ସ୍ଥିରକଲେ, ନୀଳୁଙ୍କୁ ଏବେ ସଫା ନ କହିଲେ ଚଳୁନାହିଁ- ନ କହିଲେ କ'ଣ, ରାଜି ନ କରାଇଲେ ବୋଲି କହିବାକୁ ହେବ । ନ ହେଲେ ତ ରଙ୍ଗୀର କଥା ଶେଷ ! ସମାଜ ପ୍ରତି ଆନ୍ତରିକ ଘୃଣା ସହିତ ନିଧିବାବୁଙ୍କର ମନେହେଲା, ହାୟ, ପାଶ୍ଚାତ୍ୟ ଶିକ୍ଷା ! ଏ ଦେଶକୁ ଆସିବା ପୂର୍ବରୁ ଯଦି ସମାଜସଂସ୍କାର ଆସିଥାନ୍ତା — ସମାଜର ଏପରି ଅବସ୍ଥାରେ କୌଣସି ଲୋକର - ପୁରୁଷ ବା ନାରୀ - ପାଶ୍ଚାତ୍ୟ ଶିକ୍ଷା ପାଇବା କେବଳ ଦୁଃଖଯନ୍ତ୍ରଣାର ମୂଳ ତ ! ସମାଜର ସେ ସଂକୀର୍ଣ୍ଣତା ମଧ୍ୟରେ କୂପମଣ୍ଡୂକ ହୋଇ ରହିବୁଁ ଓ ସଙ୍ଗେ ସଙ୍ଗେ ନବ୍ୟ ଆଲୋକ ମଧ୍ୟ ଆମ ଭିତର ବାହାର ଉଭୟ ଉଦ୍ଭାସିତ କରି ପକାଇବ, - ଏଟା ତ ସ୍ୱାଭାବିକ ନୁହେଁ । କି ବିଡ଼ମ୍ବନା !

ଏଣେ, ନୀଳୁବାବୁ ବଜାରରୁ ବରଫ ଇତ୍ୟାଦି କେତେକ ଆବଶ୍ୟକ ଜିନିଷ ଆଣି ଦେଇ, ବହାର ଘରେ ଆଜିର ଘଟଣାବଳୀ ନେଇ ଭାବୁଁ ଭାବୁଁ ଗୋଟାଏ ଗଭୀର ଅସ୍ୱସ୍ତିରେ ଆଚ୍ଛନ୍ନ ହୋଇ ବିଛଣାରେ ପଡ଼ିରହିଛନ୍ତି,- ଆଖିରେ ନିଦ ନାହିଁ, ପୁଣି ଯେତେ ଭାବିଲେ ବି କିଛି କୂଳକିନାରା ମିଳୁନାହିଁ । ଏସବୁ ଘଟଣା ଯେ ତାଙ୍କୁ ଉପଲକ୍ଷ କରି ଘଟିଗଲା, ଯାର ଅର୍ଥ କ'ଣ ? ସେ ଏସବୁରେ କୌଣସି ଭାବରେ ହେଲେ ଅଛନ୍ତି ନିଶ୍ଚୟ, ନଥିଲେ, ନିଜକୁ ନିଜେ ଅପରାଧୀ ବୋଲି ସେ ନ ଭାବି ରହିପାରନ୍ତେ ନାହିଁ କାହିଁକି ! ଆଉ, ରଙ୍ଗୀର ସେ ଭର୍ତ୍ସନାପୂର୍ଣ୍ଣ ଦୃଷ୍ଟି ଓ ଉଷ୍ଣ, ତୀବ୍ର କଥା ତାଙ୍କ ମନରୁ କୌଣସିମତେ ଯାଉନାହିଁ । ସେ ତ କେଉଁ ପରିହାସ ମାତ୍ର ହୋଇନପାରେ ! କି ରହସ୍ୟ ସେଥିରେ ଅଛି ? ଆହୁରି ପୁଣି ରଙ୍ଗୀ ଯାହା କହୁଁ କହୁଁ ପ୍ରଥମେ ମୂର୍ଚ୍ଛା ଗଲା, ତା'ର ବା ଅର୍ଥ କ'ଣ ? ସେ ଏଠାକୁ ଆସିଲେ ରଙ୍ଗୀର କ'ଣ କ୍ଷତି—ଏତେଦୂର କ'ଣ ସେଥିରେ ରଙ୍ଗୀର ଅନିଷ୍ଟ ହେଉଛି ଯେ ସେ ଆତ୍ମହତ୍ୟା କରିବ । ସେ ଅଜ୍ଞାତରେ ସେତେବେଳେ ରଙ୍ଗୀଥିବା ଘର ଭିତରକୁ ପଶିଯାଇଥିଲେ—ସେଥିଯୋଗେ କ'ଣ ? ନାଃ, ନାଃ, ତା' ତ ହୋଇପାରେ ନାହିଁ । ସେତ କିଛି କହି ନାହାନ୍ତି, କି କରି ନାହାନ୍ତି । ହଁ, ସେତେବେଳେ ମଧ୍ୟ ରଙ୍ଗୀ ଭର୍ତ୍ସନା-ସ୍ୱରରେ ଯାହା ନୀଚ କ'ଣ୍ଠରେ କହିଯାଇଥିଲା,

ତାହାର ବା ଅର୍ଥ କ'ଣ ? ତାଙ୍କୁ କେଉଁ କଥାର ଲାଭ ? ନାଃ, ଯା ଭିତରେ ନିଶ୍ଚୟ ଆଉ କିଛି ଅଛି ।

ଏହିପରି ଭାବୁଁ ଭାବୁଁ ପାହାନ୍ତା ପହରକୁ ଟିକିଏ ତନ୍ଦ୍ରା ଆସିଛି, ଏହିପରି ସମୟରେ ନିଧିବାବୁ ଆସି ତାଙ୍କୁ ଉଠାଇଲେ ଓ କହିଲେ, "ନୀଳୁଭାଇ, ଟିକିଏ ଚାଲ ତମେ, ତମୁକୁ ଡାକୁଚି ।" "କିଏ, କନକ ?" "ହଁ, ଚମେ ଚାଲ ଆଗେ !" ନୀଳୁବାବୁ ଦେଖିଲେ ନିଧିବାବୁଙ୍କ ମୁହଁ ଚିନ୍ତା ଓ ଅନିଦ୍ରାରେ ଶୁଖିଯାଇ କଳାପଡ଼ିଗଲାଣି ଓ ତା' ଉପରେ ମଧ ଭୟର ଛାୟା ପରି କ'ଣ ଟିକିଏ ଦିଶୁଛି । ସେ ଧଡ଼ପଡ଼ ହୋଇ ଉଠି ଭିତରକୁ ବାହାରି ଗଲେ । ନିଧିବାବୁ ତାଙ୍କୁ ତାଙ୍କ ନିଜ ଶୋଇବାଘର ଭିତରକୁ ଦେଖାଇଦେଇ, ନିଜେ ବାହାରେ ରହିଲେ । ନୀଳୁବାବୁ କହିଲେ, "ତମେ ଆସୁ ନା, କଥା କ'ଣ ?"

"ନାଇଁ, ନାଇଁ ତେମେ ଯା ! ବଳେ ବୁଝିବ ଯେ !"

ନୀଳୁ ଭିତରେ ପ୍ରବେଶ କରି ଦେଖିଲେ, ରଙ୍ଗୀ ଆଖିବୁଜି ଶୋଇଛି—ଉପରକୁ ମୁହଁ କରିଛି ଓ ହାତ ଦୁଇଟି ଛାତି ଉପରେ ଚିପିଧରିଛି; କନକ ତା' ମୁଣ୍ଡ ପାଖରେ ବସି ସାଶ୍ରୁନୟନରେ ତା' ମୁହଁର ଭାବ ଲକ୍ଷ୍ୟକରି ଦେଖୁଛି । ଧୀରେ ଧୀରେ ସେ କନକ ନିକଟକୁ ଯାଇ କହିଲେ, "କ'ଣ ?" କଥାଟି ଅତି ନିମ୍ନ ସ୍ୱରରେ କହିଥିଲେ ମଧ ରଙ୍ଗୀ ଆଖିଖୋଲି ଚାହିଁଲା, ନୀଳୁକୁ ଦେଖିଲା, ପୁଣି ଆଖି ବୁଜିଦେଇ ରହିଲା—ଆଉ କିଛି ବୈଲକ୍ଷଣ୍ୟ ଦେଖାଗଲାନାହିଁ । କନକ କହିଲା, "ଟିକିଏ ନିଦ ହୋଇଥିଲା, ଏଇନାଗେ ଚେତା ଅଛି- ଆଉ ବକୁନାହିଁ ।" "ମୋତେ କାହିଁକି ଡାକିଲୁ ? ତୁ ଯିବୁ ଟିକିଏ ଶୋଇବୁ ? ମୁଁ ଏଠି ବସୁଚି, ତୁ ଯା ।" "ନା ମ, ତା' ନୁହେଁ, ସେଇ କହିଲା, ତତେ ଡାକିବାକୁ !" ଏହିଠାରେ ରଙ୍ଗୀ ପୁଣି ଆଖି ଖୋଲି, କନକକୁ ବାଧାଦେଇ କହିଲା, "ମୁଁ ଡାକିବାକୁ କହିଥିଲି ? ସତ କହୁଚୁ ନୂଆ'ଉ ?"

"କି ଗୋ, କହିଲ ପରା ସେତେବେଳେ ! ରାତିସାରା 'ଦେଖିମି ଦେଖିମି' ହଉଚ, ପେରେ ଯା କହୁଚ ।"

"କାହିଁ, ମୁଁ ତ କହିନାହିଁ, ମୋର ତ ମନେନାହିଁ । ତମ ଭାଇ ସାଙ୍ଗରେ ମୋର କ'ଣ ଅଛି ? ମୁଁ କାହିଁକି ତାଙ୍କୁ ଡାକିବାକୁ କହିମି ।"

"ହଉ, ହଉ, ତା' ହେଲେ ତେମେ ଟିକିଏ ଶୁଅ ।"

"ତାଙ୍କୁ କହ, ସେ ଯାଆନ୍ତୁ, ମୁଁ ଶୋଇଚି ।"

"ନାଇଁ, ମୁଁ ପରା ଯାଉଚି ଟିକିଏ ଶୋଇମି-ସେ ଟିକିଏ ଏଇଠି ବସନ୍ତୁ ।"

"ନା, ସେ ଯାଆନ୍ତୁ । ଭାଇ କାହିଁ ? ବୋଉକୁ ଆଣିଲା ? ନା, ନୂଆ'ଉ ତମୁକୁ ମୋ ରାଣେ, ଆସ ମୋତେ କୋଡ଼ରେ ପୂରେଇକିରି ଶୁଅ । ନିଦରେ ଶୋଇ ପଡ଼-ମୁଁ ଚୁପ୍ କରି ଶୋଇମି । ଏଠି କେହି ରହିବା ଦରକାର ନାହିଁ ।"

ନିଧିବାବୁ ଧୀରେ ଧୀରେ ପ୍ରବେଶ କରିବାରୁ ରଙ୍ଗୀ ମୁହଁ ବୁଲେଇ ଚାହିଁଲା; ନୀଳୁଙ୍କ ଉପରେ ଆଖିପଡ଼ିବାରୁ ଟିକିଏ ଲଜ୍ଜିତ ହୋଇ ପୁଣି ଆଖି ବନ୍ଦକଲା । ନିଧିବାବୁ କୋମଳ ସ୍ୱରରେ କହିଲେ, "ରଙ୍ଗୀ, ମୋ ସୁନା ଭଉଣୀଟି ପରା । ଏଇ ନୀଳୁଭାଇ ଆସିଚି; କ'ଣ କହିବୁ ପରା !" ରଙ୍ଗୀ ଲଜ୍ଜାରେ ମୁହଁ ବୁଲାଇ ମୁଣ୍ଡ ହଲାଇ ନାହିଁକଲା । କନକ ଠାରିଦେବାରୁ ନିଧିବାବୁ ପୁଣି ଚାଲିଗଲେ । କନକ ମଧ ପଛେ ଉଠି ପଡ଼ୁଥିଲା, ରଙ୍ଗୀ ତା' କାନି ଧରି ପକାଇ କହିଲା, "ନୂଆ'ଉ, ମୋ ମୁଣ୍ଡ ଖାଇବ, କୁଆଡ଼େ ଯା ନାହିଁ । ତମେ ଏଠି ରହ, ଆଉ କେହି ରହିବା ଦରକାର ନାହିଁ ! ଆଉ ତମ ଭାଇଙ୍କୁ କହ, ସେ ଡରିବେ ନାହିଁ, ମୁଁ କେଉଁ ତାଙ୍କୁ ବା' ହବାକୁ ମଙ୍ଗିବି ନାହିଁ ।" ଏହା କହି ଅତି ବିକଳ ଅଥଚ କଠିନଭାବରେ କନକକୁ କୁଣ୍ଢାଇ ଧଇଲା । ନୀଳୁବାବୁ କ'ଣ ବୁଝିଲେ, ହଠାତ୍ କନକ ମନା କରୁଁ କରୁଁ ସେଠାରୁ ବାହାରି ଚାଲିଗଲେ । ଥରେ ମାତ୍ର ପଛକୁ ଅନାଇ ଦେଖିଲେ, କି ବେଦନା କି ମିନତିପୂର୍ଣ୍ଣ କନକର ଦୃଷ୍ଟି । କ୍ଷଣକେ ପୁଣି ମୁହଁ ମୋଡ଼ିଦେଇ ଚାଲିଗଲେ । କନକ ହତାଶ ହୋଇ ବସିପଡ଼ିଲା । ରଙ୍ଗୀ ମଧ କନକ କୋଡ଼ରୁ ଉତ୍ସୁକ ନେତ୍ରରେ ମୁହଁ କାଢ଼ି ଗମ୍ଭୀରଭାବରେ ଘରୁ ବାହାରି ଯାଉଥିବା ନୀଳୁଙ୍କ ଆଡ଼କୁ ଥରେମାତ୍ର ଚାହିଁ, ହଠାତ୍ ଉଠିବସି, ଦୁଇ ହାତରେ ନିଜ ମୁଣ୍ଡକୁ ବାଡ଼େଇବାକୁ ଲାଗିଲା । କନକ କୌଣସିମତେ ତାକୁ ଧରି ନିଜ ଛାତି ଉପରକୁ ଆଉଜାଇ ଆଣିଲାରୁ, ଅତି କରୁଣ, ଅନୁତାପଦଗ୍ଧ ସ୍ୱରରେ କହିଲା, "ନୂଆ'ଉ ମୁଁ ନ ମରି ଯା ବଞ୍ଚିଚି ! ଛି, ଛି ! ଏ ଜଳଜଳା ଜୀବନ କ'ଣ ସହଜେ ଯିବ ?" କନକ ସାନ୍ତ୍ୱନା ଦେବାରୁ କହିଲା, "ସତେ କ'ଣ ନୂଆ'ଉ ମୁଁ ତାଙ୍କୁ ଡାକୁଥିଲି ନା ? ଭାଇଙ୍କ ଆଗରେ ? ଛି, ଛି- ଏ ପୋଡ଼ା ଜୀବନ ବାହାରି ଯାଉନାହିଁ କାହିଁକି । ଏ ପୋଡ଼ା ମୁହଁ ଆଉ ମୁଁ ଦେଖାଇବି କେମିତି !" ଏହା କହି ବିଚାରୀ ଅସ୍ଥିର, ଅସଂଯତ ଭାବରେ ତା' ସ୍ୱେଦସିକ୍ତ ପାଣ୍ଡୁର ମୁଖଟିକୁ ନୂଆବୋଉଙ୍କ କୋଡ଼ ଭିତରେ ପୂରାଇ ବିଛଣା ଉପରେ ଲୋଟି

ହୋଇ ପଡ଼ିଲା । ମୁଣ୍ଡର ମୁକ୍ତକେଶରାଶି ସାଙ୍ଗେ ସାଙ୍ଗେ ଚାରିଆଡ଼େ ମେଲିଯାଇ ତା'ର ଗଭୀର ଲଜ୍ଜାକୁ ଘୋଡ଼ାଇ ପକାଇଲା ପରା !

+ + + + +

ନିଧିବାବୁ ଥକ୍କାହୋଇ କାନ୍ଥକୁ ଆଉଜି ପିଣ୍ଡାଟି ଉପରେ ଯେମିତି ବସି ପଡ଼ିଥିଲେ, ସେମିତି ବସିଥାନ୍ତି । ଅନେକକ୍ଷଣ ପରେ କନକ ରଙ୍ଗୀକୁ ଶୁଆଇ ଧୀରେ ଧୀରେ ଦୁଆର ଖୋଲି ବାହାରିଲା, ସେତେବେଳକୁ ପ୍ରାୟ ରାତି ଆସି ପାହିଲାଣି । ନିଧିବାବୁ ଝାଡ଼ିଝୁଡ଼ି ହୋଇ ଉଠି ଅନିଶ୍ଚିତ ଭାବରେ ଛିଡ଼ା ହୋଇ ରହିଲେ—କନକ ଆଡ଼କୁ ଆଉ ଚାହିଁଲେ ନାହିଁ । କନକ ତାଙ୍କ ନିକଟକୁ ଯାଇ ନୈରାଶ୍ୟପୂର୍ଣ୍ଣ ସ୍ୱରରେ ପଚାରିଲା, ''ନୀଳୁଭାଇ କୁଆଡ଼େ ଗଲା ?'' ନିଧିବାବୁ ସ୍ଥିରଭାବରେ କହିଲେ, ''ସେଥିରୁ କ'ଣ ଲାଭ । ସେ ଆଉ ଏଠିକି ଆସିବ ନାହିଁ !'' ''ଆସିବ ନାହିଁ ? କି, କେମିତି ଜାଣିଲ ?'' ''ମୋତେ ସେ ସେତକ କହିକରି ଯାଇଚି ।'' ସ୍ୱାମୀ-ସ୍ତ୍ରୀ କିଛିକ୍ଷଣ ମୌନ ହୋଇ ରହିଲେ । କନକ ଏଇଆ ବି ଭୟ କରୁଥିଲା । ନିଧିବାବୁ ପଚାରିଲେ, ''ତମକୁ ସେ କ'ଣ କହିଲା କିଛି ?'' କନକ ମନେ ମନେ ଗୋଟାଏ ଅନ୍ୟାୟ ଅଭିମାନ କରି କାନ୍ଦିବାର ଉପକ୍ରମ କରୁଥିଲା; ଏ କଥାରେ ଫୁଲି ଫୁଲି କାନ୍ଦି ଉଠିଲା । ନିଧିବାବୁ ସାନ୍ତ୍ୱନାର ଚେଷ୍ଟା ମାତ୍ର ନ କରି ଗମ୍ଭୀର ଭାବରେ କହିଲେ, ''ନୀଳୁର କିଛି ଦୋଷ ନାହିଁ ତ-ନା, ନା ! ହାୟ, ସେ ଯା ଆମ ଉପରେ ଏତେ ରାଗ ରଖିକରି ଗଲା !'' କନକ କାନ୍ଦୁ କାନ୍ଦୁ ବାଧା ଦେଇ କହିଲା, ''କାହାରି ଉପରେ ତା'ର ରାଗ ନାହିଁ । ମୁଁ ଜାଣେ, ଖାଲି ମୋରି ଉପରେ ତା'ର ସବୁ ରାଗ ।'' ନିଧିବାବୁଙ୍କ ଆଖିରେ କିପରି ଗୋଟାଏ ମଳିନ ଜ୍ୟୋତି ଦେଖାଗଲା । ସେ କହିଲେ ଗମ୍ଭୀର ଓ ଉଚ୍ଚ କ'ଣ୍ଠରେ—''ତା'ର ରାଗିବାର କଥା ତ-ତମର ଯଉଁ ବୁଦ୍ଧି ।'' କନକ ଆତ୍ମରକ୍ଷା ଛଳରେ କହିଲା, ''କି, ନୀଳୁଭାଇ ମୋତେ ଏପରି ଠକିବ, ମୁଁ କ'ଣ ଜାଣିଥିଲି ?'' ନିଧିବାବୁ ହସି ଉଠିଲେ, କହିଲେ ''ନୀଳୁଭାଇ ତମୁକୁ ଠକିଲା, ନାହିଁ ? ହା-ହା-ହା ।'' ଏହା କହି ନିଧିବାବୁ ଅଧିକତର ବେଗରେ ହସିବାକୁ ଲାଗିଲେ ।

ଲଜ୍ଜିତ, ବ୍ୟଥିତ ହୋଇ କନକ ସେଠାରୁ ପଳାଇଗଲା । ନିଧିବାବୁଙ୍କ ହସ ସେଥିରେ ବି ବନ୍ଦ ହେଲାନାହିଁ ।

+ + + + +

# ଚତୁର୍ଥ ଖଣ୍ଡ

# ମନେ ମନେ

## (୧)

ପନ୍ଦର—କୋଡ଼ିଏ ଦିନ ମଧ୍ୟରେ ରଙ୍ଗୀ ସମ୍ପୂର୍ଣ୍ଣ ସୁସ୍ଥ ହୋଇ ଉଠିଲା । ତା' ଦେହର ପୂର୍ବ ଅବସ୍ଥା ଓ ବର୍ତ୍ତମାନ ଅବସ୍ଥା ଭିତରେ ପ୍ରଭେଦ ନାହିଁ କହିଲେ ଚଳେ, କିନ୍ତୁ ତା' ମୁହଁଟିରେ ସ୍ୱାସ୍ଥ୍ୟର ଉଜ୍ଜ୍ୱଳ କାନ୍ତିଟିକକ ନାହିଁ, ଆଖିଯୋଡ଼ିକର ସେ ଦୀପ୍ତି ନାହିଁ- ଗୋଟାଏ ଗଭୀର ଅବସାଦ ଯେପରି ତା' ଅଙ୍ଗପ୍ରତ୍ୟଙ୍ଗକୁ ଢ଼ାଙ୍କି ରଖିଛି । ଦୃଷ୍ଟି ସବୁବେଳେ ତଳକୁ, ଅଙ୍ଗପ୍ରତ୍ୟଙ୍ଗରେ ସ୍ଫୁର୍ତ୍ତିହୀନତା, ମନରେ ସଦା ଜାଗ୍ରତ ଗୋଟାଏ ଅନିଶ୍ଚିତ ଭୟ; କିପରି ଗୋଟାଏ ଦୁର୍ବିସହ ଭାର ଯୋଗୁଁ ତା'ର ମୁଣ୍ଡଟି ଯେପରି ଆଜି ଲଇଁପଡ଼ିଲାଣି । କିନ୍ତୁ ସବୁଥିରେ ଗୋଟାଏ ଦୃଢ଼ ସଂଯମ, ଗୋଟାଏ ସୁକଠିନ ବର୍ମାବୃତ ଶକ୍ତିର ଆଭାସ ମିଳୁଅଛି ।

ପାଠକେ, ଘୋର ଝଡ଼ବେଳେ ଗୋଟାଏ ଉନ୍ନତ ବୃକ୍ଷର ଅବସ୍ଥା ପର୍ଯ୍ୟବେକ୍ଷଣ କରି ଦେଖିବେ, -ସେ କିପରି ତାହାର ସ୍ୱଭାବଗାମ୍ଭୀର୍ଯ୍ୟ ଛାଡ଼ି, ବାତ୍ୟାବିତାଡ଼ିତ ହୋଇ ଛିନ୍ନ ଭିନ୍ନ ଅବସ୍ଥାରେ, କେତେବେଳେ ଧରାତଳର, କେତେବେଳେ ବା କ୍ଷୁଦ୍ରାକ୍ଷୁଦ୍ର ନିର୍ବିଚାରରେ ନିକଟସ୍ଥ ବୃକ୍ଷଲତାର ଆଶ୍ରୟ ଘେନି ବୁଲୁଛି । ପୁଣି ଦେଖିବେ, —ଝଡ଼ର ଅବସାନରେ ବୃକ୍ଷଟି କିପରି ବିକଳ ଭାବରେ ତାହାର ଲଜ୍ଜାନମ୍ର କ୍ଷତବିକ୍ଷତ ଅଙ୍ଗପ୍ରତ୍ୟଙ୍ଗକୁ ଗୋଟାଇ ଆଣି ତା'ର ସେହି କ୍ଷଣିକ ଅସଂଯମର ନିଭୃତ ପ୍ରାୟଶ୍ଚିତକରୁଛି । ଆକସ୍ମିକ ଉତ୍ତେଜନାର ଉଦ୍ଦାମ ଚାଞ୍ଚଲ୍ୟ ତାକୁ ଭୂ-ତଳଶାୟୀ କରିପାରିନାହିଁ —ତା'ର ଉଚ୍ଚ ଶିର ଉଚ୍ଚ ରହିଛି । ଅଧୁନା ତା'ର ଲଜ୍ଜାର ପରାଭବ, ତା'ର ଜୟର ଲଜ୍ଜା, ଉଭୟେ ମିଳି ତାକୁ ବକ୍ର କରିବାକୁ ଚାହୁଁଛନ୍ତି । ଆଉ ମିଳାଇ ଦେଖିବେ-ରଙ୍ଗୀର ଅବସ୍ଥା ଆଜି ଠିକ୍ ସେହିପରି ।

ରଙ୍ଗୀର ବର୍ତ୍ତମାନ ପ୍ରଧାନ ଭୟ—ନୀଳୁବାବୁ ତ ଏ ବସାକୁ ପୂର୍ବପରି ଆସିବେ, ଯିବେ, ଏଥିରେ ସେ ଏଠି ଚଳିବ କିପରି । ତା'ର ମନେ ହେଉଛି, ନୀଳୁବାବୁର ଛାଇ ପଡ଼ିଲେ, କି ତା' କଣ୍ଠସ୍ୱର ତା' କର୍ଣ୍ଣକୁ ଆସିଲେ ସେ ଏଥର ନିଶ୍ଚୟ ମରିଯିବ ।

ତଥାପି କାହିଁ-ଆଜିକୁ ପଚିଶଦିନ ହୋଇଗଲା, ଦିନେହେଲେ ତ ନୀଲୁବାବୁ ଏ ବସାକୁ ଆସିଥିବାର ଅଭାସ ଟିକିଏ ହେଲେ ସେ ପାଉନାହିଁ । କେତେବେଳେ ଭାବୁଛି-ଆସୁଥିବେ ସେ ଜାଣି ପାରୁନାହିଁ, ପୁଣି କେତେବେଳେ ଭୟ ସହିତ ଭାବୁଛି-ନାଇଁ, ଆଉ ଆସୁନାହାଁନ୍ତି ପରା ! ନିଜ ମନକୁ ସେ ଯଥାସମ୍ଭବ ଶାସନ କରିଛି, କହୁଛି, ''ସେ ଆସିଲେ କେତେ ନ ଆସିଲେ କେତେ-ତା'ର ସେଥିରେ କ'ଣ ଅଛି !'' କିନ୍ତୁ ବାଇୟା ମନ କି ଭୁଲେ । ଅତି ଦମ୍ଭରେ ସେ ନିଜ ବିଶ୍ୱାସଘାତକ ମନ ସହିତ ଯୁଦ୍ଧ କରି ବସେ; କିନ୍ତୁ ଅଜ୍ଞାତରେ କେତେବେଳେ ସେହି ନୀଲୁକଥା ହିଁ ଭାବି ବସେ ଯେ, ଘଡ଼ିକ ପରେ ହଠାତ୍ ନିଦରୁ ଉଠିଲା ପରି ଉଠିଦେଖେ, ସେ ପୁଣି ସେହି ଚିନ୍ତାରେ ମଗ୍ନ । ସମୟ ସମୟରେ ଏପରି ବି ହୁଏ, ଯାହାର ଆସିବା ପାଇଁ ଏତେ ଭୟ, ତାହାରି ଆସିବା ସମୟ ହେଲେ ସେ ଚକିତ, ଉତ୍ସୁକଭାବରେ ଭୀତିବିହ୍ୱଳ ଆଶାନ୍ୱିତ ଚରଣରେ ଏ ଘର, ସେ ଘର ବି ହେଉଥାଏ । ଚାହିଁ ଚାହିଁ ଯେତେବେଳେ ନିରାଶ ହୁଏ, ସେତେବେଳେ ମର୍ମାନ୍ତିକ ଅନୁତାପରେ ନିଜକୁ ତିରସ୍କାର କରେ, ଶାସନ କରେ । ଏତିକି ସୌଭାଗ୍ୟ ତା'ର ଯେ, ତା'ର ଏ ମନୋଭାବ ବାହାରେ ପ୍ରକାଶ ହୋଇ ପଡ଼େନାହିଁ । ସେଯୋଗେ ସେ ଠକି ଶିଖିଲାରୁ ନିଜକୁ ନିଜେ ପ୍ରସ୍ତୁତ କରି ରଖିଛି, କିନ୍ତୁ ନୀଲୁ ଚିନ୍ତା ତାକୁ କୌଣସିମତେ ଛାଡ଼ିବାକୁ ନାହିଁ ।

ରଙ୍ଗୀ ଆଜି ବଡ଼ିସକାଳୁ ଉଠି, କାମଧନ୍ଦା ସାରି, କନକ ଘରକୁ ଯାଇ ଦେଖିଲା—କନକ ଗୁମ୍ ହୋଇବସିଛି, ଗୋଟାଏ ହାତରେ ତା'ର ଖଣ୍ଡେ ଖୋଲାଚିଠି, ଅନ୍ୟ ହାତରେ ଗୋଟାଏ ବନ୍ଦ ଲଫାପା-ଡାକରେ ଆସିଥିଲା ପରି ଲାଗିଲା । ରଙ୍ଗୀକୁ ଦେଖି କନକ ଖୋଲା ଚିଠି ଖଣ୍ଡିକ ତା' ହାତକୁ ବଢ଼ାଇ ଦେଲା । ରଙ୍ଗୀ ପଢ଼ି ଦେଖିଲା, ପୁରୀରୁ ଗଉରୀଅପା ଲେଖିଛି-ଆଜି ଦିନଗାଡ଼ିରେ ସେମାନେ ସମସ୍ତେ ଅର୍ଥାତ୍ ବୋଉ, ଗଉରୀ ନିଜେ ଓ ନିଧିବାବୁ ଆସି କଟକରେ ପହଞ୍ଚିବେ । ପଢ଼ିସାରି ରଙ୍ଗୀ ଭୟବିହ୍ୱଳ ହେଲାପରି ସେହିଠାରେ ବସିପଡ଼ି, ଗଭୀର ନିଃଶ୍ୱାସଟିଏ ପକାଇ କହିଲା, ''ନୂଆ'ଉ, ମୁଁ କ'ଣ କରିବି ।'' କନକ କି ଘୋର ଚିନ୍ତାରେ ବିଭୋଳ ଥିଲା, ସେ ରଙ୍ଗୀର କଥା ପ୍ରତି ଆଦୌ କର୍ଣ୍ଣପାତ କଲାନାହିଁ, ଆହୁରି ଏକ ଧ୍ୟାନରେ ପୂର୍ବୋକ୍ତ ବନ୍ଦ ଚିଠିଟିର ଶିରୋନାମା ପ୍ରତି ଅନାଇ ରହିଲା । ରଙ୍ଗୀର ମଧ କନକର ମନୋଭାବ ଲକ୍ଷ୍ୟକଲା ଭଳି ମନର ଅବସ୍ଥା ନଥିଲା । ସେ ବି ନିଜ ଚିନ୍ତାରେ ନିଜେ ବିଭୋଳ ହୋଇ ରହିଲା । କିଛିକ୍ଷଣ ପରେ କନକ ହଠାତ୍ ଉଠି ଲଫାପାଟି ରଙ୍ଗୀହାତରେ ଦେଇ କହିଲା, ''କହିଲ ନୂଆ'ଉ-ନା ନା, ରଙ୍ଗୀ, ଏ ଚିଠି କୋଉଠୁ ଆସିଚି, କିଏ ଲେଖିଚି ?''

ରଙ୍ଗୀ ଚିଠିଖଣ୍ଡିକ ନେଇ ଏପଟ ସେପଟ ଦେଖି କନକ ହାତକୁ ଫେରାଇ ଦେଇ କହିଲା, "ମୁଁ ତ ଜାଣି ପାରୁନାହିଁ, ନୂଆ'ଉ, ଏଟା ତ ଭାଇଙ୍କ ନାଁରେ ଆସିଚି । ହଁ, ନୂଆ'ଉ, କିଏ ଦେଇଚି ?" କନକ ଅଳ୍ପ ଅଳ୍ପ ହସୁଥାଏ । କହିଲା, "ଚିହ୍ନ ପାରିଲନାହିଁ ? ଏଟା ନା-ନାଇଁ, ନାଇଁ, କେହି ନା-ମୁଁ କେମିତି ଜାଣିବି ।" ଏହା କହି କନକ ମନେ ମନେ ଛିଭକାମୁଡ଼ି ରହିଲା ଓ ଚିଠିଖଣ୍ଡିକ ନେଇ ଟେବୁଲ ଉପରେ ରଖିଦେଲା । ରଙ୍ଗୀ ଭାଧ ନିଜ ଅବସ୍ଥା-ଚିନ୍ତାରେ ବ୍ୟସ୍ତ ଥିବାରୁ କନକର ଏ ଭାବ-ପରିବର୍ତ୍ତନ ଲକ୍ଷ୍ୟ କଲା ନାହିଁ, ନ ହେଲେ, ପ୍ରକୃତ ଘଟନାଟା ଜାଣିବାକୁ ତାକୁ ବିଳମ୍ବ ହୋଇନଥାନ୍ତା ।

ଚିଠି ଖଣ୍ଡିକ ନୀଲୁଙ୍କର ।

ବାସ୍ତବିକ, ନୀଲୁବାବୁ ସେ ଦିନଠୁଁ ଆଉ ଦେଖାନାହାନ୍ତି—ଦେଖା ତ ଦୂରର କଥା, ତାଙ୍କର କୌଣସି ଖବର ବି କନକ ପାଇ ନାହିଁ । ସେ କଟକରେ ଅଛନ୍ତି, କି ଅନ୍ୟ କୁଆଡ଼େ ଗଲେଣି, ଏହା ବି କନକକୁ ଏ ପର୍ଯ୍ୟନ୍ତ ଜଣା ନଥିଲା । ଆଜି ତାକରେ ତାଙ୍କ ହାତଲେଖା ଚିଠିଖଣ୍ଡ ଦେଖି ସେ ଭାବୁଛି ଯେ, ସେ ଏଠାରେ ନାହାନ୍ତି । ଇତିପୂର୍ବରୁ ଦିନକୁ ଶହେ ଥର ନୀଲୁଙ୍କ କଥା ତା'ର ମନେ ପଡ଼ିଲେ ସୁଦ୍ଧା, ସେ କାହିଁକି କେଜାଣି ତାଙ୍କ ବିଷୟରେ କାହାରିକି କିଛି ପଚରାପଚରି କରିନାହିଁ । ସେଇ-ସେ ଦିନର ଘଟନା ପରଠୁଁ ଆଜିକୁ ପଚିଶ ଦିନହେଲା ନିଧିବାବୁଙ୍କ କଥା ତ ଛାଡ଼ିଦିଅ ଚାକରବାକର ପର୍ଯ୍ୟନ୍ତ କାହାରିକୁ ନୀଲୁବାବୁଙ୍କ ପ୍ରସଙ୍ଗରେ ପଦେ କଥା କହିବାକୁ ସୁଦ୍ଧା ସେ ସାହସ କରିନାହିଁ । କି ଗୋଟାଏ କ୍ଷୁଦ୍ରତା ଓ ନ୍ୟୂନତା ତା' ମନକୁ ନୂଆଇଁ ଦେଇ ଯାଇଛି ଯେ, ସେ ସେହିଦିନଠାରୁ ନିଜକୁ ଘୋର ଅପରାଧୀ ବୋଲି ଭାବିଛି । କି ପ୍ରକାର ଯେ ତା'ର ଅପରାଧ, ସେ ନିଜେ ତାହା ବୁଝିନାହିଁ; ଅଥଚ ନୀଲୁଙ୍କ ବିଷୟରେ ସେ ଆଉ ପାଟି ଫିଟାଇବାକୁ ସାହସ କରୁନାହିଁ । ଏ ବିଷୟରେ ନିଧିବାବୁ ମଧ ସେହିଦିନଠାରୁ ଏକାବେଳକେ ମୂକ ହୋଇଯାଇଅଛନ୍ତି । ସେଯୋଗେ ମଧ ଆହୁରି ତା'ର ସାହସ କମିକମି ଯାଇଛି । ସେ ବୁଝିପାରିଛି, ନିଧିବାବୁ ଓ ତା' ମଧରେ ସେହି ଦିନଠାରୁ ଗୋଟାଏ କି ବ୍ୟବଧାନ କ୍ରମେ ଘନୀଭୂତ ହୋଇ ଆସୁଛି । ସେ ଦିନର ନିଧିବାବୁଙ୍କ ହସ ତା' ମନରୁ ଯାଇନାହିଁ । ଏଣେ ତାଙ୍କର ତା' ପରର ବ୍ୟବହାର ତା'ର ଆତ୍ମଗ୍ଲାନିକୁ ବଢ଼ାଇବା ସଙ୍ଗେ ସଙ୍ଗେ ତା'ର ଆତ୍ମାଭିମାନକୁ ମଧ ଉଦ୍ଦୀପିତ କରିଦେଇଛି । ନୀଲୁବାବୁ ଉପରେ ତ ତା'ର ଷୋଳପଣ ଅଭିମାନ; ତା' ଉପରେ ପୁଣି ସ୍ୱାମୀଙ୍କର ଏ ବ୍ୟବହାରରେ ତା' ମନରେ ଭୟ ସଙ୍ଗେ ସଙ୍ଗେ ଲଜ୍ଜା ଓ ଅଭିମାନ ଉଭୟ ଜାଗିଉଠି, ବର୍ତ୍ତମାନ

ଭୀଷଣ ଆକାର ଧାରଣ କରି ପକାଇଅଛି । ଏ କେତେଦିନ ଦୁଇଜଣଙ୍କ ମଧ୍ୟରେ ଗାର୍ହସ୍ଥ୍ୟ ବ୍ୟାପାର ଛଡ଼ା ଅନ୍ୟ ବିଷୟରେ କଥାବାର୍ତ୍ତା ଆଦୌ ହୋଇନାହିଁ କହିଲେ ଚଳେ । ଫଳରେ ଆଜିକୁ ଦୁଇଦିନ ପୂର୍ବେ ନିଧିବାବୁ ପୁରୀ ଗଲାବେଳକୁ, ଦୁଇଜଣଙ୍କର ସାକ୍ଷାତ ହେବାର ମଧ୍ୟ ଆବଶ୍ୟକ ହୋଇନାହିଁ । ଆଉ, ଆଜି ପୁରୀରୁ ଏ ପତ୍ର-ଗଉରୀଠାରୁ । ନିଧିବାବୁ ତ ସ୍ୱଚ୍ଛନ୍ଦରେ ସେହି ବିଷୟ ଲେଖିପାରିଥାନ୍ତେ । ସେଇଥିଯୋଗେ ଆଜି କନକ ନିଜକୁ ସ୍ୱାମୀଙ୍କ ନାମରେ ଆସିଥିବା ପତ୍ର ଖୋଲିବାର ଅଧିକାରରୁ ବଞ୍ଚିତ ମନେକଲା—ଯେଉଁ ପତ୍ର ପୁଣି ସେ ସ୍ପଷ୍ଟ ବୁଝିପାରୁଛି, ତାହାରି ନୀଳୁଭାଇଙ୍କଠାରୁ ହିଁ ଆସିଛି ।

ଲଜ୍ଜାରେ, ଅପମାନରେ ତାକୁ ଆଜି ଜୀବନ ବିଷ ପରି ଲାଗୁଛି । କେବଳ ଗୋଟାଏ କଠିନ ଅଭିମାନ ତାକୁ ଟେକିଧରି ଚଳାଇ ନେଉଛି ।

ରଙ୍ଗୀ ଏ ସବୁର କିଛି ଜାଣେନାହିଁ । ସେ ବା କିପରି ଜାଣିବ, —ତା' ନିଜ ଚିନ୍ତା ତ ତାକୁ ଖାଇଯାଉଛି । ବୋଉ ଓ ଗଉରୀଅପା ସଙ୍ଗରେ ଦିନେ ତ ନିଶ୍ଚୟ ଦେଖା ହେବ । ସେଯୋଗେ ସେ ନିଜକୁ ଆଗରୁ ଅନେକ ପ୍ରକାରେ ପ୍ରସ୍ତୁତ କରି ରଖିଥିଲେ ସୁଦ୍ଧା, ଆଜି ତାଙ୍କ ଆସିବା ଖବରରେ ତା' ମୁଣ୍ଡରେ ବଜ୍ର ପଡ଼ିଲା ପରି ତାକୁ ବୋଧହେଲା । କିଛିକ୍ଷଣ ଚୁପ୍ ରହି ସେ ପୁଣି କନକକୁ ଧରି କହିଲା, "ନୂଆ'ଉ, ମୁଁ ଆଜି କ'ଣ କରିବି, ମୋତେ କହି ଦିଅ ।" କନକ ଟିକିଏ ହସି—ଏ ଅବସ୍ଥାରେ ତା' ମୁହଁରୁ ହସ କିପରି କୁଆଡୁ ଆସିଲା କେଜାଣି, ହସିବାର ତ କୌଣସି କାରଣ ନ ଥିଲା—କହିଲା, "ତମ ଭାଇ ଆଗେ ବୋଉଙ୍କୁ କିଛି କହିଚନ୍ତି କି ନା, ଦେଖ ।" ରଙ୍ଗୀ କହିଲା, "ଆଉ ଗଉରୀଅପା ?" "ତାଙ୍କୁ ଏତେ କ'ଣ ଡର ?" "ମଲା, ତାକୁ ତ ମୋର ରାଇଜ ଡର; ବୋଉକୁ କ'ଣ ଏତେ ଡର କି ! ନ ହେଲେ -ଯା, ଯା । ନୂଆ'ଉ, ମୁଁ କ'ଣ କରିବି ସତେ ।" "ନା, ତେମେ ଇମିତି ଛାନିଆ ହୁଅନାହିଁ । ଆସନ୍ତୁ ଆଗେ, କ'ଣ ହଉଚି ଦେଖାଯାଉ ।" "ନା, ନା ତେମେ ଦେଖିବ, ସେ ସବୁ ଆସିଲା ବେଳକୁ ମୁଁ କେଉଁଠି ଥିମି । ସେ କୁଠରୀ ଘରେ କବାଟ ଦେଇକରି-" "ଯାଃ, ଏତେ ଡର କାହିଁକି ମ । କଉଁ କଥାକୁ ଏତେ ଡର ? କଣ କଲ କି ତମେ- ଚୋରି, ନା ନାରୀ, ନା କ'ଣ । ଦେଖୁନା- ମୁଁ କେତେ ଡରୁଚି ।" ଏହା କହି କନକ ନିଜ ଗର୍ବିତ କଥାରେ ନିଜେ ଫୁଲି ଉଠି ସେଠାରୁ ସଦମ୍ଭରେ ବାହାରି ଚାଲିଗଲା; ରଙ୍ଗୀ ଥକ୍କା ହେଲା ପରି ତା' ଆଡ଼କୁ ଅନାଇ ରହିଗଲା । ସେ କୌଣସିମତେ ହଠାତ୍ ବୁଝି ପାରିଲା ନାହିଁ,

କନକର ତା' ପରି ଡରିବାର କ'ଣ କାରଣ ଅଛି । ସେ ଖାଲି ଆକୁଳ ହୋଇ ସେହି ବିଷୟ ଭାବିବାକୁ ଲାଗିଲା ।

ସ୍ୱାମୀ-ସ୍ତ୍ରୀଙ୍କ ମଧ୍ୟରେ ଏ ମତାନ୍ତର ବିଷୟଟି ଟିକିଏ ଖୋଲିକରି ନ କହିଲେ ଚଳିବ ନାହିଁ । ନିଧିବାବୁ ଓ କନକ ଏ ଦୁଇଜଣଙ୍କ ଗାର୍ହସ୍ଥ୍ୟ ଓ ଦାମ୍ପତ୍ୟ ଜୀବନ ବିଷୟରେ ଆଭାସମାତ୍ର ଦିଆହୋଇଅଛି । କନକ ହୃଦୟରେ ନିଧିବାବୁଙ୍କ ସ୍ଥାନ କେଉଁଠି ଏ ବିଷୟରେ ପାଠକେ ସନ୍ଦିହାନ ହେବା ସ୍ୱାଭାବିକ । ତେବେ ଏତିକି କହିଲେ ଯଥେଷ୍ଟ ହେବ ଯେ କନକ ନିଜ ହୃଦୟକୁ ପ୍ରାଣପଣ ଯତ୍ନରେ ସ୍ୱାମୀପ୍ରେମ ଓ ସ୍ୱାମୀ ସେବାରେ ମଣାଇଥିଲା ଓ ଗୋଟାଏ ଆଦର୍ଶ ଉପରେ ଅକ୍ଷୁଣ୍ଣ ବ୍ରତ ଧାରଣ କରି ସାମାନ୍ୟ କଥାରେ ମଧ ସେଥିରୁ ନିଜକୁ ବିଚଳିତ ହେବାକୁ ଦେଇନଥିଲା । ଆଉ ନିଧିବାବୁ, —ସେ ତ କନକଗତପ୍ରାଣ ହୋଇ ଆଜିଯାଏଁ ବିବାହିତ ଜୀବନର ପ୍ରାୟ ଦେଢ଼ବର୍ଷ କାଳ କଟାଇଥିଲେ । ବିବାହର ଅତି ଅଳ୍ପ କାଳ ପରେ କନକର ନୀଳୁଙ୍କ ପ୍ରତି ମନୋଭାବ ତାଙ୍କର ସୁ-ଗୋଚର ହୋଇଥିଲେ ସୁଦ୍ଧା, ସେଯୋଗେ କନକକୁ ଦୋଷ ଦେବା ତ ଦୂରେ ଥାଉ, ସେ ତାକୁ ହୃଦୟର ସହାନୁଭୂତି ଛଡ଼ା ଆଉ କିଛି ଦେଇନଥିଲେ । ତା' ଛଡ଼ା ଅବ୍ୟକ୍ତ ଭାବରେ ଉଭୟଙ୍କ ମଧ୍ୟରେ ଗୋଟାଏ ସମ୍ପୂର୍ଣ୍ଣ ବୁଝାପଡ଼ା ହୋଇଯାଇଥିଲା । ନିଧିବାବୁ କନକର ସ୍ନେହ, ଯତ୍ନ, ଆଦର ଓ ସେବା ଯେଉଁ ପରିମାଣରେ ପାଉଥିଲେ, ସେଥିରେ ସେ ପରମ ପରିତୃପ୍ତ ହୋଇ ତା'ର ଚରିତ୍ରବଳକୁ ପ୍ରଶଂସା ନ କରି ରହିପାରୁନଥିଲେ । ଫଳରେ ଉଭୟଙ୍କ ଯତ୍ନ ଓ ଚେଷ୍ଟାରେ ଦାମ୍ପତ୍ୟ ପ୍ରେମର ଅନ୍ତରାୟ ସେହି ନୀଳୁଙ୍କୁ ହିଁ ଦୁହେଁ ମଝିରେ ରଖି ଏକେଟେଦିନ ଅବିଚ୍ଛିନ୍ନ ସୁଖ ଭୋଗକରି ଆସିଥିଲେ ।

ଏଇ ତାଙ୍କର ପ୍ରଥମ ମତାନ୍ତର । ଇତିପୂର୍ବରୁ କଳହ ତ ଦୂରର କଥା, ଉଭୟଙ୍କ ମଧ୍ୟରେ ସାମାନ୍ୟ ପ୍ରେମାଭିମାନ ପର୍ଯ୍ୟନ୍ତ ହୋଇନାହିଁ । ଏଥିର କାରଣ ସହଜରେ ଅନୁମେୟ । ଉଭୟେ ଧରି ବସିଥିଲେ କର୍ତ୍ତବ୍ୟର ମାପକାଠି, ଯାହା ଜଣକର ପ୍ରକୃତ ପ୍ରେମମୟ ହୃଦୟକୁ ଅନ୍ୟର ପୂର୍ବାଧିକୃତ ସହଜ ପ୍ରେମହୀନ ହୃଦୟ ସହିତ ଏକ ସମାନ କରି ଆସୁଥିଲା । ଏପରି କ୍ଷେତ୍ରରେ ମତାନ୍ତର ସମ୍ଭବ ନୁହେଁ, ଯେପର୍ଯ୍ୟନ୍ତ କେହି ସେ ମାପକାଠିରେ ଦୋଷୀ ବୋଲି ପ୍ରମାଣିତ ନ ହୋଇଛନ୍ତି ।

ଅବଶ୍ୟ ନିଧିବାବୁ ସମୟ ସମୟରେ ଭାବୁଛନ୍ତି, ସେ ଠିକ୍ ସଚ୍ଚା ମାଲଟି ପାଇ ନାହାନ୍ତି ବୋଲି, କିନ୍ତୁ ସମସ୍ତ ଅବସ୍ଥା ବିଚାରରେ ଓ କର୍ତ୍ତବ୍ୟ ଦୃଷ୍ଟିରେ ଏପରି ଭାବକୁ ସେ ସହଜରେ ଦୂରକରି ଦେଇପାରିଛନ୍ତି । ମାର୍ଜିତ ଶିକ୍ଷିତ ମନରେ ତାଙ୍କର ଏଥିପାଇଁ

କନକ ଉପରେ ଲେଶମାତ୍ର ବିରକ୍ତି ବା ଅଶ୍ରଦ୍ଧା ନଥିଲା । କିନ୍ତୁ ସେଦିନ-ରଙ୍ଗୀର ସେ ଦୁର୍ଘଟଣା ଦିନ-ନୀଲୁ ଯେତେବେଳେ ସବୁ ଘଟନା ବୁଝିପାରି·ଚାଲିଯିବାକୁ ବସିଲେ, ସେ ତାଙ୍କ ବ୍ୟବହାରର ମର୍ମ ବୁଝି ନ ପାରି ତାଙ୍କୁ ପଚାରିଲେ । ଇତିପୂର୍ବରୁ ନିଧିବାବୁ ଓ କନକ ମଧ୍ୟରେ ନୀଲୁ ଓ ରଙ୍ଗୀ ବିଷୟରେ ଯେଉଁ ଚୁକ୍ତି, ଯେଉଁ ଅନୁକ୍ତ ବୁଝାପଡ଼ାଟି ହୋଇଥିଲା ସେ ବିଷୟରେ ଆଭାସ ପୂର୍ବେ ଦିଆଯାଇଅଛି । ସେଯୋଗେ ନିଧିବାବୁଙ୍କର ପୂର୍ଣ୍ଣ ବିଶ୍ୱାସ ଥିଲା ଯେ, କନକ ଅବଶ୍ୟ ନୀଲୁଙ୍କୁ ରଙ୍ଗୀ ବିଷୟ ଅନେକ ଆଗରୁ କହିସାରିଥିବ । କନକ ସେ ଭାର ନେଇଥିଲା ଏବଂ ତା'ର ମଧ୍ୟ କହିବା ଉଚିତ ଥିଲା । କିନ୍ତୁ ନୀଲୁଙ୍କର ଏ ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞତା ସେ ଦିନ ତାଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିବା ସଙ୍ଗେ ସଙ୍ଗେ କନକ ପ୍ରତି ଗୋଟାଏ ସନ୍ଦିଗ୍ଧ ଅଶ୍ରଦ୍ଧା ତାଙ୍କ ମନରେ ଆଣିଦେଇଥିଲା । ମାପକାଠିର ସାହାଯ୍ୟରେ ତଥା ଆଦର୍ଶର ମହୀୟସୀ ଶକ୍ତି ବଳରେ ସେ ଯେଉଁ କ୍ଷୁଦ୍ରତା ଓ ନୀଚ ଧାରଣା ଆଜିଯାଏଁ ତାଙ୍କ ମନରୁ ବିତାଡ଼ିତ କରି ଦେଇପାରିଥିଲେ, ଆଜି ଆଉ ସେଟାକୁ ପରିହାର କରିପାରିଲେ ନାହିଁ । ବଳେବଳେ ତାଙ୍କ ମନରେ ଏହି ନୀଚ ଧାରଣାଟି ମୁଣ୍ଡ ଟେକି ଉଠିଲା ଯେ, ସେ ପ୍ରବଞ୍ଚିତ ହୋଇଛନ୍ତି ଏ କେତେଦିନ - କନକ ଦ୍ୱାରା । ସମୟ ସମୟରେ ତାଙ୍କ ମନରେ କନକ ଏତେ ନୀଚ ହୋଇପାରେ, ଏ ବିଷୟରେ ଯଥେଷ୍ଟ ସନ୍ଦେହ ହେଉଥିଲା ପ୍ରଥମେ ପ୍ରଥମେ, କିନ୍ତୁ ନୀଲୁର ବ୍ୟବହାର ଓ ଶେଷ କଥାଗୁଡ଼ିକ ସେ ଯେତେ ଭାବିଲେ, କନକ ପ୍ରତି ଅଶ୍ରଦ୍ଧାରେ ତାଙ୍କ ମନ ସେତିକି ଭରିଉଠିଲା ଓ ତାଙ୍କର ଆଉ ସନ୍ଦେହ ରହିଲା ନାହିଁ ଯେ, କନକ ଜାଣିଶୁଣି ନୀଲୁଙ୍କୁ ରଙ୍ଗୀ ବିଷୟରେ ଲେଶମାତ୍ର ସୂଚନା ଦେଇନାହିଁ । ଜାଣିଶୁଣି ! ଓଃ, ଅବିଶ୍ୱାସିନୀ ନାରୀ !

ଆଉ କନକ - ସେ ଆଜି ସୁଦ୍ଧା ଜାଣିପାରିନାହିଁ ତା'ର ଦୋଷ କ'ଣ, କେଉଁଥିରେ ସେ ନିଧିବାବୁଙ୍କ ଚରଣରେ ଅପରାଧିନୀ । ନୀଲୁବାବୁଙ୍କ ଅନ୍ତର୍ଦ୍ଧାନ ସଙ୍ଗେ ସଙ୍ଗେ ନିଧିବାବୁଙ୍କର ଏ ଭାବବୈଲକ୍ଷଣ ସେ ଦେଖୁଛି ଓ ମନେ ମନେ ଭୟରେ, ଆତଙ୍କରେ ମୂହ୍ୟମାନ ହୋଇଉଠିଛି । ତା'ର ସମୟ ସମୟରେ ଏପରି ବି ମନେହେଉଛି ଯେ, ସେ ଟିକିଏ ସୁବିଧା ପାଇଲେ ସ୍ୱାମୀଙ୍କ ଗୋଡ଼ ଧରି କାନ୍ଦିକାଟି ପଚାରିବ - ତା'ର ଦୋଷ କ'ଣ; କିନ୍ତୁ ଅଜ୍ଞାତରେ କି ଗୋଟାଏ ଦୁର୍ଭେଦ୍ୟ ପ୍ରାଚୀର ଦୁହିଁଙ୍କ ମଧ୍ୟରେ ସେହିଦିନଠାରୁ କୁଆଡୁ ଆସି ଠିଆ ହୋଇଯାଇଛି ଯେ, ସେ ଭରସି କିଛି କହିପାରି ନାହିଁ, ନା କରିପାରିନାହିଁ । ବିଶେଷତଃ ନିଧିବାବୁଙ୍କର ଛାଡ଼ ଛାଡ଼ ଅଲଗା ଅଲଗା ଭାବ ଓ ଉଦାସ ଆଚରଣରେ ତା'ର ସମସ୍ତ ହୃଦୟଟିକୁ ଓଲଟପାଲଟ କରି ଜାଗିଉଠିଛି ଗୋଟାଏ ଦୁର୍ଜ୍ଜୟ ଅଭିମାନ, ଯାହା ତାକୁ ତା'ର ସାଧୁ ସଂକଳ୍ପ ପଥରେ ଅଗ୍ରସର

କରାଇ ଦେଇନାହିଁ । ଏକା ଥିଲାବେଳେ ସେ ଧୀରସ୍ଥିରଭାବରେ ଭାବେ ଯେ, କଥାଟା କ୍ରମେ ଖରାପ ହୋଇଆସୁଛି - ସଫା ସଫା ଖୋଲାଖୋଲି ହୋଇଯିବା ହିଁ ଭଲ; କିନ୍ତୁ ନିଧିବାବୁଙ୍କ ସମ୍ମୁଖକୁ ଆସିଲେ, ତାଙ୍କ ମୁହଁରେ ସେହି ଉଦାସ ନିର୍ମମ ଭାବଟିକୁ ଦେଖିଲେ, ତା'ର ସବୁ ସଂକଳ୍ପ, ସବୁ ପ୍ରତିଜ୍ଞା କୁଆଡ଼େ ଉଭେଇଯାଏ । ନିଧିବାବୁ ବି ସେ ପ୍ରସଙ୍ଗ ଉଠାଇବା ତ ଦୂରର କଥା, ଅନ୍ୟ କୌଣସି ବିଶେଷ କଥା ବି ସହଜ ଭାବରେ ତାକୁ ଆଜିଯାଏ କହିନାହାନ୍ତି । ଫଳରେ ତାହାର ପୁଣ୍ୟ ସଂକଳ୍ପ ଗତିରୁଦ୍ଧ ଓ ବାଧାପ୍ରାପ୍ତ ହୋଇ ଅନେକବାର ବ୍ୟର୍ଥ ହୋଇଯିବାରୁ ଆଉ ସେ ସଂକଳ୍ପର ଲେଶମାତ୍ର ବି ଆଜି ତା' ମନରେ ନାହିଁ । ଅଜ୍ଞାତରେ ସେ ନିଜକୁ ଟାଣ ଟାଙ୍ଗର କରି ପକାଉଲାଣି ।

ସେ ଆଜିଯାଏ ବୁଝିପାରିନାହିଁ ଯେ, ନୀଳୁକୁ ରଙ୍ଗୀ ବିଷୟ ଆଗରୁ ନ କହିଥିବା ସ୍ୱାମୀଙ୍କ ଚକ୍ଷୁରେ ଏତେ ଦୂଷଣୀୟ ଏବଂ ସେଇଟା ହିଁ ତା'ର ଅପରାଧ ! ଅବଶ୍ୟ ସେ ମନେ ମନେ ନିଜକୁ ଧିକ୍କାର ଦେଉଛି - ରଙ୍ଗୀ ପାଇଁ, ନିଜ ପାଇଁ ଓ ନୀଳୁଙ୍କ ପାଇଁ - କାହିଁକି ସେ ଆଗରୁ ନୀଳୁଙ୍କୁ ଏ ବିଷୟରେ ନକହିଛି ବୋଲି । କିନ୍ତୁ ସେଇଥିଯୋଗେ ଯେ ନିଧିବାବୁଙ୍କଠାରେ ବି ତାକୁ ଆହୁରି ଘୋରତର ଭାବରେ ଅପରାଧିନୀ ହେବାକୁ ହୋଇଛି, ସେଟା ତା' କଳ୍ପନାର ଅତୀତ ! ସମସ୍ତଙ୍କଠାରେ ପ୍ରକୃତରେ ସେ ଦୋଷୀ — ନିଧିବାବୁଙ୍କଠାରେ ବି ସେହି ପରିମାଣରେ, ଯେଉଁ ପରିମାଣରେ ଅନ୍ୟମାନଙ୍କଠାରେ, —ରଙ୍ଗୀର ଦୁଃଖର କାରଣ ବୋଲି । ଏଇଟା ଏଡ଼େ ବଡ଼ ଦୋଷ କିଛି ନୁହେଁ ଯେ, ସେଥିଯୋଗେ କେହି ତା' ଉପରେ ଏଡ଼େ ରାଗ କରିବ । ଦୋଷ କଲେ ଦଣ୍ଡ ଅଛି, ଦଣ୍ଡ ଗ୍ରହଣ କରିବାକୁ ତ ସେ ପ୍ରସ୍ତୁତ ଅଛି । ଅସାବଧାନତା ଓ ଭ୍ରାନ୍ତିର ଏଡ଼େ ଦଣ୍ଡ କ'ଣ ହୁଏ । ସ୍ୱାମୀ ତ ତା'ର ଏପରି ଅନ୍ୟାୟ ତା' ପ୍ରତି କେବେଁ କରିନାହାନ୍ତି । ଏଡ଼େ ଅବିଚାରୀ ତ ସେ ନୁହନ୍ତି ମୂଳରୁ ।

ହଁ, ତା'ର ସେଟା ବଡ଼ ଭୁଲ୍ ହୋଇଯାଇଛି —ନୀଳୁଙ୍କୁ ଆଗରୁ ନ କହିବା । ସେଯୋଗେ ସେ ନିଜକୁ ନିଜେ ମାର୍ଜନା କରିପାରୁନାହିଁ । ଏଡ଼େ ଭୁଲ୍‌ଟା କେଡ଼େ ସହଜରେ ହୋଇଯାଇଛି । ବିବାହ ପ୍ରସଙ୍ଗ ତ ଭାଙ୍ଗି ଯାଇଥିଲା । କଟକ ଆସି ନୀଳୁଙ୍କୁ ଯେତେବେଳେ ସେମାନେ ନିମନ୍ତ୍ରଣ କରି ଆଣି ଆଦରଆପ୍ୟାୟନ କଲେ, ସେତେବେଳେ କ'ଣ ନୀଳୁଙ୍କୁ ପ୍ରାୟ ଏହି ଆଶ୍ୱାସନା ଦିଆଯାଇନାହିଁ ଯେ, ସେଟା ପ୍ରକୃତରେ ଚିରଦିନ ପାଇଁ ଭାଙ୍ଗି ଯାଇଛି ବୋଲି । ସେତେବେଳ କଥାରେ ନ ହେଉ, କାର୍ଯ୍ୟରେ ଓ ବ୍ୟବହାରରେ ତାଙ୍କୁ ତ ସ୍ପଷ୍ଟ ଜଣାଇ ଦିଆଯାଇଥିଲା ଯେ, ଆଉ ରଙ୍ଗୀ ପ୍ରସଙ୍ଗ ଉଠିବ ନାହିଁ । ହଁ, ଏଇ କୌଶଳଟି ଜାଣିଶୁଣି ଅବଲମ୍ବନ କରିବାକୁ ପଡ଼ିଥିଲା; ନହେଲେ ଯେ

ସେ ମୂଳରୁ ଆସିନଥାନ୍ତା । ନୀଲୁଭାଇକୁ ତା'ର କ'ଣ ସେ ଚିହ୍ନି ନାହିଁ । ନିଧିବାବୁ ବି ତ ଏକଥା ଜାଣନ୍ତି । ଏଥିରେ ତାଙ୍କର ମୌନ ସମ୍ମତି ଥିଲା ବୋଲି ତା'ର ବିଶ୍ୱାସ । କିନ୍ତୁ ତା' ପରେ ମାସ ପରେ ମାସ ଏପରି କେତେ ମାସ କଟିଗଲା । ସେହି ବିଶ୍ୱାସରେ ହିଁ ନୀଲୁବାବୁ ଯିବାଆସିବା କରିବାକୁ ଲାଗିଲେ । ତାଙ୍କର ଏ ଭୁଲ୍ ବିଶ୍ୱାସ ତ ଶେଷ ପର୍ଯ୍ୟନ୍ତ ଭଙ୍ଗାଇ ଦିଆଯାଇନାହିଁ । ଓଃ —କି ଭୁଲ୍ ! ହଁ, ସେଥିଯୋଗେ କନକ ହିଁ ଦାୟୀ ଓ ସେଥିଯୋଗେ ସେ ଅନୁତପ୍ତ ଓ ଦୁଃଖିତ; ତେବେ, ସେ ଜାଣିଶୁଣି ଯେ ତାଙ୍କର ଏ ଭୁଲ୍ ବିଶ୍ୱାସ —ତାରି ଛଳନାର, କୌଶଳର ସରଳ ବିଶ୍ୱାସ —ଭାଙ୍ଗିନାହିଁ, ତାହା ବି ତ ନୁହେଁ । 'ଆଜି କହିବି', 'କାଲି କହିବି', - ଏହିପରି କ୍ରମେ ମାସ ମାସ କଟିଗଲା ପରେ ତା' ପୋଡ଼ା ମନରୁ ସେ କଥା ବି ପୂରା ଭୁଲିଗଲା । ଯା ଛଡ଼ା ନୀଲୁ ଓ ରଙ୍ଗୀ ମଧ୍ୟରେ ସ୍ୱତଃ ଆକର୍ଷଣ ଜନ୍ମାଇବା ହିଁ ତ ଥିଲା ତାଙ୍କର ପୂର୍ବ ବନ୍ଦୋବସ୍ତ - ମୌଳିକ ପ୍ଲାନ୍ । ଆଉ ନୀଲୁଙ୍କ ଆସିବାଯିବା ତା' ପକ୍ଷରେ ଏଡ଼େ ସହଜ ଓ ସ୍ୱାଭାବିକ ହୋଇଉଠିଲା ଯେ, ସେ ପ୍ରକୃତରେ ଭୁଲିଗଲା ତା'ର କର୍ତ୍ତବ୍ୟ ।

ସେହି କର୍ତ୍ତବ୍ୟ ଯେ ତା' ସ୍ୱାମୀଙ୍କ ପ୍ରତି ସମସ୍ତଙ୍କଠାରୁ ବଳିକରି, ଏଇ ଏତକ ଅଭାଗୀ ବୁଝିପାରି ନାହିଁ । ସେଇ ଯେ ଅବ୍ୟକ୍ତ ଚୁକ୍ତି ଦୁହିଁଙ୍କ ମଧ୍ୟରେ ହୋଇଥିଲା, ତାକୁ ହିଁ ଯେ ସେ ଭାଙ୍ଗିବସିଛି, ଏହି କଥାଟି କେବଳ ତାର ଧାରଣାର ଅତୀତ । ସେଥିଯୋଗେ ସେ ନିଜକୁ ସମସ୍ତଙ୍କ ଠାରେ ଯେତିକି, ନିଧିବାବୁଙ୍କ ଠାରେ ମଧ୍ୟ ସେତିକି ପରିମାଣରେ ଦୋଷୀ ବୋଲି ଭାବିଛି - ବରଂ, ରଙ୍ଗୀଠାରେ ହିଁ ସମସ୍ତଙ୍କଠାରୁ ବେଶି ଦୋଷୀ ବୋଲି ସେ ନିଜକୁ ଧରିନେଇଛି । ଯେଉଁ ନୀଚ ଅଭିଳାଷ ନିଧିବାବୁ ତା ପ୍ରତି ଆରୋପ କରି ଏଡ଼େ ଆଘାତଟା ପାଇଛନ୍ତି, ସେ ନୀଚତା ତା' ହୃଦୟର ବହୁ ଦୂରରେ ବୋଲି ସେ କଥା ତ ସେ ମୂଳରୁ ଭାବିପାରି ନାହିଁ ।

ନିଧିବାବୁ ଧରି ନେଇଛନ୍ତି, କନକର ଚୁକ୍ତିଭଙ୍ଗ ପଛଆଡ଼େ ଗୋଟିଏ କୁତ୍ସିତ ନୀଚତା ରହିଛି; ଆଉ କନକ ଜାଣିନାହିଁ ଯେ, ସେ ସେଥିପାଇଁ ତାଙ୍କଠାରେ କିପରି ଦୋଷୀ ହୋଇପାରେ । ଫଳରେ ସ୍ୱାମୀଙ୍କ ଅନ୍ୟାୟ ଆଚରଣରେ ବ୍ୟଥିତା ହୋଇ ସେ ଅଭିମାନ-ବର୍ମରେ ନିଜକୁ ଢାକି ପକାଇଛି । ଆଉ ଏଟାକୁ କନକର ଦର୍ପ ବୋଲି ଭାବି, ନିଧିବାବୁ ଆହୁରି କଠୋର ନିର୍ମମ ହୋଇ ଉଠି, ନିଜକୁ ତା' ଠାରୁ ସମ୍ପୂର୍ଣ୍ଣ ତଫାତ୍ ରଖିବାକୁ ବସିଛନ୍ତି ।

\+ + + + +

(୨)

''ତମ ନୀଳୁଭାଇ ଚିଠି ଦେଇଚନ୍ତି, ଦେଖିଚ ?''

''ହଁ, ନା - ମୁଁ କାହିଁକି ତମ ଚିଠି ଖୋଲିମି !''

ଅନେକ ଦିନ ପରେ ଆଜି ସ୍ୱାମୀ-ସ୍ତ୍ରୀଙ୍କର ମୁହାଁମୁହିଁ କଥା ଏଇ ପ୍ରଥମ । ନିଧିବାବୁ ରାତିରେ ଶୋଇବାଘରକୁ ଆସି, କନକକୁ ଅପେକ୍ଷା କରୁଥିବାର ଦେଖି, ତରବର ହୋଇ ଖଟ ଉପରକୁ ଯାଇ, କାନପାରି କାନ୍ଥ ଆଡ଼କୁ ମୁହଁ ବୁଲାଇ ଏ ପ୍ରଶ୍ନ କଲେ । କନକ ତଳେ, ଯେଉଁଠି ଶୋଇଥିଲା, ସେଠାରୁ ଧଡ଼ପଡ଼ ହୋଇ ଉଠି, ଅନ୍ୟ ଆଡ଼କୁ ମୁହଁ ବୁଲାଇ ଏ ଉତ୍ତରଟି ଦେଲା - ଭରସି ଆଉ କିଛି କହିପାରିଲା ନାହିଁ । ପୁଣି ନିଧିବାବୁ ନୀରବ ହୋଇଯିବାରୁ ବାହା ଉପରେ ମୁଣ୍ଡଦେଇ ଭୂଇଁରେ ସେହିପରି ଗଡ଼ିଗଲା । ଆଉ ଆଖିରେ ତା'ର ନିଦ ପଶିଲା ନାହିଁ । ନୀରବରେ କେତେବେଳେ ବି ଟିକିଏ ଲୁହ ତା' ଆଖିରୁ ଗଡ଼ି ପଡ଼ିଲା । ନିଧିବାବୁ ବି ହୁଏତ ଶୋଇପାରୁ ନଥିଲେ; ହଠାତ୍ ବିଛଣାରେ ନିଦ ଭାଙ୍ଗିଗଲା ପରି ଉଠି ବସି ତଳକୁ ଚକିତରେ ଥରେ ଚାହିଁଦେଲେ । କ୍ଷଣକେ କନକର କରୁଣ ଛବିଟି ତାଙ୍କୁ କିପରି ଗୋଟାଏ ବ୍ୟସ୍ତ କରିପକାଇଲା । ବୋଧହୁଏ, ସେ ଜାଣିପାରିଲେ ସେ କାନ୍ଦୁଛି । ଘରେ ଆଲୁଅ ନଥିଲା - ଲଣ୍ଠନଟି କମାଇ ଦୁଆର ସେପଟେ ସେ ରଖିଆସିଥିଲେ । ଖାଲି ଝରକାବାଟେ ଶାରଦୀୟ କୃଷ୍ଣନବମୀର ଅର୍ଦ୍ଧଚନ୍ଦ୍ର ଝଲକାଏ କିରଣ ଅଯତ୍ନରେ କନକର ମୁଣ୍ଡଦିହରେ ବୁଣି ଦେଇଥିଲା । ଖଣ୍ଡି ଓଢ଼ଣା ଭେଦ କରି ଗୋଟାଏ ମେଞ୍ଚା ସେଥିରୁ ଯାଇଁ ପଡ଼ିଥିଲା ତାର ସ୍ଥିର, ସ୍ଫୀତ ଅଧରୌଷ୍ଠଟି ଉପରେ, - ଯେଉଁଥିରେ କନକ ଓଢ଼ଣାର ଗୋଟାଏ ପ୍ରାନ୍ତ ଚାପିଧରି ମୁହଁଟିକୁ ଅଧେ ଆବୃତ ରଖିଥିଲା । ନିଧିବାବୁ ଅଭିଭୂତ ହେଲାପରି କ୍ଷଣେ କାଳ ସେହି ମୃଦୁ କମ୍ପମାନ ପ୍ରିୟ ମୁଖଟି ଆଡ଼କୁ ଅନାଇ ରହିଲେ । କି ଗୋଟାଏ କରୁଣ ରସରେ ତାଙ୍କ ହୃଦୟ ଭରିଉଠିଲା । ସେ ଧଡ଼ପଡ଼ ହୋଇ ବିଛଣାରେ ଉଠିବସିଲେ । ଅନିଶ୍ଚିତ ଭାବରେ ଯାଡ଼େ ସ୍ୟାଡ଼େ ଥରେ ଅନାଇ, ଜୋରକରି କହିଲେ, ଅତି କୋମଳ ଆର୍ଦ୍ର କଣ୍ଠରେ, ''କନକ, ତଳେ ଭୂଇଁଟାରେ କାହିଁକି ଶୋଇଚ ?'' କନକ ନ ଶୁଣିଲା ପରି ପଡ଼ି ରହିଲା, ଭାବିଲା - ମୁଁ ମୋର ଶୋଇଲି, କି ମଲି । ପୁଣି ନିଧିବାବୁ କହିଲେ, ''ଛି କନକ, ଭୂଇଁଟାରେ କାହିଁକି ଶୋଇଚ !'' କନକ କ'ଣ ଭାବିଲା, ହଠାତ୍ ଧଡ଼ପଡ଼ ହୋଇ ଉଠି ଗୃହକୋଣରେ ଥିବା ସଉପ ମଶୁଣିଟିଏ ଆଣି ଧସ୍ କରି ତାକୁ ପକାଇଦେଇ, ଏଥର ତା' ଉପରେ ଶୋଇଗଲା ।

ପୁଣି ନୀରବ ! ନିଧିବାବୁ କିନ୍ତୁ ଖଟ ଉପରେ ସେହିପରି ସିଧା ବସିଥାନ୍ତି । ହଠାତ୍ ପୁଣି ତାଙ୍କୁ ଜଣାଗଲା, ଯେପରି କନକ ପୁଣି କାନ୍ଦୁଛି । ସେ ଧୀରେ ଧୀରେ ଖଟରୁ ଓହ୍ଲାଇ, କନକର ମୁଣ୍ଡ ପାଖରେ ଛିଡ଼ା ହୋଇ କହିଲେ, "କନକ, ମୁଁ ଏଇଠି ଟିକିଏ ସପ ଉପରେ ଶୁଏଁ ?" କନକ କିଛି ନ କହି, ଜାଗା ଛାଡ଼ି ଦେଇ ବୁଲି ଶୋଇଲା । ନିଧିବାବୁ ବସି ପଡ଼ିଲେ ଲମ୍ବ ହୋଇ ଶୋଇବାର ଆୟୋଜନ କଲାବେଳେ କନକ ଝଟ୍ କରି ଉଠି ବସିଲା । ନିଧିବାବୁ କହିଲେ, "କି, ଉଠିଲ ଯେ ?" "ଗୋଟାଏ ତକିଆ ଆଣି ଦିଏ" ବୋଲି କହି କନକ ଉଠି ପଡୁଥିଲା । ନିଧିବାବୁ ହଠାତ୍ ତା' ହାତ ଯୋଡ଼ିକ ଧରିପକାଇ ତାକୁ କତିକି ଭିଡ଼ିନେଲେ । କନକ ଅଧୋବଦନରେ ରହିଲା - ହୁଁ କି ନାହିଁ କିଛି କହିଲା ନାହିଁ । ଅଭିମାନରୁ ହେଉ ବା ଆଉ ଯାହାହେଉ, ଗୋଟା ଭାରି ବଡ଼ କୋହ ତା' ଛାତିଟିକୁ ଫୁଲାଇ ଫୁଲାଇ ତା' ତଣ୍ଟି ପର୍ଯ୍ୟନ୍ତ ଆସି, ବାହାରିବାର ପଥ ନପାଇ, ତାକୁ ବ୍ୟତିବ୍ୟସ୍ତ କରି ଦୋହଲାଇ ପକାଉଥାଏ । ନିଧିବାବୁ କନକର ହାତଟି ଧରିଥିବାରୁ ତା' ଆନ୍ତରିକ ଯୁଦ୍ଧର ଆଭାସ ପାଇ ନିଜେ ମଧ୍ୟ ବିଚଳିତ ହୋଇ କହିଲେ, "କନକ, ଏଡ଼େ ପର ନା ମୁଁ ତୋ'ର ।" କନକ ଆଉ ସମ୍ଭାଳି ହୋଇରହିପାରିଲା ନାହିଁ - ନିଧିବାବୁଙ୍କ କୋଳରେ ଲୋଟି ହୋଇପଡ଼ି ତାଙ୍କ ପାଦକୁ ଅଶ୍ରୁଜଳରେ ଧୌତ କରୁଁ କରୁଁ କହିଲା, "ତେମେ କ'ଣ ଜାଣ ନାହିଁ, ତେମେ ମୋର କିଏ !"

ଆଲିଙ୍ଗନ ପାଶରେ ଆବଦ୍ଧ ରହି ଦୁହେଁ ନୀରବରେ ଅନେକ କ୍ଷଣ ଏହିପରି କଟାଇଲେ । କନକ ଅନେକ ଦିନ ପରେ ଆଜି ତା'ର ହଜିଲା ଧନଟିକ ପାଇଛି, - କି ଆନନ୍ଦ ତା' ଛାତିଟିରୁ ଟିକି ଟିକି ହୋଇ ଅଶ୍ରୁଛଳରେ ରହି ରହି ବାହାରିଯାଉଛି । ନିଧିବାବୁ ମଧ୍ୟ ବିଚଳିତ ନୀରବ ଆବେଗରେ ତାକୁ ବକ୍ଷର ଆହୁରି କତିକୁ ଭିଡ଼ି ନେଇ, ତା'ର ଲୁହ ପୋଛି ଦେଉଁ ଦେଉଁ କି ଗୋଟାଏ ମଧୁର ଆବେଶରେ ଭରି ଯାଇ ନିଜେ ମଧ୍ୟ ଅଶ୍ରୁ ସମ୍ବରଣ କରିପାରୁ ନାହାନ୍ତି । ଉଭୟ ନୀରବ ।

ଅନେକ କ୍ଷଣ ପରେ ନିଧିବାବୁ କନକର ମୁହଁଟିକୁ ତାଙ୍କ ବକ୍ଷ ଉପରୁ ଉଠାଇ ନିଜ ମୁଖର ସମ୍ମୁଖୀନ କରିବାର ପ୍ରୟାସ କରୁଁ କରୁଁ ଡାକିଲେ, "କନକ !" କନକ ଢଳଢଳ ଆଖିଯୋଡ଼ିକ ତା'ର ତଳକୁ କରି ପଣତକାନିରେ ମୁହଁକୁ ଚାପି ରଖି କହିଲା "ଉଁ" । "ମୋତେ ଭଲ କରି ଅନେଇଲୁ" ବୋଲି କହି ନିଧିବାବୁ ପୁଣି ଥରେ ଜୋର କରି ତା' ଓଠ ଧରି ମୁହଁଟିକୁ ଟେକି ଧରିଲେ । କନକ ଆଖିରୁ ଲୁହ ଶୁଖିନାହିଁ । ସେ ଥରେ ମାତ୍ର ସଜଳ ଆଖିଯୋଡ଼ିକରେ ସ୍ନେହସଲଜ୍ଜ ହସଗୁଡ଼ିଏ ନେଇ ନିଧିବାବୁଙ୍କ ମୁହଁକୁ

ଚାହିଁଲା । ଚାରି ଚକ୍ଷୁ ମିଳିତ ହେବାମାତ୍ରକେ ହଠାତ୍ ଗୋଟାଏ ହସର ବେଗ ଉଠି ତାକୁ ଆଉ ସେପରିଭାବରେ ଅନାଇ ଦେଲା ନାହିଁ - ମୁଣ୍ଡ ତଳକୁ ନଇଁ ହୋଇଗଲା ବଳେ ବଳେ । ଆଉ ସେ ହସୁ ହସୁ ପୁଣି କାନ୍ଦି ପକାଇ, ନିଧିବାବୁଙ୍କ ବକ୍ଷରେ ମୁହଁ ଲୁଚାଇଦେଲା । ବଡ଼ ଆନନ୍ଦ ଆଜି ତା'ର - ବଡ଼ ସୁଖ । ତା'ର ସବୁ ଜ୍ୱାଳା, ଯନ୍ତ୍ରଣା, ଅଭିମାନ, ଦୁଃଖ କୁଆଡ଼େ ଧୋଇହୋଇ ସଫାହୋଇଗଲାଣି ସେତେବେଳକୁ ।

ନିଧିବାବୁ ପୁଣି ଡାକିଲେ, ''କନକ !'' ତାଙ୍କରି ବକ୍ଷ ଭିତରୁ ଜବାବ ଆସିଲା, ''କି ?'' ''କନକ ! ମୁଁ ଭାରି ପାଷାଣ୍ଡ ଗୋଟାଏ ।'' ''କି ?'' ''ମିଛରେ ତୋତେ ଖରାପ ବୋଲି ଭାବିଥିଲି, ରାଗିଥିଲି ତୋ ଉପରେ ।'' କନକ ଝଟ୍ ତାଙ୍କ ଛାତିରୁ ଘୁଞ୍ଚି ଆସି ମୁହଁରେ ହାତ ଦେଇ ତାଙ୍କୁ ବନ୍ଦ କଲା, କହିଲା, ''ଛି— ଥାଉ !'' ନିଧିବାବୁ ତା' ହାତକୁ ଏଡ଼ି ଦେଇ ପୁଣି କହିଲେ, ଆବେଗକମ୍ପିତ କଣ୍ଠରେ - ''ନା, କନକ, ଶୁଣ, ମୁଁ ଯାହା କହୁଚି - ମୁଁ ବଡ଼ ନୀଚ, ବଡ଼ ହୀନ । ତୁମକୁ ମୁଁ ସେହିପରି ହିଁ ଭାବିଥିଲି, କିନ୍ତୁ କନକ, ମୁଁ ତ ଯା ଆଗରୁ କେଭେଁ ଏପରି ଭାବିନାହିଁ । ଏଥର ବାହିଁକି ଏପରି ଭାବିଲି କେଜାଣି !'' କନକ ତାଙ୍କ କଥାକୁ ମୂଳରୁ ଖିୟାଲ ନ କଲାପରି କୌତୁକଭାବରେ ପଚାରିଲା, ''କିପରି ? ନାଇଁ ନାଇଁ ଥାଉ, ମୁଁ ଶୁଣିବି ନାହିଁ ଯା - ଯାହା ତ ହବାର ହେଇଗଲାଣି, ଆଉ ଶୁଣି କ'ଣ ହବ ? ଖାଲି ଆହୁରି ମନ ଖରାପ ହେବ'' ''ନା, ଶୁଣ, କହେଁ !'' ''ନା, ନା, ମୁଁ ଶୁଣିପାରେ ନାହିଁ ଯା । ସତ କହୁଚି, ସେଥିପାଇଁ ଆଉ ଟିକିଏ ବି କିଛି ମୋ ମନରେ ନାହିଁ । ମତେ ଅନ୍ତର କରି ଦେଇଥିଲ, ଏବେ ପୁଣି ନେଲ - ଏଇ ତ ମୋର ଢେର । ଆଉ କିଛି ମୋର ଲୋଡ଼ା ନାହିଁ । ସେତେବେଳେ ମୁଁ ଭାବୁଥିଲି, ଏଡ଼େ ନିଷ୍ଠୁର କିମିତି ହେଲ ବୋଲି । ଏଇଛୁଣି —।'' ''ହଁ, ମୁଁ ନିଷ୍ଠୁର, ନିର୍ମମ ହେଇଚି । ନା, ନା, ମୋ କଥା ଶୁଣି ଯା, ନ ଶୁଣିଲେ ଛାଡ଼ିବି ନାହିଁ ।'' କନକ ଆଉ ତାଙ୍କୁ ରୋକି ପାରିଲା ନାହିଁ - ସେ ଅନର୍ଗଳ ବକିଗଲେ ଓ ସେ ଶୁଣିଗଲା । କିପରି ସେ ଭାବିଥିଲେ ତାକୁ ଅବିଶ୍ୱାସିନୀ ବୋଲି - ଚୁକ୍ତିଭଙ୍ଗ, ସେଥିରେ କନକର ଦାୟିତ୍ୱ । ତାଙ୍କର ଅସଲ ରାଗ ଓ ନୀଚ ଧାରଣା ଯେ, କନକ ତାଙ୍କୁ ମୂଳରୁ ଚାହେଁ ନାହିଁ - ନୀଲୁଙ୍କୁ ହିଁ ଚାହେଁ । ସେ ଯୋଗେ ଇଚ୍ଛା କରି ସେ ରଙ୍ଗୀକଥା ନୀଲୁଙ୍କ ଠାରୁ ଲୁଚାଇ ରଖିଥିଲା, ଇତ୍ୟାଦି । କନକ ଶୁଣୁ ଶୁଣୁ କାଠ ହୋଇଗଲା; ନିଧିବାବୁଙ୍କ ବକ୍ଷରେ ମୁହଁ ଗୁଞ୍ଜି ଧଡ଼ପଡ଼ ହେଉଥାଏ । ନିଧିବାବୁ ତାକୁ ଜୋରେ ଭିଡ଼ି ଧରିଥାନ୍ତି । ହଠାତ୍ ସେ ବୁଝିପାରିଲା, ତା'ର କେଉଁ ଦୋଷରୁ ସ୍ୱାମୀ ତାକୁ ଏତେ କଷଣ ଦେଇଛନ୍ତି ! ସତେ ତ, ତାଙ୍କର

ବା ଦୋଷ କ'ଣ ! ତାଙ୍କର ଯା ଭାବିବା ତ ଅନ୍ୟାୟ ନୁହେଁ । ହଠାତ୍ କନକ ନିଜକୁ ତାଙ୍କ ବକ୍ଷରୁ ଛଡ଼ାଇ ନେଇ ତାଙ୍କ ଗୋଡ଼ ଧରି ପକାଇ କହିଲା, "ସବୁ ଦୋଷ ମୋର, ତମର କିଛି ଦୋଷନାହିଁ । କାହିଁକି ଆଉ ଲାଜ ଦେଉଚ ମୋତେ । ତେବେ ମୁଁ ଜାଣିଶୁଣି ଯା କରିନାହିଁ ପରା !" "ଦେଖ୍ କନକ, ମୁଁ ବୁଝିଲିଣି, କେଡ଼େ ନୀଚ ମୁଁ ! ମୋତେ ତମେ କ୍ଷମା କର । ମୋର ଦୋଷ ନାହିଁ ? ସବୁ ଦୋଷ ମୋର ।" ନିଧିବାବୁ କନକର ହାତ ଯୋଡ଼ିକ ଧରି ପକାଇ ତାକୁ ଟାଣି ଆଣିଲେ ଆହୁରି ପାଖକୁ । କନକ ବାଲୁ ବାଲୁ ହୋଇ ଚାହିଁଥାଏ ତାଙ୍କ ମୁହଁକୁ । "କି ଆଶ୍ଚର୍ଯ୍ୟ, ମୋର ହେଲା ସବୁ ଦୋଷ । ପୁଣି କ୍ଷମା ଦେମି ମୁଁ ।" ନିଧିବାବୁ କହିଲେ, "କନକ, କହ ମୋତେ କ୍ଷମା କଲୁ ?" " କ'ଣ କ୍ଷମା ଦେମି ମୁଁ ? ମୋର ତ ନିଜର ସବୁ ଦୋଷ ।" ଏହା କହି କନକ କାନ୍ଦି ପକାଇଲା । ନିଧିବାବୁ କହିଲେ, "ମୋର କଣ କିଛି ଦୋଷ ନାହିଁ ? ମୁଁ ଯେ ତତେ ଏଡ଼େ ଖରାପ ବୋଲି ଭାବିଲି" । "ମୁଁ ତ ଖରାପ !" "ନାଇଁ, ତୁ କ'ଣ କଲୁକି ?" "କି, ନୀଳୁଭାଇକି ଆଗରୁ ନ କହିବା କ'ଣ ମୋର ଠିକ୍ ?" "ଆରେ ବାଃ, ନୀଳୁଭାଇଙ୍କୁ ତୁ ନ କହିଲୁ ଫେରେ କେମିତି । ଏଇ ନିଜେ ନୀଳୁଭାଇ ଲେଖିଚି, ସେ ଆଗରୁ ଜାଣିଥିଲା ।" ଏହା କହି ନିଧିବାବୁ ଖଣ୍ଡେ ଚିଠି କାଢ଼ି କନକ ହାତକୁ ବଢ଼ାଇ ଦେଲେ । କନକ ତାକୁ ନେଇ ଉତ୍କଣ୍ଠା ଓ ଆଗ୍ରହ ସହିତ ଘରୁ ବାହାରିଗଲା; ଦୁଆର ସେପଟେ ଲଣ୍ଠନଟିକୁ ଟିକିଏ ତେଜି ଦେଇ ପଢ଼ି ବସିଲା ।

ଏଣେ ନିଧିବାବୁ ବିଛଣାରେ ଛଟପଟ ହେଉଥାନ୍ତି । କ୍ରମେ ଅଧଘଣ୍ଟାଏ ହୋଇଗଲା, କନକର ଆଉ ସୋର ଶବ୍ଦ ନାହିଁ । ନିଧିବାବୁ ଉଠି ଆସି ଦୁଆର ଖୋଲି ବାହାରୁ ବାହାରୁ କହିଲେ, "କି ପଢୁଥିବ କି ବସି ?" କିନ୍ତୁ ଶୁଣୁଛି କିଏ ? କନକ ଖୋଲା ଚିଠି ଖଣ୍ଡିକ ଆଗରେ ପକାଇ କାନ୍ଥକୁ ଆଉଜି କାଠ ପିତୁଳାଟି ପରି ବସିଛି - ଯେପରି ଚେତା ନାହିଁ । ନିଧିବାବୁ ଯାଇ ତାକୁ ହଲାଇ ଦେଲାରୁ ଧଡ଼ପଡ଼ ହୋଇ ଉଠି ଠିଆ ହୋଇ କନକ ହଠାତ୍ ଭୋ ଭୋ କରି କାନ୍ଦି ଉଠିଲା ।

ନିଧିବାବୁ କିଛି ବୁଝିପାରିଲେ ନାହିଁ । କନକକୁ ଗୋଟାଏ ହାତରେ ଧରି ଭିଡ଼ି ଭିଡ଼ି ନେଇଗଲେ ଘର ଭିତରକୁ । ଖଟ ଉପରେ ନିଜେ ବସି, ତାକୁ ଉପରକୁ ଆଣିବାକୁ ଚାହିଁଲେ; କିନ୍ତୁ କନକ ମାନିଲା ନାହିଁ, ନା ଶୁଣିଲା ନାହିଁ - ହଠାତ୍ ତାଙ୍କ ବାହୁପାଶ ଛଡ଼ାଇ, ତାଙ୍କ ଗୋଡ଼ ଧରି ଭୂଇଁରେ ବସି ପଡ଼ି ଉଚ୍ଛ୍ୱସିତ ଭାବରେ

କାନ୍ଦିବାକୁ ଲାଗିଲା । ''କ'ଣ, କଥା କ'ଣ ! କ'ଣ ହେଲା ?'' ବୋଲି ପଚାରି ଆଶ୍ଚର୍ଯ୍ୟାନ୍ୱିତ ନିଧିବାବୁ କେଡ଼େ ଆଦରରେ ତାକୁ ଶାନ୍ତ କରିବାକୁ ଚେଷ୍ଟା କଲେ, କିନ୍ତୁ କିଛି ଫଳ ହେଲା ନାହିଁ । ଟିକିଏ କ୍ରନ୍ଦନ ବେଗ ପ୍ରଶମିତ କରି ତାଙ୍କ ଦୁଇ ଗୋଡ଼ ସନ୍ଧିରୁ କନକ ମର୍ମଦଗ୍ଧ ସ୍ୱରରେ କହିଲା, ''ଆହେ, ଦୋଷ ମୋର - ସବୁ ଦୋଷ ମୋର । ନୀଲୁଭାଇ ମିଛ କଥା ଲେଖିଚି । ମୁଁ ତାକୁ ମୂଳରୁ କହି ନାହିଁ ରଙ୍ଗୀ କଥା । ଆହେ, ମୁଁ ତୁମକୁ ଠକି ପାରିବି ନାହିଁ ! ତେମେ ମୋତେ କ୍ଷମା କର ! ମୋର ଭୁଲ୍ ହୋଇଯାଇଥିଲା । ମୁଁ ଜାଣି ଶୁଣି ଯା କରିନି କେଭେଁ । ଆହେ, ମୁଁ କେମିତି ତୁମକୁ ଠକାନ୍ତି । ନା, ନା, ମୋରି ସବୁ ଦୋଷ । ମୋତେ କ୍ଷମା କର ।''

ନିଧିବାବୁ ଚମକି ଉଠିଲେ । ଦୁନିଆଟା ସାରା କ'ଣ ତେବେ ଠକ, ମିଛୁଆ । ନୀଲୁ କେଡ଼େ ଭଲେଇ ହୋଇ ଲେଖିଛି - ଆହା 'ମୋର ଆଗରୁ କଟକ ଛାଡ଼ି ଚାଲି ଆସିବା ଉଚିତ ଥିଲା । ଜାଣିଶୁଣି ସେଠାରେ ରହିବା ଦ୍ୱାରା ସମସ୍ତଙ୍କୁ ତ ଠକିଛି, ନିଜେ ନିଜକୁ ମଧ ଠକିଛି ।'' ଆହା, ଫେରେ କ'ଣ ନା - ''କନକ କହିଲେ ମଧ ମୁଁ ଯେ ରଙ୍ଗୀକୁ ବାହାହୋଇପାରିବି ନାହିଁ, ଏ କଥା ମୁଁ ତ ବେଶ୍ ଭଲରୂପେ ଜାଣିଥିଲି; ତେବେ କି ବୋକାମି କଲି - କାହିଁକି ଦି'ଦିନ ଆଗରୁ ଏଇୟାଟି ନକଲି ! + + + ରଙ୍ଗୀ ପାଇଁ ମୁଁ ଯେତିକି ଦୁଃଖିତ, କନକ ପାଇଁ ମଧ ତେତିକି । ସେ ବିଚାରୀର କିଛି ଦୋଷ ନାହିଁ । ମୁଁ ଯେ ତା' କଥା ନ ମାନିବି, ସେ କିପରି ଜାଣନ୍ତା । ସେ କହିବ ସିନା, - ଆଉ ତା' ହାତରେ କ'ଣ ଅଛି । + + + ନା, ନା, ସବୁ ଦୋଷ ମୋରି । ମୋହାନ୍ଧ ହୋଇ ଏତେ ଲୋକଙ୍କର ଦୁଃଖର କାରଣ ହୋଇଛି ମୁହିଁ ସିନା !'' ନାଃ ସମସ୍ତେ ଠକ - ଦୁନିଆ ସାରା ସ-ଅ-ମ-ସ୍ତେ ।

ଗୋଟାଏ ଅମିତ କୁଣ୍ଠା ଓ ଘୃଣାରେ ନିଧିବାବୁଙ୍କ ମନ ଭରିଗଲା । ବଡ଼ କରି ବାଧିଲା ତାଙ୍କୁ ଏଇ କଥାଟି ଯେ, ସେ ତାଙ୍କ ସ୍ତ୍ରୀ ଦ୍ୱାରା ହିଁ ପ୍ରତାରିତ । ନାଃ, ଇୟେ ବି ଗୋଟାଏ ଛଳନା କନକର ! ଯଦି ନୀଲୁ କଥା ମିଛ, କନକ ନିଶ୍ଚେ ଜାଣିଶୁଣି ନୀଲୁଙ୍କୁ ଏ ବିଷୟ କହିନାହିଁ - ଜାଣିଶୁଣି ଲୁଚାଇଛି ଓ ତାଙ୍କୁ ପ୍ରବଞ୍ଚିତ କରିଛି । ତେବେ - ତେବେ, ଆଜି ପୁଣି ଏ କ୍ଷମା ଭିକ୍ଷା କାହିଁକି ? ଅନୁତାପ ନା ଛଳନା ? ଏଡ଼େ ବିକଳ ହୋଇ କ୍ଷମା ଭିକ୍ଷା କରୁଛି ! ହାୟ, କନକ - ମୋ ରାଣୀ, କାହିଁକି ମୋତେ ଠକିଲୁ, କାହିଁକି ପୁଣି ଠକୁଛୁ । କ୍ଷମା, କ୍ଷମା - ନା, ସେଟା ମୋଠାରେ ସମ୍ଭବ ନୁହେଁ ! ହଁ, କନକ ତ ଦୋଷ ସ୍ୱୀକାର କରୁଛି ନିଜେ, ନୀଲୁଙ୍କ କଥାକୁ ମିଛ

ବୋଲି ବାହାର କରି । ତେବେ, ତେବେ କ'ଣ ସତେ କନକ ଭୁଲିଯାଇଥିଲା, ନା ଜାଣିଶୁଣି ଯା କରିଥିଲା ।

ହଠାତ୍ ନିଧିବାବୁ କନକକୁ ଧରି ବଳପୂର୍ବକ ତାକୁ ଖଟ ଉପରକୁ ଭିଡ଼ି ନେଇ କହିଲେ, "ସତ କହୁଚ କନକ, ନୀଳୁ କଥା ମିଛ ? ତେମେ ତାକୁ ରଙ୍ଗୀ ବିଷୟ ଆଗରୁ କହିନାହିଁ ?" "ହଁ, ସତ କହୁଚି - ଏଇ ତମ ଗୋଡ଼ ଛୁଇଁ କହୁଚି । ଆଉରି ବି ଶୁଣ, - ମୁଁ ଭୁଲିଯାଇଥିଲି, ହେଲାରେ କହିନାହିଁ - ଜାଣିଶୁଣି ନୁହେଁ ।" ନିଧିବାବୁ କ୍ଷଣେ ମାତ୍ର ଆଉ ଦ୍ୱିଧା କଲେ, ପରକ୍ଷଣରେ କନକକୁ ଉଠାଇ, ଏକାବେଳକେ ଛାତି ଉପରକୁ ନେଇ ବାହୁବନ୍ଧନରେ ଭିଡ଼ି ଧରୁଁ ଧରୁଁ ପୁଣି ହଠାତ୍ କି ଗୋଟାଏ ବିପରୀତ ଭାବର ତାଡ଼ନାରେ କନକକୁ ଦୂରକୁ ହଟାଇ ଦେଇ, ଧଡ଼ପଡ଼ ହୋଇ ବିଛଣାରୁ ଉଠି, ସେ ଘରୁ ପାଂଶୁ ମୁଖରେ ଦୃଢ଼ପ୍ରତିଜ୍ଞ ଭାବରେ ଏକ୍‌ଦମ୍ ବାହାରି ଚାଲିଗଲେ । କନକ ଏ କଠୋର ଆଚରଣରେ ସ୍ତମ୍ଭିତ ହୋଇ ରହିଗଲା ।

\+ + + + +

## (୩)

"ନିଧି, ଏଡ଼େ ବାୟା ନା ତୁ ? ଛି, ଛି !"

"କି, କ'ଣ ହେଲା କି ଅପା ?"

"କ'ଣ ହେଲା ! ତୁ ଏଠି ଦାଣ୍ଡଟାରେ କାହିଁକି ଶୋଉଚୁ, କହନି ।"

"ଘର ଭିତରେ ତମକୁ ସବୁ ଜାଗା ଅଣ୍ଟୁ ନାହିଁ । ବର୍ଷା ପାଣି ଦିନ । ମୁଁ ବଡ଼ ଘରଟିରେ ଶୋଇଲେ ତୁମେ ସବୁ କେଉଁଠି ପଡ଼ିବ କହନି !"

"ମଲା, ଆମେ ତ ଫେରେ ଏଇଠି ସିମିତି ଚଳୁଥିଲୁଁ ନା-"

"ମଲା, ସେତେବେଳେ କ'ଣ ଇମିତି ବର୍ଷା ଝଡ଼ି ହଉଥିଲା ? ଯା, ଯା, ଅପା, ତୁ ତା' କତିରେ ଶୋଇବୁ, ବୋଉ ରଙ୍ଗୀକିରି କୋଠରି ଘରେ ଶୋଇବେ, ମୁଁ ଏଇଠି ଶୋଇବି, ଯା' ।"

"ନିଧି, ତୁ ମତେ ପାଠ ପଢ଼େଇବୁ, ନା ? ମୁଁ କ'ଣ ଜାଣିପାରି ନାହିଁ, ତୁ ବହୂଟା ଉପରେ ଅକାରଣେ ରାଗିଚୁ । ପିଲାଟା କାନ୍ଦି କାନ୍ଦି ସାରା ହେଲାଣି, - ତୋର ଭଯେ କି କଥା ! ଛି ଛି ! ହଁ, ଦୋଷ କରିଚି, ଯଦି, ଦଣ୍ଡ ଦବୁ ତ ଦବୁ । ଦିନେ ଗଲା, ଦି ଦିନ ଗଲା, ତିନି ଦିନ ଗଲା - ଆଉ କେତେ ଦିନ ତାକୁ ଇମିତି କରିବୁ କହନି । ତୋତେ ମୋ ରାଣ, ଯା, ଘରକୁ ଯା, ।"

"ରାଣ ପକାନା କହି ଦଉଚି, ଅପା, ମିଛୁଟାରେ । ମୁଁ କେଉଁ ଯିବି ନାହିଁ ସେ ଘରକୁ । ମୁଁ ଗୋଟେ ରାଗିବି କାହିଁକି, ତା' ଉପରେ ! ତୁ ଯା' ଶୋଇବୁ ଯା' !"

"ସତ କହୁଚୁ ତୁ ରାଗିନାହୁଁ ନିଧି ? ହଉ, ମୁଁ ବି ଆଜି ବହୂକୁ ପଚାରୁଚି, ରହିଥା ସଫା କରି ? ଆଉ ତେବେ କାହିଁକି ଘରକୁ ଯାଉନାହୁଁ ଶୋଇବାକୁ ?"

"କହିଲି ପରା ଲୋ - ଜାଗା ହଉନାହିଁ ତମୁକୁ ।"

"ହଉ, ତାହେଲେ ମୁଁ ତ ଏଠି ନରହିଲେ ଗଲା । ମୁଁ କାଲି ଚା'ହେଲେ ମୋର ଯାଉଚି !"

ଏହା କହି ଗଉରୀ ମହାରାଗ ହୋଇ ନିଧିବାବୁ ପଛଆଡୁ ଡାକୁଁ ଡାକୁଁ ସେଠାରୁ ଚାଲିଗଲା । ନିଧିବାବୁ "କାଲି ଦେଖାଯିବ । ସମସ୍ତେ ଜାଣିଲେ ଜାଣିବେ, ଏବେ ଆଉ କ'ଣ କରିବି" ବୋଲି ମନେ ମନେ କହି ପୁଣି ଶୋଇବାର ଆୟୋଜନ କରୁଛନ୍ତି, ଗଉରୀ ସିଆଡୁ ପୁଣି ଆସି କହିଲା, "ଧନ୍ୟ ତୋ ବିଲୁଆ ବିଚାର । ବହୂଟିକୁ ନିହାତି ଭଲ ଦେଖି ତୁ ବି ଇମିତି ହେଲୁ ନିଧି ? ଛି - ଛି" "ମୋ ବିଲୁଆ ବିଚାର ମୋର ଥାଉଁ - ତୁ ଯା, - ମୁଁ ଶୁଏଁ । ଗଉରୀ ହସି ହସି କହିଲା - "ହଉ, ଏଇଠି ଯଦି ଶୋଇବୁ, ଶୁଅ, ବହୂକୁ ମୁଁ ଛାଡ଼ି ଦେଇଯାଉଚି ଏଠି । ହଁ, ସେତେବେଳକୁ ମୁଣ୍ଡ ହଲଉଥା ବସିକରି । ମୁଁ ନିଶ୍ଚେ ଆଜି ବହୂକୁ ଏଠି ଛାଡ଼ି ଦେଇଯିମି, ତୁ ଯାହା କହ । ମୁଁ ତ କାଲି ଚାଲିଯିମି । ତା ଆଗରୁ "

"ନା, ଅପା ମୋର ରାଣ, ତୁ ସିମିତି କହ ନା । ହ, ତତେ ଛାଡ଼ିଲେ ଯିବୁ ନା, କିମିତି ଯାଉବୁ ଦେଖିବା ନେଇଁକି !" "ଆଛା - ମୁଁ ଆସେଁ ରହିଥା, ଯାଏଁ ବହୂକୁ ନେଇ ଆସେଁ ।"

ଯାଉଁ ଯାଉଁ ଫେରିପଡ଼ି ଗଉରୀ କହିଲା "ନିଧି - ତୁ ବାୟା ! ତୁ ଯେ ବହୂ ଦୋଷ ଦଉଚୁ - ତୁ ନିଜେ ନୀଳୁକୁ ନ କହିଥିଲୁ କାହିଁକି ଭାବି ଦେଖିଲୁ । ତୋର କ'ଣ

ଆଶା ଥିଲା ମନେ ନାହିଁ । ତୁ ପରା ଭାବିଥିଲୁ ଗଙ୍ଗୀକୁ ପାଠ ପଢ଼ାଇ ଯୋଗ୍ୟ କଲେ ନାଁକୁ ବଳେ ତାକୁ ବାହ୍ରାହବାକୁ ମଙ୍ଗିବ ? ତୁ ବି କହିଲୁ ନାହିଁ - ଆମେ ବି କହିଲେ ନାହିଁ - ବହୂ ବି କହିନାହିଁ - ଏଥିରେ ବହୂର ଏକା ଦୋଷ ହେଲା ?''

ଏହା କହି ଗଉରୀ ହସି ହସି ସେଠାରୁ ବାହାରି ଚାଲିଗଲା । ନିଧିବାବୁ କିଛି କ୍ଷଣ ସେହିପରି ମୌନ ହୋଇ କ'ଣ ଭାବିଲେ । କ୍ରମେ ଅଧ ଘଣ୍ଟାଏ ଚାଲିଗଲା, ଗଉରୀର ଦେଖାନାହିଁ କି, କନକର ବି ଦେଖାନାହିଁ । ମନେ ମନେ ଟିକିଏ ନିରାଶ ହୋଇ ସେ ପୁଣି ଶୋଇବାର ଆୟୋଜନ କରୁଛନ୍ତି, ଏହିପରି ସମୟରେ ସେ ଆଉ ଅଳ୍ପ ଅଳ୍ପ ମଲଶବ୍ଦ ଶୁଣିଲା । ହଠାତ୍ ଉଠି ବସି ନିଧିବାବୁ ଘର ଭିତରେ ବୁଲିବାକୁ ଲାଗିଲେ । ମନରେ କିପରି ଗୋଟାଏ ଦ୍ୱିଧା ଜାଗି ତାଙ୍କୁ ଆଉ ସ୍ଥିର କରି ଦେଉନଥିଲା । ମଲଶବ୍ଦ ଦୁଆର ନିକଟକୁ ଆସିଲା ମାତ୍ରକେ ନିଧିବାବୁ ହଠାତ୍ ସଂକଳ୍ପ ସ୍ଥିର କରି ନେଇ ଝଟ୍ ଯାଇଁ ଭିତରୁ ଜଞ୍ଜିର ଲଗାଇଦେଲେ ।

\+ + + + +

ଗଉରୀ ଯେତେବେଳେ କନକର ଶୋଇଲାଘରକୁ ଯାଇ ତାକୁ ନିଧିବାବୁଙ୍କ ପାଖକୁ ଯିବାକୁ କହିଲା, ସେ ମୂଳରୁ ମଙ୍ଗିଲା ନାହିଁ । ଗଉରୀ ଯେତେ ବୁଝାଇଲା, ଯେତେ ଗାଳିଦେଲା, କାହିଁରେ କିଛି ହେଲାନାହିଁ । ଶେଷରେ ଗଉରୀ ଅଭିମାନରେ କହିଲା ଯେ ତା' ହେଲେ କନକ ରାଗିଛି ନିଧିବାବୁଙ୍କ ଉପରେ, - ଆଉ କିଛି ନୁହେଁ । କନକ ସବୁବେଳେ ରାଗରୁଷା କଥା ମିଛ ବୋଲି ଉଡ଼ାଇ ଦେଉଛି ଇତିପୂର୍ବରୁ । ଏହିଲାଗେ ଗଉରୀ ହାତ ଧରି କହିଲା, ''ନାହିଁ, କେଉଁ ନୁହେଁ । - ''ତା'ମନରେ କିଛି ରାଗ ନାହିଁ । ତେତେ ନିଶ୍ଚେ ଯିବାକୁ ହେବ । ସ୍ୱାମୀ ରାଗିଛନ୍ତି, ନ୍ୟାୟରେ ହେଉ କି, ଅନ୍ୟାୟରେ ହେଉ, - ତାଙ୍କୁ ଶାନ୍ତ କରିବାକୁ ହେବ । ଦରକାର ପଡ଼ିଲେ ତାଙ୍କ ଗୋଡ଼ ବି ଧରିବାକୁ ହେବ । ପତି ଦେବତା ।'' କନକ କୌଣସିମତେ ଗଉରୀକୁ ବୁଝାଇ ପାରିଲାନାହିଁ ଯେ, ଏଟା ଇମିତି ସିମିତି ରାଗ ନୁହେଁ - ସେ ଆଉ ତା ମୁହଁ ଚାହିଁବେ ନାହିଁ କି କ'ଣ, ଏଇପରି ଧାରଣା ତା'ର । ଆମୂଳଚୂଳ ସବୁ ଘଟନା ଶୁଣି, ଗଉରୀ ଉପରେ ଉପରେ ହସି ଉଡ଼ାଇ ଦେଲା ସବୁ । ଶେଷରେ କହିଲା, ''ମୋ ମୁଣ୍ଡ ଖାଇବୁ - ଚାଲେ, ତୋତେ ଛାଡ଼ିଦେଇ ଆସେଁ । ମୋରି ପାଇଁ, ମୁଁ କହୁଚି ବୋଲି ଖାସେ, ତୁ ଚାଲେ ।'' କନକ ଆଉ ଗଉରୀକୁ ଏଡ଼ିଦେଇ

ପାରିଲାନାହିଁ । ତା'ମନରେ ବି ଗୋଟାଏ ଭାରି ଅଶାନ୍ତି ରହିଛି ସେହିଦିନୁଁ । ସେ ମୂଳରୁ ବୁଝିପାରୁନାହିଁ, କାହିଁକି ନିଧିବାବୁ ତାକୁ ଏପରିଭାବରେ ପକେଇଦେଲେ । ସେ ତ ତା' ଦୋଷ ସ୍ୱୀକାର କଲା, କ୍ଷମା ଭିକ୍ଷା କଲା, ଅତି ବିକଳ ଭାବରେ; ତେବେ ଆଉ ତା'ର ଦୋଷ କ'ଣ ! ଏତକ ଜାଣିବା ପାଇଁ ତାର ଆଗ୍ରହ ଏ କେତେ ଦିନରେ ଯେତିକି ବଢ଼ିଛି, ତା' ସଙ୍ଗେ ସଙ୍ଗେ ଗୋଟାଏ ଦୁର୍ଜ୍ଜୟ ଅଭିମାନ ବି ତାକୁ ସେତିକି ପାଷାଣ-କଠିନ କରିଦେଇଛି । ଆଉ, ସୁବିଧା ବି ଆଦୌ ଘଟିନାହିଁ ସ୍ୱାମୀଙ୍କ ସହିତ ଭେଟ ହେବାର । ସେଯୋଗେ ଆଜି କନକ ସ୍ଥିର କଲା - ସେ ଯିବ । ଗଉରୀ କହିଲା, ତାକୁ ନେଇ ସେ ଘରେ ଛାଡ଼ି ଆସିବ ବୋଲି; କିନ୍ତୁ କନକ କହିଲା, ସେ ନିଜେ ଚାଲିଯିବ - ତା'ର ଯିବାର ଦରକାର ନାହିଁ । ସଂକଳ୍ପ ଥରେ ସ୍ଥିର ହୋଇଗଲାଠୁଁ ଆଉ ହଟିବାର ଭୟ କ'ଣ ? ଆଉ ସେ ମଧ୍ୟ ଏ ଘରେ ନୂଆ ବୋହୂଟିଏ ନୁହେଁ ।

ଦୁହିଁଙ୍କୁ ଦୁହେଁ ଏ ଅବସ୍ଥାଟି ମୋଟେ ଭାବିପାରି ନାହାନ୍ତି ଯେ, ନିଧିବାବୁ ଦୁଆର ଲଗାଇ ଦେଇଥିବେ ବା ଦେବେ । କନକ ଯେତେବେଳେ ତା' କର୍ତ୍ତବ୍ୟପାଳନ ପାଇଁ ମନ୍ଦ ମନ୍ଦ ଭାବରେ ଅଗ୍ରସର ହେଉଥିଲା ବାହାର ଘରଦୁଆର ଆଡ଼କୁ, ସେତେବେଳେ ତା' ମନରେ ଗୋଟାଏ କୁଣ୍ଠା, ଗୋଟାଏ ଆହତ ଅଭିମାନର ଅସୀମ ଲଜ୍ଜା ରହି ରହି ଜାଗି ଉଠୁଥିଲା; କିନ୍ତୁ ଯେତେବେଳେ ସେ ଦ୍ୱାରର ସମ୍ମୁଖୀନ ହେଲାମାତ୍ରକେ ଦ୍ୱାର ଭିତରୁ ବନ୍ଦ ହୋଇଗଲା, ସେତେବେଳେ ତା'ର ସବୁ ବୁଦ୍ଧିବୃତ୍ତି ଏକାବେଳେକେ କୁଆଡ଼େ ଲୋପ ପାଇଗଲା । ଗୋଟାଏ ଭାରି ବଡ଼ କୋହ ତା' ଛାତିକୁ ରୁନ୍ଧି ପକାଇଲା । ସେ କିଛିକ୍ଷଣ ଅନିଶ୍ଚିତ ଭାବରେ ସେହିଠାରେ ଠିଆହୋଇ, ରହିବ କି ଫେରିବ ଏ ବିଷୟ ଚିନ୍ତାକଲା । ରହି ବା କରିବ କ'ଣ, ଫେରିବ ବା କିପରି । ରହିଲେ, ଡାକିବା ତ ଅସମ୍ଭବ-ଫେରିଲେ କେଉଁ ସେ ଗଉରୀ ମୁହଁକୁ ଚାହିଁପାରିବ ନାହିଁ । ପୁଣି, ଗଉରୀ ଜାଣିଲେ ସେ ନିଶ୍ଚୟ ଆସି ଡକାହକା କରିବ-ଗୋଟାଏ ଗୋଳମାଳ ହେବ । ତା'ର ଆଉ ସେଥିକି ଇଚ୍ଛା ନାହିଁ । ସେ ତ ବଳେ ବଳେ ଆସିଥିଲା । ସେଥିରେ ଯଦି ଏ ବ୍ୟବହାର, ତାହେଲେ ଅନ୍ୟଙ୍କ ଦ୍ୱାରା ଜୋର କରି ଦୁଆର ଖୋଲାଇ ଭିତରକୁ ଗଲେ ବା କେଉଁ ଲାଭ । ଅଜଣାରେ କନକ ଆଖିରୁ ଲୁହଧାର ଗଡ଼ିପଡ଼ିଲା । ନିଜ ଉପରେ ତା'ର ଭାରି ରାଗ ହେଲା, ସେ କାହିଁକି ଗଉରୀ କଥାରେ ଭୁଲି ଏ ଅପମାନର ବୋଝ ବଳେ ପଶି ନିଜ ମଥାରେ ନେଲା ବୋଲି ? ତାକୁ ଟାଣ ହୋଇ ଆସେ, ତା'କୁ କ'ଣ ଆସେନାହିଁ । ବିନାଦୋଷରେ ଏଡ଼େ ଦଣ୍ଡ କାହିଁକି, ସେ ବା ଏଡ଼େ କୋହଳ ହେଲା କିପରି ।

ଶେଷରେ ଯେତେବେଳେ ଦେଖିଲାଯେ, ଘରକୁ ଫେରିଯିବା କଥା ହେବ ନାହିଁ, କନକ ଥକ୍କା ହୋଇ ସେହି ସରୁ ପିଣ୍ଡାଟି ଉପରେ ଦୁଆର ପାଖକୁ ଆଉଜି ବସିପଡ଼ିଲା । ବସିଲାବେଳେ ଆଉ ଯେପରି ଶବ୍ଦ ନହୁଏ, ସେଥିପ୍ରତି ଯଥେଷ୍ଟ ଲକ୍ଷ୍ୟ ରଖି ବସିଥିଲେହେଁ, ଯୋଗକୁ ତା' ଗୋଡ଼ ଛନ୍ଦି ହୋଇ ମଇର ଭାରି ଗୋଟାଏ ବଡ଼ ଶବ୍ଦ ହେଲା । ନିଜେ ସେ ଶବ୍ଦରେ କନକ ଚମକି ଉଠି ସମ୍ଭାଳି ହେଉଁ ହେଉଁ, ପୁଣି ମଲର ଶବ୍ଦ, ଚୂଡ଼ିର ଶବ୍ଦ-ଏହିପରି ଅନେକ ପ୍ରକାର ଶବ୍ଦ ହୋଇଉଠିଲା । ନିଧିବାବୁ କାଳେ ଭାବୁଥିବେ ଯେ, ସେ ଇଚ୍ଛା କରି ଶବ୍ଦ କରିଛି ତାଙ୍କୁ ଜଣାଇବା ଲାଗି, ଏହି ଲଜ୍ଜାରେ ନିଜେ ବିରକ୍ତ ହୋଇ, ପୁଣି କନକ ଉଠିପଡ଼ିଲା ଓ ଅପେକ୍ଷାକୃତ ଅଧିକ ଶବ୍ଦ କରି ସେଠାରୁ ବାହାରି ଚାଲିଲା । ତା'ର ଇଚ୍ଛା, ନିଧିବାବୁ ଜାଣନ୍ତୁ ଯେ, ସେ ଚାଲିଗଲାଣି ବୋଲି । କିଛି ଦୂରକୁ ଯାଇ ମଲଯୋଡ଼ିକୁ ସଯତ୍ନରେ ଆଣ୍ଠୁ ପର୍ଯ୍ୟନ୍ତ ଭିଡ଼ି ଦେଇ, ଟିକିଏ ବସିଲା ଭଳି ଆଶ୍ରୟ ଖୋଜି ଖୋଜି ଥକିଲା, କିନ୍ତୁ ଆଉ କାହିଁ ଟିକିଏ ଥାନ ମିଳିଲା ନାହିଁ । ଝଡ଼ିଅନ୍ଧାର, ଝିପ୍‌ଝିପ୍ ବର୍ଷା ବି ହେଉଛି- ଶୀତ ଶୀତ ଲଗୁଛି । ବିଜୁଳି ମାରିଲାବେଳକୁ କନକ ଥରିଉଠୁଚି ଭୟରେ । ଘଡ଼ଘଡ଼ିଟାଏ ମାରିଲାବେଳକୁ ଏକାବେଳକେ ସେ କାନ୍ଥ ଦିହରେ ମିଶିବାର ଚେଷ୍ଟା କରିଛି । କାହିଁ ଆଉ ତାକୁ ଟିକିଏ ବୋଲି ଆଶ୍ରା ମିଳିଲାନାହିଁ । ଘରକୁ ତ ଫେରିବାର ନାହିଁ ।

ଦେହ ରଖିବାକୁ, ମୁଣ୍ଡ ଗୁଞ୍ଜିବାକୁ ତ ଟିକିଏ ଆଶ୍ରା ମିଳିଲା ନାହିଁ । ତା'ର ନିଜର ସର୍ବାଙ୍ଗୀନ ଅସହାୟତା, ନିରାଶ୍ରୟତା ଯେପରି ମୂର୍ତ୍ତିମତୀ ହୋଇ ତା' ଆଗରେ ବିକଟ କରାଳ ବେଶରେ ଠିଆ ହୋଇଗଲା ସେହି ଅନ୍ଧକାର ଝଡ଼ିବରଷା ରାତିରେ । ସେ ଆକୁଳ ହୋଇ ଚାରିଆଡ଼କୁ ଚାହିଁଲା,-ଟିକିଏ ଆଲୋକ, ଟିକିଏ ସାହସ, ଟିକିଏ ସାମାନ୍ୟ ଆଶ୍ରୟ ପାଇଁ; କିନ୍ତୁ ତାକୁ ଆଉ କାହିଁ କିଛି ଦିଶିଲା ନାହିଁ, ନା ଜୁଟିଲା ନାହିଁ । ଅଭାଗୀର ବାହାରେ ଯେଉଁ ଅନ୍ଧାରକୁ ଭିତରେ ସେହି ଅନ୍ଧାର । ମନରେ ତା'ର ଗୋଟାଏ ଧିକ୍କାର ଜାଗି ଉଠିଲା ନିଜ ପ୍ରତି-ନିଜ ଜୀବନ ପ୍ରତି ।

ଜୀବନ ତାକୁ ଏକାବେଳକେ ବିଷମୟ ପରି ବୋଧହେଲା । ଗଭୀର ବିତୃଷ୍ଣାର ଚରମ ଅବସ୍ଥାରେ ପହଞ୍ଚି ବିଚାରୀ ମନେ ମନେ ଭାବିଲା-ଆଉ ଏ ଜୀବନ ରଖିବି ନାହିଁ । ଆଜି ତାକୁ କିଏ ଅଟକାଇବ । ବିବାହ ପୂର୍ବରୁ ଥରେ ସେ ଏହି ପ୍ରକାର ସଂକଳ୍ପ କରିଥିଲା—ଆତ୍ମହତ୍ୟାର ସଂକଳ୍ପ । କାହିଁକି ସେତେବେଳେ ତାହା କଲାନାହିଁ । ହଁ, ସେତେବେଳେ ମରିଯାଇଥିଲେ ଏତେ ଦହଗଞ୍ଜ ଫେରେ କିଏ ହୋଇଥାନ୍ତା । ତା'ର ମନେପଡ଼ିଲା, ସେ କିପରି ତା' ସଂକଳ୍ପରୁ ଅବ୍ୟାହତି ପାଇଥିଲା ନୀଳୁଭାଇ କଥା

ଭାବି । ସେତେବେଳେ ସେ ଭାବିଥିଲା, ବାହାହେଲେ ନୀଲୁଭାଇ ସହିତ ତା'ର ସମ୍ବନ୍ଧର ଅଣୁମାତ୍ର ତାରତମ୍ୟ ହେବ ନାହିଁ । ସ୍ନେହର ଅବସାନ ତ ହେବ ନାହିଁ, ତା' ଛଡ଼ା ବିବାହ ଦ୍ୱାରା ତା'ର ଓ ନୀଲୁଭାଇର ଯେଉଁ ସମ୍ବନ୍ଧ, ସେଥିରେ କୌଣସି ପରିବର୍ତ୍ତନ ବି ହେବନାହିଁ । ଏହି ବିଶ୍ୱାସରେ ସିନା ସେ ସହଜ ମୃତ୍ୟୁକୁ ଛାଡ଼ି ବିବାହକୁ ବରିନେଇଥିଲା । ଆଜି ତା'ର ମନେ ହେଲା, ଯଦି ବିବାହ ପରାୟ ମୃତ୍ୟୁ ସେ ସ୍ନେହର କିଛି କରିପାରିନାହିଁ, ତା' ହେଲେ ଅସଲ ମରଣ ବି ତା'ର କିଛି କରି ପାରିବ ନାହିଁ ତ ! ତେବେ ସେ ବୃଥା ଏ ଜୀବନ ଆଉ ରଖିବ କାହିଁକି । ହଠାତ୍ ତା' ଆଖିରୁ ଲୁହ ଶୁଖିଗଲା, ସ୍ଥିର ଆଖିରେ ଗୋଟାଏ ବିଦେଶୀ ଦ୍ୟୁତି ଖେଳିଗଲା, ଆଉ ସଙ୍ଗେ ସଙ୍ଗେ ଦେହରେ ଅମାନୁଷିକ ବଳ ଜାତହୋଇଗଲା ।

(୪)

କନକକୁ ବିଦାୟ କରିଦେଇ ଗଉରୀ ବିଛଣାରେ ପଡ଼ି ଭାବିବାକୁ ଲାଗିଲା, ଯାହା ସେ କନକଠାରୁ ଶୁଣିଲା ଏହିଲାଗେ-ସ୍ୱାମୀ-ସ୍ତ୍ରୀଙ୍କର ମତାନ୍ତର ବିଷୟରେ । ସେଥିର ଆଭାସ ସେ ନିଧିଙ୍କଠାରୁ ପୁରୀରେ ଆଗରୁ ପାଇସାରିଥିଲା । କନକର ଯେ ଏହିପରି କ'ଣ ଗୋଟାଏ ଗୁପ୍ତ କଥା ଅଛି, ଏ ସନ୍ଦେହ ତା' ମନରେ ଅନେକ ଦିନରୁ ଜାଗିଥିଲେ ସୁଦ୍ଧା, ନୀଲୁ ଓ ତା ମଧ୍ୟରେ ଯେଉଁ ଗଭୀର ସ୍ନେହ ଅଛି, ତାକୁ ମଧ ଭଲରୂପେ ବୁଝିଥିଲେ ସୁଦ୍ଧା, ଦୁଇ କଥାକୁ ଯୋଡ଼ି ଗୋଟାଏ ମତରେ ଉପନୀତ ହେବାକୁ ସେ ଦେଇନଥିଲା ନିଜକୁ ଆଜିଯାଏଁ । ଆହୁରି ମଧ ଏଠାକୁ ଆସିଲା ଦିନ ନିଧିର କନକର ଭେଟ ହୋଇଥିବାରୁ, ରାତିରେ ଦୁହେଁ ଏକତ୍ର ଶୋଇଥିବାରୁ, ତା ମନରୁ ଚିନ୍ତା ଅନେକ ପରିମାଣରେ ହ୍ରାସ ପାଇଯାଇଥିଲା । ପରେ ଯେତେବେଳେ ସେ ସ୍ପଷ୍ଟ ବିଝିପାରିଲା ଯେ କଥାଟା ଆହୁରି ବଢ଼ିଗଲାଣି ବୋଲି, ସେ ତା' ପ୍ରାଣପଣେ ସମସ୍ତଙ୍କୁ ବଞ୍ଚାଇ ଦୁହିଁଙ୍କ ମଧ୍ୟରେ ପୂର୍ବ ଭାବଟିକୁ ଫେରାଇ ଆଣିବାର ଅନେକ ଚେଷ୍ଟା କଲେ ସୁଦ୍ଧା, କେଉଁ ସେ ମୁହଁ ଖୋଲି କନକକୁ ପଚାରି ପାରି ନାହିଁ-ଏ ମତାନ୍ତରର କାରଣ କ'ଣ ବୋଲି । ଆଜି କନକଠାରୁ ସବୁ ହାଲ ଶୁଣି ସେ ସ୍ତମ୍ଭିତ ହୋଇଗଲା ଓ କନକ ପାଇଁ ତା'ର ଦୁର୍ଭାବନାର ଅନ୍ତ ରହିଲା ନାହିଁ । ସେ ତ କନକକୁ ଭଲରୂପେ ଚିହ୍ନିଛି, ତେଣୁ କନକର କଥାରେ ସେ ଆଦୌ ଅବିଶ୍ୱାସ କରିପାରିଲା ନାହିଁ ।

ଆବେଗ, ଉତ୍କଣ୍ଠାରେ ତାକୁ ନିଦ ହେଲାନାହିଁ । ସେ ବିଛଣାରେ ପଡ଼ି ଛଟପଟ ହେଉଁ ହେଉଁ ଭାବିବାକୁ ଲାଗିଲା—କନକ କଥା, ନୀଲୁକଥା, ନିଧିକଥା,

ରଙ୍ଗୀକଥା ଓ ତା' ସଙ୍ଗେ ସଙ୍ଗେ ନିଜକଥା ମଧ । ସମସ୍ତଙ୍କ ଦୁଃଖକୁ ସେ ନିଜର କରି ଭାବିବାକୁ ଲାଗିଲା, ସମସ୍ତଙ୍କ ଦୁଃଖ ମଧ୍ୟ ବୁଝିଲା । ଏତେ ଅଡୁଆ କ'ଣ ଖାସ୍ ଏ ସମାଜ ଯୋଗେ, ନା ଆଉ କିଛି ଅଛି ଯା ଭିତରେ । ସେ କିଛି ସ୍ଥିର କରିପାରିଲା ନାହିଁ । ସମାଜକୁ ବଦଳାଇ ଦେଲେ କ'ଣ ସଂସାରରୁ ଦୁଃଖ ଉଠିଯିବ ? ଦୁଃଖୀ-ଦୁଃଖିନୀ ନ ଥାଇ ସଂସାର ଚଳିପାରେ-ଏପରି ସମାଜ ହୋଇପାରେ କି ? ନାଃ, ନିଶ୍ଚେ ସେଥିରେ ଆଉ କ'ଣ ଅଛି । ତା'ରି ନିଜ କଥା;—ସେ ଜାଣି ବିଧବା, ଅଭାଗୀ; ସମାଜର ନିୟମାନୁସାରେ ତା'ର ଆଉ ବିବାହ ନାହିଁ—ଜୀବନରେ ଆଉ ସୁଖ ନାହିଁ । ସମାଜରେ ଯଦି ବିଧବା-ବିବାହ ଥାଆନ୍ତା, ତା'ହେଲେ ସେ କରିଥାଆନ୍ତା କି ? ନାଇଁ ପରା; ନା ନା-କେଭେଁ ନା । ଏହିପରି କେତେ ବିଧବା-ଏ କାରଣ ହେଉ, ସେ କାରଣ ହେଉ - କିଛି ନା କିଛି ଗୋଟାଏ କାରଣରୁ ତଥାପି ବାହା ହୋଇପାରନ୍ତେ ନାହିଁ, ବା ହୁଅନ୍ତେ ନାହିଁ । ତେବେ ସମାଜରେ ବିଧବା-ବିବାହ ନାହିଁ ତ, ହେଲା କ'ଣ ! ସେ ବା କାହିଁକି ଅଭାଗୀ ହେବ । ତେବେ ବିଧବା-ବିବାହ ସମାଜରେ ଚଳିବା ଉଚିତ ପରା-ଅନ୍ୟମାନେ, ଯେଉଁମାନେ ବିବାହ କରିବାକୁ ପ୍ରସ୍ତୁତ ଅଛନ୍ତି, ସେମାନଙ୍କ ପାଇଁ । ଗଉରୀର ମନେ ପଡ଼ିଗଲା ତା'ର ମୃତ ସ୍ୱାମୀଙ୍କ ବିଷୟ । ସେ ଭାବି ବସିଲା-ସେ ତା'ର କେତେ ଦିନର ଚିହ୍ନା, କେତେ ଦିନର ବାଞ୍ଛିତ । ଭାବି ଭାବି ଆକୁଳ ହେଲା, କିନ୍ତୁ କିଛି ସ୍ଥିରକରି ପାରିଲା ନାହିଁ । ସେ କେବେ, କେବେ ଯାଇଁ ତାଙ୍କର ତା'ର ଭେଟ ଏ ଜୀବନରେ ନୁହେଁ ପରା-ଅନନ୍ତ କାଳ ପୂର୍ବରୁ କି କ'ଣ ! କେବେ ତା'ର ହୃଦୟଟି ସେ ଦେଇପକାଇଲା ତାଙ୍କୁ, ତା'ର ସେଟା ବି ମନେପଡ଼ିଲା ନାହିଁ । ଏପରି ଅନେକ ଥର ସେ ଏସବୁ କଥା ଭାବିଛି, କିନ୍ତୁ କେବେ କୌଣସି ସିଦ୍ଧାନ୍ତରେ ଉପନୀତ ହୋଇପାରିନାହିଁ । ଆଜି ମଧ ତା'ର ସବୁ ଚେଷ୍ଟା ପରାସ୍ତ ହୋଇଗଲା । ଫଳରେ ତା' ମନରେ ରହିଗଲା ଖାଲି ଗୋଟାଏ ଅନନ୍ତ ଜାଗରଣ, ଗୋଟାଏ ଦିଗନ୍ତବ୍ୟାପୀ ପୂର୍ଣ୍ଣତା-ଯାହା ଇହକାଳ, ପରକାଳ ଭେଦ କରି କୁଆଡ଼େ ଶୂନ୍ୟରେ ମିଶିଯାଇଛି-ତା'ର ନା ଅଛି ଏ ପାଖର ଠିକଣା, ନା ସେ ପାଖର ଅନ୍ତ ।

ଅବାରିତ ପ୍ରସାରିତ ହୃଦୟରେ ତାକୁ ବଡ଼ କରି ବାଧିଲା ତା' ନିକଟତମ ଏଇ କେତୋଟି ହୃଦୟର ଆନ୍ତରିକ ଦୁଃଖ । ସହାନୁଭୂତିରେ ଭରିଯାଇ ସେ ଭାବି ବସିଲା, ଯାର ସମାଧାନ କେଉଁଠି । ଏଇ ଯେ ନୀଲୁ-କନକ—ଦୁହେଁ ଦୁହିଁଙ୍କର ପ୍ରିୟ, ବାଞ୍ଛିତ, -ଯଦି ବିବାହ ହେଲା ହୃଦୟର ସବୁ ଖେଳର ଶେଷ ନିଷ୍ପତ୍ତି, ତେବେ ଏ ଦୁହେଁ ତ ଆଉ

ସମାଧାନର ଗଣ୍ଡି ଭିତରେ ନାହାନ୍ତି ! ରଙ୍ଗୀ ଓ ନୀଲୁ ମଧ୍ୟରେ ଏ ନିଷ୍ପତ୍ତି ସମ୍ଭବ ହୋଇଥାନ୍ତା, ଯଦି ନୀଲୁ ବିବାହକୁ ତା'ର ଶେଷ ନିଷ୍ପତ୍ତି ବୋଲି ନ ଭାବନ୍ତା ! ନ ଭାବିବ ବା କିପରି ? ହଁ, ସତେ କ'ଣ ବିବାହଟା ଏଡ଼େ ବଡ଼ ପଦାର୍ଥ ? ସତେ କ'ଣ ଖାଲି ବିବାହରେ ହୃଦୟ ତା'ର ବାସ୍ତବର ଠିକଣା ପାଏ ? ନାଃ, ଅସମ୍ଭବ । ତେବେ ନିଧି ଆଉ କନକର ବିବାହଟା କ'ଣ ? ଏଟା ଏ ସମାଜର ଦୋଷ, ନା, ଆଉ କିଛି ? ବିବାହରେ ଅନ୍ୟାୟ ମିଳନ ଓ ବ୍ୟର୍ଥ ପ୍ରେମ କ'ଣ ଆଉ କେଉଁ ସମାଜରେ ନାହିଁ ତେବେ ? କେଜାଣି ! ତେବେ କାହିଁକି ମନେ ହୁଏ ଯେପରି ବିବାହଟା କିଛି ନୁହେଁ ବୋଲି । ନାଃ, ନିଶ୍ଚୟ ବିବାହଟା ଗୋଟାଏ ଅନୁଷ୍ଠାନ ଛଡ଼ା କିଛି ନୁହେଁ; ନିଶ୍ଚୟ ବିବାହ ହୃଦୟରାଜ୍ୟର ସମାଧାନର ଶେଷ ନୁହେଁ । ସମାଜର ବିବାହ ସେ ସମାଜର—ସମାଜର ନରନାରୀ ସେଥିରେ ସୁରଧୂନି ଖୋଜିଲେ ପାଇପାରନ୍ତି, ପ୍ରେମର ଅନନ୍ତ ବିଶ୍ରାମ ଖୋଜିଲେ ପାଇପାରନ୍ତି; କିନ୍ତୁ ତା' ବୋଲି ସେହି ବିବାହ ହିଁ ସୁରଧୂନି ବା ସର୍ବସନ୍ତାପହାରିଣୀ, ଯା କିପରି ହୋଇପାରେ । ନାଃ, ସବୁ ଏଇ ହୃଦୟରେ ହିଁ ଅଛି ।

ହଁ, ଏଇ କଥାଟି ନୀଲୁ କାହିଁକି ବୁଝିଲେ ନାହିଁ । ତା' ହେଲେ ହୁଏ ତ ରଙ୍ଗୀକୁ ବିବାହ କରିବାକୁ ରାଜି ହୋଇଥାନ୍ତେ, ତା'ହେଲେ ଏ ସବୁ ଅଡୁଆ ମେଣ୍ଟିଯାଇଥାନ୍ତା ପରା ।

ଏହିପରି କେତେ କ'ଣ ଭାବୁଁ ଭାବୁଁ କେତେବେଳେ ଗଉରୀକୁ ନିଦ ଲାଗିଗଲା । ଆଜି ନିଜେ ଭାବି ଭାବି ସମାଧାନ ସାରା କରିବାକୁ ଯାଇ ଶୋଇବା ପୂର୍ବରୁ ସେ ତା' ଠାକୁରଙ୍କୁ ଆଉ ଡାକିପାରିଲା ନାହିଁ ।

\+ + + + +

ଏଣେ ନିଧିବାବୁ ଦୁଆର ବନ୍ଦ କରିଦେଇ ଅନିଶ୍ଚିତ ଭୟରେ ଚଞ୍ଚଳ, ଅସ୍ଥିର ହୋଇ ଶୋଇବା ତ ଦୂରେ ଥାଉ, ସେହି ଘରେ ଯାଡ଼େ ସ୍ୟାଡ଼େ ବୁଲି ବୁଲି ଭାବିବାକୁ ଲାଗିଲେ । ଦୁଆର ବନ୍ଦ କରିଦେଇ ସାରି ତାଙ୍କ ମନ ଅଧେ ଦବିଗଲା । ଭାବିଲେ, ବୋଧ ହୁଏ ଠିକ୍ ହେଲାନାହିଁ । ଯେତେବେଳେ କନକର ଅଳଙ୍କାରର ଆହ୍ୱାନ ତାଙ୍କ କାନରେ ପଡ଼ିଲା, ସେ ବ୍ୟସ୍ତହୋଇ ଉଠିଗଲେ ଦ୍ୱାର ଖୋଲିଦେବାକୁ । ଜଞ୍ଜିର ଉପରେ

ହାତ ଦେଲାମାତ୍ରକେ ପୁଣି ତାଙ୍କୁ କିଏ ପଛକୁ ଓଟାରି ଆଣିଲା । ନିଜ ପ୍ରତି ଧିକ୍କାର ଦେଇ କହିଲେ, ''ପୁଣି ଦୁର୍ବଳତା ।'' ସେ ଫେରି ଆସି ଖଟ ଉପରେ ବସି ପଡ଼ିଲେ । କେଜାଣି କାହିଁକି ତାଙ୍କ ଆଖିରୁ ଲୁହ ଝରଝର ହୋଇ ଗଡ଼ିପଡ଼ିଲା । ଦୁର୍ବଳତା ପୁଣି ମାଡ଼ି ଆସୁଛି ବୋଲି ଭାବି, ଉଠି ଅଧିକତର ବେଗରେ ଧାଁଦଉଡ଼ କରିବାକୁ ଲାଗିଲେ । ଏତିକିବେଳେ ତାଙ୍କ କାନକୁ ଆସିଲା କନକର ଚଞ୍ଚଳ ପଦଶବ୍ଦ । ଚାଲିଯାଉଛି ଜାଣି, ଦୁଆର ପାଖକୁ ସନ୍ତର୍ପଣରେ ଆସି ଫାଙ୍କବାଟେ ତାକୁ ଥରେ ଦେଖିନେବାର ଲୋଭ ସମ୍ବରଣ କରି ପାରିଲେ ନାହିଁ, କିନ୍ତୁ କିଛି ମାତ୍ର ଦେଖାଗଲା ନାହିଁ, ବର୍ଷା ଅନ୍ଧାର ଯୋଗେ । ପୁଣି ଦୁର୍ବଳତା, ପୁଣି ଅଶ୍ରୁଧାର । ଏଥର ଅନେକ ଦୂରରୁ କନକର ପଦଶବ୍ଦ, ଅଳଙ୍କାରସିଞ୍ଜିତ କ୍ଷୀଣ ହୋଇ ଶୁଭୁଥାଏ । ହଠାତ୍ ନିଧିବାବୁ ଦ୍ୱାର ଖୋଲିପକାଇଲେ, ଭାବିଲେ-ଯାଏ; ଫେରାଇଆଣେ । ଘରୁ ବାହାରି ପଡ଼ିଲା ମାତ୍ରକେ ତାଙ୍କୁ ଭେଟିଲା ଗୋଟାଏ ବିରାଟ ଅନ୍ଧକାର ପୁଞ୍ଜୀଭୂତ ହୋଇ । କେଜାଣି କାହିଁକି ନିଧିବାବୁ ପୁଣି ଦବିଗଲେ । ସେତେବେଳକୁ କନକର ଆଉ ସୋର୍‌ଶବ୍ଦ ନାହିଁ । ଆଉ ପାଦ ତାଙ୍କର ଚାଲିଲାନାହିଁ । ସେ ଭାବିଲେ, କନକ ଚାଲିଗଲାଣି ବୋଧହୁଏ । ନିଜଠାରେ ନିଜେ ଲଜ୍ଜିତ ହୋଇ, ଆହତ ଆତ୍ମସମ୍ମାନ ଘେନି ପୁଣି ଫେରିଆସିଲେ ଭିତରକୁ । ଦୁଆର ଆଉଜାଇ ଦେଲା ମାତ୍ରକେ ହାତ ସ୍ୱତଃ ଚାଲିଗଲା ଜଞ୍ଜିର ପାଖକୁ । କିନ୍ତୁ ନିଧିବାବୁ ଆଉ ଜଞ୍ଜିର ଲଗାଇଲେ ନାହିଁ-ଭାବିଲେ, ସେ ତ ଚାଲିଗଲାଣି, ଆଉ କ'ଣ । ଅଥବା ଦୁର୍ବଳ ନିର୍ଲଜ୍ଜ ମନରେ ପୁଣି ଟିକିଏ ଆଶା ରହିଲା, ଯଦି ଫେରିଆସେ !!

କିନ୍ତୁ କନକ ଆଉ ଆସିଲା ନାହିଁ । ମୋହରେ ଆଚ୍ଛନ୍ନ ହେଲାପରି ନିଧିବାବୁ ବିଛଣାଟିରେ ପଡ଼ିରହିଥାନ୍ତି । ନିଦ ହୋଇନାହିଁ କି ସମ୍ପୂର୍ଣ୍ଣ ଜାଗ୍ରତ ବି ନାହାନ୍ତି । ମନରେ ଗୋଟାଏ ଘୋରବିକାର ଭାବ-ଯାହା ଆଗରୁ ରହିଯାଇଥିଲା, ସେଟା ଏ ଅର୍ଦ୍ଧଜାଗ୍ରତ୍ ଅବସ୍ଥାରେ ଟିକିଏ ଲଇଁଯାଇଛି, ଆଉ ଭିତରର ଯେଉଁ ଆଶାର ଆଲୋକଟିକ ସେଥିରେ ଭସ୍ମାବୃତ ବହ୍ନିପରି ଢ଼ାଙ୍କିହୋଇ ରହିଥିଲା, ସେଟା ବର୍ତ୍ତମାନ ସ୍ୱାଧୀନଭାବରେ ମୁଣ୍ଡ ଟେକି ଉଠିଛି । ଏହିପରି ପ୍ରାୟ ଘଣ୍ଟାଏ କାଳ ଚାଲିଯାଇଥିବ, ତା' ପରେ ନିଧିବାବୁ ଟିକିଏ ଟିକିଏ କରି କ୍ରମେ କେତେ ସ୍ୱପ୍ନ ଦେଖିବାକୁ ଲାଗିଲେ । ବର୍ତ୍ତମାନ ତାଙ୍କ ମନର ସବୁ ବୃତ୍ତି ଶାନ୍ତ ହୋଇଯାଇ ରହିଛି ଖାଲି ଗୋଟାଏ ଚଞ୍ଚଳ ଉଦ୍‌ବିଗ୍ନତା-ଯାହା ତାଙ୍କୁ ରହି ରହି ଚମକିତ କରିଦେଉଛି । ସେହି ଯେ ଆଶାଟିକ ମନରେ ତାଙ୍କର ଜାଗିଉଠୁଛି ମୁକ୍ତ, ସ୍ୱାଧୀନଭାବରେ, ସେହି ଆଶାରେହିଁ ସେ ଉତ୍କଣ୍ଠା । ହଠାତ୍ ଉଠିପଡ଼ି

ଅସଂଯତଭାବରେ ଘରର ଚାରିଆଡ଼କୁ ଚାହିଁ, କେତେବେଳେ କେତେବେଳେ ପୁଣି ଦ୍ୱାର ପର୍ଯ୍ୟନ୍ତ ଯାଇ, ଦ୍ୱାର ଖୋଲି ଅନାଇ ଦେଖୁଛନ୍ତି; ପୁଣି ନିରାଶ ହୋଇ ଆସି ସେହି ସ୍ୱପ୍ନରାଜ୍ୟରେ ନିଜକୁ ବିସର୍ଜନ ଦେଉଛନ୍ତି । ଏହିପରି କେତେ ଥର କଲେଣି, ତା'ର ସୀମା ନାହିଁ ।

ଥରେ ଏହିପରି ଯାଇ ବିଧିମତେ ଶୋଇବାର ପ୍ରତିଜ୍ଞା କରି ନିଧିବାବୁ ବିଛଣାରେ ପଡ଼ିଗଲେ । ଟିକିଏ ଗାଢ଼ତରଭାବରେ — ଏଥର ମୋହ ତାଙ୍କୁ ଘାରି ପକାଇଲା । ସେ ସ୍ୱପ୍ନ ଦେଖିବାକୁ ଲାଗିଲେ । ଅନିୟମିତ ଭାବରେ, ଏ କଥା, ସେ କଥା ପରେ ହଠାତ୍ ତାଙ୍କୁ ଦେଖାଗଲା—ଗୋଟାଏ ସରୁ ଗୋହିରି ବାଟ, ଦୁଇ ପାଖରେ କଣ୍ଟାବାଡ଼ ଅଙ୍କାବଙ୍କା ହୋଇ ବାଟ ଉପରକୁ ମାଡ଼ି ମାଡ଼ି ଆସିଛି; ସଞ୍ଜଅନ୍ଧାର ତା' ଉପରେ ପୁଣି ଝଡ଼ିପବନ ପରି ଶୁଖିଲା ବତାସ ଗୋଟାଏ ଧୂଳିଗୁଡ଼ିଏ ଉଡ଼ାଇ ଆହୁରି ଅନ୍ଧାରିଆ କରିପକାଇଛି । ସେହି ବାଟେ ସେ ନିଜ ଲୁଗାପଟା ସମ୍ଭାଳି ଧୀରେ ଧୀରେ ଚାଲିଛନ୍ତି, ଯାଡ଼େ ସ୍ୟାଡ଼େ ଅନାଇ ଅନାଇ ଅତି ଶଙ୍କିତ ଚରଣରେ । କ୍ରମେ ପବନ ବେଗ ଟିକିଏ ମାନ୍ଦା ପଡ଼ିଗଲା, ଅନ୍ଧାର ଆହୁରି ଘନ ହୋଇଗଲା, ତାଙ୍କ ନାକ ସଳଖରେ ଯେଉଁ କ୍ଷୁଦ୍ର ତାରାଟି ଏହି ଲାଗେ ଦପ୍ ଦପ୍ ହୋଇ ଜଳୁଥିଲା ସେଟା ଆଉ ବାରିହେଲା ନାହିଁ, ତେବେ ବିଜୁଳି ଚମକିବାରୁ ଆଲୁଅ ଟିକିଏ ଟିକିଏ ହେଲା । ହଠାତ୍ ଗୋଟାଏ ଘଡ଼ଘଡ଼ି ବିଜୁଳି ହେଲାଯେ, ସେ ସେହିଠାରେ ଥକ୍କା ହୋଇ ଛିଡ଼ା ହୋଇଗଲେ ଦଣ୍ଡେକାଳ । ପୁଣି ଯେତେବେଳେ ଆଖି ଖୋଲିବାକୁ ସାହସ କଲେ, ସେତେବେଳେ ଦେଖନ୍ତି ତ, - ସେ ଆଉ ସେ ଗୋହିରି ବାଟରେ ନାହାନ୍ତି; ଝଡ଼ି ନାହିଁ, ବର୍ଷା ନାହିଁ, ପବନ ନାହିଁ, ପାଣି ନାହିଁ; -ତାଙ୍କ ଅନ୍ତର ବାହାର ଗୋଟାଏ ମଧୁମୟ ହସରେ ଭରିଯାଇଛି । ସେ ମଧ ଏକା ନାହାନ୍ତି, କିଏ ଗୋଟାଏ ତାଙ୍କୁ ଗାଢ଼ ଆଲିଙ୍ଗନରେ ରହି କ୍ରମେ ତାଙ୍କରିଠାରେ ଅଧିକରୁ ଅଧିକ ମିଶି ମିଶି ଯାଉଛି;-ହୁଏ ତ ସେ କନକ । ଏହିପରି ସମୟରେ ହଠାତ୍ ପୁଣି ପାଣି ଟପ୍ ଟପ୍ ପଡ଼ିଲା ପରି ତାଙ୍କୁ ଲାଗିଲା-ପଟା ଉପରେ ବର୍ଷା ହେଲେ ଯେପରି ଶବ୍ଦ ହୁଏ ଠିକ୍ ସେହିପରି । ସେ ଟିକିଏ ମୁଣ୍ଡ ଟେକି ଯାଡ଼େ ସ୍ୟାଡ଼େ ଚାହିଁଲେ । ଏତିକିବେଳେ ତାଙ୍କର ମନେ ହେଲା, କିଏ ଯେପରି କୋମଳ ହସ୍ତରେ ତାଙ୍କ ପିଠି ଆଉଁସି ଦେଉଛି । ଚେଷ୍ଟା କରି ସୁଦ୍ଧା ଆଉ ସେ ବୁଲିକରି ଚାହିଁ ପାରିଲେନାହିଁ । ବିକଳ ନିଶ୍ଚେଷ୍ଟଭାବରେ କିଛିକ୍ଷଣ ପଡ଼ିରହିଲା ପରେ ତାଙ୍କୁ ପୁଣି ଜଣାଗଲା, ଯେପରି କିଏ ଗୋଟିଏ ସେହିପରି ଧୀରଭାବରେ ତାଙ୍କ ପାଦରେ ହାତ ବୁଲାଉଛି । ପୁଣି ସେ

ଚେଷ୍ଟାକଲେ ନିଜ ପାଦଆଡ଼କୁ ଅନାଇ ଦେଖିବା ପାଇଁ, କିନ୍ତୁ ତାଙ୍କର ସବୁ ଚେଷ୍ଟା ବ୍ୟର୍ଥ ହେଲା । ଏତିକିବେଳେ ତାଙ୍କ କୋଳରୁ ଚକିଆଟା କିପରି ଖସିଯାଇ ଖଟ ତଳକୁ ଗଡ଼ିପଡ଼ିଲାରୁ ଗୋଟାଏ ଶବ୍ଦ ହେଲା, ଆଉ ତାଙ୍କୁ ଜଣାଗଲା, ଯେପରି ଆହୁରି ଗୋଟାଏ ବଡ଼ ଶବ୍ଦ ତାଙ୍କ ଛାତି ଭିତରୁ ବାହାରୁଛି । ନିଧିବାବୁ ଧଡ଼୍‌ପଡ଼୍ ହୋଇ ଉଠି ବସିଲାବେଳକୁ ବି ସେ ଶବ୍ଦ ମିଳାଇ ଯାଇନାହିଁ-ବରଂ ଗୋଟାଏ ଭାରି ପଦାର୍ଥ ପାଣିରେ ପଡ଼ିଲେ ଯେପରି ଶବ୍ଦ ହୁଏ, ସେହିପରି ଗୋଟାଏ ବଡ଼ ଶବ୍ଦ ସେହିକ୍ଷଣି ଦ୍ୱାର ଫାଙ୍କବାଟେ ତାଙ୍କ କର୍ଣ୍ଣଗୋଚର ହେଲା । ସ୍ୱପ୍ନ କି ସତ୍ୟ, ଏହିତା ଭାବୁଁ ଭାବୁଁ ଅଦୂରରେ ଶୁଣାଗଲା ମଲ ଓ ଅନ୍ୟାନ୍ୟ ଅଳଙ୍କାରର ରୁଣୁ ଝୁଣୁ ଶବ୍ଦଚାପି ହେଲାପରି, ତଥାପି ବୁଝାଯିବା ଭଳି । ଏଥର ନିଶ୍ଚୟ ସ୍ୱପ୍ନ ନୁହେଁ ବୋଲି ଭାବି, ନିଧିବାବୁ ଲଣ୍ଠନଟାକୁ ତେଜିଦେଇ, ହାତରେ ଧରି ବାହାରି ପଡ଼ିଲେ । ଦ୍ୱାର ପାଖକୁ ଆସି ଦେଖିଲେ, ଦ୍ୱାରଟା ଖୋଲା ଅଛି । ସେ ମେଲା ରଖିଥିଲେ କି ଆଉଜାଇ ଦେଇଥିଲେ, ଏ କଥା ଭାବିବା ପୂର୍ବରୁ ପୁଣି ସେହି ଅଳଙ୍କାର-ଶବ୍ଦ, ନିକଟରୁ ଅଥଚ କିପରି ଦୂରରୁ ଆସିଲା ପରି ତାଙ୍କୁ ଶୁଭିଲା । ସେ ବ୍ୟସ୍ତ ହୋଇ ସିଧା ଚାଲିଲେ ଭିତର ଆଡ଼କୁ, ସେ ଶବ୍ଦ ତାଙ୍କ କାନ ପାଖରେ ହୋଇକରି ଶୁଭୁଥାଏ ଅଥଚ ଯେପରି ଦୂରର ଶବ୍ଦ; -କୁଆଡୁ ଆସୁଛି, କିଛି ଠଉର କରି ହେଉନାହିଁ !

ସେତେବେଳକୁ ବର୍ଷା ଥମିଗଲାଣି, ଆକାଶ ଗୋଟାଏ ଭରି ଅସଂଖ୍ୟ ତାରା ଦାଉ ଦାଉ ଜଳୁଛନ୍ତି । ନିଧିବାବୁ ପିଣ୍ଡା ପିଣ୍ଡା ଯାଇଁ, ମଝି ବାହାର ପାରି ହୋଇ, ଭିତର ଖଞ୍ଜା ଦୁଆରେ ପହଞ୍ଚିଲେ । ଅଳଙ୍କାର ରୁଣୁଝୁଣୁ ତାଙ୍କ କାନରେ ସେହିପରି ବାଜୁଥାଏ । ପହଞ୍ଚି ଦେଖିଲେ, ଦୁଆର ଭିତରୁ ବନ୍ଦ । ଫେରିଲେ । ସେହି ମଝି ବାରଣ୍ଡା ବାଟେ ଆସିଲାବେଳକୁ ତାଙ୍କୁ ଜଣାଗଲା, ଯେପରି ସେ ଶବ୍ଦଟା ଆହୁରି ନିକଟରେ ତାଙ୍କର; ଅଥଚ କେଉଁଠୁ ଆସୁଛି, ଠିକ୍ ସେ ଧରିପାରିଲେ ନାହିଁ । ପୁଣି ବାହାର ଘର ପିଣ୍ଡାକୁ ଆସି କୁଆଡ଼େ ଯିବେ, କ'ଣ କରିବେ ଭାବୁଛନ୍ତି, ଏତିକିବେଳେ ପାଣିରେ ଭାରି ଜିନିଷ କିଛି ବାଡ଼େଇ ହେଲେ ଯେପରି ଶବ୍ଦ ହୁଏ, ସେହିପରି ଶବ୍ଦଟାଏ ଲାଗେ ଲାଗେ ତିନିଚାରି ଥର ତାଙ୍କର କାନ ପାଖରେ ହୋଇକରି ବାଜିଗଲା । ଚମକି ପଡ଼ି ନିଧିବାବୁ ଚାରି ଆଡ଼କୁ ଚାହିଁଲେ । କାହିଁ କୁଆଡ଼େ ତ ନାହିଁ କିଛି । ଅଗଣା ମଝାମଝିରେ ଯେଉଁ ପକ୍କା କୁଅଟା, ସେଇଟା ଖାଲି ତରା ଆଲୁଅରେ ଧଳା ହୋଇ ଦିଶୁଛି । ହଠାତ୍ ନିଧିବାବୁଙ୍କ ମନରେ ଗୋଟାଏ ଅନିଶ୍ଚିତ ଭୟ ପଶିଗଲା । ସେତିକିବେଳେ ବି ଚାରିଆଡ଼େ ଶୂନ୍‌ଶାନ୍ ନିସ୍ତବ୍ଧ ହୋଇଗଲା— ଆଉ କିଛି ବୋଲି କିଛି କୁଆଡୁ ଶୁଭୁ ନାହିଁ । ନିଧିବାବୁ

ତ୍ରସ୍ତପଦରେ ଭିତର ଖଞ୍ଜା ଦ୍ୱାର ପର୍ଯ୍ୟନ୍ତ ଧାଇଁ ଯାଇ କମ୍ପିତ ହସ୍ତରେ କବାଟରେ ହାତ ମାରି ଡାକିବାକୁ ଲାଗିଲେ । ସେ ମନେ ମନେ ସଂଯତ ଭାବରେ ହିଁ କବାଟରେ ହାତ ମାରୁଛନ୍ତି ଓ ଯଥାସମ୍ଭବ ବଡ଼ ପାଟିରେ 'ବୋଉ, ବୋଉ' ବୋଲି ଡାକୁଛନ୍ତି; କିନ୍ତୁ ପ୍ରକୃତରେ କବାଟ ଭାଙ୍ଗିଲା ଭଳି ଦୈହିକ ବଳ ପ୍ରୟୋଗ କରୁଛନ୍ତି ଧକ୍କା ମାରିଲାବେଳେ; ଏଣେ ମୁହଁରୁ ଭାଷା ବାହାରିବାକୁ ନାହିଁ ! କଥା କହିଲା ଭଳି, ଡାକିଲା ଭଳି ମୁହଁ କରୁଥିଲେ ସୁଦ୍ଧା ଗୋଟାଏ ବୋଲି ଶବ୍ଦ ତାଙ୍କ ମୁହଁରୁ ଉଚ୍ଚାରିତ ହେଉନାହିଁ ।

ଯାହାହେଉ, କବାଟଟି ଭାଙ୍ଗିଯିବା ପୂର୍ବରୁ ହିଁ ଗଉରୀ ଉଠିଆସି, ଦୁଆର ଖୋଲୁଁ ଖୋଲୁଁ ସେପଟୁ କହିଲା, "ଏଡ଼େ ନିର୍ବୁଦ୍ଧିଯାଣୀ ନା ଲୋ·ଚୁ ବୋହୂ, ଏଡ଼େ ହେଁ କବାଟ ବାଡ଼ଉଚୁ !" ଏହା କହି ଗୋଟାଏ ବଡ଼ ହାଇ ମାରି, ଗଉରୀ ଦୁଆର ଖୋଲି ଦେଇ ଡ଼ିବିଟି ହାତରେ ଧରି ଆଡ଼ ହୋଇ ଛିଡ଼ା ହେଲା, କନକ ଭିତରକୁ ଯିବ ବୋଲି । କିନ୍ତୁ କାହିଁ କନକ ! ଏ ଯେ ନିଧି ! ଏଣେ ନିଧିବାବୁ ଗଉରୀ କଥା ଶୁଣି ସ୍ତମ୍ଭିତ ହୋଇଯାଇଥିଲେ—କନକ କାହିଁ ତାହେଲେ ? ପ୍ରଶ୍ନ କଲାପରି ବାଲୁ ବାଲୁ ହୋଇ ଗଉରୀ ମୁହଁକୁ କିଛିକ୍ଷଣ ଚାହିଁ ରହି, ନିଧିବାବୁ ଶେଷରେ ଅତି କଷ୍ଟରେ କହିଲେ "କନକ ?" "କି ରେ, ବୋହୂ ପରା ତୋରି ପାଖକୁ ଆସିଥିଲା !" ବୋଲି କହି ଗଉରୀ ନିଧିବାବୁଙ୍କ ଆଡ଼କୁ ଭଲ କରି ଏତେବେଳେ ଏଇ ପ୍ରଥମ ଅନାଇଲା । ନିଧିବାବୁଙ୍କୁ ଦେଖି ତା' ଗୋଡ଼ଠାରୁ ମୁଣ୍ଡଯାଏଁ ଖାଲି କଞ୍ଚାପାଣି ହୋଇଗଲା । ଏ କ'ଣ ସେହି ନିଧି, ଯାହାକୁ ସେ ଶୋଇଲାବେଳେ ଦେଖି ଯାଇଥିଲା ।

ଏଣେ ନିଧିବାବୁ ସବୁ ବୁଦ୍ଧିବୃତ୍ତି ଫେରି ପାଇଲା ପରି ଝାଡ଼ିଝୁଡ଼ି ହୋଇ କହିଲେ, "ଅପା, ମୁଁ ତ ଦୁଆର ଦେଇଥିଲି ତୁ ଯିମିତି ଆସିଲୁ । ସେ ଦୁଆର ପାଖକୁ ଯାଇଥିଲା, ହଁ-ଫେର୍ ଫେରି ଆସିଲା ତ ଭିତରକୁ ।" "ଆରେ ଇୟେ କ'ଣ, କୁଆଡ଼େ ଗଲା !" ଗଉରୀ ମଧ ଅନିଶ୍ଚିତ ଭୟରେ ଥରି ଉଠିଲା । ଭେଲ୍‌କା ମାରିଲା ପରି ଦୁହେଁ ଦୁହିଙ୍କ ମୁହଁକୁ ଅନାଇ କିଛିକ୍ଷଣ ସେହିଠାରେ ରହିଲେ । ହଠାତ୍ ଏତିକିବେଳେ ସେହିଠାରୁ କେଉଁଠୁ ନିକଟରୁ ଗୋଟାଏ ଶବ୍ଦ ଆସି ଦୁହିଁଙ୍କୁ ଏକାବେଳକେ ଚମକାଇ ଦେଲା । ଯେପରି କିଛି ଗୋଟାଏ ପାଣିରେ ବାଡ଼େଇ ହେଉଛି; ଏହିପରି ଶବ୍ଦ । ସାଙ୍ଗେ ସାଙ୍ଗେ ଗଉରୀ ଆଖି ଆଗରେ ଘଟନାଟା ସଫା ହୋଇ ଖେଳିଗଲା । ସେ ନିଧିଙ୍କୁ ଠେଲିଦେଇ କହିଲା, "ଆରେ ଓଲୁ, ଦେଖ-ସେଇ କୁଅ ଭିତରେ କିଏ ପଡ଼ିଚି । ବୋଉ, ବୋଉ !"

ଦୁହେଁ କୁଅ ପାଖକୁ ଧାଇଁଗଲେ । ଦୁଇଟାଯାକ ଆଲୁଅ ଭିତରକୁ ଦେଖାଇ ଝୁଙ୍କି ପଡ଼ି ଦୁହେଁଯାକ ଚାହିଁଲେ । ପ୍ରଥମେ କିଛି ଦେଖାଗଲା ନାହିଁ, ପରେ ଗୋଟାଏ ଧଳା ଲୁଗା ବୁଢ଼ୁକା ପରି ଫୁଲି ରହିଥିବାର ଓ କୁଅ ଭିତରେ ଯାଡ଼େ ସ୍ୟାଡ଼େ ଘୂରି ବୁଲୁଥିବାର ଦେଖାଗଲା । ନିଧିବାବୁ ଲଣ୍ଠନଟାକୁ କୁଅ ଉପରେ ଥୋଇଦେଇ ଲୁଗା ଭିଡ଼ି ଭିତରକୁ ପଶିବା ପାଇଁ ଓହ୍ଲାଇ ପଡ଼ିଲେ ।

## (୪)

ନୀଳୁବାବୁଙ୍କ ସହିତ ପାଠକ ପାଠିକାଙ୍କର ଅନେକ ଦିନରୁ ସାକ୍ଷାତ୍ ହୋଇନାହିଁ । ଏଡ଼େ ଅଘଟନ ଘଟାଇ ସେ କୁଆଡ଼େ ଚାଲିଯାଇଛନ୍ତି, ସେ ଦିନୁ ତାଙ୍କର ବି ଖବର ନାହିଁ । ସେହି ଦିନଠାରୁ-ଯେଉଁ ଦିନ ରଙ୍ଗୀର ସେ ଦୁର୍ଦ୍ଦଶା ଘଟିଥିଲା—ତାଙ୍କ ଗତିବିଧି ଟିକିଏ ଉଲ୍ଲେଖ ନକଲେ ଆଉ ଚଳୁନାହିଁ ।

ପୂର୍ବରୁ ବୋଲାଯାଇଅଛି ଯେ, ନୀଳୁବାବୁଙ୍କୁ ଶେଷ ପର୍ଯ୍ୟନ୍ତ ଜଣାନଥିଲା ଯେ, ରଙ୍ଗୀ ପାଇଁ ହିଁ ନିଧିବାବୁଙ୍କ ଘରେ ତାଙ୍କର ଏତେ ଆଦର ଓ ଅବାଧ ଗତି । ବରଂ ପ୍ରଥମେ ଯେତେବେଳେ ଏମାନେ କଟକ ଆସିଲେ, ସେତେବେଳେ ତାଙ୍କୁ ପ୍ରକାରାନ୍ତରରେ ସମଝାଇ ଦିଆଯାଇଥିଲା ଯେ, ରଙ୍ଗୀ ପ୍ରସଙ୍ଗ ଚିରଦିନ ପାଇଁ ଭାଙ୍ଗି ଦିଆଯାଇଅଛି । ସେ ଦିନ ତାଙ୍କୁ ଉପଲକ୍ଷ୍ୟ କରି ଯେ ଏତେଗୁଡ଼ିଏ ଘଟନା ଘଟିଗଲା, ଏହା ତାଙ୍କ ନିକଟରେ ପ୍ରହେଳିକା ଭଳି ରହିଥିଲା—ଯେ ପର୍ଯ୍ୟନ୍ତ ଭିତରୁ ତାଙ୍କର ଡାକ ଆସିନଥିଲା । ଭିତରକୁ ଆସି ରଙ୍ଗୀକୁ ତଦବସ୍ଥ ଦେଖି ତାଙ୍କ ହୃଦୟମନ ଗୋଟାଏ ଗଭୀର କରୁଣାରେ ଭରି ଉଠିଥିଲା । ପୁଣି ଯେତେବେଳେ କଥାକଥାକେ ସେ ଜାଣିଲେ ଯେ, ରଙ୍ଗୀ ହିଁ ତାଙ୍କୁ ଦେଖିବାକୁ ଡାକିଥିଲା-ସଜ୍ଞାନରେ ବା ଅଜ୍ଞାନରେ ହେଉ, -ସେତେବେଳେ ଆଉ ତାଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସମସ୍ତ ଅବସ୍ଥା ବିଚାରରେ ଅବଶ୍ୟ ରଙ୍ଗୀ ପ୍ରତି ତାଙ୍କର ସହାନୁଭୂତି ଛଡ଼ା ଆଉ କିଛି ଭାବ ମନରେ ହେଲା ନାହିଁ, କିନ୍ତୁ ସଙ୍ଗେ ସଙ୍ଗେ ସମାଜ ପ୍ରତି ଗୋଟାଏ ବିତୃଷ୍ଣା ଓ ଘୃଣାରେ ତାଙ୍କ ମନ ନିଜର ଅସହାୟତା ଉପଲବ୍ଧି କରି ହଠାତ୍ କଠିନ ହୋଇଉଠିଲା । ଗୋଟାଏ ମୁହୂର୍ତ୍ତରେ ପୂର୍ବାପର ସମସ୍ତ ଘଟନା ଛାୟାଚିତ୍ର ପରି ସ୍ପଷ୍ଟ ହୋଇ ତାଙ୍କ ଆଖି ଆଗରେ ଖେଳିଗଲା । ବର୍ତ୍ତମାନ ସବୁଥିର ଅର୍ଥ ସେ ସୁସ୍ପଷ୍ଟ ହୃଦୟଙ୍ଗମ କରି ପାରିଲେ । ଯେତିକି ସେ ସବୁ କଥା ଭାବିଲେ, ସେତିକି ରଙ୍ଗୀର ଅସହାୟତା

ଉପଲବ୍ଧି କଲେ ସୁଦ୍ଧା ତାଙ୍କ ମନ ଟଳିଲା ନାହିଁ, ହୃଦୟ ତରଳିଲା ନାହିଁ,- କେଉଁଠାରେ କି ଗୋଟାଏ ଅବରୁଦ୍ଧ କଠିନତା ପୁଞ୍ଜୀଭୂତ ହୋଇ ତାଙ୍କୁ ସ୍ୱାଭାବିକ ସମସ୍ତ କୋମଳ ପ୍ରବୃତ୍ତିର ବହୁଦୂରରେ ନେଇ ଥୋଇଦେଲା; ଗୋଟାଏ ଅଭିମାନର ଭାଷାହୀନ ଆଲୋଡ଼ନରେ ତାଙ୍କ ମନ ଅସ୍ଥିର ହୋଇ ରହି ରହି ତାଙ୍କୁ ଆପାଦମସ୍ତକ ଦୋହଲାଇ ଦେବାକୁ ଲାଗିଲା । ସେ କରୁଣରୁ କରୁଣତର ଦୃଶ୍ୟଟି ସମକ୍ଷରେ ଯେଉଁ ଅଶ୍ରୁ ତାଙ୍କ ସ୍ଥିର ନେତ୍ରରୁ ଗଡ଼ି ପଡ଼ିବାକୁ ବସୁଥାଏ, ସେଟା ଯେତେ କରୁଣାର ନୁହେଁ, ତେତେ କ୍ରୋଧର ! କାହା ପ୍ରତି ସେ ଅକ୍ଷମ ଅସହାୟ କ୍ରୋଧ, ସେ ନିଜେ ବି ହଠାତ୍ ବୁଝିପାରି ନାହାନ୍ତି । ଯେତେବେଳେ କନକ ତା'ର ଅଶ୍ରୁଭରା ଆଖିଯୋଡ଼ିକ ଆଶା ଓ ମିନତିରେ ପୂର୍ଣ୍ଣ କରି ତାଙ୍କରି ମୁହଁ ଉପରେ ଶଙ୍କିତ ଭାବରେ ଥରକୁ ଥର ସ୍ଥାପନ କଲା, ସେତେବେଳେ ତାଙ୍କ ଆପାଦମସ୍ତକ ପ୍ରକମ୍ପିତ କରି ଯେଉଁ ବିଜୁଳି ଖେଳିଗଲା, ସେଥିରେ ସେ ବିଶ୍ୱବ୍ରହ୍ମାଣ୍ଡ ଭୁଲିଯାଇ ଦେଖିଲେ କେବଳ ନିଜକୁ ଓ କନକକୁ—ହୃଦୟରେ ରଙ୍ଗୀ ପାଇଁ ସୋରିଷ ପରିମାଣ ସ୍ଥାନ ବି ରହିଲା ନାହିଁ । ଏଣେ କନକର ଅନ୍ୟାୟ ଅଶାର ଦୁଃସାହସ ତା'ର ମୂଳରୁ ଶେଷ ପର୍ଯ୍ୟନ୍ତ ଅବିହିତ ଆଚରଣର ଚରମ ସାକ୍ଷୀ ହୋଇ ତାଙ୍କୁ ଆହୁରି କ୍ରୋଧରେ ଅଧୀର କରି ପକାଇଲା । ତା' ଅବ୍ୟକ୍ତ ଅନୁରୋଧ ବା ଯାଚ୍ଞା ବୁଝି ପାରି ତାଙ୍କର ମୁଣ୍ଡଠାରୁ ଗୋଡ଼ଯାଏଁ ଏକାବେଳେକେ ଜଳି ଉଠିଲା । ରଙ୍ଗୀ ପ୍ରତି ଅନୁକମ୍ପା, ତଥା ସମାଜ ପ୍ରତି ବିଶ୍ରଦ୍ଧା ସବୁକୁ ଡୁବାଇ ପକାଇ ତାଙ୍କ ମନ ସମ୍ମୁଖରେ ଲେଖି ହୋଇଗଲା ଏହି କଥାଟି ଯେ, କନକହିଁ ଏ ସବୁର ମୂଳ; କନକ, ଯାହାଠାରୁ ସ୍ୱପ୍ନରେ ସୁଦ୍ଧା ସେ ଏ ପ୍ରତ୍ୟାଶା କରିନାହାନ୍ତି-ଆଉ କେହି ନୁହେଁ, ତାଙ୍କରି କନକ, ନିଜେ ।

କ୍ଷଣକ ମଧ୍ୟରେ ସଂକଳ୍ପ ସ୍ଥିର କରିନେଇ କିଛି ନକହି ସେ ସେଠାରୁ ବାହାରିଗଲେ । ବାହାରେ ନିଧିବାବୁଙ୍କ ସଙ୍ଗେ ଦେଖାହେଲାରୁ ଯେଉଁ କଥାଭାଷା ହୋଇଥିଲା, ତାହାର ଆଭାସ ପାଠକେ ପାଇଛନ୍ତି । ଆଉ ସେ କେବେଁ ଯେ ସେଠାକୁ ଆସିବେ ନାହିଁ, ଏଇ କଥାଟିହିଁ ସେ ଭିନ୍ନ ଭିନ୍ନ ପ୍ରକାରରେ ସେହି ରାଗ ମୁହୂର୍ତ୍ତରେ ନିଧିବାବୁଙ୍କୁ ଜଣାଇ ଦେଇଗଲେ । ନିଧିବାବୁଙ୍କୁ ସେତିକିବେଳେ ସ୍ପଷ୍ଟ ଜଣାଗଲାଯେ, ବିଚାରାଙ୍କୁ ଆଗରୁ ରଙ୍ଗୀପ୍ରସଙ୍ଗ ଆଦୌ କୁହାଯାଇନାହିଁ ।

ଏଣେ ନୀଳୁବାବୁ ସଳଖେ ଚାଲିଲେ କଲେଜ ହୋଷ୍ଟେଲକୁ । ସେଠାରେ କୌଣସିମତେ ପ୍ରବେଶ ଲାଭ କରି ଛଟପଟ ହୋଇ ରାତିର ଶେଷ ଘଣ୍ଟାକ କଟାଇ,

ସକାଳ ହେବାମାତ୍ରକେ ପ୍ରିନ୍‌ସପାଲ୍ ସାହେବଙ୍କ ସଙ୍ଗେ ସାକ୍ଷାତକାର କରିବାକୁ ବାହାରି ଗଲେ । ତାଙ୍କର ସଂକଳ୍ପ କେତେବେଳୁଁ ସ୍ଥିର ହୋଇସାରିଥିଲା—ଆଉ କଟକରେ ରହିବାକୁ ହେବ ନାହିଁ, କଲିକତାରେ ଯାଇ ପଢ଼ିଲେ ପଢ଼ିବେ, ନ ହେଲେ ଆଉ କିଛି କରିବେ । କଟକରେ ରହିବାର ଆଉ ହେବ ନାହିଁ, ଏଇଟା ଠିକ୍ । ଏଫ୍.ଏ.ରେ ସ୍କଲାରସିପ୍ ପାଇ ବି.ଏ. ପଢ଼ିଲାବେଳେ କଲିକତା ଯାଇ ପ୍ରେସିଡେନ୍‌ସୀ କଲେଜରେ ଭର୍ତ୍ତିହେବା କଥା ଆଗରୁ ଉଠିଥିଲା । ଆହୁରି ଭଲ କରିପାରିବେ ସେଠି ବୋଲି ଅନେକେ ତାଙ୍କୁ ସେ ଉପଦେଶ ଦେଇଥିଲେ; କିନ୍ତୁ ସେତେବେଳେ ସେ ରାଜି ହୋଇନଥିଲେ । ବର୍ତ୍ତମାନ ସେହି କଥାହିଁ ସାର ହେଲା ।

ଫଳରେ ସେହିଦିନ ଦିନଗାଡ଼ିରେ ଆଉ କାହାରିକୁ କିଛି ନ କହି ନୀଲୁବାବୁ ବାହାରିଗଲେ କଲିକତାକୁ । ଭଦ୍ରକ ଷ୍ଟେସନ ପାଖରେ ଥରେ ଓହ୍ଲାଇ ହରିବାବୁଙ୍କୁ ଦେଖା କରିଯିବାର ଲୋଭ ସମ୍ବରଣ କରିପାରିଲେ ନାହିଁ । ସମସ୍ତେ ତାଙ୍କୁ ଜୋର କରି କଲିକତା ପଠାଇଲେ ବୋଲି ସମସ୍ତଙ୍କୁ ସହଜରେ ବୁଝାଇଦେଇ, ପୁଣି ରାତିଗାଡ଼ିରେସେ ବିଦାୟ ହୋଇଗଲେ । କଟକ ପ୍ରିନ୍‌ସପାଲ୍ ସାହେବଙ୍କ ଦୟାରେ ପ୍ରେସିଡେନ୍‌ସୀ କଲେଜରେ ଓ ହୋଷ୍ଟେଲରେ ଭର୍ତ୍ତିହେବାକୁ ତାଙ୍କୁ କିଛିମାତ୍ର କଷ୍ଟ ପଡ଼ିଲାନାହିଁ ।

ସଂକଳ୍ପର ଅଦମ୍ୟ ଉତ୍ସାହରେ ଓ ଆହତ ଅଭିମାନର ଏକମୁଖୀ ବେଗରେ ଭଲ ମନ୍ଦ ବିଚାର କରିବାର ଶକ୍ତି, ସମୟ ବା ସୁବିଧା ଆଜିଯାଏଁ ନୀଲୁଙ୍କର ହୋଇନଥିଲା । କଲିକତା କଲେଜରେ ଭର୍ତ୍ତି ହୋଇ ନୂତନତ୍ୱର ମୋହ ଟିକିଏ କଟିଗଲାଠଉଁ, ପୁଣି ସବୁ କଥା ଓଲଟପାଲଟ ହୋଇ ତାଙ୍କ ମନରେ ଉଣ୍ଡି ଉଣ୍ଡି ବୁଲିବାକୁ ଲାଗିଲା । ଏ ପର୍ଯ୍ୟନ୍ତ ସେ ନିଜ କଥା ହିଁ ଭାବି ଆସିଲେ-ଅନ୍ୟ କଥା ଭାବିବାକୁ ଅବସର ମଧ ନଥିଲା ତାଙ୍କର । ଏବେ କିନ୍ତୁ ବାଧ ହୋଇ ତାଙ୍କୁ ସବୁକଥା ପୁଣି ନୂଆ କରି ବାରମ୍ବାର ଭାବିବାକୁ ପଡ଼ିଲା । ରାଗ, ଅଭିମାନ ଛାଏଁ ଟିକିଏ ନରମ ହୋଇଗଲାରୁ ନ୍ୟାୟ-ଅନ୍ୟାୟ ବିଚାରର ସହଜ ଶକ୍ତି ମଧ ତାଙ୍କର ଫେରି ଆସିଲା । କନକ ଓ ନିଜ ମଧ୍ୟରେ ଏହି ଯେ ଏଡ଼େ ବଡ଼ ବ୍ୟବଧାନ ଭିତର ବାହାର ଉଭୟତଃ ସୃଷ୍ଟି ହୋଇଗଲା, ସେଇଟାର ମୂଳ କେଉଁଠି, ସେ କଥା ଭାବିବା ପୂର୍ବରୁ ତାଙ୍କ ହୃଦୟରୁ ନ୍ୟାୟ ପକ୍ଷର ଆଣ୍ଟିକ କେତେବେଳେ ଯେ କୁଆଡ଼େ ଉଭେଇ ଗଲା, ସେ ଆଉ ତା'ର କିଛି ଠିକଣା ପାଇଲେ ନାହିଁ । ମନରେ ରହି ରହି ଗୋଟାଏ ସଂକୋଚ ଜାଗିବାକୁ ଲାଗିଲା ଯେ, ହୁଏତ ସେ ଭୁଲ୍ ବୁଝିଛନ୍ତି ବା ଭୁଲ କରିଛନ୍ତି, ହୁଏ ତ କନକର ଦୋଷ ଏଡ଼େ ବଡ଼

କିଛି ନୁହେଁ । ସଂକୋଚ ଓ ଦ୍ୱିଧା ଅନୁଶୋଚନାରେ ପରିଣତ ହେବାକୁ ବେଶି ସମୟ ଲାଗିଲା ନାହିଁ । ଫଳରେ ନୀଳୁବାବୁ ନିଜକୁ ସବୁଠାରୁ ବେଶି ଦୋଷୀ ବୋଲି ସ୍ଥିର କରି ଏବେ ଅହରହ ଆତ୍ମଗ୍ଲାନି ଓ ପଶ୍ଚାତ୍ତାପରେ ଦଗ୍ଧ ହେବାକୁ ଲାଗିଲେ ।

କନକକୁ ଶେଷ ଥର ସେ ଯେପରି ଦେଖିଥିଲେ, ସେପରି ଆଉ କେଉଁ ଜୀବନରେ ଦେଖିନଥିଲେ । ସେ କି ବିକଳ, କି କରୁଣ ଚାହାଣି ! କି ବ୍ୟଗ୍ର, ଆଶାଆଶଙ୍କାପୂର୍ଣ୍ଣ ସେ ମୁଖମଣ୍ଡଳ ! କନକ ମୁଖରେ ଶେଷବେଳକୁ ଯେଉଁ ଭିକ୍ଷାର କରୁଣ ଆବେଗଟିକ ଲେଖିହୋଇଯାଇଥିଲା-ଯାହା ସେ ମୁହୂର୍ତ୍ତରେ ତାଙ୍କୁ ସମ୍ପୂର୍ଣ୍ଣ ଆତ୍ମହରା କରି ଦେଇଥିଲା, -ତାକୁ ଆଉ ନୀଳୁବାବୁ ଭୁଲିପାରୁନାହାନ୍ତି । ତା'ର ସେତେବେଳର କରୁଣ ଛବିଟି ରହି ରହି ତାଙ୍କୁ ଏ ପର୍ଯ୍ୟନ୍ତ ବ୍ୟସ୍ତ, ଆକୁଳ କରିଦେଉଛି ।

ନୀଳୁବାବୁ କଲିକତା ଆସିବାର କୋଡ଼ିଏ-ପଚିଶ ଦିନ ହୋଇଗଲାଣି, ତଥାପି ସେ ନିଧିବାବୁ ବା କନକ କାହାରିକୁ କୌଣସି ସମ୍ବାଦ ଦେଇନାହାନ୍ତି । ହରିବାବୁଙ୍କୁ ଯେଉଁ ଠିକଣା ଦେଇଆସିଥିଲେ, ସେହି ଠିକଣାରେ ତାଙ୍କଠାରୁ ରୀତିମତ ଚିଠିପତ୍ର ଆସିଥିଲେ ହେଁ ସେ ତା'ର ମଧ କୌଣସି ଉତ୍ତର ଦେଇନାହାନ୍ତି । ପ୍ରଥମେ ସେ ସ୍ଥିର କରିଥିଲେ, କାହାରିକୁ କିଛି ଖବର ଦେବେ ନାହିଁ; ହରିବାବୁଙ୍କୁ ଦେଲେ ଦେଇପାରନ୍ତି, କିନ୍ତୁ ନିଧିବାବୁ ବା କନକକୁ ତ କେଉଁ ନା; କିନ୍ତୁ ସେ ସଂକଳ୍ପ ଅଜଣାରେ କୁଆଡ଼େ ଭାସିଗଲାଣି । ନିଧିବାବୁଙ୍କଠାରେ ଯେ ସେ ଏକାନ୍ତ ଅପରାଧୀ, ଏହି କଥାଟି ମନରେ ବଦ୍ଧମୂଳ ହୋଇଯାଇଥିବାରୁ ସେ ଆଜି ବସିଛନ୍ତି ତାଙ୍କଠାକୁ ପତ୍ର ଲେଖି କ୍ଷମା ଭିକ୍ଷା କରିବାକୁ । ଇତିପୂର୍ବରୁ ଥରେ, ଦିଥର ଏ ଚେଷ୍ଟା କରିଥିଲେ ହେଁ ସେ କୌଣସିମତେ ଭଲ କରି ମନମାଫିକେ ଖଣ୍ଡେ ପତ୍ର ଲେଖି ଉଠିପାରିନଥିଲେ । ଆଜି ସ୍ଥିରପ୍ରତିଜ୍ଞ ଭାବରେ ଲେଖିବସିଲେ, କିନ୍ତୁ ଲେଖାସରିବା ପୂର୍ବରୁ ହଠାତ୍ ନିଜର ଅପରାଧଗୁଡ଼ିକ ଯାହା ସେ ଅମାୟିକ ଉଦାରତାରେ ଲିପିବଦ୍ଧ କରିସାରିଥିଲେ, ଆଖି ଆଗରେ ଏପରି ସ୍ପଷ୍ଟଭାବରେ ବିବୃତ ଦେଖି, ନିଜେ ଚମକି ଉଠି ଲେଖା ବନ୍ଦ କରିଦେଲେ । ହୃଦୟର ପ୍ରତିବିମ୍ବ ସ୍ୱରୂପ ଏହି ଯେ ସ୍ୱହସ୍ତଲିଖିତ ପ୍ରତଖଣ୍ଡି ତାଙ୍କର, ସେ ଯେପରି ତାଙ୍କ ଉଦାରତା ଓ ମହାନୁଭବତାକୁ ଉପହାସ କରିବାକୁ ଲାଗିଲା । ଅବଶ୍ୟ ସେହି ପତ୍ରଲିଖିତ ସବୁ କଥା ତାଙ୍କ ନିଜର ଲେଖା-ତାଙ୍କରି ହୃଦୟ ମନରୁ ତା'ର ଜନ୍ମ, ତଥାପି, ମନରେ ଭାବିବା ଏକରକମ, ଲେଖାଟାଏ ପଢ଼ିବା ଅନ୍ୟ ରକମ ! ମନ ଭିତରେ ତନ୍ନ ତନ୍ନ କରି ସବୁ ଭାବିଥିଲେ ସୁଦ୍ଧା ଏପରି ସ୍ପଷ୍ଟଭାବରେ ଏକାଧାରରେ ତାଙ୍କର ସବୁ

ଗ୍ଲାନି ଓ ପାପ ତାଙ୍କ ଆଖି ଆଗରେ କେବେ ଦୃଶ୍ୟମାନ ହୋଇନଥିଲା । ସେ ଭାବିଥିଲେ, ସେ ଏପରି ଭାବରେ ସବୁ ଦୋଷ ସ୍ୱୀକାର କରିନେବେ ଯେ, କନକଠାରେ ଆଉ ଆଞ୍ଚଟି ପର୍ଯ୍ୟନ୍ତ ଲାଗିବ ନାହିଁ । ଏହି ହିସାବରେ ନିଜକୁ ମହତ୍ କାର୍ଯ୍ୟର ଆତ୍ମପ୍ରସାଦ ଚଖାଇଁ ଚଖାଇଁ ଖୋଲିଚାଡ଼ି ସେ ନିଜର ଦୋଷଗୁଡ଼ିକୁ ନିର୍ବିକାରରେ ବ୍ୟାଖ୍ୟାନ କରିଯାଇଥିଲେ- ଏତେଗୁଡ଼ାଏ ଦୋଷର ଭାଗୀ ଯେ ସେ ନୁହନ୍ତି, ଏହି ଧାରଣାଟି ମନକୋଣରେ ନିଭୃତରେ ପୋଷଣ କରି ! କିନ୍ତୁ, ଯେତେବେଳେ ସେ ନିଜର ଲିପିବଦ୍ଧ ପାପର କାହାଣୀ ମନେ ମନେ ଥରେ ପଢ଼ିଗଲେ, ସେତେବେଳେ ତାଙ୍କୁ ଚମକି ପଡ଼ିବାକୁ ହେଲା । ଆରେ, ଇଏ ତ ସବୁ ସତ ପରି ବୋଧ ହେଉଛି । କନକ ପ୍ରତି କି ଦୟାଟା, ତା'ର କି ଉପକାରଟା ଆଉ ସେ କରୁଛନ୍ତି ! ଏଗୁଡ଼ା ସବୁ ଯେ ଅବିକଳ ସତ ! ହାୟ ନୀଲୁ, ଚିଠିଖଣ୍ଡ ଯେପରି ସହଜରେ ପଢ଼ିପାରୁଛ, ସେହିପରି ସହଜରେ ନିଜକୁ ପଢ଼ିବାର ଶକ୍ତି ଯଦି ଈଶ୍ୱର ଦେଇଥା'ନ୍ତେ ମନୁଷ୍ୟକୁ— !

ଲେଖା ବନ୍ଦ କରି ନୀଲୁବାବୁ ଭାବିବାକୁ ଲାଗିଲେ-ଚିଠିରେ ଯାହା ଲେଖାହୋଇଛି, ସବୁ ଅକ୍ଷରେ ଅକ୍ଷରେ ସତ୍ୟ ! ସେ ଅନ୍ଧ, ସେ ବୁଦ୍ଧିହୀନ, ଅନଭିଜ୍ଞ-ଠିକ୍ ତ ! କନକ ଅବଶ୍ୟ କଥାରେ କିଛି କହିନାହିଁ । ସେଥିଯୋଗେ କ'ଣ ତାଙ୍କର ଦେଖିବାର, ବୁଝିବାର ଉଚିତ ନଥିଲା । ଯେଉଁ ମୋହ ତାଙ୍କୁ ଘେରି ରଖିଥିଲା, ସେଟା ତ ବାସ୍ତବିକ ନିହାତି ଅଳୀକ, ନିହାତି ଗର୍ହିତ ! ସେ କାହିଁକି କନକର ନିର୍ଦ୍ଦେଶ ନ ମାନିଲେ ? ସେଟା ତ ପ୍ରକୃତରେ ତାଙ୍କର ଲଘୁତାର ପରିଚାୟକ । କନକ ଜାଣିଶୁଣି କାହିଁକି ବାହାହେଲା, ସେ ବା କାହିଁକି ବାହାହେବାକୁ ଅମଙ୍ଗ ହେଲେ ? ହଁ, ସେହି କଥାଟି ବି ସାରା କରିଦେବାକୁ ହେବ ଆଜି ! କନକ ସମାଜକୁ ମାନି ଚଳିଲା-ସେ ସେଟାକୁ ନିହାତି ଅପମାନସୂଚକ ମନେକରନ୍ତି । କୁତ୍ସିତ ଓଡ଼ିଆ ସମାଜକୁ ମାନି ଚଳିବା ଗୋଟାଏ ଅସୀମ ଲଜ୍ଜା ! ଆଚ୍ଛା, କନକ ସତେ କ'ଣ ସମାଜକୁ ମାନି ଚଳିଲା ନା ଆଉକିଛି ? ଏକ ପକ୍ଷରେ ସମାଜକୁ ମାନି ଚଳିଲା ସତ୍ୟ, କିନ୍ତୁ ଅନ୍ୟ ପକ୍ଷରେ—ନାଃ, ଅର୍ଦ୍ଧପୁଷ୍ଟା ବାଳିକା, ପୁଣି ଅଶିକ୍ଷିତା, ସେ ଏତେ ଦୂର କ'ଣ ଭାବି ପାରିଥିବ । ତେବେ-ତେବେ, ସେହି ଯେ ଦୃଷ୍ଟି, ସେହି ଯେ ମନେ ମନେ ଆଦର୍ଶର ବିନିମୟ ହୋଇଥିଲା ସେ ଦିନ ତାଙ୍କ ସଙ୍ଗରେ, ତା' ବିବାହର ଦିନେ-ଦୁଇ ଦିନ ପୂର୍ବରୁ, ସେଟା କୁଆଡୁ ଆସିଲା ? ତେବେ କ'ଣ ସେସବୁ ସତ୍ତ୍ୱେ ହୃଦୟଟାକୁ ହିଁ ବଡ଼ କରି ଚିହ୍ନିଥିଲା, ଚିହ୍ନିଛି ! ଯା କି ସମ୍ଭବ ? ସାମାନ୍ୟ ଅଶିକ୍ଷିତା ବାଳିକା, ତା'ର ଏଡ଼େ ବଡ଼ ମନ ! ହୃଦୟରାଜ୍ୟରେ ବିବାହ ଯେ କୌଣସି ପ୍ରକାରେ ହସ୍ତକ୍ଷେପ କରିପାରେ ନାହିଁ, ଏଟା ତ ସହଜ କଥା ନୁହେଁ ଭାବିବାକୁ-ସେ

ଅନୁସାରେ କାର୍ଯ୍ୟ କରିବା ତ ଦୂରର କଥା । ହଁ, ଏଥିରେ ତ ତିଳେ ସନ୍ଦେହ ନାହିଁ ଯେ କନକର ସ୍ନେହ ତାଙ୍କ ପ୍ରତି ଅକ୍ଷୁଣ୍ଣ ରହିଛି ଆଜିଯାଏଁ । ବିବାହ ଦ୍ୱାରା କନକର କି ପରିବର୍ତ୍ତନ ହୋଇଛି ତାଙ୍କ ପ୍ରତି ବ୍ୟବହାରରେ ବା ଅନ୍ତରରେ, -ନାଃ, କିଛି ତ ନୁହେଁ ! ତେବେ ? ସମାଜ କ'ଣ କଲା ? ବିବାହ ବା କି କ୍ଷତିଟା କଲା ? କନକର ହୃଦୟ କ'ଣ ଏଡ଼େ ଉଚ୍ଚ ତା' ହେଲେ ! ଅଶିକ୍ଷିତା ବାଳିକା ସେ । ସେ ପୁଣି ଏଡ଼େ ବଡ଼ ତଥ୍ୟ ଏଡ଼େ ସହଜରେ ହୃଦୟଙ୍ଗମ କରି ତଦନୁଯାୟୀ କାର୍ଯ୍ୟ କରି ପକାଇଲା । ଆଉ ସେ ଉଚ୍ଚଶିକ୍ଷିତ ଯୁବକ ଦର୍ଶନଶାସ୍ତ୍ରର ପୋଥି ଘାଣ୍ଟିବାକୁ ଏହିମାତ୍ର ଆରମ୍ଭ କରିଛନ୍ତି !

ମୂଢ଼ ଯୁବକ ! ମୂଢ଼ ପୁରୁଷ ! ଶିକ୍ଷା, ଶିକ୍ଷା ଯେ କରୁଛ, ତମ ଶିକ୍ଷା ଯେ କେଡ଼େ ତୁଚ୍ଛ, କେଡ଼େ ନଗଣ୍ୟ-ନାରୀହୃଦୟର ସହଜ ଶିକ୍ଷା ସମକ୍ଷରେ, ତୁମ ନ୍ୟାୟ, ଦର୍ଶନଶାସ୍ତ୍ର ଯେ ନାରୀର ପଦପଦକ କଥାରେ ଗୋଟାଏ ଗୋଟାଏ ଅକିଞ୍ଚିତ୍କର କାର୍ଯ୍ୟରେ ପରାସ୍ତ ହୋଇ ପୋଥିକୁ ଆଶ୍ରୟ କରିବାକୁ ବାଧ ହୁଏ ଏଇଟା କାହିଁକି ବୁଝୁନାହଁ । ପ୍ରକୃତିର ପୋଥିରୁ ଶିକ୍ଷା ନିଅ, ଯଦି ଶିକ୍ଷାର ବଡ଼ାଇ କରିବାକୁ ଚାହଁ । ଆଉ ସମାଜ—ସମାଜ ପ୍ରତି ଯେ ଏଡ଼େ ବିଦ୍ୱେଷ ପୋଷଣ କରୁଛ, ତା'ର ଦୋଷଟା କେଉଁଠି, ତା' ଭାବିଛ କେବେ ? ସମାଜଟା କେଉଁଠି, କେହି ଦେଖାଇପାରିବ ନାହିଁ, କେହି ଚିହ୍ନାଇ ଦେଇପାରିବ ନାହିଁ । ସମାଜ ବାହାରେନା, ତମ ଭିତରେ ? ଦେଖ ଭଲ କରି ବୁଝ ।

ନିଜକୁ ଚିହ୍ନ, ତମର ଚରିତ୍ରବଳ ନାହିଁ, ହୃଦୟବଳ ନାହିଁ । ବୋଧହୁଏ ହୃଦୟ ବି ନାହିଁ କି କ'ଣ ! ଏହି ଯେ ଚିତ୍କାରପୁତ୍କାର କରାଯାଉଛି, ସ୍ୱାଧୀନ ପ୍ରେମ ଏ ସମାଜରେ ଅସମ୍ଭବ, —ଏଡ଼େ ସଂକୀର୍ଣ୍ଣତାଟା ଶରୀରରେ କେଉଁଠି ବିରାଜମାନ, ଟିକିଏ ଦେଖାଇଦେଇ ପାରିବ ? ସମାଜରେ ? ସମାଜର ମୁଣ୍ଡରେ ନା ଗୋଡ଼ରେ ? ହାୟ, ତମ ହୃଦୟ ଯଦି ପ୍ରେମ ବୁଝିଥାନ୍ତା, ସ୍ୱାଧୀନତା ଖୋଜିଥାନ୍ତା ବା ଖୋଜନ୍ତା, କିଏ ସେଥିରେ ବାଧାଦେବାକୁ ଅଛି ? କିଏ ତମକୁ ମନା କରୁଛି ପ୍ରେମ ପାଇଁ ମରିଯିବାକୁ, ଆତ୍ମଘାତୀ ହେବାକୁ, ଦେଶାନ୍ତରୀ ହେବାକୁ ? ଆଉ କେତେଟା ଯା କରୁଛ ତେମେ ? ହୃଦୟ ଯଦି ତମର ଥାନ୍ତା, ଚରିତ୍ରବଳ ଯଦି ଥା'ନ୍ତା, ତେବେ ଦେଶବିଦେଶରେ ଅଗଛା ସମାଜ ପ୍ରତି, ଧର୍ମ ପ୍ରତି ଲୋଲୁପ ଦୃଷ୍ଟି ଦେଇ ଏପରି ହାସ୍ୟକର ଭାବରେ ଦୁଇ ନାହାରେ ଗୋଡ଼ ଦେଲାପରି ଅବସ୍ଥାରେ ପଡ଼ିଥି ନଥା'ନ୍ତ ଆଜି ! ଆଉ ସ୍ତ୍ରୀ-ସ୍ୱାଧୀନତା,

ସ୍ତ୍ରୀ-ଶିକ୍ଷା—ଏସବୁ କାହିଁକି ଲୋଡ଼ା ପଡ଼ିଛି ? ସେମାନେ ଗୋଟାଏ ନାଆରେ ଦୁଇ ଗୋଡ଼ ଦେଇ ଦମ୍ଭ କରି ବସିଛନ୍ତି, ଏଇଥି ପାଇଁ ତ ? ଯେଉଁ ପୁରୁଷ-ସ୍ତ୍ରୀ-ଶିକ୍ଷା ସପକ୍ଷରେ, ତାଙ୍କୁ ମୁଁ କହେଁ-ଲାଙ୍ଗୁଳକଟା ଶିଆଳ, ସେଇ ଯେ ଆହୁରି ଗୋଟାଏ ଛଦ୍ମକାଗ୍ରଣୀ ନୀଳବର୍ଣ୍ଣ ଧାରଣ କରିଥିଲା, ତାହାରି ଗଳ୍ପ ବି ଏ ପ୍ରସଙ୍ଗରେ ମୋର ମନେପଡ଼େ । ଆଉ ଯେଉଁ ସ୍ତ୍ରୀଗନ୍‌ମାନେ ଆଲୋକ ଓ ଶୃଙ୍ଖଳମୁକ୍ତି ପାଇଁ ଆଗଭର ହୋଇ ବାହାରୁଛନ୍ତି, ସେମାନଙ୍କୁ ବି ମୁଁ କହେଁ, -ଅନ୍ଧାର ଛଡ଼ା ଆଲୁଅ ନାହିଁ, ଶୃଙ୍ଖଳା ଛଡ଼ା ମୁକ୍ତି ନାହିଁ । ଆଲୋକ ବୋଲି ଯାହାକୁ ବୋଲାଯାଉଛି, ସେଟା ଆଲୋକ ହେଉ ବା ନ ହେଉ, ନିଜଠାରେ ଯେଉଁ ଆଲୋକ ରହିଛି, ସେହିଟା ହିଁ ସବୁଠାରୁ ବଡ଼ । ସେହିଟାକୁ ହିଁ ଚିହ୍ନିଲେ ଓ ପାଇଲେ, ଅନ୍ୟ ଆଲୋକର ପ୍ରୟୋଜନ ନାହିଁ । ହୃଦୟର, ଅନ୍ତରର ଆଲୋକ କଥା କହୁଛି, —ଯାହାକୁ ଥରେ ପାଇଲେ ସର୍ବପ୍ରକାର ଆଲୋକ ବଳେ ବଳେ ମିଳେ, ଯାହାର ଅଭାବ ହିଁ ଆମ ସମାଜର ଯାବତୀୟ କୁସଂସ୍କାର, ସଂକୀର୍ଣ୍ଣତା ଓ କ୍ଷୁଦ୍ରତାର ମୂଳରେ । ସ୍ତ୍ରୀ-ଶିକ୍ଷା, ସ୍ତ୍ରୀ-ସ୍ୱାଧୀନତା ଇତ୍ୟାଦି ଯାହା ଉପରେ ସମ୍ଭବ ଓ ସୁପ୍ରତିଷ୍ଠିତ ହୋଇପାରେ, ଆଉ ଶୃଙ୍ଖଳ-ମୁକ୍ତି, ସେଟା ଉଚ୍ଛୃଙ୍ଖଳତାର ନାମାନ୍ତର ନ ହେଲେ ସୁଦ୍ଧା ହେବା ଅତି ସହଜ, ଯଦି ହୃଦୟର ଆଲୋକ ନାହିଁ । ସେଥିଯୋଗେ ମୁଁ କହେଁ-ଶିକ୍ଷା, ସମାଜ, ଧର୍ମ ଯୁଆଡ଼େ ଯାଉଛି ଯାଉ, ତମକୁ ଯୁଆଡ଼େ ନେଉଛି ନେଇ, ତେମେ ସମସ୍ତେ ସ୍ତ୍ରୀ ପୁରୁଷ ହୃଦୟକୁ ଚିହ୍ନ, ତାହାରି ଶିକ୍ଷାରେ ମହୀୟାନ୍ ହୁଅ, ତାହାରି ସମାଜରେ ପୁଷ୍ଟ ହୁଅ, ତାହାରି ଧର୍ମରେ ଦୀକ୍ଷିତ ହୋଇ ତାହାରି ମୁକ୍ତି, ତାହାରି ଆଲୋକ, ତାହାରି ନିର୍ବେଦନିର୍ବାଣର ଭାଗୀ ହୁଅ । ଏହି ମାତ୍ର ଆଲୋକ କଥା ମୁଁ କହୁଛି ।

\+ + + + +

ନୀଳୁବାବୁ ନିଜ ହୃଦୟର ସ୍ୱରୂପ ନିଜ ହାତରେ, ନିଜ ଆଗରେ ରଖି ନିଜର ଦୈନ୍ୟଦୁର୍ବଳତା ଓ କ୍ଷୁଦ୍ରତାରେ ନିଜେ ଚମକୃତ ହୋଇଗଲେ । ହଠାତ୍ ତାଙ୍କର ମନେ ହେଲା, ସେ ତ କେବଳ ଦେଶ ସଂସାର, ନିଧିବାବୁ, ହରିବାବୁ ଏହିମାନଙ୍କଠାରେ ଦୋଷୀ ନୁହନ୍ତି । ସେ କନକଠାରେ ତହୁଁ ବଢ଼ିକରି ଦୋଷୀ, ନିଜଠାରେ ଆହୁରି ବେଶି । ପ୍ରେମର, ହୃଦୟର ଆଦର୍ଶ ଯାହା, ସେ କନକଠାରୁ ମନେ ମନେ ପାଇ, ପାଇ ନଥିଲେ । ତାହାରି ମାପକାଠିରେ ମାପିବସିଲାବେଳକୁ ସେ ଦେଖିଲେ କନକ

ଯେଉଁଠି, ସେ ତାହାଠାରୁ ଢ଼େର୍ ଢ଼େର୍ ତଳେ ! ସେ ଆଦର୍ଶକୁ ସେ ଅନେକ ଦିନରୁ ଆଖି ଆଗରେ ରଖିଥିଲେ ହେଁ, ତାକୁ ସମ୍ୟକ୍ ଅନୁଧାବନ, ହୃଦୟଙ୍ଗମ କରିପାରିନଥିଲେ । ଆଜି ବୁଝିଲେ-ସେଟା କେତେ ଉଚ୍ଚ, କେଡ଼େ ମହତ୍ । ସଙ୍ଗେ ସଙ୍ଗେ ଯା ମଧ୍ୟ ବୁଝିଲେ ଯେ, କନକ ସାମାନ୍ୟ ଅଶିକ୍ଷିତା ବାଳିକା ହୋଇ ଯାହା ଅତି ସହଜଭାବରେ ନ ଜାଣିଲା ପରି କରିଛି, ତାହା ତାଙ୍କ ଶିକ୍ଷିତ ମାର୍ଜିତ ଯୁବକହୃଦୟ ପକ୍ଷରେ ଅତି ଦୁଷ୍କର । କନକ ତ ତାଙ୍କୁ ସେହି ଆଦର୍ଶ ପଥର ପଥିକ କରାଇବାକୁ ଆଜି ଯୁଦ୍ଧା ଚୂଡ଼ାନ୍ତ ଚେଷ୍ଟାରେ ତ୍ରୁଟି କରିନାହିଁ । ତେବେ ତା'ର ଦୋଷ କ'ଣ ! ନିଜ ପ୍ରତି ଘୃଣାରେ ମନ ତିକ୍ତ ହୋଇ ଉଠିଲା, ଆଉ ସଙ୍ଗେ ସଙ୍ଗେ କନକ ପ୍ରତି ଶ୍ରଦ୍ଧାରେ ହୃଦୟ ଭରିଯାଇ ସେଠାରେ ପୁଞ୍ଜୀଭୂତ ସବୁ ତିକ୍ତ କ୍ଷାରକୁ ଧୋଇ ନିର୍ମଳ କରିଦେଲା ।

ନୀଳୁବାବୁ ଅପୂର୍ଣ୍ଣ ଚିଠିଟିର ଶେଷ ଆଡ଼କୁ ଅନ୍ତରର ସହିତ କେତେଗୁଡ଼ିଏ ଛତ୍ର ଯୋଗ- କରି ଏକମୁହାଁ ହୋଇ ଯାଇ ଚିଠିଟି ଡାକଘରେ ଦେଇ ଆସିଲେ । ସେହି ପତ୍ରର କିୟଦଂଶ ପୂର୍ବରୁ ଉଦ୍ଧୃତ କରାଯାଇଛି ।

ଚିଠିଖଣ୍ଡିକ ଡାକଘରେ ଦେଇ ଫେରିଆସିଲାବେଳୁ ନୀଳୁବାବୁ ଭାବୁଛନ୍ତି, ଖାଲି ଭାବୁଛନ୍ତି-ବର୍ତ୍ତମାନ କର୍ତ୍ତବ୍ୟ କ'ଣ ? ଫେରିଯିବି ? ଫେରିଗଲେ ତ ଯିବି, ଆଗେ ଏ ଚିଠିର ଉତ୍ତର ଆସୁ । କନକ ନିଶ୍ଚୟ ଏଥର ପତ୍ର ଦ୍ୱାରା ରଙ୍ଗୀକୁ ବାହାହେବା ପାଇଁ ଅନୁରୋଧ ବା ଆଦେଶ କରିବ । ବାହାହେବି ତ ନିଶ୍ଚୟ, କିନ୍ତୁ ଯଦି ସେ ରାଗିଥାଏ ମୋ ଉପରେ ! କନକ ରାଗ କଥା ତ ମୁଁ ଜାଣେ । ତା' ହେଲେ ସେ ତ କେଉଁ ଲେଖିବ ନାହିଁ । ମୁଁ କାହିଁକି ସେ ଚିଠିରେ ଲେଖିନଦେଲି ଯେ, ମୁଁ ରଙ୍ଗୀକୁ ବାହାହେବାକୁ ପ୍ରସ୍ତୁତ ବୋଲି ! ହାୟ, ସେ କଥା ଯେ ମୋର ସେତେବେଳେ ଆଦୌ ମନେନାହିଁ । ନ ଲେଖିଲେ କ'ଣ ହେବ ? ସେଥିରେ ଶେଷ ଆଡ଼କୁ ମୁଁ ଯାହା ଲେଖିଛି, ସେଥିରୁ କ'ଣ ତା'ର ସ୍ପଷ୍ଟ ଆଭାସ ମିଳିବ ନାହିଁ କି ? ନିଶ୍ଚୟ ମିଳିବ; ନିଧିବାବୁ ବୁଝି ପାରିବେ ଯେ ।

ଆଶାରେ ଆଶାରେ ଦୁଇ ଦିନ କଟିଗଲା, ତଥାପି ଉତ୍ତର ଆସିଲା ନାହିଁ । ତିନିଦିନ ଦିନ ଯେତେବେଳେ ଡାକଘରୁ ନିରାଶ ହୋଇ ଫେରିଲେ, ସେତେବେଳେ ନୀଳୁଙ୍କ ମନରେ ହଠାତ୍ ଗୋଟାଏ ଭୟ ପିଶିଗଲା, କ'ଣ ହେଲା କି ଆଉ ! ସେତିକିବେଳୁ ତାଙ୍କର ଆଉ କାହିଁରେ ମନ ଲାଗିବାକୁ ନାହିଁ ! ଗୋଟାଏ ଅନିଶ୍ଚିତ

ଭୟରେ ପ୍ରାଣ ରହି ରହି ଯେପରି ଚମକି ଉଠୁଛି । ପାଠରେ, ଖେଳରେ, ଯଙ୍ଗମେଳରେ, -କାହିଁରେ ମନ ନ ଲାଗିଲା କେଉଁ ! କ୍ରମେ ସନ୍ଧ୍ୟା ହେଲା, କଲେଜ ପିଲାମାନେ ଦଳ ଦଳ ହୋଇ ବୁଲି ବାହାରିଲେ । ନୀଲୁବାବୁ ମଧ ଗୋଟାଏ ଦଳର ଅନୁସରଣ କରି କରି ଯନ୍ତ୍ରାଚାଳିତ ପରି ଇଡେନ୍ ଗାର୍ଡନରେ ଯାଇଁ ପହଞ୍ଚିଲେ । ଯାଡ଼େ ସ୍ୟାଡ଼େ ଅନିଶ୍ଚିତ ଭାବରେ ବୁଲୁଁ ବୁଲୁଁ ସେ ଗୋଟାଏ ନିର୍ଜନ ସ୍ଥାନରେ ଖଣ୍ଡିଏ ବେଞ୍ଚ ଉପରେ ଅବସନ୍ନ ଭାବରେ ବସି ପଡ଼ିଲେ । ଆଉ ଭାବିବାକୁ ତାଙ୍କ ମନରେ ବଳ ନାହିଁ, ଭାବିବେ ବା କ'ଣ ? ଗୋଟାଏ ଅଜଣା କାରଣରୁ ତାଙ୍କ ହୃଦୟ ଉପରେ କିପରି ଗୋଟାଏ ବଡ଼ ଭାରି ବୋଝ ଥୁଆହେଲା ପରି ତାଙ୍କୁ ଲାଗୁଛି । କାର୍ଯ୍ୟକ୍ଷମ ସବୁ ପ୍ରବୃତ୍ତି ତାଙ୍କର ଏହିଲାଗେ ଅବସନ୍ନ ହେଲାପରି ଆଉ କାର୍ଯ୍ୟ କରିବାକୁ ମଙ୍ଗୁନାହାନ୍ତି । ଫଳରେ ବସୁ ବସୁ କେତେବେଳେ ସେହିଠାରେ ପଡ଼ିଗଲେ ଓ କେତେବେଳ ଯାଏଁ ଏହିପରି ଶୋଇଛନ୍ତି, ତାହା ବି ତାଙ୍କୁ ଜଣାନାହିଁ । ଯେତେବେଳେ କିଛି ବୁଝି ପାରିବାର ଶକ୍ତି ହେଲା, ସେତେବେଳେ ତାଙ୍କୁ ଲାଗିଲା, ଯେପରି କିଏ ଗୋଟିଏ ପ୍ରବୀଣ ପକ୍ୱକେଶ ଗମ୍ଭୀରମୂର୍ତ୍ତି ଇଂରେଜ-ସମ୍ଭବତଃ, ତାଙ୍କ କଲେଜର ପ୍ରିନ୍‌ସିପାଲ୍-ତାଙ୍କ ମୁଣ୍ଡ ପାଖରେ ଛିଡ଼ା ହୋଇ କୋମଳ କଣ୍ଠରେ କହୁଛନ୍ତି, ''କ୍ଲାନ୍ତ ଯୁବକ, କ୍ଲାନ୍ତି ଦୂରକର, ଆଳସ୍ୟ ତ୍ୟାଗ କର ! ଅଳସ ଶେଯରେ ପଡ଼ି ରହିବାର ସମୟ ଇୟେ ନୁହେ ତୁମ୍ଭର.-ଉଠ ! ଜୀବନରେ କ'ଣ ତୁମ୍ଭର କିଛି କର୍ତ୍ତବ୍ୟ ନାହିଁ ?'' ଏତିକିରେ ନୀଲୁବାବୁ ଧଡ଼ପଡ଼ ହୋଇ ଉଠିବସିଲେ । ଦେଖିଲେ, ଢ଼େର ରାତି ହୋଇଗଲାଣି । ସତକୁ ସତ, ଜଣେ ବୃଦ୍ଧ ଇଂରେଜ,—ପ୍ରିନ୍‌ସିପାଲ୍ ନୁହନ୍ତି-ଯଷ୍ଟିରେ ଭରା ଦେଇ ଅଦୂରରେ ଦଣ୍ଡାୟମାନ-ମୁଖରେ ତାଙ୍କର କରୁଣ ହାସ୍ୟର ରେଖା । ବୃଦ୍ଧ ପଚାରିଲେ, ''ବୋଧହୁଏ ତୁମ୍ଭେ ଜଣେ ଛାତ୍ର । ଛାତ୍ରଜୀବନରେ ଏ ଆଳସ୍ୟ କାହିଁକି ? କର୍ତ୍ତବ୍ୟ କ'ଣ ତୁମ୍ଭର କିଛି ନାହିଁ ? ସେ ଶୁଏ, ଯାହାର କର୍ତ୍ତବ୍ୟ ଶେଷ ହୋଇଯାଇଛି !''

''ଆଜ୍ଞା, ମୋର କର୍ତ୍ତବ୍ୟ ଢ଼େର ପଡ଼ି ରହିଅଛି । ଗୋଟିଏ ବିଷୟରେ କର୍ତ୍ତବ୍ୟ ସ୍ଥିର କରି ନ ପାରି ତ ଭାବି ଭାବି କ୍ଲାନ୍ତ ହୋଇ ଶୋଇପଡୁଥିଲି !''

''ଦେଖ, ତୁମ୍ଭେ ତୁମ୍ଭ କର୍ତ୍ତବ୍ୟବିଚ୍ୟୁତ ହେବାରୁ ଆଜି ମୋର ମଧ କର୍ତ୍ତବ୍ୟରେ ବାଧା ପଡ଼ିଲା ।''

''କିପରି ମହାଶୟ ?''

"ଯେଉଁ ବେଞ୍ଚ୍ ଉପରେ ତୁମ୍ଭେ ଶୋଇ ପଡ଼ିଥିଲ, ସେହି ବେଞ୍ଚଟିରେ ଠିକ୍ ରାତି ସାଢ଼େ ସାତଟାଠାରୁ ସାଢ଼େ ଆଠଟା ପର୍ଯ୍ୟନ୍ତ ବସିବା ମୋର ଗୋଟିଏ ନିତ୍ୟ ପୁଣ୍ୟ କର୍ତ୍ତବ୍ୟ, ଯାହା ମୁଁ ଆଜକୁ ୨୭ ବର୍ଷ ହେଲା ପାଳିଆସୁଅଛି । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି କଥା ନାହିଁ । କର୍ତ୍ତବ୍ୟ-କର୍ତ୍ତବ୍ୟ ! ଜାଣ, ଯୁବକ, ଏହି ସ୍ଥାନରେ ହିଁ ମୁଁ ମୋର ପରଲୋକଗତା ପ୍ରାଣର ଇରାକୁ ପ୍ରଥମେ ଦେଖିଥିଲି । ସେ ଆଜିକୁ ୫୦ ବର୍ଷ ପୂର୍ବର କଥା । ଏହିଠାରେ ହିଁ ବିବାହ ପୂର୍ବରୁ ଦୁହେଁ ପାଞ୍ଚ ବର୍ଷ କାଳ ପ୍ରତିଦିନ ନିୟମିତ ରୂପେ ସାଢ଼େ ୭ଟା ଠାରୁ ସାଢ଼େ୮ଟା ପର୍ଯ୍ୟନ୍ତ ଆଳାପ କରିଥିଲୁଁ । ଏହିଠାରେ ହିଁ ବିବାହ ପରେ ଅଠର ବର୍ଷ କାଳ ନିତି ସନ୍ଧ୍ୟାରେ ସେହି ନିୟମରେ ବସିଆସିଥିଲୁ; ଯେଉଁଦିନ ଭଗବାନ ତାକୁ ନେଇଗଲେ—"

ବୃଦ୍ଧ ଆଉ କହିପାରିଲେ ନାହିଁ-ବାଷ୍ପଜଡ଼ କଣ୍ଠ ସଫାକରି ଦେଉଁ ଦେଉଁ ଅବଶ ହୋଇ ବସିପଡ଼ିଲେ । ଆଖିରେ ସମ୍ଭ୍ରମ ଓ ଶ୍ରଦ୍ଧା ନେଇ ନୀଳୁବାବୁ ତାଙ୍କୁ ଅନାଇ ରହିଲେ । ହଠାତ୍ ବୃଦ୍ଧଙ୍କ ଆଖି ଜଳି ଉଠିଲା ପରି ଦିଶିଲା । ସେ କହିଲେ, "ଯୁବକ, ମୋତେ ତୁମ୍ଭେ ପ୍ରଶଂସାନେତ୍ରରେ ଦେଖୁଛ-ବଡ଼ ଅନ୍ୟାୟ ! ମୋର କର୍ତ୍ତବ୍ୟ ମୁଁ କରୁଛି ! ଦେଖ, ତାଙ୍କୁ ଈଶ୍ୱର ନେଇଗଲା ପରେ ମୁଁ ଏଠାକୁ ଆସି ନଥାନ୍ତି, ବରଂ ଏ ସ୍ଥାନ ତ୍ୟାଗ କରି ଯାଇଥାନ୍ତି; କିନ୍ତୁ ମରିବା ପୂର୍ବ ମୁହୂର୍ତ୍ତରେ ମୋ ଇରା କହିଲେ,—ତାଙ୍କୁ ଏହି ସ୍ଥାନକୁ ନେଇ ଆସିବାକୁ ! ବହୁ କଷ୍ଟରେ ତ ତାଙ୍କୁ ନେଇ ଆସିଲି; କିନ୍ତୁ ଠିକ୍ ଏହିଠାରେ, ଠିକ୍ ଏହି ବେଞ୍ଚ ଉପରେ ତାଙ୍କୁ ନୂଆଇଁଦେଲା ମୁହୂର୍ତ୍ତରେ ହିଁ—" ଏତକ କହି ଏଥର ବୃଦ୍ଧ ବାଳକ ପରି ଭୋ ଭୋ କରି କାନ୍ଦି ଉଠିଲେ । କିଛିକ୍ଷଣ ପରେ ସେ ଶାନ୍ତ ହୋଇ କହିଲେ, "ଦେଖ ଯୁବକ, ପ୍ରେମ କ'ଣ, ତୁମ୍ଭେ ବୁଝି ନା । ଯଦି କେବେ ପ୍ରେମ କର, ଏଇ କଥାଟି ମୋର ମନେ ରଖିଥିବ-ପ୍ରେମିକାର ଇଚ୍ଛା ହିଁ ପ୍ରେମିକର ଆଇନ, ଶାସ୍ତ୍ର, ଧର୍ମ ସବୁର ଶେଷ । ମୁଁ ଯେ ଏଇ ୨୭ ବର୍ଷ କାଳ ଏ କର୍ତ୍ତବ୍ୟଟିକୁ କେଭେଁ ଭୁଲିନାହିଁ, ତା'ର କାରଣ ମୁଁ ଗର୍ବ କରି କହିପାରେଁ, ମୁଁ ମୋ ଇରାକୁ ପ୍ରକୃତରେ ପ୍ରେମ କରେ । ପ୍ରେମର ପଥ, କର୍ତ୍ତବ୍ୟର ପଥ ଦୁଃଖମୟ, କିନ୍ତୁ ସେଥିଯୋଗେ ଯେଉଁ ଦୁଃଖ ହୁଏ, ତା'ର ସ୍ୱାଦ ସବୁ ସୁଖରୁ ବଳି ସୁଖ ! ଜାଣ ଯୁବକ, ଦିନେ ଯଦି ଏଠାକୁ ଆସି ଠିକ୍ ସମୟରେ ଘଣ୍ଟାଟିଏ ନ କାନ୍ଦିବି ତ, ମୁଁ ସେହିଦିନ ନିଶ୍ଚୟ ମରିବି !"

ନୀଳୁଙ୍କ ଆପାଦମସ୍ତକ ପ୍ରକମ୍ପିତ କରି ଗୋଟାଏ ବାଷ୍ପୋଚ୍ଛ୍ୱାସ ଉଠି କ୍ରମେ ମିଳାଇଗଲା । ସେ ହଠାତ୍ ଭୂଲୁଣ୍ଠିତ ହୋଇ ବୃଦ୍ଧଙ୍କପାଦତଳେ ପଡ଼ି ପାଦ ଧାରଣ

କରିବାକୁ ଗଲାବେଳେ ବୃଦ୍ଧ ଦୂରକୁ ହଟିଯାଇ କହିଲେ, "ଯୁବକ, ମୁଁ ଜାଣି ପାରୁଛି, ତୁମ୍ଭେ ଗୋଟିଏ ଭଲ ପ୍ରେମିକ ହେବ । କିନ୍ତୁ ଏ ଦୈନ୍ୟ ତୁମ୍ଭଠାରେ ଶୋଭାପାଏ ନାହିଁ । ଯଦି ପ୍ରକୃତରେ ତୁମ୍ଭେ ମୋ କଥା ହୃଦୟଙ୍ଗମ କରିଛ ତ, ଯାଅ, ଏହି ଦଣ୍ଡରେ ଅକୃତ କର୍ତ୍ତବ୍ୟର ପରିଣତି ପାଇଁ ଅଗ୍ରସର ହୁଅ । ଯାଅ, ଆଉ ବିଳମ୍ବ କର ନାହିଁ । ଦେଖୁନାହଁ- ମୋ କର୍ତ୍ତବ୍ୟରେ ବାଧା ଘଟୁଛି ।

ନୀଳୁବାବୁ ବିତାଡ଼ିତ ହୋଇ ସେଠାରୁ ଧୀରେ ଧୀରେ ପ୍ରସ୍ଥାନ କଲେ । ହୋଷ୍ଟେଲରେ ପହଞ୍ଚିଲାବେଳକୁ ପ୍ରାୟ ଆଠଟା ।

(୬)

କନକ ଯେତେବେଳେ ତା'ର ସମସ୍ତ ମାନସିକ ଶକ୍ତି ପ୍ରୟୋଗ କରି କମ୍ପମାନ ଦେହଟିକୁ ବଶକୁ ଆଣି କୁଅ ଭିତରକୁ ଗଳିପଡ଼ିଲା, ସେତେବେଳେ ଭୂତ, ଭବିଷ୍ୟତ୍, ବର୍ତ୍ତମାନ ଓ ନିଧି, ନୀଳୁ କାହାରି କଥା ବା କୌଣସି କଥା ତା' ମନରେ ନଥିଲା । କେବଳ ଯେଉଁ କାର୍ଯ୍ୟଟି କରିବାକୁ ସେ ସଂକଳ୍ପ କରିଥିଲା, ସେହି କାର୍ଯ୍ୟରେ ହିଁ ତା' ମନ ଏକାବେଳକେ ବୁଡ଼ି ରହିଥିଲା । ତାହାର ଅସୀମ ଧୈର୍ଯ୍ୟ ଓ ସାହସ ସେହି ମୁହୂର୍ତ୍ତରେ କୁଆଡ଼େ ଉଭେଇଯାଇଥିଲା-ଗୋଟାଏ ଅନିଶ୍ଚିତ ଆଶଙ୍କା ହଠାତ୍ ତା' ମନଟିକୁ ଅଧିକାର କରି ପକାଇଥିଲା । ଯାର କାରଣ ସେ କିଛି ବୁଝି ପାରିଲା ନାହିଁ । ଘୋର ଅନ୍ଧକାର ଭିତରକୁ ଜାଣିଶୁଣି ଗୋଡ଼ ବଢ଼ାଇବା ବେଳେ ଯବିନିକା ସେ ପାଖର କଥା ଭାବିବା ଭଳି ଅବସ୍ଥା ତା'ର ନଥିଲା ସେତେବେଳେ । ତଥାପି ଗୋଟାଏ ଭୌତିକ ଭୟ ତାକୁ ଅଜଣାରେ ଅଭିଭୂତ କରିପକାଇବାକୁ ଚାହିଁଲା । ସେ ତାହାର ସମସ୍ତ ଶକ୍ତି ପ୍ରୟୋଗ କରୁଥିଲା ସେହି ଭୟଟିକୁ ଦୂରରେ ରଖିବାକୁ । ସେ ଏହିମାତ୍ର ନିଧିବାବୁଙ୍କ ସନ୍ତର୍ପଣରେ ଥରେ ଦେଖି ଆସିଥିଲା । ଶେଷ ଦେଖାରେ ତା' ଆଖିରୁ ଲୁହ ବହି ନଥିଲା ସବୁ ହିସାବ ନିକାଶ କରି ଆସିଥିଲା ସେ—ନିଧିବାବୁଙ୍କ ମୁଣ୍ଡ ଓ ଗୋଡ଼ ଉପରେ ହାତ ଦେଇ ସେ କାତର ଭାବରେ ମନାସିଥିଲା ତାଙ୍କର ଭବିଷ୍ୟତ୍ ସୁଖ, ଭବିଷ୍ୟତ୍ ଜୀବନର ଦାମ୍ପତ୍ୟ ସୌଭାଗ୍ୟ । ତାଙ୍କ ଚରଣଧୂଳି ନେଇ ମୁଣ୍ଡରେ ଲଗାଇ ସେ ପ୍ରାର୍ଥନା କରିଥିଲା, ତା'ର ସବୁ ଜଣାଅଜଣା ଦୋଷ ଯେପରି ମାଫ୍ ହୁଏ । ଏତକ କରିସାରି ତା'ର ଗୋଟାଏ ଗଭୀର ସ୍ୱସ୍ତି ମନରେ ଜାତ ହୋଇଥିଲା । ସେ ଭାବିଲା, ଏ ସଂସାରରେ ତା'ର ସବୁ ଦେଣାପାଉଣାର ହିସାବ ନିକାଶ ହୋଇଗଲା; ଏଥର

ତା'ର ବଡ଼ ଦୁଃଖର ଅସହ୍ୟ ଯନ୍ତ୍ରଣା ପ୍ରଶମିତ ହୋଇ ସାରିଥିଲା । ତା'ର ସ୍ଥିର ସଂକଳ୍ପରୁ ଜାତ ମୁକ୍ତିର ଆନନ୍ଦ ଚାଖୁଁ ଚାଖୁଁ ସେ କୂଅ ପାଖକୁ ଆସିଥିଲା । ସେହିଠାରେ ତା' ଜୀବନର ଗୋଟିଏ ମାତ୍ର ମୁହୂର୍ତ୍ତ ବାକିଥାଉ, ସେ ହଠାତ୍ ଭୟରେ ଅଭିଭୂତ ହୋଇପଡ଼ିଲା ।

ତା' ଦେହଟି ପାଣିରେ ପଡ଼ି ଯେତେବେଳେ ଗୋଟାଏ ବିକଟ ଶବ୍ଦ ତା' ଚାରିଆଡ଼େ ଗୁମରି ଉଠିଲା, ସେତେବେଳେ ତା'ର ମନେ ପଡ଼ିଗଲା ନୀଲୁ କଥା । ତା' ସଙ୍ଗରେ ତ ତା'ର ହିସାବ ନିକାଶ ହୋଇ ପାରିନାହିଁ । ସେ ଭାବିଥିଲା, ସଂସାରରେ ସେ କିଛି ପକାଇ ରଖି ଯାଉନାହିଁ ବୋଲି-ତା'ର ତ କିଛି ଛାଡ଼ିଯିବା ଭଳି ନାହିଁ । କିନ୍ତୁ ବର୍ତ୍ତମାନ ତା'ର ମନେ ହେଲା, ତା'ର ସବୁ ପଛରେ ପଡ଼ି ରହିଲା । ହେଉ ପଛକେ ! କନ୍ତୁ ନୀଲୁ, ସେ କ'ଣ କରିବ-ତା'ର ତ କିଛି ସେ କରି ଆସି ପାରିଲା ନାହିଁ । ସେ ଯଦି ତା'ର ଅନୁସରଣ କରେ ! ସେତିକିବେଳେ ପାଣି ତାକୁ କ୍ରମେ ଅଭିଭୂତ କରି ପକାଇଲା । ସେ ଦୁଇ ହାତ ଦେଇ ପଙ୍କ ମଧ୍ୟରେ ଗୋଟାଏ ସ୍ଥୂଳ ପଦାର୍ଥ ଖୋଜି ବୁଲିଲା, ଆଶ୍ରୟ ଭାବରେ ଧରି ଆତ୍ମରକ୍ଷା କରିବାକୁ-ହଁ, ଆତ୍ମରକ୍ଷା କରିବାକୁ ! ଆତ୍ମରକ୍ଷାର ସହଜ ଆଗ୍ରହ-ଯାହା ଜୀବନର ଏକମାତ୍ର ବର୍ମ-ତାକୁ ବ୍ୟାକୁଳ କରି ପକାଇଲା । ପାଣିଗୁଡ଼ାଏ ପିଉଁ ପିଉଁ ସେ ବିକଳ ଭାବରେ ଆଉ କିଛି ନ ପାଇ ଶେଷରେ ଅଦମ୍ୟ ଚେଷ୍ଟାରେ ଥରେ ଉପରକୁ ଉଠିବାର ଚେଷ୍ଟା କରି କୌଣସିମତେ ନିଜକୁ ପଙ୍କରୁ ଉଠାଇନେଲା ଓ ଅଧବାଟରେ ବାମ୍ପୀର ପାବଚ୍ଛର କଡ଼ାଟାଏ ଧରିପକାଇ ଭାବିଲା-ବଞ୍ଚିଗଲି ! କିନ୍ତୁ ସେତିକିବେଳେ ତା'ର ଚେତା ବୁଡ଼ିଗଲା ।

+ + + + +

କେତେ ସମୟ ପରେ କେଜାଣି,—କନକକୁ ଯୁଗ ଯୁଗ ପରି ଲାଗିଲା,-ସେ ଆଖି ମେଲି ଚାହିଁଲା; କିନ୍ତୁ ପ୍ରଥମେ କିଛି ବୁଝି ପାରିଲା ନାହିଁ । ନିଧିବାବୁ, ଗଉରୀ, ରଙ୍ଗୀ ପ୍ରଭୃତିଙ୍କ ମୁହଁକୁ ସେ ବାଲୁବାଲୁ କରି ଚାହିଁଲା କିଛିକ୍ଷଣ । ଗୋଟିଏ ଭଦ୍ରଲୋକ ତାକୁ ଆଖି ଖୋଲିବାର ଦେଖି ତା' ପାଖକୁ ଧାଇଁ ଆସିଲେ ଓ ଆସି ଗୋଟାଏ କ'ଣ ତା' ପାଟିରେ ଢ଼ାଳିଦେଲେ । କନକ ଥରେ ଆଖି ବୁଜି ଭାବିବାର ଚେଷ୍ଟାକଲା । ବିଶେଷ କିଛି ଭାବିବା ପୂର୍ବରୁ ପୁଣି ଆଖି ଖୋଲି ଚାହିଁଲା । ଚାହିଁବା ମାତ୍ରକେ

ନିଧିବାବୁଙ୍କ ତ୍ରସ୍ତ, ଚକିତ, ଆଗ୍ରହପୂର୍ଣ୍ଣ ଆଖିଯୋଡ଼ିକ ତା' ମୁହଁ ଉପରେ ବ୍ୟାକୁଳ ଉତ୍କଣ୍ଠାରେ ସ୍ଥାପିତ ଦେଖିଲା । ହାତ ଦିଟା ତା'ର ଥରି ଉଠିଲା, ତା' ଆଖିରେ ଗୋଟାଏ ଆଗ୍ରହ ଲେଖିହୋଇଗଲା । କିନ୍ତୁ ତା' ହାତ ସେହିପରି ଅଚେଷ୍ଟ ହୋଇ ପଡ଼ିରହିଲା—ହଲିଲା ନାହିଁ, ନା ଉଠିଲା ନାହିଁ । କନକ ନିଧିବାବୁଙ୍କୁ ଚିହ୍ନିଲା, ଆଉ ସମସ୍ତଙ୍କୁ ମଧ୍ୟ ଚିହ୍ନି ପାରିଲା, କିନ୍ତୁ କଥା କହିବାର ବା ଅନ୍ୟ କୌଣସି ପ୍ରକାରେ ସେଟା ଜଣାଇବାର ଶକ୍ତି ତା'ର ନାହିଁ । ପୁଣି ସେ ଆଖି ବୁଜିଲା । ଫେର୍ ଆଖି ଖୋଲିଲାବେଳକୁ ତାକୁ ଭେଟିଲା ଛଳଛଳ ଉତ୍କଣ୍ଠାପୂର୍ଣ୍ଣ ଆଖିଯୋଡ଼ିକ ରଙ୍ଗୀର । ଏଥର କନକ ଟିକିଏ ହସିବାକୁ ଚେଷ୍ଟା କଲା—ମୁଖବିକୃତିରୁ ଆଉ ଯେ ଯାହା ବୁଝୁ, ରଙ୍ଗୀ ବୁଝିଲା, କନକ ତାକୁ ଚିହ୍ନି ହସିଲା ବୋଲି । ରଙ୍ଗୀ ହଠାତ୍ କଇଁ କଇଁ ହୋଇ କାନ୍ଦି ଉଠିଲା । ଗଉରୀ ସେତିକିବେଳେ ତାକୁ ପଛଆଡୁ ଭିଡ଼ି ଅନ୍ୟ ଆଡ଼କୁ ନେଇଗଲା । କନକ ମୁହଁରୁ କଥା ଆଉ କୌଣସିମତେ ବାହାରିଲା ନାହିଁ । ଡାକ୍ତର ସାରାରାତି ଜଗି ରହିଲେ-ଆଉ ସମସ୍ତେ ମଧ୍ୟ ସେହିପରି ।

ଠିକ୍ ପାହାନ୍ତାବେଳକୁ କନକ ପୁଣି ଆଖିଖୋଲି ଚାହିଁଲା; ଚାରିଆଡ଼କୁ ବହୁକଷ୍ଟରେ ଉତ୍ସୁକଦୃଷ୍ଟି ନିକ୍ଷେପ କରି ଜଣାଇଲା, ଯେପରି ସେ କାହାରିକୁ ଖୋଜୁଛି । ସମସ୍ତେ ସେଠାରେ ଥିଲେ-ଅଥଚ କନକ ଆଖି କାହାରି ଉପରେ ନ ରହି ଅପ୍ରତିଭ ହୋଇ ପୁଣି ବନ୍ଦ ହୋଇଗଲା । ହଠାତ୍ ଗଉରୀ ଉଠି ଆସି ନିଧିବାବୁଙ୍କୁ କହିଲା, ''ନିଧି, ନୀଳୁକୁ ଗୋଟାଏ ତାର କର ।'' ନିଧିବାବୁ ବ୍ୟସ୍ତ ହୋଇ କହିଲେ, ''ଠିକ୍, ଠିକ୍ । କିନ୍ତୁ ତା' ଠିକଣା ? ହଁ, ହଁ, ତା' ଚିଠିରେ ଅଛି-ଦେଖେଁ ।'' ନିଧିବାବୁ ଖୋଜି ଖୋଜି ସେ ଚିଠିଖଣ୍ଡକ ଆଉ ପାଇଲେ ନାହିଁ । ଏତିକିବେଳେ ବାହାର ଦ୍ୱାରରେ ହାତ ମାରିବାର ଶବ୍ଦ ମଧ ଶୁଣାଗଲା ଖୁବ୍ କ୍ଷୀଣ ହୋଇ । କନକ ସେହିପରି ଆଖି ବୁଜିଥିଲା । ହଠାତ୍ ଆଖି ଖୋଲି ଅମିତବଳ ପ୍ରୟୋଗ କରି କର ଲେଉଟାଇ ଦ୍ୱାର ଆଡ଼କୁ ଚାହିଁ ପଡ଼ି ରହିଲା । ଏକା ଗଉରୀ ଜାଣିଲା, କେତେ ଉଦ୍‌ବେଗ ଉତ୍କଣ୍ଠା ତା' ଆଖିରେ ନେଇ କନକ କାହାର ପ୍ରତୀକ୍ଷା କରୁଛି । ରଙ୍ଗୀ ମଧ ସେହିଠାରେ ଥିଲା । କନକ ଫେର୍ ତା' ଆଡ଼କୁ ଚାହିଁ କରୁଣ ହସ ଟିକିଏ ହସିଲା-ମୁଖବିକୃତିରୁ ରଙ୍ଗୀ କନକର ମନୋଭାବ ବୁଝି ଅଧୋବଦନରେ ରହିଲା । ଗଉରୀ କହିଲା, ''କିଏ ଆସିଲା, ଦେଖିବୁରେ ନିଧି !'' ନିଧିବାବୁ ନିଜ ଚିନ୍ତାରେ ନିଜେ ବିଭୋଳ ଥିଲେ, ଚମକି ପଡ଼ି ଉଠି ଗଉରୀ କଥା ଶୁଣି ବାହାରିଗଲେ । ଦ୍ୱାର ଦେଇ ଯାଉଁ ଯାଉଁ କନକର ଦୃଷ୍ଟି ତାଙ୍କ ଉପରେ ପଡ଼ିଲାବେଳେ

ତା' ମୁହଁ ଉପରେ ଗୋଟାଏ ନୂଆ ଭାବ ଖେଳିଗଲା କ୍ଷଣକ ପାଇଁ, ପୁଣି ସେହି ବ୍ୟାକୁଳ ପ୍ରତୀକ୍ଷାର ନିର୍ନିମେଷ ଦୃଷ୍ଟି ।

କିଛିକ୍ଷଣ ପରେ ଦୀର୍ଘନିଃଶ୍ୱାସଟିଏ ପକାଇ କନକ ଆଖି ବୁଜିଲା, କିନ୍ତୁ ଛନଛନ ଭାବ ତା' ଦିହରୁ ଗଲା ନାହିଁ । ହଠାତ୍ ନୀଳୁବାବୁ ବ୍ୟସ୍ତସମସ୍ତ ହୋଇ ନିଧିବାବୁଙ୍କ ସାଙ୍ଗେ ସେ ଘରେ ପ୍ରବେଶ କରି ତା' ବିଛଣା ପାଖକୁ ଧାଇଁ ଆସି, ସେହିଠାରେ ଥକ୍କା ହୋଇ ମୂକ, ନିଶ୍ଚଳ ପରି ଛିଡ଼ା ହୋଇଗଲେ—ଦୃଷ୍ଟି କନକର ସୁପ୍ତିପୂର୍ଣ୍ଣ ଉଜ୍ଜ୍ୱଳ ମୁଖଟି ଉପରେ । ହଁ, କନକ ମୁହଁ ହଠାତ୍ କାହିଁକି ଉଜ୍ଜ୍ୱଳ ହୋଇ ଉଠିଲା । ସେ ଆଉ ଆଖି ଖୋଲିଲା ନାହିଁ; ଅଥଚ କିଏ ଯେ ଆସି ତା' ମୁଣ୍ଡ ପାଖରେ ଛିଡ଼ା ହୋଇଛି, ଏ କଥା ସେ ଭଲ ବୁଝି ପାରିଥିଲା ପରି ଜଣାଗଲା । ତା'ର ଅଧରକୋଣରେ ଦିବ୍ୟ ହସ ଟିକିଏ ସେତିକିବେଳୁ ଲାଖି ହୋଇ ରହିଲା । ହଠାତ୍ ନୀଳୁ ଜାଗ୍ରତ ହେଲା ପରି ଉଠି, କନକ ମୁଣ୍ଡ ପାଖରେ ବସି ପଡ଼ି ଡାକିଲେ-"କକି, କନକ-ମତେ ଶୁଣିଯା !" କିଏ ଉତ୍ତର ଦେଉଛି । ସେହି ହସଟିକ ଖାଲି ଶେଷ ଉତ୍ତର ପରି କନକ ମୁହଁରେ ଲାଗି ରହିଥାଏ । ନୀଳୁ ବ୍ୟାକୁଳ ହୋଇ କନକ ମୁଣ୍ଡରେ ହାତ ଦେଇ କହିଲେ, "କକି, ମୁଁ ତୋ ପାଇଁ ନିମନ୍ତ୍ରଣ ନେଇ ଆସିଚି କନକ, ଥରେ ଶୁଣ-ମୁଁ ବାହା ହେବି । ତୁ କହିଥିଲୁ ମୋ ବାହାଘରକୁ ତୋତେ ନେବି ବୋଲି,-ଏଇ ତତେ ନବାକୁ ଆସିଚି ପରା । କନକ- ।" କନକ କପାଳ ଉପରେ ନୀଳୁଙ୍କ ଶୀତଳ ସ୍ପର୍ଶ ବୋଧହୁଏ ଏତେବେଳେ ତା' ଅନୁଭବ ଭିତରେ ଆସିଲା । ହଠାତ୍ କନକ କଷ୍ଟରେ ଆଖିଖୋଲି ଚାହିଁଲା ଓ ନୀଳୁଙ୍କୁ ଦେଖି ତା'ର ସମସ୍ତ ମୁଖମଣ୍ଡଳ, ସମସ୍ତ ଦେହଲତା କି ଗୋଟାଏ ମଧୁର କମ୍ପନରେ ଥରି ଥରି ଉଠିଲା । ସେ ଅପଲକ ନେତ୍ରରେ ନୀଳୁଙ୍କ ମୁହଁକୁ କିଛିକ୍ଷଣ ଦୂର ଦୃଷ୍ଟିରେ ଚାହିଁ, କ'ଣ କହିବାକୁ ଚାହିଁଲା—ମୁହଁର କିନ୍ତୁ କଥା ବାହାରିଲା ନାହିଁ; ଖାଲି ରହିଗଲା, ଗୋଟାଏ ହାସ୍ୟ-ରେଖା ଆହୁରି ଟିକିଏ ପରିସ୍ଫୁଟ ହୋଇ । ସେ ଅନ୍ୟ ହାତ ଟେକି ଠାରିଲା-ରଙ୍ଗୀକୁ ନିକଟକୁ ଆସିବାକୁ; ଗଉରୀ ରଙ୍ଗୀକୁ ସବଳେ ଟାଣିଆଣିଲାବେଳକୁ ରଙ୍ଗୀ କନକର ଗୋଡ଼ଟାଏ ଧରି ରହିଗଲା-ସେଠାରୁ ଘୁଞ୍ଚିବାକୁ ଚାହିଁଲା ନାହିଁ; କିନ୍ତୁ କନକ ପୁଣି ବାଁ ହାତଟି କଷ୍ଟରେ ଟେକି ତାକୁ ଦେଖାଇଦେଲା-ବୁଲି ଆସି ନୀଳୁ କତିରେ ଛିଡ଼ାହେବାକୁ । ଗଉରୀ ରଙ୍ଗୀକୁ ଆଣି ଠିଆ କଲାରୁ କନକ ନୀଳୁ ହାତ ସହିତ ନିଜର ଡାହାଣ ହାତଟି ତା' ଆଡ଼କୁ ପ୍ରସାରିତ କରି ଠାର ଦ୍ୱାର ତା'ର (ରଙ୍ଗୀର) ହାତ ବି ନିଜ ହାତକୁ ନେବାକୁ ଚାହିଁଲା । ଗଉରୀ ପଛଆଡୁ ରଙ୍ଗୀର ଦକ୍ଷିଣ ହସ୍ତଟି କନକ

ହାତରେ ନୀଲୁ ହାତ ସଙ୍ଗରେ ରଖିଦେଇ ଘୁଞ୍ଚିଗଲା । କନକ ଦୁଇ ହାତକୁ ସବଳେ ଏକ ସଙ୍ଗରେ ଚାପି ଧରି, ଉଦ୍ଦଣ୍ଡିତ ଆଖିଯୋଡ଼ିକ ଟେକି ଥରେ ନୀଳୁଙ୍କ ମୁହଁକୁ ଓ ଥରେ ରଙ୍ଗୀ ମୁହଁକୁ ଚାହିଁଲା । ରଙ୍ଗୀ ନୀରବରେ କାନ୍ଦୁଥାଏ ନୀଳୁ କିନ୍ତୁ ଏଥର ପିଲାଙ୍କ ପରି କାନ୍ଦି ଉଠି କହିଲେ "କଙ୍କି, କଙ୍କି !" ସେହି ସ୍ଥିର ଅପାର୍ଥିବ ହସଟିକ ନେଇ କନକ ଖର ଦୃଷ୍ଟିରେ ଥରେ ତାଙ୍କ ମୁହଁକୁ ଚାହିଁଦେଲା । ସେ ଗୋଟାଏ ଅତୀତ କାଳର ଗୋଟାଏ ଶତସ୍ମୃତିଯୁକ୍ତ ଦୃଷ୍ଟିର ତୀକ୍ଷ୍ଣ ଆଦେଶ ନେଇ ନୀଳୁଙ୍କୁ ସ୍ତମ୍ଭିତ କରିଦେଲା । ନୀଳୁ କିଛିକ୍ଷଣ ଚୁପ୍ ରହି ଗଦ୍ ଗଦ୍ ଜଡ଼ିତ କଣ୍ଠରେ କହିଲେ, "କଙ୍କି, ଠକ କିଏ-ତୁ ନା ମୁଁ ?" ଚମକି ଉଠିଲା ପରି ହୋଇ କନକ ପୁଣି ଥରେ ତାଙ୍କ ଆଡ଼କୁ ଅନାଇଲା; କିଛିକ୍ଷଣ ପରେ କି ଗୋଟାଏ ଦୁଃଖର ବେଗରେ ଦୃଷ୍ଟି ଫେରାଇ ଆଣିଲା । ନୀଳୁ ଓ ରଙ୍ଗୀଙ୍କ ହାତଯୋଡ଼ିକୁ ଥରେ ଆଗ୍ରହରେ ଚିପି ଦେଇ, କଷ୍ଟରେ ନିଜ ହାତଟି ନିଜ ମୁଣ୍ଡ ପର୍ଯ୍ୟନ୍ତ ନେଇ, ନିଜ କପାଳରେ ତିନିଥର ସ୍ପର୍ଶ କରି ଜଣାଇଲା ପରା-କିଏ ଠକ ! କନକର ଆଖି ଛଳଛଳ ହୋଇ ଆସୁଥିଲା, ସେ ହଠାତ୍ ବଳ ସଞ୍ଚୟ କରି ନେଇ କପାଳରୁ ନିଶ୍ଚେଷ୍ଟ ହାତଟି ଧୀରେ ଧୀରେ ଉଠାଇ ନେଇ ଅନ୍ୟ ପାଖରେ ନିଧିବାବୁଙ୍କ ଗୋଡ଼ ଆଡ଼କୁ ଦରାଣ୍ଡି ବଢ଼ାଇଲା । ସେତିକିବେଳେ ତା'ର ପ୍ରାଣର ସମସ୍ତ ସଞ୍ଚିତ ଆବେଗ ପ୍ରୟୋଗ କରି ତା' ମୁଣ୍ଡ ଓ ଛାତି ଥରେ ମାତ୍ର ବିଛଣାରୁ ଉପରକୁ କେତେ ଦୂର ଉଠିପଡ଼ିଲା କାହାକୁ ଆଗ୍ରହରେ ଥରେ ଗ୍ରହଣ କରିବା ପାଇଁ, କିନ୍ତୁ ନିଧିବାବୁ ଦୁଇ ବାହୁରେ ତାକୁ କୁଣ୍ଢାଇ ଧରୁଁ ଧରୁଁ ଦେହ ତା'ର ନିଶ୍ଚେଷ୍ଟ ହୋଇ ପୁଣି ବିଛଣାରେ ଲୋଟିହୋଇ ପଡ଼ିଲା ।



# ବଡ଼ ସାନ

ଯେ ମହତ୍‌ବ୍ୟକ୍ତି

ବଡ଼ ସାନର ବାହାରେ ଓ ଉପରେ

ଅଥଚ

ଯେଉଁ ମହାଜନ

ବଡ଼ ଓ ସାନ ଉଭୟଙ୍କୁ ବୁଝନ୍ତି

ସେହି ମହାଜନ ମହତାବଙ୍କ

ଶ୍ରୀ କର କମଳରେ

'ହରି-ଜନ'

ଶ୍ରୀ ବୈଷ୍ଣବଚରଣ ଦାସ

# ବଡ଼ ସାନ

## (୧)

"ତମ ଘରଣୀପଣିଆଁ ଏବେ ସଇଲା — ନିଅ, ଏବେ ପୁଅତ ଗୋଟେ ମେମ୍ ସିଆଡୁ ବାହାହେଇକରି ଆସିଲାଣି । ତମ ଶାଶୁପଣିଆଁ ଏଥର ବାହାରିଯିବ ଯେ —"

"ହଁ ଯା, ଯା — ମଲା, ସବୁବେଳେ ଖାଲି ଏଙ୍କର ସେହିକଥା । ବୁଢ଼ାକାଳକୁ କେତେ ରଙ୍ଗ ବାହାରୁଛି ଲୋ ମା —"

"ମଲା ତମେ କ'ଣ ମିଛ ମାନୁଚ କି —ଏଇପରା ଚିଠି ଦେଖୁନା । ପୁଅବୋହୂ ଆସି ବମ୍ବେଇରେ ପହଞ୍ଚିଲେଣି !"

"ହଁ ହଁ - ତେମେ ଆଉ ମୋ ସାଙ୍ଗେ ଟାହୁଲୀ କରନା — ଯା । ଚିଠିଟା ମୋତେ ଦେଲେ କ'ଣ ହବ - ମୁଁ ପଢ଼ି ଜାଣେ ନାହିଁ, କ'ଣ କିଏ ଜାଣେ ନାଇଁ । ହେଃ ! ମୋ ପୁଅ ଜାଳେ ମେମାଣୀ ବାହାହେବ, ଗଲାବେଳେ ମୋ ଗୋଡ଼ ଛୁଇଁ କରି ଯାଇଛି । କ'ଣ ଗେଲ !"

"ହଉ ହେଲା — ମୁଁ ଯଦି ମିଛ କହିଲି ତ କହିଲି, ଆଉ କ'ଣ—"

ଏହା କହି ସାରଦାବାବୁ, ଗୃହିଣୀ ଯଉଁଠି ଗୋଟାଏ କଣରେ ବସି ପାନ ଛେଚୁଥିଲେ ସେଠାରୁ ଗମ୍ଭୀରଭାବରେ ବୁଲିପଡ଼ି ଅବସନ୍ନ ହେଲାପରି ଯାଇ ପଲଙ୍କ ଉପରେ ଲଥ୍‌କରି ପଡ଼ିଲେ ଓ ଆଖିରେ ଚଷମା ଦେଇ ହାତରେ ଥିବା ଚିଠିଖଣ୍ଡକ ମନୋଯୋଗ ଦେଇ ପଢ଼ିବାକୁ ଲାଗିଲେ । ଗୃହିଣୀ କିଛିକ୍ଷଣ ଚୁପ୍‌ରହି ଛେଚାପାନତକ ପାଟିରେ ପକେଇ ଦେଇ ଟିକିଏ ବିସ୍ମିତ ଭାବରେ ବାବୁଙ୍କ ଗମ୍ଭୀର ମୁହଁ ଆଡ଼କୁ ଚାହିଁ ରହିଲେ । ତଥାପି ବାବୁ କିଛି ନ କହିବାରୁ ହଠାତ୍ ତାଙ୍କର ଦୃଢ଼ତା କୁଆଡ଼େ ଭାସିଗଲା । ବିଚଳିତ ମନରେ ଭାବିଲେ ସତେ କ'ଣ ଆଉ ମୋ କାର୍ତ୍ତିକ—

ଧଡ଼ପଡ଼ ହୋଇ ଉଠି ଆସି କହିଲେ —"ହଇହେ — ସତକଥା କ'ଣ ଭଲା ମୋତେ କହ — ଜାଣିଶୁଣି ମତେ ଏମିତି କଲବଲ କାହିଁକି କରୁଚ ଭଲା ! କ'ଣ ଶୁଭୁନାହିଁ ନା କ'ଣ ମ !"

ସାରଦାବାବୁ ସେହିପରି ଚିଠି ଉପରେ ଦୃଷ୍ଟି ରଖି ନିଜ ମନରେ ଅନୁଚ୍ଚ ସ୍ୱରରେ କହିଲେ, ''ଠିକ୍ କଥା — ତା' କିପରି ହେବ — ନହେଲେ ମୋ ପୁଅର ବାରିଷ୍ଟରୀ ବୁଦ୍ଧି ! ବହୂ ମେମ୍, ଆଉ ଶାଶୁଟା ତୁଚ୍ଛା ଓଡ଼ିଆଣୀ, ଏଥିରେ କିପରି ଚଳିବ ! ନାଇଁରେ ପୁଅ— ତୋ ବୋଉଟାକୁ ବଦଳାଇ ନବା - ବୁଢ଼ୀହାଡ଼ୀ ଦେଖିକରି ଗୋଟିଏ ମେମ୍ ବୋଉ ଆଣିବା - ହଁ ସେଇ ଠିକ୍ ହେବ -''

ବୁଢ଼ୀ ଆଉ ସହ୍ୟ କରି ପାରିଲେ ନାହିଁ । ଏତେବେଳକେ ତାଙ୍କ ମନରେ ଦମ୍ଭ ଆସିଲା । ଆଶ୍ୱସ୍ତ ହୋଇ ମନେ ମନେ କହିଲେ - ଯାଃ, ବାବୁଙ୍କୁ ଉଦ୍ଦେଶ୍ୟ କରି କହିଲେ - 'ବୁଢ଼ା ମଣିଷଙ୍କୁ ବି ଏତେ ଢ଼ଙ୍ଗ ଆସେ କି ? ଗୋଟାଏ ଷୋଳ ବରଷର ଟୋକୀ ଦେଖିକରି ବା' ହେଉନା - କଅଁଳ ଆଙ୍ଗୁଠିରେ ପାଚିଲା ବାଳ ଉପାଡ଼ିବ । ଅଃ...'' ଯାଅ ଯାଅ, ମୋତେ ଏଗୁରା ସବୁ ଭଲଲାଗେ ନାହିଁ, ଯାଅ—'' ଏହା କହି ହାସ୍ୟମୟ ସାରଦାବାବୁଙ୍କ ଆଲିଙ୍ଗନରୁ କପଟ କ୍ରୋଧରେ ନିଜକୁ ମୁକ୍ତ କରିନେଇ ଅନ୍ୟ ଆଡ଼କୁ ମୁହଁ ଫେରାଇ ଅଧୋମୁଖରେ ଛିଡ଼ା ହୋଇରହିଲେ । ସାରଦାବାବୁ ଏପରି ଅପ୍ରତ୍ୟାଶିତ ଭାବରେ ବିଧ୍ୱସ୍ତ ହୋଇସାରି ସେହିଠାରୁ ଛିଡ଼ା ହୋଇ ବୁଢ଼ୀଙ୍କ ଭଙ୍ଗୀ ଓ ଆଡ଼ ଚାହାଣୀ କିଛିକ୍ଷଣ ଲକ୍ଷ୍ୟ କଲେ । ପରେ ହୋ... ହୋ... କରି ହସି ଉଠି କହିଲେ,— ''ବୁଢ଼ୀ ମାଇପକୁ କିଛି ଢ଼ଙ୍ଗ ଆସେନାହିଁ ପରା ! ବୁଢ଼ୀ କାଳେ ଏତେ ଛଟକ କୁଆଡୁ ଆସେ ଏ ମାଇକିନାଙ୍କ ଠେଇଁ ! ପ୍ରଶଂସାମାନ ନେତ୍ରରେ କିଛିକ୍ଷଣ ତାଙ୍କ ଆଡ଼କୁ ଅନାଇ ସାରଦାବାବୁ ହଠାତ୍ ବୁଢ଼ୀଙ୍କୁ କୋଳ କରି ଧରିଆଣି ବିଛଣାରେ ବସାଇ କହିଲେ, ''ନାଇଁ ହେ, ଆମ କାର୍ତ୍ତିକ କ'ଣ ସେମିତି ପିଲା —ମୁଁ ଖାଲି ଗେଲ ହେଉଥିଲି ନା !'' 'ହଇଲୋ ମୋର ଗେଲ ! ଯା ହଉ ଏତେ ବେଳକୁ ଏଙ୍କ ପୁଅ !' ବୋଲି କହି ବୁଢ଼ୀ ଆହୁରି ମୁହଁ ମୋଡ଼ିଦେଇ ବସିଲେ । ସାରଦାବାବୁ ତାଙ୍କୁ ପ୍ରସନ୍ନ କରିବା ଅଭିପ୍ରାୟରେ ପ୍ରକୃତ କଥା ସବୁ ଏକେ ଏକେ କହିଗଲେ ।

କାର୍ତ୍ତିକ ଆଜକୁ ମାସେ ହେବ ବିଲାତରୁ ବାହାରିଛି । ଯେଉଁ ଜାହାଜରେ ସେ ଆସୁଛି ତା' ଆଗ ଜାହାଜରେ ଚିଠି ଆସିଛି — ସେ ଏଇ ଦିନେ-ଦି'ଦିନରେ ବମ୍ବେଇରେ ପହଞ୍ଚିବ । ପହଞ୍ଚିଲାମାତ୍ରକେ ତାର କରିବ — ସାରଦାବାବୁ କଲିକତା ପର୍ଯ୍ୟନ୍ତ ଗଲେ ସାଙ୍ଗହୋଇ ଆଗେ ପୁରୀ ଯିବାକୁ ହେବ, ତା'ପରେ ଯେଉଁ କଥା; ଏ ସବୁ କଥା ମୌନଭାବରେ ଶୁଣୁଶୁଣୁ ବୁଢ଼ୀ ଆନନ୍ଦରେ ଅଧୀର ହୋଇ ଉଠିଲେ, ତଥାପି ବାବୁଙ୍କ ଆଡ଼କୁ ଚାହିଁଲେ ନାହିଁ କି କିଛି କହିଲେ ନାହିଁ । ସାରଦାବାବୁ ଗପିବାକୁ

ଲାଗିଲେ - ଏଥର କାହାକୁ କିପରି ଡାକିବାକୁ ହବ, ସମାଜ କଥା - ଇଯେ ତ ଆଉ କିଛି ନୁହେଁ, ପୁଅ ଆସି ଯେଉଁ ଦିନ କଟକରେ ପହଞ୍ଚିବ ସେହିଦିନ ଘରେ ଗୋଟାଏ ସଭା କରିବାକୁ ହେବ । ଯାବତ୍ ମୁଖିଆ ମୁଖିଆ କରଣମାନେ ସମସ୍ତେ ଆସିବେ — ଖିଆପିଆ ହେବ, ଇତ୍ୟାଦି ଇତ୍ୟାଦି ! ଇତି ମଧ୍ୟରେ ବୁଢ଼ୀ କିଛି ନ ଶୁଣିଲା ପରି ହଠାତ୍ ଉଠିପଡ଼ି ସେଠାରୁ ବାହାରି ଯିବାକୁ ଅଗ୍ରସର ହେଲେ । ସାରଦାବାବୁ ତାଙ୍କ ହାତ ଧରି ପକାଇବାରୁ ଉଦାସୀନ ଭାବରେ କହିଲେ, 'ଛାଡ଼ ଛାଡ଼ - ମୁଁ ମୋର ଯାଏଁ - ମୋ ପୁଅ ପାଇଁ କ'ଣ ହେରିକା କରିବି - ଏଠି ବସିଲେ କ'ଣ ହେବ !'' ସାରଦାବାବୁ ହସି ହସି କହିଲେ, 'ତେବେ ମାନ ଯାଇନାହିଁ । ନାଇଁ ମ ତେମେ କ'ଣ ବୁଢ଼ୀ — ତେମେତ ଅସଲ ଟୋକୀ' ଆଉ କହିବାକୁ ହେଲା ନାହିଁ, ବୁଢ଼ୀ ଅସମ୍ଭାଳ ହୋଇ ହସିଉଠିଲେ — ଛେଚାପାନର ବୋଳ ବସିଯାଇଥିବାରୁ ଯେଉଁ ଦୁଇପାଟି ଦାନ୍ତ ନାଲିକଳା ହୋଇ ଦେଖାଗଲା ସେଥିରେ ପ୍ରକୃତ ଦାନ୍ତ କେତୋଟି ମୋତେ ଠିକ୍ ଜଣାପଡ଼ିଲା ନାହିଁ — ପାଠକେ ଆପଣ ଟିକିଏ ନିରୀକ୍ଷଣ କରି ଦେଖିବେ କି ?

+ + + + +

''ହଇହେ - ଗୋଟାଏ କଥା !''

''କ'ଣ ? ଭାରି ତ ସୁଆଗ ଆଜି !''

''ନାଇଁ - ଗେଲ ନୁହେଁ, ତେମେ ଯଉଁଦିନ ପୁଅକୁ ଆଣିବାକୁ କଲିକତା ଯିବ - ମୁଁ ଏକା ତମ ସାଙ୍ଗରେ ଯିବି । ସାଙ୍ଗ ହେଇକରି କଟକ ଆସିବା । ସେଇଠୁ ପଛେ ତେମେ ବାପପୁଅ ଦୁହେଁ ପୁରୀ ଯିବ, ମୋତେ ଏଇଠି ଓହ୍ଲେଇଦେବ ପଛକେ !''

''ଆରେ ଯା' ମ, ଏତେ ଅଡୁଆକୁ ମୁଁ ଯାଇପାରିବି ନାହଁ - କଲିକତାରେ ଦିନେଓଳିଏ ରହିବାକୁ ହେବ କି କ'ଣ ଠିକଣା ନାହିଁ - ତମକୁ ନେଇ କଉଠି ରଖିବି - କ'ଣ କରିବି - ନା, ନା, ପୁଅ କ'ଣ କୁଆଡ଼େ ପଳଉଚି - ସେଇଦିନ କି ତହିଁଆରଦିନ ତ ଆସିବ ଏଠିକି, ଏତେ ବ୍ୟସ୍ତ କାହିଁକି ହଉଚ !''

''ନାଇଁ ନାଇଁ, ମୁଁ ତ ନିଶ୍ଚେ ଯିବି । ମୋତେ ପଛକେ ଚେସନଠେଇଁ କଲିକତାରେ ଛାଡ଼ିଦେଇଯିବ - ପୁଅକୁ ନେଇକରି ଆସିଲେ ପୁଣି ସାଙ୍ଗ ହେଇ ଆସିବା -''

"ଆଉ କ'ଣ ? ଯେକୁ ଟେସନଠେଇଁ ଛାଡ଼ିଯିବି ନାହିଁ ଆଉ କ'ଣ ! 'ହାବୁଡ଼ା ଟେସନ, କଟକ ଟେସନ ହେଇଛି ପରା - ହାଃ ହାଃ, ଯେକୁ ମୁଁ ଟେସନରେ ଛାଡ଼ିଦେଇ ଯିବି ହାଃ ହାଃ -"

"ଅଃ, ଏ ବୁଢ଼ାଟା କେତେ ହସୁଚି ମ ! ମୁଁ ଏବେ ଏତେ କଥା ଜାଣିଚି । ହ, ତେମେ ନ ନେଲେ ମୁଁ ଆଉ ଯାଇପାରିବିକି ! ନହେଲେ ଜଣକୁ ସାଙ୍ଗରେ ନେଇ ବାହାରିଯିବି ଯାଃ । ଯେକୁ ଏଇଥିପାଇଁ ଏତେ ଖୋସାମତ କି !"

"ହଉ ହଉ - କେମିତି ଯିବ ଯା - କେଉଁଦିନ ଯାଉଚ ?"

"ତମର ସେଥିରେ କ'ଣ ଅଛି ? ତେମେ କେଉଁ ଦିନ ଯାଉଚ ଭଲା !"

"ମୁଁ ଏଇ ଖାଇପିଇ ସାରି ବାହାରିବି -"

"ଏଁ, ଏଁ - ପୁଅ କ'ଣ ତାର କରିଚି କି ?"

"ହା, ହା - ଏଇ କାଲେ କଲିକତା ଯିବେ ପୁଅକୁ ଆଣି ! ଅସଲ ଖବରତ ମାଲୁମ ନାହିଁ, ଯେକୁ ନନେଇ ଗଲେ ଭୟେ କାଲେ ଯିବେ । ଆଚ୍ଛା - କହୁଚ ଯଦି ଚାଲ - କିନ୍ତୁ ତମ ଯିବାଟା ମୋ ମନକୁ ଆସୁନାହିଁ - ।"

"କି ମନ ଭୟେ । କି ମନକୁ ଆସିବା ଭୟେ - ଅ ଅ !" ନିମ୍ନ ସ୍ୱରରେ ଏହା କହି ସାରଦାବାବୁ ଚିଠି ଲେଖୁ ଲେଖୁ ତାଙ୍କୁ ଦେଖୁଥାନ୍ତି ଓ ବେଳେ ବେଳେ ମୁଣ୍ଡ ହଲାଇ କହୁଥାନ୍ତି - ତେମେ ଯାଉଚ ହଁ - ସେଟା ଏକା ମୋ ମନକୁ ଆସୁନାହିଁ ।

+ + + + +

"ଭୟେ କିଏ ରମାନାଥ ?"

"ନମସ୍କାର, ସାରଦାଭାଇ ! ଆଉ କାହିଁକି ଚିହ୍ନିପାରିବ - ପୁଅ ବାରିଷ୍ଟର ହେଲା, ଆଉ କାହିଁକି ପଚାରିବ କାହାକୁ !"

"ଆରେ ନାଇଁମ ରମାନାଥ - ଏଡ଼େ କଥାଟାଏ ! ଆଜିତ କାହିଁକି Good Morning ନକହି ନମସ୍କାର କହୁଚୁ !"

''ଆରେ ଭାଇ, ଆମେ ଯେତେହେଲେ Native ନା ଆଉ କ'ଣ । ତମ ପୁଅ ବିଲାତଫେରନ୍ତା ଆଉ ତମେ ବି —''

''ଆରେ ! - ମୋ ଉପରେ ସତରେ ଏତେ ରାଗ ନା, ଖାଲି ସେମିତି କହୁଚୁ ମ ! ମୁଁ ଏଇ କେତେଦିନ ଏ ଅଡୁଆରେ ପଡ଼ି ଘାଣ୍ଟିହେଉଚି । ମରିବାକୁ ବି ଫୁରସତ୍ ନାହିଁ । ତମ ପାଖକୁ ଯାଇପାରିନାହିଁ ବୋଲି ଯା କହୁଚ ପରା ! ମୋ ମା'ମାନେ କେମିତି ଅଛନ୍ତି ? ପରୀ ମା' ମୋର ମୋ ଉପରେ କେତେ ରାଗି ସାରିବଣି-''

ନାଇଁ ମ କାର୍ତ୍ତିକ କାଲି ସଞ୍ଜକୁ ଆମ ଆଡ଼େ ଯାଇଥିଲା । ବୋଉ ତ ଏତେବେଳେ ଯାଏ ତାହାରି କଥା କହୁଚି - ବିଲାତ ଯାଇକରି ସେତ ଟିକିଏ ବି ବଦଳି ନାହିଁ - ପରୀ ବି ସେଇକଥା କହୁଛି । ପରୀ କାଲେ ତାକୁ ଜୁହାର୍ ହେବାକୁ ଯାଉଥିଲା - ଯେମିତି ସବୁଦିନ ହୁଏ Good Morning, Ma'am ! ବୋଲି କହି ଦସ୍ତୁରମତେ ସାହେବୀ ଭାବରେ କାର୍ତ୍ତିକ କପଟ ଗାମ୍ଭୀର୍ଯ୍ୟରେ ହାତ ବଢ଼ାଇଲାରୁ ପରୀ ବି ହସ ଚାପି Shake Hand ପାଇଁ ଗୋଟିଏ ଅଙ୍ଗୁଷ୍ଠି ବଢ଼ାଇ ଦେଲା —ସମସ୍ତେ ହସି ହସି ଗଡୁଛନ୍ତି -''

''ଆରେ ଭାଇ, ଟୋକାଟୋକୀଙ୍କ କଥା କାହିଁକି କହୁଚୁ ।''

''କାଇଁ ନାଇଁ - ଖାଲି ଗୋଟାଏ ଫୂର୍ତ୍ତି ଆଉ କିଛି ନୁହେଁ ଯେ - ପରୀର କାର୍ତ୍ତିକର ସେମିତି ଖେଳ ପିଲାଦିନୁ କେତେ ଖେଳିଛନ୍ତି ଭଲା କହିଲ !'' ''ହଁ - ପୁଣି ସେଇ ସାଙ୍ଗେ ସାଙ୍ଗେ ବୋଉ ସେଠାକୁ ଆସିବାରୁ ଟୋକାର ସାହେବୀନୀ କୁଆଡ଼େ ଗଲା ଯେ ! ଧଡ଼୍‌ପଡ଼୍ ହୋଇ ବୁଢ଼ୀ ଗୋଡ଼ତଳେ ମୁଣ୍ଡିଆ ନ ମାରିବା ଯାଏଁ ବାଟ ଦିଶିଲା ନାହିଁ । ପରୀ ବି ସେତିକିବେଳେ କାର୍ତ୍ତିକର ଗୋଡ଼ ତଳେ ପଡ଼ିଗଲା । ଏଇସବୁ ଖେଳକଉତୁକ ଦେଖିବା ପାଇଁ ଏ ପ୍ରାଣ ନା, ଆଉ ଏ ବୁଢ଼ାକାଳେ ଆମର ଅଛି କ'ଣ- ''

''ଆରେ ରମୁ — ଏମିତି କଥା ମୋତେ ଚିଡ଼ିଲାଗେ - ମୋ ଆଗରେ ତୁ ଇମିତି କହିବୁ ନେଇଁ - ଆଚ୍ଛା, ଏବେ ନିଶ୍ୱାସୁଟାଏ ଯେ ପକେଇଲୁ - ଇୟେ କ'ଣ ତା ଉପରେ ନ ପଡ଼ିବ ଭାବୁଚୁ । ନିଶ୍ଚେ ପଡ଼ିବ ଜାଣିଥା । ମୁଁ କହୁଚି - ସେ ବଙ୍ଗାଳୁଣୀଗୁରାଙ୍କୁ ତିଳେ ବିଶ୍ୱାସ ନାହିଁ ପରା ! ଧର୍ମ ଛାଡ଼ିଚି ଯିଏ - ସେ କାହାକୁ ନଛାଡ଼ିବ ହେ—''

''ତା' କଥା ଆଉ ପକାନାହିଁ, ଭାଇ ! ତା'ରି ଜାଳାରେ ଆଜି ଯାଏ ପୋଡ଼ି ମରୁଚି । ଉରୀଟିକୁ ଯା ସେ ନେଇଗଲା - ଏଇ ଦେଖ, ଆଜି ଚିଠି ଆସିଚି ତା'ର

ବଞ୍ଚିବା ଠିକଣା ନାହିଁ । ମୋତେ ଯିବାକୁ ଲେଖାହୋଇଚି । ମୁଁ ତ ଯିବି ନାହିଁ - ବୋଉ ଗୋଡ଼ ଛୁଇଁ ନିୟମ କରିଚି କି ତା' ମୁହଁ ବି ଦେଖିବି ନାହିଁ - ତେବେ ଭାଇ —''

''ଆଉ ଦୀର୍ଘଶ୍ୱାସ ପକାନା - ମାଧୁରୀ ତୋର ଯୋଗ୍ୟ ନୁହେଁ । ନା, ନା ତୁ ମନରେ ଦୁଃଖ ପାଉଚୁ ମୁଁ ଜାଣେ, ତଥାପି ସେ କଥା ଯେତେ ଭାବିବୁ ଦୁଃଖ ସେତିକି ବଢ଼ିବ ସିନା - ମୁଁ କ'ଣ କହୁଥିଲି କି ହେଁ - ମଲାବେଳକୁ ଥରେ ଯାଇ ତାକୁ ଦେଖିଆସନ୍ତୁ - ବୋଉଙ୍କୁ କହନା-''

''ନାଇଁ ଭାଇ ତା ହବାର ନୁହଁ - ମୁଁ ଆପଣା ମନକୁ ଯେଉଁ ନିୟମ କରିଚି, ତାକୁ ଭାଙ୍ଗିବି କିପରି ? ବୋଉ କ'ଣ ଭାବିବ ? ବୋଉ ବି ଲଗାଉନାହିଁ କି ମୁଁ ତାକୁ ସବୁ ଖୋଲି କରି କହୁନାହିଁ - ଦେହ ଟିକିଏ କ'ଣ ହେଇଚି ଏଇୟା କହୁଚି । ହଁ ମୋର ଥରେ ଯାଇ ଶେଷ ଦେଖା ଦେଖିଆସିବାକୁ ମନ ହଉଚି, ଭାରି ମନ ହଉଚି । ଏ ଦୁର୍ବଳତା କାହିଁକି ହଉଚି କେଜାଣି — ହତଭାଗୀ ବୋଧହୁଏ ମଲାବେଳକୁ ଅନୁଶୋଚନାରେ ଦଗ୍ଧ ହୋଇ ପ୍ରାୟଶ୍ଚିତ କରୁଚି କି କ'ଣ । ସେ ଯାହା ହେଉ ମୁଁ କିନ୍ତୁ ଆଉ ଯାଉନାହିଁ । ମଲେ ପଛକେ ଯାଇ ଉରୀକୁ ନେଇ ଆସିବି ।''

''ହଁ ଉରୀକୁ ନେଇ ଆସିବୁ ! ଉର୍ମିଳା କ'ଣ ଆଉ ଆମର ହେଇକରି ଅଛି ! ସେ ଏଠୁ ଗଲାବେଳୁ ମୁଁ କହୁଚି - ଆଗରୁ ତ ଯାହା ଥିଲା -ଏଥର ମା' ଠଉଁ ବଳିଯିବ- ''

''ଝିଅଟାଏ ତ ଆମର ହେଇ ଆଉ କ'ଣ ହେବ - ବୟସ ଆସି ୧୮-୧୯ ହେଲା । ଆଉ କେତେ ଦିନ ଯେ ! ତାକୁ ତ ଆଣି ରଖିବାକୁ ହେବ - ନହେଲେ ଆନାସ କାରଣେ କଲିକତାରେ ଖରାପ ହୋଇଯିବ ସିନା !''

''ହଁରେ ଭାଇ ଆସିଲେ ହୁଏ - କେ ଏ - ଜାଣି । ଟଙ୍କାର ତ ତା'ର କିଛି ଅଭାବ ନାହିଁ । ଭଲା ଗୋଟିଏ ପୁଅ ହୋଇଥାନ୍ତା - ଯୋଡ଼ିକଯାକ ହେଲେ ଝିଅ -''

''କାହିଁକି ମ ! ସେ ଭାବନା ମୁଁ କ'ଣ କରୁଚି, ଗଣେଶ, କାର୍ତ୍ତିକ ତ ମୋର ଅଛନ୍ତି । ଆଉ ପୁଅ କ'ଣ ହେବ - ହଁ ସାରଦାଭାଇ, କାର୍ତ୍ତିକ ତ ବିଲାତରୁ ଆସିଲା, ସବୁ ଅଡୁଆ ତ ଛିଣ୍ଡିଗଲା - ଏବେ ନିର୍ବନ୍ଧଟା କରିଦେବା - ନା କ'ଣ କହୁଚ ?''

"ଆରେ ନିର୍ବନ୍ଧ ପାଇଁ କ'ଣ ଅଟକିବ - ମୁଁ କ'ଣ ସେ କଥା ଭାବୁନାହିଁ। ଗଣକୁ ତ' ତୋତେ ଦେଇ ଦେଇଛି ଜାଣିବୁ - ଆଉ ଗୋଟାଏ ନିର୍ବନ୍ଧ କ'ଣ ନା କଥା କ'ଣ - ତେବେ ହଁ ଆଜିର ବାରେ ଗୋଟାଏ ବଡ଼ ସଭା କରେଇବି ଏଠି, ଓଡ଼ିଶାର ଯାବତ ମୁଖିଆ ମୁଖିଆ କରଣମାନେ ଆସିବେ - କାର୍ତ୍ତିକର ପ୍ରାଶ୍ଚିତଟା କରାଇବା, ସେଇ ସଭାରେ ନିର୍ବନ୍ଧ ବି ହୋଇଗଲେ ମନ୍ଦ ହୁଅନ୍ତା ନାହିଁ।"

"ହଁ, ଭାଇ ସେଇ କଥା ଠିକ୍ କର - ମୁଁ ଯାଏଁ ଘରାଡ଼େ ଭାଉଜବୋଉଙ୍କୁ ନିଜେ କହିକରି ଆସେ -"

"ତାଲେ ମୁଁ ବି ଯାଏଁ। ସେଇଦିନ ନିର୍ବନ୍ଧଟା ହୋଇଗଲେ ଆଉ ଗୋଟାଏ ଚିନ୍ତା ବି ମୋର ଯିବ - ହଁ, ଠିକ୍ ହେବ, ଆସନ୍ତା ଫଗୁଣରେ ବିଭାଘର କାମଟା ହୋଇଗଲେଇ ଯାଏ - ଗଣ ଆସି Practice କରିବାର ୩,୪ ବର୍ଷ ହେଇଗଲା - କାର୍ତ୍ତିକ ବି ଆସିଗଲା — ଆଉ କ'ଣ -"

"ହଁ, ତା' ପଛକୁ ପୁଣି କାର୍ତ୍ତିକର ବିଭାଘର ଅଛି - ସେଟାତ ପୁଣି ଭାବିବ। ତାକୁ ଛାଡ଼ିଦେଲେ ସେ ତ ଗୋରାପରି କଣ୍ଠୁ ଗୋଟାଏ ବାହାହବ - ନାଇଁ, ସାରଦାଭାଇ। ଗଣେଶ ବାହାଘର ସରୁନସରୁଣୁ କାର୍ତ୍ତିକର ବି ଗୋଟିଏ ପାତ୍ର ଦେଖିବାକୁ ହେବ -"

"ହଁ, ହଁ, ତା ନୁହେଁ କ'ଣ ! ସେ ଭାର ତୋରି ଉପରେ ଯେ, ମୋତେ କହୁଚୁ କ'ଣ -"

## (୨)

ସାରଦା ଚରଣ ଦାସ କଟକର ପ୍ରଧାନ ଓଡ଼ିଆ ଓକିଲ। ବୟସ ପ୍ରାୟ ୫୦ରୁ ଊର୍ଦ୍ଧ୍ୱ। କଟକରେ ତାଙ୍କ ଜନ୍ମ। କଟକରେ ମଧ ତାଙ୍କର ଏତେ କାଳ କଟିଛି। ଖାନଦାନ ବୁନିୟାଦ ଜମିଦାର ଘର ତାଙ୍କର - ତା'ପରେ ସେ ନିଜେ ଦିହକରେ ଓକାଲତି ପ୍ରସାଦରୁ ଅନେକ ଟଙ୍କା ଉପାର୍ଜନ କରିଛନ୍ତି, କିନ୍ତୁ ଆୟରୁ ବଳି ବ୍ୟୟ ତାଙ୍କର ସବୁଦିନେ। ଏକେ ତ' କରଣ ଘର, ତା' ପରେ ସାରଦାବାବୁ ପିଲାଦିନରୁ ନବ୍ୟଭାବାପନ୍ନ। ଟଙ୍କା ଜମାଇ ଯଖ ହେବା ତାଙ୍କର ମୂଳରୁ ପସନ୍ଦ ନୁହେଁ ଏବଂ ପ୍ରକୃତରେ ତାଙ୍କ ଘରେ ଗଚ୍ଛିତ ନଗଦ ଟଙ୍କା ନାହିଁ କହିଲେ ଚଳେ - ବ୍ୟାଙ୍କରେ ସାମାନ୍ୟ କିଛି, ଗୃହିଣୀଙ୍କ ହାତରେ କିଛି ଏଇ ଯାହା। ଠିକ୍ ଜାଗାରେ ଠିକ୍ କାମରେ ଖରଚକୁ ଡରିବା ଲୋକ ସେ ନୁହଁନ୍ତି। ବରଂ ଧାରକରଜ କରିବେ ସେ ଭଲ; କିନ୍ତୁ

ହଟିବେ ନାହିଁ କେବେଁ । ଅବଶ୍ୟ କେବେଁ ଟଙ୍କାର ଅଭାବ ତାଙ୍କର ହୁଏ ନାହିଁ, ତେବେ ସେ ଏଇ ଭଳିଆ ଲୋକ । ଟଙ୍କା ଅନ୍ୟାୟ ବା ଅବ୍ୟାଜରେ ଉଡ଼ାଇବା ଏହା ମଧ ତାଙ୍କ ଜାତକରେ ଲେଖାନାହିଁ । ତାଙ୍କର ଯାହା ଧାରଣା ତାଙ୍କରି ମତରେ ଯାହା ଭଲ ସେଥିରେ ଖର୍ଚ୍ଚାନ୍ତ ହେଲେ ସେଟାକୁ ସେ ଅପବ୍ୟୟ ବୋଲି ଭାବନ୍ତି ନାହିଁ । ଅନ୍ୟଥା ଅପବ୍ୟୟର ସେ ଘୋରତର ବିରୋଧୀ । ଓକାଲତି ଛଡ଼ା ଅନ୍ୟାନ୍ୟ ଅନେକ ବିଷୟରେ ତାଙ୍କର ଚେଷ୍ଟା ଥାଏ । ପ୍ରଥମ ପ୍ରଥମ ଜମିଦାରୀର ଉନ୍ନତିରେ ଅନେକ ଟଙ୍କା ବରବାଦ କରିସାରିଲାଠଉଁ ତାଙ୍କର ଏବେ ସ୍ଥିର ବିଶ୍ୱାସ ଜନ୍ମିଛି ଯେ ଖାଲି ଜମିଦାରୀରେ କିଛି ଲାଭ ନାହିଁ । ଜମି ଚାଷ କରିବା ଦରକାର । ସେ ଯୋଗେ ନିଜ ଜମିଦାରୀ କଚେରୀ ପାଖଆଖରେ କେନ୍ଦ୍ରାପଡ଼ା ସହର ନିକଟରେ ପ୍ରାୟ ଶହେ ଏକର ଚାଷଜମି ଏବେ ନେଇଛନ୍ତି ଓ ଖୋରଧାରେ ମଧ ଶହେ ଏକରର ଚେଷ୍ଟାରେ ଅଛନ୍ତି । ପିଲାଙ୍କୁ ପଢ଼ାଇବା କଥା ତ' ଛାଡ଼ିଦିଅ— । ନିଜ ସ୍ତ୍ରୀ ଶଶୀଦେଈଙ୍କ ବିଦ୍ୟାଲାଭ କଳ୍ପେ ଯୌବନ କାଳରେ ଶତ ଅଭାବ ଅଭିଯୋଗ ସତ୍ତ୍ୱେ ସେ ମାଷ୍ଟରାଣୀ ପରେ ମାଷ୍ଟରାଣୀ ରଖି ଅନେକ ଟଙ୍କା ଖରଚ କରିଥିଲେ - ଅବଶ୍ୟ ଶଶୀଦେଈଙ୍କ ଅମନୋଯୋଗିତା ଓ ଅଯତ୍ନରେ କ୍ଷୁଣ୍ଣ ହୋଇ ଶେଷରେ ସେ ଆଶାତ୍ୟାଗ କରିବାକୁ ପଡ଼ିଥିଲା, କିନ୍ତୁ ସେ ନିଜ କର୍ତ୍ତବ୍ୟରେ ତ୍ରୁଟି କରିନାହାନ୍ତି ବରଂ ସାଧ୍ୟାତୀତ ଚେଷ୍ଟା ଓ ଯତ୍ନରେ କମ୍ କରିନାହାନ୍ତି । ଫଳରେ ଶଶୀଦେଈ କେବଳ ଦଶମ ସ୍କନ୍ଧ ଓ ହରିଣୀ ସ୍ତୁତି ଛଡ଼ା ଆଉ କିଛି ପଢ଼ିପାରନ୍ତି ନାହିଁ - ଅନ୍ୟ ଛାପା ବହି ହେଲେ ପଢ଼ିବାକୁ ଚେଷ୍ଟା କରନ୍ତି ସତ୍ୟ କିନ୍ତୁ ତାଙ୍କର ସମ୍ପୂର୍ଣ୍ଣ ବିଶ୍ୱାସ ଦଶମ ସ୍କନ୍ଧ ଓ ହରିଣୀ ସ୍ତୁତି ଛଡ଼ା ଆଉ କିଛି ପଢ଼ିବା ତାଙ୍କର ସାଧ୍ୟାତୀତ - ହାତଲେଖା ତ ପଢ଼ିପାରନ୍ତି ନାହିଁ ଓ କହିବା ବାହୁଲ୍ୟ ମାତ୍ର ଯେ ନିଜେ ଗୋଟିଏ ଅକ୍ଷର ବି ଲେଖିଜାଣନ୍ତି ନାହିଁ । ଏବେ ଅଳ୍ପଦିନ ହେଲା ସାନପୁଅ କାର୍ତ୍ତିକଠାକୁ ବିଲାତକୁ ଦିପଦ କ'ଣ ଚିଠି ଲେଖିବାର ଗର୍ବ ପୁଣି ଅନୁଭବ କରିଚନ୍ତି । ଶୁଣାଯାଏ ବର୍ଣ୍ଣବୋଧ, ଦଶମସ୍କନ୍ଧ, ହରିଣୀ ସ୍ତୁତି ଇତ୍ୟାଦି ତାଙ୍କର ସମସ୍ତ ବହିଯାକ ଆଗରେ ରଖି ୪-୫ ଫର୍ଦ୍ଦ ବାଲି କାଗଜ ଖରଚ କରି ବୁଢ଼ୀ ତିନି ଦିନରେ ଚିଠିଖଣ୍ଡିକ ଲେଖିବା ସାରିଥିଲେ । ସେ କିପରି ଚିଠି ହୋଇଥିବ - ଅକ୍ଷରଟି ମାନ କେଡ଼େ ଓ ଲେଖାଟି କିପରି ଚମତ୍କାର ହୋଇଥିବ, ତାହା ପାଠକେ ସାଧାରଣ ଅନୁମାନ କରନ୍ତୁ ।

ହଁ, ସାରଦାବାବୁଙ୍କର ତିନି ପୁଅ । ପ୍ରଥମ କମଳଲୋଚନ । ବଞ୍ଚିଥିଲେ ଆଜକୁ ୩୦ ବର୍ଷ ହୋଇଥାନ୍ତା, କିନ୍ତୁ ସେ ୨୨ ବର୍ଷରେ ବାହାହୋଇ ୨୪ ବର୍ଷ ବେଳେ ପୁଅଟିଏ ଜନ୍ମ ହେବା ସଙ୍ଗେ ସଙ୍ଗେ ହଇଜାରେ ଇହଧାମ ଛାଡ଼ି ଚାଲି ଯାଇଛନ୍ତି । ବୃଦ୍ଧ

ଦମ୍ପତିଙ୍କର ଅତି ସ୍ନେହ ଓ ଆଦରର ସାମଗ୍ରୀ ନୟନର ମଣିସ୍ୱରୂପ । ବଡ଼ ପୁଅଟିର ବିଧବା ବହୂ କୁଞ୍ଜଲତା ବର୍ତ୍ତମାନ ଶଶୀଦେଈଙ୍କ ଶୂନ୍ୟ ଗୃହରେ ଓ ହୃଦୟରେ କନ୍ୟା ଓ ବଧୂ ଉଭୟ ସ୍ଥାନ ଅଧିକାର କରି ସଂସାରର କର୍ଣ୍ଣଧାର ହୋଇ ରହିଛନ୍ତି । ତାଙ୍କ ପୁଅଟି ଚିର ରୁଗ୍ଣ, ତା' ଠାରେ କାହାରି ତେତେ ଆଶା ନାହିଁ । କେହି ମଧ ତାକୁ ଅଧିକ ଯତ୍ନ ଆଦର କରନ୍ତି ନାହିଁ । ଅର୍ଥାତ୍ ଦେଖନ୍ତି ନାହିଁ । ତା'ର ନାମ ଅନାମ । ୪ ବର୍ଷ ଯାଏ ତା'ର ନାମକରଣ ହୋଇନଥିଲା । ସମସ୍ତଙ୍କର ଧାରଣା ଯେ ଅଗଣା, ଅପୋଛାରେ ଯଦି ବଞ୍ଚିଯାଏ ତ ଯିବ, ନହେଲେ ତାକୁ ଆଉ ଭରସା କ'ଣ ? ଏବକୁ ଅନାମ ବୋଲି ସମସ୍ତେ ଡାକୁଛନ୍ତି । ଗଣେଶ ଓ କାର୍ତ୍ତିକ କମଳଲୋଚନଙ୍କଠାରୁ ୪ବର୍ଷ ଛୋଟ - ଏ ଦୁହେଁ ଜୀବିତ ଓ ଅବିବାହିତ । ବୟସ ବର୍ତ୍ତମାନ ୨୬ । ଏ ଦୁହେଁ ଯାଆଁଳା ହେଲେବି ଗଣେଶ କାର୍ତ୍ତିକଠାରୁ ବଡ଼ କାରଣ ତା' ଠାରୁ ୧ମିନିଟ୍ ପୂର୍ବରୁ ଯାର ଜନ୍ମ ।

ବଡ଼ ପୁଅ କମଳଲୋଚନଙ୍କ ବାହାଘରେ ସାରଦାବାବୁ ଅନେକ ଟଙ୍କା ଖରଚ କରିଥିଲେ । ଭାରି ଧୂମ୍‌ଧାମ୍‌ରେ କରିଥିଲେ । ଅନେକ ଦିନକାଳ ଅନେକ ଚେଷ୍ଟା କରି ବାଛି ବାଛି ମନମାଫିକ୍ ବହୂଟିଏ ଆଣିଥିଲେ - ପାଠଶାଠ ଯୋଗ୍ୟପଣିଆ କୌଣସି ଗୁଣରେ କୁଞ୍ଜଲତା ଊଣା ନୁହଁନ୍ତି - କିନ୍ତୁ କପାଳଟା ତ' ପୋଡ଼ା, ଯେତେହେଲେ କ'ଣ ହଉଚି ! ଏଇ ଯେ ଦୁଃଖ ବୁଢ଼ାବୁଢ଼ୀଙ୍କ ପ୍ରାଣରେ ଚିରଦିନ ବସାକରି ରହିଛି । ଧୀର ପ୍ରଶାନ୍ତ ନିରାଭରଣ ମୁହଁଟିକୁ ତା'ର ଦେଖିଲେ ଦୁହିଁଙ୍କ ପ୍ରାଣରେ ଗୋଟାଏ କୋହ ଜାତ ହୁଏ । ସାରଦାବାବୁ ସହାନୁଭୂତିରେ ବିଚଳିତ ହୋଇ ସମୟ ସମୟରେ ଭାବନ୍ତି ବିଧବା ବିବାହ ଭଲ କିନ୍ତୁ ନାଚାର । ନବ୍ୟଭାବାପନ୍ନ ହେଲେ ସୁଦ୍ଧା ଏତେ ସାମାଜଦ୍ରୋହୀ ହେବା ମଧ ତାଙ୍କର ପସନ୍ଦ ନୁହେଁ - ସେଯୋଗେ ତାଙ୍କର ଏକମାତ୍ର ବନ୍ଧୁ ଚିରସୁହୃଦ୍ ରମାନାଥବାବୁଙ୍କ ସଙ୍ଗରେ ତାଙ୍କର ଗୋଟାଏ ଅମେଳ ଅନେକ ଦିନରୁ ଗଢ଼ିଆସୁଥିଲା । କାରଣ - ତାଙ୍କ ମତରେ ରମାନାଥବାବୁ ସମାଜଦ୍ରୋହୀ ବ୍ରାହ୍ମ, ତା' ଛଡ଼ା ସେ ଗୋଟିଏ ବିଧବା ବଙ୍ଗୀୟ ବ୍ରାହ୍ମ ମହିଳାଙ୍କୁ ବିବାହ କରିଥିଲେ ।

' ହଁ ! ଏଇ କମଳଲୋଚନଙ୍କ ବାହାଘରରେତ ରମାନାଥବାବୁଙ୍କର ଘର ସହିତ ଏ ଓକିଲ ପରିବାରର ଘନିଷ୍ଠତାର ସୂତ୍ରପାତ ହୋଇଥିଲା । ସାରଦାବାବୁ ଓ ରମାନାଥବାବୁ ଦୁହେଁ ପିଲାଦିନରୁ ସାଙ୍ଗ ହୋଇ ସୁଦ୍ଧା ରମାନାଥବାବୁ ବ୍ରାହ୍ମମତରେ ବିବାହ କରି କଲିକତାରେ ରହିଲାଦିନୁ ଦୁହିଁଙ୍କର ସେ ଘନିଷ୍ଠତା ଦୂର ହୋଇଯାଇଥିଲା । ତା'ପରେ ଚିଠିପତ୍ରରେ ଦୁହେଁ ସେ ବିଷୟରେ ବାଦବିବାଦ କରି ଗୋଟାଏ ଛୋଟ-ବଡ଼ ମନାନ୍ତର

ମଧ୍ୟ କରିପକାଇଥିଲେ । ଆଜକୁ ପ୍ରାୟ ୮ ବର୍ଷ ତଳେ ଯେତେବେଳେ ସପରିବାରରେ ଆସି ସାରଦାବାବୁଙ୍କ ଘର ନିକଟରେ ତାଙ୍କ କୋଠାଠାରୁ ଆହୁରି ବଡ଼ କୋଠା ବନାଇ ଚିରଦିନ ପାଇଁ କଟକରେ ବସବାସ ଆରମ୍ଭ କଲେ ସେତେବେଳେ ମଧ୍ୟ ଦୁହିଁଙ୍କର ପୂର୍ବ ଅବାଧ, ଅମିଶ୍ର ସୌହାର୍ଦ୍ଦ୍ୟ ଫେରିପାରିନଥିଲା । ଏହିପରି ୩-୪ ବର୍ଷ ଗତ ହେଲା ପରେ — ଏ ୩-୪ ବର୍ଷ ରମାନାଥବାବୁ ନିଜେ ଅଧିକାଂଶ ସମୟ କଲିକତାରେ କଟାଇଥିବା ତହିଁର ଆଉ ଗୋଟିଏ କାରଣ —କମଳଲୋଚନଙ୍କର ବାହାଘର ପଡ଼ିଲା । ପୁଅବୋହୂ ଫେରିଲାବେଳେ ରମାନାଥବାବୁଙ୍କ ଘରବାଟେ ଆସୁଥିବା ସମୟରେ ରମାନାଥବାବୁ ନିଜେ ଆସି ବାଟରୁ ପାଲିକି-ସବାରୀ ସାଙ୍ଗୋଳି ଆଣି ନିଜଘରେ ଅନେକ କାରଖାନା କରିଥିଲେ । ସାରଦାବାବୁ ଏଥିରେ ବାଧା ଦେବାତ ଦୂରେ ଥାଉ ଆନନ୍ଦରେ ସମ୍ମତି ଦେଇଥିଲେ । ତାହାର ଆଉ ଗୋଟିଏ କାରଣ ଥିଲା । ଏହି ଚାରିବର୍ଷ ଭିତରେ ଦୁଇ ଘରର ସ୍ତ୍ରୀଲୋକମାନଙ୍କ ମଧ୍ୟରେ ଯିବାଆସିବା ନଥିଲେ ସୁଦ୍ଧା ସେ ନିଜେ ଓ ରମାନାଥବାବୁ ଦୁହେଁ ପଡ଼ୋଶୀ ହିସାବରେ ତଥା ବାଲ୍ୟବନ୍ଧୁତା ଖାତିରିରେ ପରସ୍ପର ଯିବାଆସିବା ଓ ଆଦରଆପ୍ୟାୟନରେ ତ୍ରୁଟି କରୁନଥିଲେ । ତେଣୁ ରମାନାଥବାବୁଙ୍କ ଗାର୍ହସ୍ଥ୍ୟ ଜୀବନ ବିଷୟରେ ସାରଦାବାବୁ ନିହାତି ଅନଭିଜ୍ଞ ନଥିଲେ- ସେଯୋଗେ ପୂର୍ବ ମନାନ୍ତର ଭୁଲି ବନ୍ଧୁର ଦୁଃଖରେ ଆନ୍ତରିକ ଦୁଃଖ ଅନୁଭବ କରୁଥିଲେ । ଦୁହିଁଙ୍କ ମଧ୍ୟରେ ପୂର୍ବପରି ଅବାଧ ସଖ୍ୟ ପୁନଃସ୍ଥାପିତ ହେବା ପାଇଁ ଏହିପରି ଗୋଟାଏ କିଛି ବିଶେଷ ଘଟନା ଲୋଡ଼ାଥିଲା - ଯହିଁରେ ଦୁଇ ପରିବାର ମଧ୍ୟରେ ଆଦାନପ୍ରଦାନ ଓ ଯିବାଆସିବା ଚଳିପାରେ । ତେଣୁ କରି କମଳଲୋଚନଙ୍କ ବାହାଘରରେ ରମାନାଥବାବୁ ଯାହା କଲେ ସେଥିରେ ସାରଦାବାବୁ କିଛିମାତ୍ର ବିସ୍ମିତ ନହୋଇ ଅତି ଆନନ୍ଦରେ ବନ୍ଧୁର ମର୍ଯ୍ୟାଦା ରକ୍ଷା କଲେ ।

ଏ ଉପଲକ୍ଷରେ ରମାନାଥବାବୁଙ୍କ ଘରେ ଆଉ ଯେଉଁ ବିଷମ କାଣ୍ଡ ଘଟିଯାଇଥିଲା ତାହା ବର୍ଣ୍ଣନା କରିବା ପୂର୍ବରୁ ରମାନାଥବାବୁଙ୍କର ଆଉ ଟିକିଏ ବିସ୍ତୃତ ପରିଚୟ ନ ଦେଲେ ଚଳିବନାହିଁ ।

ରମାନାଥ ଦାସଚୌଧୁରୀ ମଧ୍ୟ ସାରଦାବାବୁଙ୍କ ପରି ଖାନଦାନ୍ ଜମିଦାର ବଂଶୀୟ । ବସ୍ତୁତଃ ଦୁହେଁ ସେହି ଏକ ଚୌଧୁରୀ ବଂଶର ଦୁଇ ଦୂର ବିଛିନ୍ନ ଶାଖାର ବଂଶଧର ଥିବାରୁ କୁଟୁମ୍ବ ହୁଅନ୍ତି । କିନ୍ତୁ ରମାନାଥବାବୁ ସେ ବଂଶର ପ୍ରଧାନ ଶାଖା ହେଲେ ସୁଦ୍ଧା ତାଙ୍କ ଅଂଶ ଅନେକ ଦିନରୁ ଅନ୍ତଃସାରଶୂନ୍ୟ ହୋଇ ଯାଇଥିଲା । ରମାନାଥବାବୁଙ୍କ ବାପା ମଲାବେଳକୁ ତାଙ୍କ ଜମିଦାରୀ, ତାଙ୍କ ଘରବାଡ଼ି ଓ କେବଳ

ମାତ୍ର ଦଶପଚିଶ ଘର ପ୍ରଜାଙ୍କ ଭିହ ଓ ୧୦ ଏକର ଜମିରେ ସୀମାବଦ୍ଧ ଏବଂ ତଦୁପରି ଦେଣା ପ୍ରାୟ ସମସ୍ତ ବନ୍ଧକୀ ଜମିଦାରୀର ୧୬ ଗୁଣ । ସେତେବେଳକୁ ରମାନାଥବାବୁଙ୍କର ବୟସ ପ୍ରାୟ ୨୪/୨୫ ବର୍ଷ । ସେହି ବୟସରେ ସେ ନିଜ ଚେଷ୍ଟାରେ ଟିଉସନ ପର୍ଯ୍ୟନ୍ତ କରି ବି.ଏ. ପରୀକ୍ଷା ଦେବା ପାଇଁ କଲିକତାକୁ ଗଲେ । କଲିକତାରେ ତାଙ୍କର ଜମିଦାରୀର ପ୍ରଜାମାନେ କୁଲି ବ୍ୟବସାୟ କରି ନିଜର ଅର୍ଜିତ ଧନରେ ବଙ୍ଗାଳୀ ସର୍ଦ୍ଦାରମାନଙ୍କୁ ପୋଷୁଥିବାର ଦେଖି ତାଙ୍କ ମନରେ ଗୋଟାଏ ବୁଦ୍ଧି ଖେଳିଗଲା ଓ ସେ ତାଙ୍କ ଭାବୀ ଶ୍ୱଶୁରଙ୍କ ସାହାଯ୍ୟରେ ନିଜେ କୁଲି ବ୍ୟବସାୟ ଆରମ୍ଭ କରି ଅଳ୍ପ ଦିନରେ ଅନେକ ଟଙ୍କା ଉପାର୍ଜନ କରି ପକାଇଲେ ଓ କ୍ରମେ ସେଥିରେ ଉତ୍ତରୋତ୍ତର ଉନ୍ନତି କରି ବି.ଏ. ପ୍ରଭୃତି ଶିକ୍ଷାର ସଂକଳ୍ପ ଛାଡ଼ି ବ୍ୟବସାୟବୁଦ୍ଧିରେ ମନୋଯୋଗ ଦେଲେ । ଏଣେ ରାଧିକା ପ୍ରସାଦ କୁଣ୍ଡୁଙ୍କ ଏକମାତ୍ର କନ୍ୟା ଶ୍ରୀମତୀ ମାଧୁରୀ ଦେବୀଙ୍କ ରୂପରେ ମୁଗ୍ଧ ହୋଇ ବ୍ରାହ୍ମମତରେ ତାଙ୍କୁ ବିବାହ କରି କଲିକତାରେ ହିଁ ବସବାସ ଆରମ୍ଭ କଲେ । ସେତେବେଳେ ବ୍ରାହ୍ମଧର୍ମ ନୂଆ ହୋଇ ବାହାରିଥାଏ । ରାଧିକା କୁଣ୍ଡୁଙ୍କ ଚଉଦ ପୁରୁଷ ତାମୀଲୀ ଥିଲେ ବୋଲି କେହି କେହି କହନ୍ତି । କିନ୍ତୁ କୁଣ୍ଡୁ ମହାଶୟ ବ୍ରାହ୍ମଧର୍ମରେ ଜାତିଗତ ପାର୍ଥକ୍ୟ ସବୁ ବିସର୍ଜନ ଦେଇଥିଲେ ସୁଦ୍ଧା ମରିବାଯାଏ ତାଙ୍କର ବିଶୁଦ୍ଧ କାୟସ୍ଥ ବଂଶର ଆଭିଜାତ୍ୟ ଗର୍ବଟିକକ ଛାଡ଼ି ପାରି ନଥିଲେ । ତାଙ୍କର ବ୍ରାହ୍ମଧର୍ମ ଅବଲମ୍ବନ କରିବାର କାରଣ ତାଙ୍କର ଏକମାତ୍ର କନ୍ୟା ସେହି ମାଧୁରୀ । ମାଧୁରୀ ୧୨ ବର୍ଷ ବୟସରେ ବାଲବିଧବା ହୋଇ ଆସିବାର ବର୍ଷକ ମଧ୍ୟରେ ତାଙ୍କ ମାତା ଦୁଃଖରେ ବାୟାଣୀ ହୋଇ ଇହଲୀଳା ସାଙ୍ଗ କଲେ । କୁଣ୍ଡୁ ମହାଶୟ ମଧ୍ୟ ଅତ୍ୟନ୍ତ ବିଚଳିତ ହୋଇଯାଇଥିଲେ ଏବଂ ସ୍ତ୍ରୀଙ୍କର ମୃତ୍ୟୁ ଶଯ୍ୟାରେ ପ୍ରତିଜ୍ଞା କରିବସିଲେ ଯେ ମାଧୁରୀର ଏ ଜୀବନବ୍ୟାପୀ ମୃତ୍ୟୁଯନ୍ତ୍ରଣାର କୌଣସି ପ୍ରକାର ପ୍ରତିକାର ଥିଲେ ତାହା ପ୍ରାଣପଣେ ଲୋଡ଼ିବେ । ଫଳରେ ଆହୁରି ୨ ବର୍ଷ ନ ଯାଉଣୁଁ ବ୍ରାହ୍ମଧର୍ମର ଆଶ୍ରୟରେ ସେ ପ୍ରତିକାର ମିଳିବାର ଆଶା ଦେଖି ରୀତିମତେ ଦୀକ୍ଷିତ ହୋଇ ପଡ଼ିଲେ ଓ ମାଧୁରୀକୁ ଉଚ୍ଚ ଶିକ୍ଷାରେ ଶିକ୍ଷିତ କରାଇବାକୁ ଲାଗିଲେ । ୨ ବର୍ଷ ପରେ ରମାନାଥବାବୁଙ୍କ ସହିତ ତାଙ୍କର ଆଳାପ ହେଲା ଓ ଆଉ ବର୍ଷକ ମଧ୍ୟରେ ମାଧୁରୀ ଓ ରମାନାଥବାବୁଙ୍କ ବିବାହ ସିଦ୍ଧ ହେଲା ।

ଆର୍ଥିକ ଅସ୍ୱଚ୍ଛଳତା ନଥିଲେ ସୁଦ୍ଧା କୁଣ୍ଡୁମହାଶୟ ବିଶେଷ ବଡ଼ଲୋକ ନଥିଲେ । କଲିକତାରେ ଖଣ୍ଡିଏ ଘର ଓ ସାହେବ ଅଫିସରେ ଚାକିରି ଓ ପରେ କାରବାରରେ କିଞ୍ଚିତ ଅଂଶ ଏହିତକ ତାଙ୍କର ସମ୍ବଳ ଥିଲା । ତଥାପି ମାଧୁରୀ ଦେବୀଙ୍କ ରୂପରେ, ରମାନାଥଙ୍କ ପରି ଉଚ୍ଚାଭିଳାଷୀ ଯୁବକ ମଧ୍ୟ ମୁଗ୍ଧ ହୋଇ ଦେଶ-ସଂସାର ଓ ସର୍ବୋପରି

ନିଜର ପରମାରାଧ୍ୟା ମାତୃଦେବୀଙ୍କ ଇଚ୍ଛା ବିରୁଦ୍ଧରେ ଏ କାର୍ଯ୍ୟ କରି ବସିଲେ । ମାଧୁରୀଙ୍କ ଗୁଣାବଳୀ କ୍ରମେ ପ୍ରକାଶ ପାଇଲାବେଳକୁ ନେଡ଼ିଗୁଡ଼ କହୁଣୀକୁ ଗଡ଼ିଆସି ସାରିଲାଣି । ବିବାହ ରାତ୍ରିରେ ‘‘କେମନ୍ ଆଛେନ୍ ?’’ ଠାରୁ ଆରମ୍ଭ କରି ତିନି ଦିନ ପରେ ଚାବି ନେଇ ମାଲିକାଣୀ ହେଲା ପର୍ଯ୍ୟନ୍ତ ମାଧୁରୀ ଦେବୀଙ୍କଠାରେଁ ବାବୁ କିଛି ମାଧୁରୀ ପାଇଥିଲେ । ତା’ ପରେ, ଆଉ ନା !

ରମାନାଥବାବୁଙ୍କ ମାତା ସର ଦେଇ ଆଜି ସୁଦ୍ଧା ଜୀବିତା । ବାବୁଙ୍କ ବିବାହ ସମୟରେ ସର ଦେଇ ଅବଶ୍ୟ ଅନେକ ମୁଣ୍ଡ ବାଡ଼େଇଥିଲେ ଓ ପୁଅକୁ ବିବାହ ସଂକଳ୍ପରୁ ବିରତ କରାଇବା ପାଇଁ ଚିଠି ଦ୍ୱାରା ଅନେକ ଆପତ୍ତି ଜଣାଇଥିଲେ । କିନ୍ତୁ ପୁଅ ଯେତେବେଳେ ବାହାହୋଇ ସାରି ତାଙ୍କୁ କଲିକତାକୁ ନେଇଯିବାକୁ ଆସିଲେ ସେତେବେଳେ ପୁଅକୁ କୁଣ୍ଢାଇ ଅନେକ କନ୍ଦାକଟା କଲେ ମଧ୍ୟ ଗ୍ରାମରେ, ସମାଜରେ ଘୋର ନିନ୍ଦା ଅପ୍ରଶଂସାର ଝଡ଼କୁ ପଛରେ ପକାଇ କଲିକତା ଯାଇ ନିଃଶ୍ୱାସ ପକାଇ ବଞ୍ଚିଲେ । ହେଲେ ସେଠାରେ ବହୂର କାରଖାନା ଦେଖି ବୁଢ଼ୀଙ୍କର ମୃତ୍ୟୁର କାମନା ପୁଣି ଜାଗି ଉଠିଥିଲା । କିନ୍ତୁ ବୁଢ଼ା ହାଡ଼ର ସହନଶୀଳତାକୁ ମୃତ୍ୟୁ ଛୁଇଁ ପାରିଲା ନାହିଁ । ମାଧୁରୀ ଦେବୀଙ୍କ ଢ଼ଙ୍ଗଢ଼ାଙ୍ଗ ଓ ବ୍ୟବହାର ମଧ୍ୟ ଟଳାଇ ପାରିଲା ନାହିଁ । ଫଳରେ ବୁଢ଼ୀ ନିଜ ଆସନରେ ପ୍ରତିଷ୍ଠିତ ହୋଇ ମନକଥା ମନରେ ଚାପି ପୁଅର ଗାର୍ହସ୍ଥ୍ୟ ସୁଖ ପ୍ରତି ସତର୍କ ଦୃଷ୍ଟି ରଖି ମାଧୁରୀଙ୍କର ଗୋଟାଏ ପ୍ରଧାନ ଲଗାମ ଓ ଭୟର କାରଣ ହୋଇ ରହିଲେ । ବାବୁତ ସବୁଦିନେ ତାଙ୍କୁ ଠାକୁର ପରି ଜ୍ଞାନ କରନ୍ତି ଓ ମାନନ୍ତି — ଏବେ ଏପରି ବି ହେଲା ଯେ ମାଧୁରୀ ଦେବୀ ମଧ୍ୟ ତାଙ୍କୁ ଯଥେଷ୍ଟ ମାନଭକ୍ତି କରିବାକୁ ବାଧ ହେଲେ । ହିନ୍ଦୁ ପରିବାରର ସ୍ୱାର୍ଥହୀନ ବିଧବା ନାରୀର ମହତ୍ୱ ଆଉ କିଏ ବୁଝୁ ନ ବୁଝୁ ହିନ୍ଦୁ ବିଧବା - ବ୍ରାହ୍ମସଧବା ନାରୀମାତ୍ରେ ତାହାଠାରେ ମସ୍ତକ ଅବନତ କରିବାକୁ ବାଧ !

ହଁ, ରମାନାଥବାବୁଙ୍କ ଦୁଇ ଝିଅ- ପ୍ରମିଳା ଓ ଉର୍ମିଳା । ଦୁହେଁଯାକ କଲିକତାରେ ଜନ୍ମ ହୋଇ ସେହିଠାରେ ବଢ଼ିଥିଲେ । ପ୍ରମିଳା ଜନ୍ମ ହେଲା ଦିନୁ ସର ଦେଇ ତାଙ୍କୁ ଝିଅ କରିଛନ୍ତି । ତାଙ୍କରି କୋଡ଼ରେ ବି ସେ ବଢ଼ିଛି, ନିଜ ମାତାଙ୍କର ଶତ ଚେଷ୍ଟାରେ ସୁଦ୍ଧା ସେ ତାଙ୍କର ଅନୁଗତ ହୋଇପାରିନାହିଁ । ସେ ମା’ଙ୍କର ସମ୍ପୂର୍ଣ୍ଣ ଅନୁଗତ ଓ ତାଙ୍କୁ ପ୍ରାଣଠାରୁ ଅଧିକ ଭଲପାଏ । ମାଧୁରୀ ଦେବୀଙ୍କ ମତରେ ପ୍ରମିଳାର ମୁଣ୍ଡ ସେଇ ବୁଢ଼ୀ ଖାଇଛନ୍ତି, ସେଯୋଗେ ସେ ନିତାନ୍ତ ଅସନ୍ତୁଷ୍ଟ । ପ୍ରମିଳାକୁ ଦେଖି ପାରନ୍ତି ନାହିଁ । କିନ୍ତୁ ଦ୍ୱିତୀୟ ଝିଅ ଉର୍ମିଳା ଜନ୍ମ ହେଲା ପୂର୍ବରୁ ବୁଢ଼ୀଙ୍କ ସହିତ ତାଙ୍କର ଚୁକ୍ତି ହୋଇଯାଇଥିଲା

ଯେ ସେ ଏ ପିଲା ଉପରେ କୌଣସି ଦାବୀ ରଖିବେ ନାହିଁ; ମାଧୁରୀ ଦେବୀଙ୍କ ମନମାଫିକେ ସେ ବଢ଼ିବ ଓ ଗଢ଼ାହେବ । ମନେ ମନେ ମାଧୁରୀ ଦେବୀ ଗୋଟିଏ ଦୁର୍ବାର ଇଚ୍ଛା ପୋଷଣ କରିଥାନ୍ତି ଯେ ଯଦି ଝିଅଟିଏ ହୁଏ ତାହେଲେ ଦେଖାଇଦେବି ବଙ୍ଗାଳୁଣୀ ଓ ଓଡ଼ିଆଣୀଙ୍କ ଭିତରେ କି, ପ୍ରଭେଦ; ଆଉ ଯୋଗକୁ ମଧ୍ୟ ଝିଅଟିଏ ହେଲା । ଉର୍ମିଳା ଜନ୍ମ ହେଲା ବେଳକୁ ପ୍ରମିଳାକୁ ପ୍ରାୟ ୪ ବର୍ଷ ।

ଉର୍ମିଳାକୁ ଯେତେବେଳେ ୪/୫ ବର୍ଷ ବୟସ, ସେତେବେଳକୁ ରମାନାଥବାବୁ ନିଜ ବ୍ୟବସାୟରେ ସ୍ଥିର ପ୍ରତିଷ୍ଠିତ ହୋଇସାରିଲେଣି ଓ ତାଙ୍କ ଆର୍ଥିକ ଅବସ୍ଥା ମଧ୍ୟ ବେଶ୍ ସ୍ୱଚ୍ଛଳ ହୋଇଆସିଲାଣି । ବର୍ତ୍ତମାନ ମା' ପୁଅ ପରାମର୍ଶ କରି କଲିକତା ଛାଡ଼ି କଟକରେ ମୁକାମ କରିବାର ବନ୍ଦୋବସ୍ତ କଲେ । କଲିକତାରେ ବିଶ୍ୱସ୍ତ ଲୋକ ମୁତୟନ କରି କଟକରେ ଆସି ପ୍ରାସାଦତୁଲ୍ୟ କୋଠା ବନାଇ ସେହିଠାରେ ବସବାସ ଆରମ୍ଭ କଲେ । କେହି କେହି କହନ୍ତି ଯେ ମାଧୁରୀ ଦେବୀଙ୍କ ସ୍ୱଦେଶ ଓ ସ୍ୱଜନବତ୍ସଳତା ହିଁ ଏ ପରିବର୍ତ୍ତନର କାରଣ । କିନ୍ତୁ ଏପରି କଳଙ୍କ ରଟାଇ ଭଦ୍ରସମାଜରେ ନିନ୍ଦାର୍ହ ହେବାର ଆମ୍ଭମାନଙ୍କର ତିଳେ ଇଚ୍ଛା ନାହିଁ । ପାଠକପାଠିକା ସେ ବିଚାର କରିବେ —

ମାଧୁରୀ ଦେବୀ କେବଳ ବାଧ୍ୟ ହୋଇ କଟକରେ ଆସି ରହିବାକୁ ମଙ୍ଗିଥିଲେ । ଆସିବା ପୂର୍ବରୁ ରମାନାଥବାବୁଙ୍କ ସହିତ କେତେଗୁଡ଼ିଏ ବିଷୟରେ ଚୁକ୍ତି କରି ନେଇଥିବାରୁ ଏବଂ ସମୟ ସମୟରେ କଲିକତା ଯିବାର ସୁବିଧା ହେବାର ଜାଣି ସେ କେବଳ ନିଶ୍ଚିନ୍ତଭାବରେ କଟକରେ ଘରକରଣା ଆରମ୍ଭ କରିଦେଲେ । କିନ୍ତୁ କଟକ ଆସି ସ୍ୱଜାତୀୟ ବନ୍ଧୁବାନ୍ଧବଙ୍କ ମେଳରେ ରମାନାଥବାବୁଙ୍କ ଓଡ଼ିୟାମୀ କ୍ରମେ ବଢ଼ିବାକୁ ଲାଗିଲା । ସେତ ଅନେକ ଦିନରୁ ବଙ୍ଗଳା ଛାଡ଼ି ଓଡ଼ିଆରେ ମା'ଙ୍କ ସହିତ ତଥା ପିଲାମାନଙ୍କ ସହିତ କଥାବାର୍ତ୍ତା କରିବାକୁ ଆରମ୍ଭ କରିଥିଲେ - ଭୁଲରେ ଆଉ କାହାରି ସହିତ ଯଦି କେଭେ ବଙ୍ଗଳା କହିପକାନ୍ତି, ମାଧୁରୀ ଦେବୀଙ୍କ ସହିତ ସେ ଭୁଲରେ ସୁଦ୍ଧା ବଙ୍ଗଳା କୁହନ୍ତି ନାହିଁ । ଏଟା ଅବଶ୍ୟ ତାଙ୍କର ହଟ ବୋଲି ମାଧୁରୀ ଦେବୀ ଭାବନ୍ତି । କଟକ ଆସି ବାବୁ ପୁଣି ପ୍ରମିଳାକୁ ଓଡ଼ିଆ ପଢ଼ାଇବାର ବନ୍ଦୋବସ୍ତ କରିଦେଲେ । ଉର୍ମିଳାକୁ ଓଡ଼ିଆ ବର୍ଣ୍ଣମାଳା ଲେଖାଇଲେ— କୁଆଡୁ କୁଆଡୁ ଓଡ଼ିଆଣୀ ବନ୍ଧୁପରିବାରଙ୍କୁ ସବୁ ଆଣି ଘରେ ଆଦରଆପ୍ୟାୟନ କରାଇଲେ । ତା' ଉପରେ ପୁଣି ମା' ପୁଅ ଦୁହେଁ ମିଶି ଘରେ ପରଦାର ସୃଷ୍ଟି ଓ କ୍ରମେ ତାହାର ଉତ୍ତରୋତ୍ତର ବୃଦ୍ଧିର ଆୟୋଜନ କରିବାକୁ ଲାଗିଲେ । ଏଥିରେ ମାଧୁରୀ ଦେବୀ ପଦେ ପଦେ ବାଧାପ୍ରାପ୍ତ ହୋଇ ଅଳ୍ପ ଦିନରେ ମନେ ମନେ ତ୍ରାହି ତ୍ରାହି ଡାକ ଛାଡ଼ିବାକୁ ବାଧ୍ୟ ହୋଇ ଉଠିଲେ ଏବଂ କି ଉପାୟରେ

ମୁକ୍ତିପାଇ ପଳାଇବେ ସେହି ସୁଯୋଗ ଖୋଜିବାକୁ ଲାଗିଲେ । କଟକ ଆସିବାର ୩/୪ ବର୍ଷ ଗତ ନ ହେଉଣୁ ଗୋଟିଏ ସାମାନ୍ୟ ବିଷୟରେ ସ୍ୱାମୀ-ସ୍ତ୍ରୀଙ୍କ ମଧ୍ୟରେ ଗୋଟିଏ ଘୋର ମନାନ୍ତର ଉପସ୍ଥିତ ହେଲା, ଯାହା ତାଙ୍କର ଚିରବିଚ୍ଛେଦର କାରଣ ହେଲା । କମଳଲୋଚନଙ୍କ ବିଭାଘରରେ ସେ ଘଟନା ଘଟିଥିଲା; ଯେତେବେଳେ ରମାନାଥବାବୁ ବରକନ୍ୟାଙ୍କୁ ନିଜ ଘରକୁ ନେଇ ଆସିଲେ ମାଧୁରୀ ଦେବୀତ ବାବୁଙ୍କ ଉପରେ ଭାରି ବିଗିଡ଼ି ଗଲେ; ବାବୁଙ୍କୁ ଯାହା ମୁହଁରେ ଆସିଲା ତାହା ଗାଳିଦେଲେ ଓ ଘରେ ଦୁଆର ଦେଇ ପଶିଲେ । ଏଣେ ସରଦେଈ ବରକନ୍ୟାଙ୍କର ଶୀତଳ ତୁଣ୍ଡୀର ଆୟୋଜନ କରି ବହୂ କାହିଁ, ବହୂ କାହିଁ ବୋଲି ଖୋଜିଲା ବେଳକୁ ବହୂ କାହାନ୍ତି ! ମହାବିରକ୍ତ ହୋଇ ଡକାହକା କଲେ । ବହୂ ନ ବାହାରିଲେ ସରିଲା ! ରମାନାଥବାବୁ ରାଗରେ କାଣ୍ଡଜ୍ଞାନଶୂନ୍ୟ ହୋଇ ଦୁଆରରେ ଧକ୍କା ଉପରେ ଧକ୍କା ମାରି ଚିତ୍କାର କରି ତାଙ୍କୁ ଧମକାଇଲେ- ଆସିବୁତ ଆ ? ନହେଲେ ଅଭି ମୋ ଘରୁ ନିକଲ ହୋଇ ଯା ! ମାଧୁରୀ ଦେବୀଙ୍କର ତ ଏହିତା ଲୋଡ଼ା । ସେ ସଙ୍ଗେ ସଙ୍ଗେ ବାହାରି ଆସି ଭୀତଚକିତ ଉର୍ମିଳାକୁ ଧକ୍କା ମାରି ମାରି ଆଗରେ ଅଡ଼ାଇ ଦାଣ୍ଡକୁ ବାହାରିବା ସମୟରେ ବୁଢ଼ୀ ଆସି ତାଙ୍କ ହାତଧରି ଫେରାଇବାର ଚେଷ୍ଟା କଲେ କିନ୍ତୁ ସବୁ ନିଷ୍ଫଳ ହେଲା ।

ରମାନାଥବାବୁ ଦୂରରୁ ସବୁ ଦେଖୁଥିଲେ । ବୃଦ୍ଧା ଜନନୀଙ୍କର ଏ ଅପମାନ ତାଙ୍କର ଅସହ୍ୟ ହେଲା । ସେ ସତ୍ୱରେ ସେଠାକୁ ଆସି ତାଙ୍କ ହାତଧରି ଫେରାଇ ନେଇଗଲେ । ସାରଦାବାବୁ ମଧ ସେଠାରେ ଉପସ୍ଥିତ ଥିଲେ, ମିଳାମିଶା କରିବାର ସମସ୍ତ ପ୍ରୟାସ ତାଙ୍କର ବୃଥା ହୋଇଗଲା । ଏତେ ଲୋକଙ୍କ ଆଗରେ ଏପରି ଗୋଟାଏ କାଣ୍ଡ ହୋଇଯିବାରୁ ରମାନାଥବାବୁ ଲଜ୍ଜା ଓ ଅପମାନରେ ଆଉ ମୁଣ୍ଡ ଟେକି ପାରିଲେ ନାହିଁ । ତାଙ୍କୁ ଆହୁରି ଅଧିକ ଲଜ୍ଜା ଓ ଦୁଃଖ ହେଲା - ଯେତେବେଳେ ବୁଢ଼ୀ ନିଜେ ତାଙ୍କୁ ଶାନ୍ତ କରିବାକୁ ପ୍ରୟାସ ପାଇଲେ । ସେ କ୍ରୋଧରେ କାନ୍ଦୁ କାନ୍ଦୁ କମ୍ପମାନ ଦେହରେ ବୁଢ଼ୀଙ୍କ ଗୋଡ଼ତଳେ ପଡ଼ି ଦୁଇ ହାତରେ ତାଙ୍କ ଦୁଇଗୋଡ଼କୁ କୁଣ୍ଢାଇ ଧରି ପ୍ରତିଜ୍ଞା କଲେ ଯେ ସେ ଆଉ ସେ ବଙ୍ଗାଳୁଣୀ ଚଣ୍ଡାଳୁଣୀର ମୁହଁ ଦେଖିବେ ନାହିଁ । ମାଧୁରୀ ଦେବୀ ଓ ଉର୍ମିଳାଙ୍କୁ ସେଦିନ ବିହାରୀ ଡାକ୍ତରଙ୍କ ଘରେ ଆଶ୍ରୟ ନେବାକୁ ପଡ଼ିଲା— ଯାହାଙ୍କ ପୁଅ ବୈରାଗୀ, ପ୍ରମିଳା, ଉର୍ମିଳା ତଥା ଗଣେଶ-କାର୍ତ୍ତିକଙ୍କ ସଙ୍ଗୀ । ସେହି ଦିନ ରାତିରେ ମାଧୁରୀ ଦେବୀ ଉର୍ମିଳା ଓ ବୈରାଗୀକୁ ସାଙ୍ଗରେ ନେଇ କଲିକତା ରମାନା ହୋଇଗଲେ । ଅଳ୍ପଦିନ ପରେ ସର ଦେଈ ପୁଅକୁ ବୁଝାଇ ବୁଝାଇ କୌଣସି ଫଳ ନ ହେବାର ଦେଖି ତାଙ୍କର ଯାବତୀୟ ବ୍ୟବହାରୀୟ, ଅବ୍ୟବହାରୀୟ

ଜିନିଷମାନ ଓ ଖରଚ ପାଇଁ ଟ୫୦୦ଙ୍କା ଲୋକ ହାତରେ କଲିକତାରେ ପହଞ୍ଚାଇଦେଲେ । ଉର୍ମିଳାକୁ ବାବୁ ଛାଡ଼ିବାକୁ ନାରାଜ ଥିଲେ କିନ୍ତୁ ବୁଢ଼ୀଙ୍କ ଶତ ଅନୁରୋଧରେ ବାବୁ ସେତକ ଦୟା କରିବାକୁ ବାଧ ହେଲେ, ପରେ ମାସକୁ ମାସ ଉର୍ମିଳା ନାମରେ ବାବୁଙ୍କଠାରୁ ଟ୨୦୦ଙ୍କା ରୀତିମତ କଲିକତା ଯିବାକୁ ଲାଗିଲା ।

(୩)

ଦୃଶ୍ୟ କିଲ୍ଲା ପଡ଼ିଆ ଫୁଟ୍‌ବଲ ଫିଲ୍‌ଡ ।

ଲୋକାରଣ୍ୟ - କେତେ ପ୍ରସ୍ତ ଉଦ୍‌ଗ୍ରୀବ ଜନତା ପଛରେ ଦକ୍ଷିଣ ପଟେ ଦୁଇଟି ଘୋଡ଼ାଗାଡ଼ି ଉପରେ ମଧ ଲୋକେ କିଏ ବସି— କିଏ ଛିଡ଼ା ହୋଇ ଦେଖୁଛନ୍ତି । ଗୋଟିଏ ଗାଡ଼ି ଭିତରେ ପରୀ, ଉରୀ ଓ କୁଞ୍ଜଲତା ମୁହଁ ଗଳାଇ ଖେଳ ଦେଖୁଛନ୍ତି । ମେଡ଼ିକେଲ ସ୍କୁଲ ଓ କଲେଜିଏଟ୍ ଟିମ୍ ମଧ୍ୟରେ ଜୋର ଖେଳ — ଏ ପର୍ଯ୍ୟନ୍ତ ଗୋଲ ହୋଇନାହିଁ - ମେଡ଼ିକେଲ ଗୋଲ ଉପରେ ଜୋର ଚଢ଼ଉ ଚାଲିଛି । ହାଫ୍‌ଟାଇମ୍ ପରେ ମେଡ଼ିକେଲ ପିଲେ ମାଡ଼ଦବାକୁ ତିଆର । ଏତିକିବେଳେ ତୃତୀୟ ଥର ପାଇଁ କର୍ଣ୍ଣର ହେଲା - ଆଗ ଦୁଇଥରଯାକ ମାଡ଼ ସହିତ ବଲ୍ ଫେରିଛି, ଗୋଲ ହୋଇନାହିଁ । ଏଥର କଲେଜିଏଟ୍ ବେକ୍ ଗଣେଶକୁ ଡକରା ହେଲା କର୍ଣ୍ଣର କିକ୍ କରିବାକୁ— ସେଣ୍ଟର ଫରୁଆଡ଼୍ କାର୍ତ୍ତିକ ଅବ୍ୟର୍ଥ ସନ୍ଧାନୀ— ଗଣେଶ କିକ୍‌ରେ ମଧ ଅଭ୍ୟସ୍ତ— ବଡ଼ ଉତ୍‌ଫୁଲ୍ଲ ହୋଇ ସେ ପୋଜିସନ୍ ନେଲା ଆଉ କ୍ଷଣକେ ବଲ ମଧ ଆସି ତାରି ପାଖରେ ପଡ଼ିଲା ଶୂନ୍ୟକୁ ଉଠି ଓ ଠିକ୍ ଗୋଲପୋଷ୍ଟ ଦୁଇଟାର ମଝାମଝି ସ୍ଥାନରେ ପଡୁ ପଡୁ ମେଡ଼ିକେଲ ବେକ୍ ବୈରାଗୀ ଦୁଇ ଖେପରୁ ଆଗେଇ ବଲଟାକୁ ଚାପିବାକୁ ବସିଛି ସ୍ୟାତୁ କାର୍ତ୍ତିକ ତିନି ଖେପ ଡେଇଁ ଏକା ମୁଭ୍‌ମେଣ୍ଟରେ ସୁଟ୍‌କଲା - ବଲ ସେତେବେଳକୁ ବୈରାଗୀ ଗୋଡ଼ ଚାପରେ ପଡ଼ିଛି କି ନାହିଁ— ସୁଟ୍ ଲାଗିଲା ବଲରେ କିନ୍ତୁ ବଲ ସହିତ ବୈରାଗୀ ଗୋଡ଼ରେ ମଧ । ଫଳରେ ବଲ ତୀର୍ଯ୍ୟକ୍ ଗତି କରି ଏପରି ଗୋଟାଏ କୋଣରେ ପଶିଲା ଯାହା ରୋକିବା ଅସମ୍ଭବ । ଗୋଲହେଲା, ମାତ୍ର ବଲ୍ ସଙ୍ଗେ ସଙ୍ଗେ ବୈରାଗୀ ମଧ ସୁଟ୍ ହୋଇଗଲେ କିଛି ଦୂରକୁ ଓ ଉପରକୁ ଗତି କରି ତଳେ ପଡ଼ି ଗଡ଼ି ଗଡ଼ି ସେ ଅଜ୍ଞାନ ଲାଗେ ଚିତ୍ ହୋଇଯିବାରୁ ମହାମାରୀ କାଣ୍ଡ ସୃଷ୍ଟି ହେଲା - ଗୋଲ ଡିକ୍ଲେୟାର କରିବା ପରେ ପରେ ରେଫରୀ ଅନବରତ ହୁଇସିଲ ମାରି ସେଠାକୁ ଦୌଡ଼ିଲେ - ଜନତା ମଧ ଆଗେଇଲେ କିନ୍ତୁ ମେଡ଼ିକେଲ ପିଲେ ଯେ ଯାହାକୁ ପାଇଲା, ହାଡ଼, ହାତ ଗୋଡ଼ରେ ମାଡ଼ ଚଢ଼େଇଲେ । ଦୁଇପକ୍ଷଙ୍କ ମଧ୍ୟରେ ଗୋଳମାଳ

ସୃଷ୍ଟି ହେଲା କିନ୍ତୁ କାର୍ତ୍ତିକକୁ ମାରିବା ପାଇଁ ଦଳେ ଖୋଜିଲେ— ସେ କିନ୍ତୁ ଇତିମଧ୍ୟରେ ଜନତା ଭେଦ କରି ପଳାଇଛି । ଷଣ୍ଢାମାର୍କା ଗଣେଶ କର୍ଣ୍ଣର କିକ୍ କରିସାରି ସେଠାରୁ ପଡ଼ିଆ ଭିତରକୁ ବେଶି ଆଗେଇବାକୁ ସମୟ ପାଇନାହିଁ କିନ୍ତୁ କାର୍ତ୍ତିକ ଉପରେ ମାଡ଼ ହେବା ଭୟରେ ସେ ଧାଇଁଲା ମାତ୍ର ଗୋଳମାଳ ଭିତରକୁ ପଶିପାରିଲା ନାହିଁ । ତାକୁ ମଧ୍ୟ ମେଡିକେଲ ପିଲେ ଭୟ କରନ୍ତି କେହି ଦେଖିଥିଲେ କି ନାହିଁ ସନ୍ଦେହ ମଧ୍ୟ । ଯାହାହେଉ ଅନ୍ୟ ବାଟେ ବୁଲି ଗଣେଶ ଏ ପଟକୁ ଧାଇଁଲା—ଡ୍ରିଲ ମାଷ୍ଟର ତା'ର ଗୁରୁ—ତାଙ୍କୁ କହି କାର୍ତ୍ତିକ ଓ ସାଙ୍ଗମାନଙ୍କୁ ନେଇ ପଳାଇବ ବୋଲି; ଦେଖିଲା ଡ୍ରିଲ ମାଷ୍ଟର ପୁଲିସ ଆଡ଼କୁ ଧାଇଁଛନ୍ତି । ଏପରି ସମୟରେ ପ୍ରମିଳାଙ୍କ ଘୋଡ଼ାଗାଡ଼ି ଦେଖା ପଡ଼ିଲା । ଦୁଆର ବନ୍ଦ କିନ୍ତୁ ଲୋକ ଭିଡ଼ରେ ଗାଡ଼ି ଆଗେଇ ପାରୁନାହିଁ । ଅନ୍ୟ ପଟ କର୍ଣ୍ଣର ପାଖରେ ଆଉ ଗୋଟିଏ ଘୋଡ଼ାଗାଡ଼ିକୁ ମେଡ଼ିକେଲ ପିଲେ ଘେରଉ କରିଛନ୍ତି ଓ ବୈରାଗୀକୁ ସେଥିରେ ଉଠାଉଛନ୍ତି । ସେ ପ୍ରମିଳାଙ୍କ ଗାଡ଼ି ପାଖରେ ପହଞ୍ଚୁ ପହଞ୍ଚୁ ଦୁଆର ମୁହଁ ଅଳ୍ପ ଖୋଲି ଉର୍ମିଳା ବୋଧହୁଏ ଚୁପ୍ ଚୁପ୍ କହିଲେ, ''ଏଇଠି ଅଛନ୍ତି, ଆସ ଗଣଭାଇ !'' ସେ ଲୋକ ଭିଡ଼ ଠେଲି ଗାଡ଼ି ଦୁଆର ପାଖେ ଏ ଆଡୁ ପହଞ୍ଚିଲାବେଳକୁ ସେ ଆଡୁ ମେଡ଼ିକେଲ ପିଲେ ଦୁଇ ପଞ୍ଚାଯାକ ସେଠି ପହଞ୍ଚିଗଲେ । ଗୋଟିଏ ପଞ୍ଚା ଡାକୁଛି, ''କାର୍ତ୍ତିକା'' ଆଉ ଗୋଟାଏ ଡାକୁଛି, ''ଏ ଗାଡ଼ି, ଖୋଲ୍ ଦରଜା !'' ଏମାନେ ବୈରାଗୀକୁ ଉଠାଇ ଧରି ଧରି ଆସୁଛନ୍ତି । ଅନ୍ୟ ଗାଡ଼ିରେ ବୋଧ ହୁଏ ସୁବିଧା ହୋଇନାହିଁ । ପ୍ରମିଳାଙ୍କ ଗାଡ଼ି ଉପରେ ଆକ୍ରମଣ ହେବା ଭୟରେ ଗଣେଶ ବୁଲି ପଡ଼ି ଛାତି ଦେଖାଇ ଠିଆହେଲା ଗାଡ଼ିକୁ ଆଗୁଳି । ଜନତା ତା' ପଛରେ ଅଛି । କାରଣ କେହି କେହି ତାକୁ ସଙ୍ଗ ଓ ସାହସ ଦେବାକୁ ବସିଲେଣି ସେତେବେଳକୁ । ଗଣେଶ ଧୀରସ୍ଥିର ଭାବରେ କହିଲା ''ଦେଖନ୍ତୁ ଜନତା ଗାଡ଼ିରେ ହାତ ଦେଲେ କ'ଣ ହେବ ଦେଖିବେ— ସାବଧାନ !'' ମେଡ଼ିକେଲ ପିଲେ ''କାର୍ତ୍ତିକା'' ବୋଲି ରଡ଼ି କଲେ କିନ୍ତୁ ଆଉ ଆଗେଇଲେ ନାହିଁ । ଗଣେଶ ବରଂ ଆଗେଇ ବୈରାଗୀଙ୍କ ପାଖକୁ ନିର୍ଭୟରେ ଭିଡ଼ିଗଲା ଓ ତାଙ୍କ ହାତ ଧରି ପକାଇ କହିଲା, ''ଆସ— ମୁଁ ତୁମକୁ ଲାଉ କରି ନେଇଯିବି, ବଡ଼ ଭାଇ !'' ବୈରାଗୀ ଆଖି ଖୋଲି ଗଣେଶକୁ କୁଣ୍ଢାଇ ପକାଇଲା କିନ୍ତୁ ଦୁର୍ଜନ ପିଲାଙ୍କ ମଧ୍ୟରୁ କିଏ ଜଣେ ବଡ଼ ପାଟିରେ କହିଦେଲା, ''ଏଇତ କଲେଜିଏଟ ବେକ୍, ଏଇତ କର୍ଣ୍ଣରେ କିକ୍ କରିଥିଲାରେ !'' ଟିକିଏ ପୁଣି ଗଣ୍ଡଗୋଳ ଆରମ୍ଭ ହେଉ ହେଉ ଗଣେଶ ବୁଲିପଡ଼ି ଗାଡ଼ୁଆନକୁ କହିଲା, ''ଯା ବେଗେ ଦେଈମାନଙ୍କୁ ଘରେ ଛାଡ଼ି ଚାଲି ଆ ! — ବୈରାଗୀ ଭାଇଙ୍କୁ ହାସପାତାଳ ନବା !'' ଭିତରୁ ମଧ୍ୟ ପ୍ରମିଳା କି ଉର୍ମିଳା କିଏ 'ଚଳା' କହିଦେଲା । ଜନତା ମଧ୍ୟ ବାଟ ଦେଲେ । ବୈରାଗୀ ଆଉ

ଗଣେଶଙ୍କୁ ନ ଛାଡ଼େ, ଭିଡ଼ି ଧରି ରଖିଲା ଏବଂ ମେଡ଼ିକେଲ ପିଲେ କାର୍ତ୍ତିକକୁ ନ ପାଇ ଅକ୍ଷମ ରୋଷ କାହା ଉପରେ ଝାଡ଼ିବେ ନ ବୁଝି ଏଇ ପ୍ରଶାନ୍ତ ମୂର୍ତ୍ତି ବିରାଟକାୟ ଯୁବକଟିର ଚାରିପାଖରେ ଘେରି ଜମା ହୋଇଗଲେ କିଛି କରି ବା କହି ପାରିଲେ ନାହିଁ। ଏତିକି ବେଳକୁ ସେ ଆଡୁ ଡ୍ରିଲ ମାଷ୍ଟର ମଧ୍ୟ ପୁଲିସ ନେଇ ପହଞ୍ଚିଗଲେ । ଏ ମହାଶୟ ମଧ୍ୟ ବିରାଟକାୟ-ଷଣ୍ଢାମାର୍କା ବୋଲି ଯଶଖ୍ୟାତି ଅଛି ତାଙ୍କର (ପୂର୍ଣ୍ଣ ଭୋଜନ ପରେ କଟକୀ ୨ ସେର ରସଗୋଲା ଖାଇପାରନ୍ତି) । ସେ ବର୍ତ୍ତମାନ ଏକା ବ୍ୟୂହଭେଦକରି ଗଣେଶ ପାଖରେ ଠିଆହେଲେ ଓ ଗୋଟିଏ ହାତରେ ଗଣେଶର ପିଠି ଅନ୍ୟ ହାତରେ ବୈରାଗୀର ମୁଣ୍ଡ ଥାପୁଡ଼ାଇବାରୁ ସମସ୍ତେ ଯେପରି ଆଶ୍ୱସ୍ତ ହେଲେ । ଜନତା କ୍ରମେ ଶିଥିଳ ହୋଇ ଆସିଲା— ମେଡ଼ିକେଲ ପିଲେ ମଧ୍ୟ ନରମ ହୋଇ କହିଲେ— "ସାର, ୟାଙ୍କୁ କିପରି ନବା ଡାକ୍ତରଖାନା !"

"ଆସ— ମୁଁ ତାଙ୍କୁ ଲାଉ କରି ନେଇ ଯିବି" କହି ଗଣେଶ ଆଗେଇ ବୈରାଗୀଙ୍କ ଦୁଇବାହୁ ଧରିଲେ କିନ୍ତୁ ଏତିକିବେଳେ ଗାଡ଼ି ଆସିଗଲା—

ଇତି ମଧ୍ୟରେ କାର୍ତ୍ତିକ ରମାନାଥବାବୁଙ୍କ ଘରେ ପହଞ୍ଚି ଜଗତକୁ ଜଣେଇ ଦେଲା, ବିଶେଷତଃ ପରୀ ଓ ଉରୀ, ଆଈ ଓ ନୂଆ ବୋଉଙ୍କୁ ଯେ ସେ କେଡ଼େ ବୀର— କିପରି ସେ ଗୋଟାଏ କିକ୍‌ରେ ବଲ ଓ ବୈ ଭାଇ ଉଭୟଙ୍କୁ ଉଡ଼େଇ ଦେଲା— ବଲ ଗଲା ଗୋଲ ଭିତରକୁ— ଆଉଟ୍ ହୋଇନାହିଁ-ବୈରାଗୀ ଭାଇ ଗଲେ ୭ ହାତ ଦୂରକୁ ୫ ହାତ ଉପରକୁ— ତାଙ୍କ ଅଣ୍ଟା ନା ଗୋଡ଼ ନା ଆଣ୍ଠୁ କ'ଣଟାଏ ଭାଙ୍ଗିଛି ନିଶ୍ଚେ— ହେ ହେ ହେ-

ଉର୍ମିଳା ହସି ହସି କହିଲେ, 'ମୁଁ ଦେଖିଛି !'

ପ୍ରମିଳା କହିଲେ, "ଗଣେଶ ଭାଇ ଯେ ସେଠି ଏକା ଅଛନ୍ତି । ଗାଡ଼ି ଗଲାଣି ତ ?"

କାର୍ତ୍ତିକ ଟିକିଏ ମ୍ଳାନ ହସ ହସି କହିଲେ, "ହଁ ହଁ ଗାଡ଼ି ଗଲାଣି । ଆଉ ନବାର' ବା ଭୟ କ'ଣ ସେ ତ ଆଉ ଗୋଲ ଦେଇନାହିଁ କି ବୈଭାଇକୁ ସୁଟ୍ କରିନାହିଁ !"

ପ୍ରମିଳା ଟିକିଏ ଉଷ୍ମାର ସହିତ ପ୍ରତିବାଦ କଲେ, "ସେଇତ ଏତେ ଏକ୍ୟୁରେଟ କର୍ଣ୍ଣର କିକ୍‌ଟା କରିଥିଲେ- ନହେଲେ ତମ ବାହାଦୂରୀଟା ବାହାରି ଯାଇଥାନ୍ତା ଯେ— ଆଉ ତମେ କାର୍ତ୍ତିକଭାଇ ଯେଉଁ ବୀରପଣ ଦେଖେଇଲ ନା ଆମ ଗାଡ଼ି ଭିତରେ ଲୁଚିକି ଛି.... ଛି !"

ଉର୍ମିଳା ନ ସହି ପାରିଲା ପରି କହିଲେ, ''କ'ଣ ଆଉ କରିଥାନ୍ତେ ସେ - ମେଡ଼ିକେଲ ପିଲାଗୁରାତ ଗୁଣ୍ଡା । ତାଙ୍କ ସଙ୍ଗେ ଗଣେଶଭାଇ ପାରନ୍ତି — ପାରିବେ ! ଦେଖିବ ଦିଦି ତମେ—। ମେଡ଼ିକେଲ ପିଲାଙ୍କ ରାଗ ଯାଙ୍କ ଉପରେ ସିନା, ତାଙ୍କ ଉପରେ ନୁହେଁ । ତା ନ ହେଲେ ସେ ଇମିତି ଛାତି ଫୁଲାଇ ସେମାନଙ୍କ ଆଗରେ କ'ଣ ଏତେ ବଡ଼େଇ କରିପାରିଥାନ୍ତେ ଏକା ଏକା— ?''

କୁଞ୍ଜଲତା ଏ ପର୍ଯ୍ୟନ୍ତ ଚୁପଚାପ୍ ହୋଇ ବସିଥିଲେ । ଧୀରଭାବରେ କହିଲେ ''ବଡ଼ର ବଡ଼େଇ ସହାଯାଏ- ସାନମାନେ ତାକୁ ଆଖି କଲେ ଚଳିବ ? ଏଇଥିରୁ ବୁଝୁନା— ନବ ଯଦି ବଡ଼େଇ କରି ଆମ ଗାଡ଼ିକୁ ଆଗୁଳାଇ ନ ଥାନ୍ତେ ଆମ ଦଶା କ'ଣ ହୋଇଥାନ୍ତା ଆଜି ? କୁଶ ବି ଧରା ପଡ଼ିଯାଇଥାନ୍ତେ— ସମସ୍ତେ ମାଡ଼ ଖାଇଥାନ୍ତେ । ଯିଏ ବଡ଼ ସିଏ ବଡ଼ ସବୁବେଳେ— ନ ହେଲେ ନବ କ'ଣ ଜାଣିଶୁଣି ଏପରି ଶତ୍ରୁ ଗୁହାରେ ପଶିଥାନ୍ତେ । ନିଖୁଣ ହୋଇ ଫେରନ୍ତୁ ଗୋପାଳଜୀ- ଡାକ୍ତରୀ ପିଲାଗୁରା ଅତି ଖରାପ ! ଶୁଣିନାହଁ ପରୀ ସେଠି କିଏ କହିଲା ପରା— .ଏଇ କର୍ଣ୍ଣର କରିଥିଲେ ବୋଲି ! ହଉ ଫେରନ୍ତୁ ନବ । ଆଜି ମୁଁ ତାଙ୍କ ଭାଇଙ୍କୁ କହି ଖେଳକୁଦ ତାଙ୍କର ବନ୍ଦ କରି ଦେଉଛି ରହିଥା— ବଡ଼ହୁଅ ଯାହା ହୁଅ— ଏତେ ଓଲୁ ହେଲେ ଚଳିବ ।''

ପ୍ରମିଳାଙ୍କ ଆଖି ଉଜ୍ଜ୍ୱଳ ହୋଇ ଉଠିଥିଲା— କାର୍ତ୍ତିକ ଆଖି ବନ୍ଦ କରି କାଉଚ୍‌ଟାରେ ପଡ଼ିଥିଲେ— ଡାହାଣ ବୁଟ୍ ସୁଦ୍ଧା ବାହାହ ଉପରକୁ ଟେକି । ଉର୍ମିଳା ଟିକିଏ ବିବ୍ରତ ଭାବରେ ଏ ଆଡ଼େ ସେ ଆଡ଼େ ଚାହିଁ ଶେଷରେ ସେ ଘରୁ ବାହାରି ଗଲେ କିନ୍ତୁ ସଙ୍ଗେ ସଙ୍ଗେ ଫେରିଲେ ଗଣେଶଙ୍କ ସହ— ଗଣେଶଙ୍କର ସେ କି ଚେହେରା— ଇଉନିଫରମ୍ କମିଜଟାର ଗୋଟିଏ ହାତ ଫଡ଼ା ହୋଇ ମୁଣ୍ଡରେ ବେଣ୍ଡେଜ ଭଳି ବନ୍ଧା— ଭ୍ରୂ କନା ଭିତର ଦେଇ ରକ୍ତ ସେହିପରି ରହିଛି । ଘରେ ପଶୁ ପଶୁ ସେ କହିଲେ, ''କାହିଁ କୁଶା— ତା' ଗୋଡ଼ ତ କିଛି ହୋଇନାହିଁ ।'' ନା ନା କହି କାର୍ତ୍ତିକ ବ୍ୟସ୍ତହେଲା ଭଳି ଗୋଡ଼ଟାକୁ କାଉଚବାହା ଉପରୁ ତଳକୁ ଓହ୍ଲାଇ ଆଣି ଉଠିପଡ଼ିଲେ କିନ୍ତୁ ସଙ୍ଗେ ସଙ୍ଗେ ତଳେ ଲୋଟି ହୋଇ ପଡ଼ିଗଲେ— ଗୋଡ଼ଟି ଯେପରି ତଳେ ଲଗାଇ ହେଲା ନାହିଁ କି କ'ଣ ! ଗଣେଶ ଓ ପ୍ରମିଳା ତାଙ୍କୁ ଦୁଇପଟୁ ଧରି ଉଠାଇ ପୁଣି କାଉଚ୍ ଉପରେ ଶୁଆଇଦେଲେ । ଗଣେଶ ଝଟ ଡାହାଣ ଗୋଡ଼ଟିର ବୁଟ୍ ଫିଟାଇବାକୁ ଆରମ୍ଭ କଲେ କ'ଣ ହୋଇଛି ଦେଖିବା ପାଇଁ । ଫିତା ଖୋଲିଲା କିନ୍ତୁ ଯେତେ ଭିଡ଼ିଲେ ହେଲେ ବୁଟ୍ ଗୋଡ଼ରୁ ବାହାରିଲା ନାହିଁ—କାର୍ତ୍ତିକ ମଧ ମୁହଁ ବିକୃତ କରି ନିଜେ ବୁଟ୍‌ଟାକୁ ଖୋଲିବାକୁ ଚେଷ୍ଟା କଲେ—କିଛି ହେଲା ନାହିଁ । ପାଦର ଉପର ପଟ ଫୁଲିବାର ଦେଖାଗଲା—

ଗଣେଶ ବ୍ୟସ୍ତ ହୋଇ ଛୁରୀ ଆଣ, ବୁଟ୍‌ଟା କାଟେ କହି ଯାଡ଼େ ସ୍ୟାଡ଼େ ଚାହିଁଲେ—ଉର୍ମିଳା ଛୁରୀ ପାଇଁ ଗଲେ କିନ୍ତୁ କାର୍ତ୍ତିକ "ନାହିଁ, ନାହିଁ- ଏଇଟା ଯେ ସତ୍ୟବ୍ରତ ପଟ୍ଟନାଏକଙ୍କ ବୁଟ୍— କଟା ହେବନାହିଁ ।" ଚାଲ ତେବେ ଡାକ୍ତର ପାଖକୁ— ଗାଡ଼ି ଅଛି । ଏହିଥର କାର୍ତ୍ତିକ ହିଁ ଗଣେଶଙ୍କ ଆଗରୁ ପ୍ରସ୍ତାବିତ ଲାଉ ହେଲେ ତାଙ୍କ ପିଠିରେ, ତଳକୁ ଓହ୍ଲାଇ ଗାଡ଼ିରେ ଚଢ଼ିବାକୁ । କୁଞ୍ଜଲତା, "ଯାଅ ଦୁଇ ବୀରଯାକ, ବଜାରରେ ଦୋକାନରେ ଡାକ୍ତର ପାଖରେ ଚିକିତ୍ସା ହୁଅ— ଡାକ୍ତର ଖାଇଯିବ ନାହିଁଟି !"

"ମଲା ମଲା କି ଖେଳ ଖେଳୁଛନ୍ତି ଇଏଟି" — ପ୍ରବେଶ କରି ଆଈ କହିଲେ । ଧରା ଧରି ସାହାଯ୍ୟ କରୁ କରୁ ପ୍ରମିଳା ମଧ ତାଙ୍କ ସଙ୍ଗରେ ତଳକୁ ଗଲେ— ପଛରେ କୁଞ୍ଜଲତା ଓ ଆଈ । ଉର୍ମିଳା ମଧ ଶେଷରେ ପହଞ୍ଚିଗଲେ । ଏତିକିବେଳେ ଗଣେଶଙ୍କ ମୁଣ୍ଡରୁ ରକ୍ତ ଗଡ଼ି ନାକ ଅଗ ଦେଇ ଦୁଇଟୋପା ତାଙ୍କ ଜାମା ଓ କାର୍ତ୍ତିକ ହାତରେ ପଡ଼ିବାର ଦେଖାଗଲା— କେବଳ ପ୍ରମିଳାଙ୍କୁ ଦେଖାଗଲା କାରଣ ସେ ଆଗରେ ପଛୁଆ ପଛେଇ ପଛେଇ ଚାଲୁଥିଲେ ସିଡ଼ିପାବଚ୍ଛ ତଳଯାଏ— ସେମାନେ ତଳ ବରଣ୍ଡାରେ ପହଞ୍ଚିଥିଲେ ସେତେବେଳକୁ । ପ୍ରମିଳା ଝଟ ନିଜର ପଣତକାନି ଗଣେଶଙ୍କ ମଣ୍ଡ ଓ ଭ୍ରୂଲତା ଉପରେ ଚାପି ଧରିଲାରୁ କାନିଟା ରକ୍ତରେ ଲାଲ ହୋଇଗଲା । ଗଣେଶ ପ୍ରମିଳାଙ୍କୁ କୃତଜ୍ଞ ଦୃଷ୍ଟିରେ ଚାହିଁଲେ— ସରମରେ ପ୍ରମିଳାଙ୍କ ମୁହଁ ମଧ ସେ ଲୁଗାକାନି ପରି ଲାଲ ହୋଇଗଲା । ଏହା କାର୍ତ୍ତିକଙ୍କ ଦୃଷ୍ଟି ମଧ ଏଡ଼ିଲା ନାହିଁ— ସେ ଲାଉ ହୋଇ ନରହି ହଠାତ୍ ଗୋଟାଏ ଗୋଡ଼ରେ ତଳକୁ ଖସି ଗଣେଶଙ୍କ କାନ୍ଧରେ ଭରା ଦେଇ ଧୀରେ ଧୀରେ ଚାଲିଲେ- ଆରପଟରେ ଗୋଟାଏ କୁଣ୍ଢା ଓ ଲଜ୍ଜା ଭାବକୁ ଲୁଚାଇବାକୁ ଯେପରି ପ୍ରମିଳା ମଧ ତାଙ୍କୁ ଧରି ଧରି ଆଗକୁ ସିଧା ଚାହିଁ ସଳଖ ଚାଲିଲେ ଗାଡ଼ିଆଡ଼କୁ । ଠିକ୍ ଏହି ସମୟରେ ଦାଣ୍ଡରୁ ଡ୍ରିଲମାଷ୍ଟର ଓ କଲେଜିଏଟ୍ ହେଡ୍‌ମାଷ୍ଟର ଉଭୟ ଆସି ବାରଣ୍ଡା ଉପରକୁ ଉଠି ଏ ଦୃଶ୍ୟ ଦେଖି ଅବାକ୍ ହୋଇ ରହିଲେ । ପ୍ରମିଳା ଟିକିଏ ଶଙ୍କିତ ଚରଣରେ ପଛାଇ ଗଲେ । ଉର୍ମିଳା ଆଗେଇ ଯାଇ କହିଲେ, "ଦେଖନ୍ତୁ ସାର୍ ମେଡ଼ିକଲ ପିଲାଙ୍କ କୀର୍ତ୍ତି । ମଣିଷ ହାଡ଼ରେ ମାରି ଗଣେଶ ଭାଇଙ୍କ ମୁଣ୍ଡ ଫଟାଇ ଦେଇଛନ୍ତି । ପୁଣି ତାଙ୍କଠାରୁ ଏତେ କାମ ଆଦାୟ କରିସାରି !" ଡ୍ରିଲମାଷ୍ଟର କହିଲେ, "ଗଣେଶ ତମେ ଗଲ କାହିଁକି— ଗାଡ଼ିରେ ବସାଇ ସେମାନଙ୍କୁ ବିଦାୟ କରିଥିଲେ ତ ଯାଇଥାନ୍ତା— ଜାଣିଛ ତ ମେଡ଼ିକେଲ ପିଲାଙ୍କ ଦୁଷ୍ଟାମି— ତମ ଦୁଇ ଭାଇଙ୍କୁ ପାଇଲେ ଛାଡ଼ିବେ ! ତୁମେ ଯେଡ଼େ ମହାନୁଭବ ହୁଅ" "ନା, ସାର୍ ! ବୈରାଗୀ ଭାଇଙ୍କୁ ମୁଁ କେବେ ଛାଡ଼ି ଆସି

ପାରନ୍ତି ତାଙ୍କର ଗୋଟାଏ କିଛି ବ୍ୟବସ୍ଥା ନକରି— ସେ ଅବସ୍ଥାରେ । ସେମାନେ ମୋତେ ବି ମାରି ପାରି ନଥାନ୍ତେ—ସିଧା ସିଧା ବି ମାରି ନାହାନ୍ତି । ମୁଁ ହାସପାତାଳ ଛାଡ଼ି ଗାଡ଼ିରେ ବସୁ ବସୁ ଖଣ୍ଡେ ହାଡ଼ କିଏ ଫିଙ୍ଗିଲା— ମଣିଷ ଗୋଡ଼ ହାଡଟେ—ଆଣ୍ଠୁ ତଳକୁ— ସେଟା ମୋ ମୁଣ୍ଡରେ ବାଜି ଯାଇ ଗାଡ଼ି କାନ୍ଥରେ ବାଜିଲା— ବେଶି କିଛି ହୋଇନାହିଁ, ସାର ! ମୁଁ ତ ଗାଡ଼ି ରୋକି ପୁଣି ଓହ୍ଲାଇଯିବାକୁ ଚାହୁଁଥିଲି କିନ୍ତୁ ଘନିଆ ବେଇମାନ ଏକାମୁହାଁକେ ଗାଡ଼ି ଛାଡ଼ିଦେଲା— କିଛି ଶୁଣିଲା ନାହିଁ ।'' ହେଡ୍‌ମାଷ୍ଟର କହିଲେ, ''ଭଲ କରିଚି— ବୁଦ୍ଧିମାନର କାମ କରିଚି । ସେ ହାଡ଼ ଖଣ୍ଡ କ'ଣ ହେଲା ? ସେଟା ନିଶ୍ଚୟ Anatomy ସେକ୍‌ସନର ହାଡ଼— ମେଡ଼ିକେଲ୍ ଇସ୍କୁଲର ପ୍ରପର୍ଟି । ସେଟା ହେଲେ ମେଡ଼ିକେଲ ଅଥରିଟିମାନଙ୍କୁ ରିପୋର୍ଟ କରିବି— ଏଥିର ଗୋଟିଏ ଇନକ୍ୱାରୀ ହେବ । ମେଡ଼ିକେଲ ପିଲାମାନଙ୍କର ଶାସ୍ତି ହେବା ନିତାନ୍ତ ଆବଶ୍ୟକ— ବୁଝିଲେ ପଦ୍ମଚରଣବାବୁ !''

ପଦ୍ମଚରଣବାବୁ ଡ୍ରିଲମାଷ୍ଟର କହିଲେ, ''ନିଶ୍ଚୟ ନିଶ୍ଚୟ । କିନ୍ତୁ ଏ ପିଲାଟାକୁ ନାଇଟ୍ ଉପାଧି ମିଳିବା ଦରକାର । ମୁଁ ତାକୁ ଆଜିଠୁଁ ନାଇଟ ବୋଲି ଡାକିବି ଯାହା କିଛି ହେଉ । ଏ ଝିଅଗୁରାଙ୍କ ଗାଡ଼ିକୁ ଏକା ସେ ଯେପରି ରକ୍ଷାକଲା ନିଜ ଛାତି ପତେଇ ସେ ପଡ଼ିଆଟାରେ ମୁଁ ନିଜ ଆଖିରେ ଦେଖିଛି । ଓଃ—'' କହି ଡ୍ରିଲମାଷ୍ଟର ଗଣେଶକୁ ଆଲିଙ୍ଗନ କଲେ । ପରମ ଆଗ୍ରହରେ ତାଙ୍କ ପିଠିରେ ହାତ ମାରିଲେ । ହେଡ୍‌ମାଷ୍ଟର କହିଲେ, ''ହଁ— ନିଶ୍ଚୟ ନିଶ୍ଚୟ ! Knight ଆଉ କ'ଣ ଗଛରୁ ଫଳନ୍ତି— ମୁଁ ରିପୋର୍ଟ କରିବି ଇନସ୍ପେକ୍‌ଟରଙ୍କୁ । ତାକୁ ପଦକ ମିଳିବ, ସାର୍ଟିଫିକେଟ ମିଳିବ— କିନ୍ତୁ ମେଡ଼ିକେଲ ପିଲାଙ୍କୁ ନିଶ୍ଚେ ଦଣ୍ଡ ଦିଆଇବି—କେଉଁ ଛାଡ଼ିବିନାହିଁ !'' କାର୍ତ୍ତିକ ଏତେବେଳଯାଏ ଅଧେ ଗଣେଶଙ୍କ ଉପରେ ଅଧେ ପ୍ରମିଳାଙ୍କ ଉପରେ ଭାର ଦେଇ ଆଖିବୁଜି ଛିଡ଼ା ହୋଇଥାନ୍ତି— ମୁଣ୍ଡଟି ଗଣେଶଙ୍କ କାନ୍ଧରେ ରଖି । ହଠାତ୍ ଡ୍ରିଲମାଷ୍ଟର ତାଙ୍କ ଆଡ଼କୁ ଚାହିଁ କହିଲେ ''କାର୍ତ୍ତିକର ପୁଣି କ'ଣ ହେଲା- କେଉଁଠି ଲୁଚିଥିଲା ସେ ? ତାକୁ ବି କ'ଣ ମାଡ଼ ହେଲା ?'' ଗଣେଶ— ନା, ନା, ସାର ! ତା'ର ବୁଟ୍‌ଟା ଉପରେ ଜୋର ମାଡ଼ ବସିଛି ଓ ସାଙ୍ଗେ ସାଙ୍ଗେ ଖୋଲି ପକାଇଥିଲେ ଯାଇଥାନ୍ତା— ଏଇନା ଆଉ ଖୋଲୁନାହିଁ ! ଭିଡ଼ି ଭିଡ଼ି ଭିତରେ ପାଦଟା ଫୁଲିଯାଇଛି । ଆମେ ଡାକ୍ତରଙ୍କ ପାଖକୁ ନଉଛୁ ।'' ''ଦେଖେ'' ବୋଲି କହି ଡ୍ରିଲମାଷ୍ଟର ବୁଟ୍‌ଟାର ଫିତା ଟାଣି ଟାଣି ଦେଖିନେଇ ନିଜ ଗୋଡ଼ରେ କାର୍ତ୍ତିକଙ୍କ ବୁଟ୍‌ଟାକୁ ଦୁଇପାଖରୁ ଚାପିଧରି ଦୁଇହାତରେ ତାଙ୍କ ଗୋଡ଼ଟାକୁ ଧରି ଗୋଟିଏ ଝଟ୍‌କା ଦେଲେ— ଗୋଡ଼ ବାହାରି

ଆସିଲା କିନ୍ତୁ କାର୍ତ୍ତିକ 'ଉଃ' କହି ପଡୁ ପଡୁ ରହିଗଲେ । ଆଖିରୁ ଲୁହ ଗଡ଼ିପଡ଼ିଲା । ଡ୍ରିଲମାଷ୍ଟର କହିଲେ, "ବୁଟ୍ କାହିଁକି ପିନ୍ଧିବ । ଖାଲି ଗୋଡ଼କୁ ଖେଳ ନାହିଁତ ପୁଣି ବୁଟ୍ । କାର୍ତ୍ତିକ ତମେ ଟିକିଏ ନରମ, ନୁହେଁ ?" କାର୍ତ୍ତିକ ଟିକିଏ ବିବ୍ରତ ହୋଇ କହିଲେ, "ଫୁଟବଲରେ ବୁଟ୍ ଏଲାଉଡ୍ ସାର୍— ଇସ୍କୁଲରେ କେହି ପିନ୍ଧୁନାହାନ୍ତି ସିନା ନହେଲେ ବଡ଼ ବଡ଼ ଖେଳୁଆଡ଼ମାନେ ସମସ୍ତେ ପିନ୍ଧନ୍ତି ଆଜିକାଲି । ସତ୍ୟବ୍ରତବାବୁ ଜୋର କରି ଦେଲେ ସାର୍ ।" ହେଡ୍‌ମାଷ୍ଟର କହିଲେ, "ଏଁ ବୁଟ୍— ତମେ ବୁଟ୍ ପିନ୍ଧି ଖେଳୁଥିଲ ! ବୁଟ୍‌ରେ ମେଡ଼ିକେଲ ପିଲାଙ୍କୁ ମାଡ଼ ହେଲା ନା ? ଫାଉଲ ହୋଇନାହିଁ ତ ? ଆଚ୍ଛା ମୁସ୍କିଲ— ମୁଁ ଭାବିଥିଲି ମୋ ପିଲେ ନିର୍ଦ୍ଦୋଷ !" "ମୁଁ ନିର୍ଦ୍ଦୋଷ ସାର ! ମୁଁ ବୈରାଗୀଭାଇଙ୍କୁ ମାରିନାହିଁ । ବଲକୁ ମାରିଛି !" ବୋଲି କାର୍ତ୍ତିକ କହିଲେ ଟିକିଏ ଅନିଶ୍ଚିତଭାବରେ । ସମସ୍ତେ ଚୁପ୍ ହୋଇଗଲେ । କାର୍ତ୍ତିକ ବସିପଡ଼ି ଗୋଡ଼ଟାକୁ ନିଜ ହାତରେ ଚିପି ଧରିଲେ— ଏତିକିବେଳେ ସେହିଠାରେ ତଳେ ଲମ୍ବ ହୋଇ ପଡ଼ିଲେ । ଡ୍ରିଲମାଷ୍ଟର କାର୍ତ୍ତିକଙ୍କ ପାଦଟାକୁ ପରୀକ୍ଷା କରି କହିଲେ, "କିଛି ନୁହେଁ । ଟିକିଏ ସ୍ପ୍ରେନ, ବଥା କରି ବିନ୍ଧିବ । ଆଜି ରାତିସାରା ଗୁଲାଡ୍‌ସ୍ ଲୋସନରେ ଭିଜାଇ ରଖିବାକୁ ହେବ । ମାଡ଼ଟା ବଲ୍ ଉପରେ ବେଶି ପଡ଼ିଛି, ନହେଲେ ହାଡ଼ଫାଡ଼ କିଛି ହୋଇଥାନ୍ତା ! ମୁଁ ଦେଖିଛି ମଧୁବାବୁ, କାର୍ତ୍ତିକ ମାଡ଼ ମାରିଛି— ଫାଉଲ୍ ନୁହେଁ । ସେ ବଡ଼ କ୍ଲିନ୍ ଖେଳେ !"

"ହଁ, ହଁ—ତା' ପରି ଗୋଟାଏ କ୍ଲିନ୍ ଫୁଟବଲର କଟକରେ ନାହିଁ । ମୁଁ ବି ଦେଖିଛି ତା' ସୁଟ୍ ଆଜି ଯେଉଁଥିରେ ଗୋଲ ହେଲା ଓ ପ୍ଲେୟାର ବି ଉଡ଼ିଗଲା" ବୋଲି କହି ସତ୍ୟବ୍ରତବାବୁ ପହଞ୍ଚିଗଲେ । 'Foul ? Never foul' ମୁଁ ଦେଖିଛି ବାବା Katrik (କାତ୍ରିକ) ଆଣ ହାତ — congratulate you with all my heart" କହି ସତ୍ୟବ୍ରତବାବୁ କାର୍ତ୍ତିକକୁ ସେକ୍‌ହାଣ୍ଡ କରି ଝୁଙ୍କାଇ ଦୋହଲାଇ ପକାଇଲେ । 'I will move IFA -- I will tell your father, you should go abroad ! ଫୁଟବଲ ଟ୍ରେନିଂ ନେବ ବିଲାତରେ- ଏଇ ବର୍ଷ ଯିବାକୁ ହେବ, ହଁ– I will fix it. Hallo Guines (ଗଣେଶ) ତମର ଯେଉଁ କର୍ଣ୍ଣର କିକ୍ ନା, ବାଃ ବାଃ Congratulations (ହାତ ବଢ଼ାଇ ସେକ୍‌ହାଣ୍ଡ କରି) —ମେଡ଼ିକେଲ ପିଲାଏ ମାଡ଼ ମାରି ଜାଣନ୍ତି । ଫୁଟବଲର ABCD ବି ଜାଣନ୍ତି ନାହିଁ । ତମେ କିନ୍ତୁ ଖାଲି ଗୋଡ଼ରେ ଖେଳି ଭୁଲକରୁଛ । ଏ ଖେଳଟା ହୋଇଚି ବୁଟ୍ ପାଇଁ । ବୁଟ୍ ହୋଇଚି ଏ ଖେଳପାଇଁ, ଜାଣିଲ ।" ଗଣେଶ କହିଲେ "ହଁ ସାର୍, ବୁଟ୍ ପିନ୍ଧିଲେ କର୍ଣ୍ଣର କିକ୍ ଏଭଳି ନ ହୁଏ ସାର ! ତା' ଛଡ଼ା

ବୁଟ୍ ପିନ୍ଧିଲେ ମୋ ମୁଣ୍ଡଟା ଘୂରାଇ ଯାଏ । ମୋ ଦ୍ୱାରା ହେବନାହିଁ ସାର୍ !'' ''କିନ୍ତୁ ଦେଖୁଛ ତ Katrik ର ଖେଳ କିପରି improve କରିଛି ବୁଟ୍ ପିନ୍ଧି-ତା'ର ଆଜିର ଯେଉଁ Explosive ମାଡ଼ନା ଖାଲି ଗୋଡ଼ରେ ହୁଅନ୍ତା ? ପ୍ରଥମେ ତ ସାହସ ହୁଅନ୍ତା ନାହିଁ ଗୋଡ଼ ଚଳାଇବାକୁ— ବଲ୍ ଆଉ ପ୍ଲେୟାର୍ ଦିହକୁ— ନେଗ ହେଲେ ବି ଫଳ ହୋଇଥାନ୍ତା ankle dislocated— ବଲ୍‌ବି କୁଆଡ଼େ ଉଡ଼ିଯାଇଥାନ୍ତା ! ଗୋଲ ତ ହୁଅନ୍ତା ନାହିଁ । ବୈରାଗୀର ଗୋଡ଼ଚପାର ଜୋର ବେଶି ହୋଇଥାନ୍ତା ନିଶ୍ଚୟ !'' ସତ୍ୟବ୍ରତବାବୁ ଗୋଟାଏ ଚୌକି ଟାଣି ନେଇ ବସି ପଡ଼ି ପୁନରାୟ ଆରମ୍ଭ କରି ବସୁଥିଲେ । ଡ୍ରିଲମାଷ୍ଟର ଓ ହେଡ୍‌ମାଷ୍ଟର ଉଠିପଡ଼ିଲେ, ଆଉ ଡ୍ରିଲମାଷ୍ଟର କହିଲେ, ''ଦେଖନ୍ତୁ ସତ୍ୟବ୍ରତବାବୁ, କାର୍ତ୍ତିକକୁ ଆମେ ଏଠୁ ଛାଡ଼ି ପାରିବୁ ନାହିଁ !'' ହେଡ୍‌ମାଷ୍ଟର ମୁଣ୍ଡ ହଲାଇ କହିଲେ, ''ନା; ନା, ତା' କି ହୁଏ । ଭଲ ପିଲା—ଭଲ ପଢୁଛି ତାକୁ ଛାଡ଼ିଦେବା ! ଏହି ବର୍ଷ ପାଶ୍ କରିବେଟି ଦୁହେଁ ! ନା-ନା'' । ସତ୍ୟବ୍ରତବାବୁ ହସି ହସି କହିଲେ, ''କେତେଦିନ ଆପଣମାନେ ତାଙ୍କୁ ଧରି ରଖିବେ ? Mark my words ! ମୋ କଥା ଲେଖିରଖନ୍ତୁ- ଏ ଦୁଇଭାଇ ବହୁ ଦୂରକୁ, ବହୁ ଉପରକୁ ଯିବେ । Katrik and Guines - K especially ! ଆଚ୍ଛା । ପାଶ୍‌କଲା ମାତ୍ରକେ ବୁଝିଲ- They sail to England. I will fix it.''

ପ୍ରମିଳା, ଉର୍ମିଳା ଟିକିଏ ପାଖେଇ ହୋଇଯାଇଥିଲେ । ସେମାନଙ୍କ ସଙ୍ଗେ ଆଇ ଓ କୁଞ୍ଜଇତା ଥିଲେ । ଏମାନେ ହସି ହସି ଆଗେଇ ଆସିବାରୁ ସତ୍ୟବ୍ରତବାବୁ ଉଠିଲେ ଓ ସଙ୍ଗେ ସଙ୍ଗେ ଗୋଟିଏ ଗୋଲ ନମସ୍କାର ପକାଇ ପୃଷ୍ଠଭଙ୍ଗ ଦେଲେ । ସେ ସ୍ତ୍ରୀ ଜାତିକୁ ଡରନ୍ତି- ଖେଳକୁଦ, ମାରପିଟ ଦଙ୍ଗାହଙ୍ଗାମା ସବୁଥିରେ ଆଗଭର ହେଲେ ମଧ ସ୍ତ୍ରୀଙ୍କ ଆଗରେ ପଶ୍ଚାଦ୍‌ପଦ ହେବା ଯାଙ୍କର ସ୍ୱଭାବ । Sportman !

ସଙ୍ଗେ ସଙ୍ଗେ ଉର୍ମିଳା କାର୍ତ୍ତିକଙ୍କୁ ଆବୋରି ବସି କହିଲେ ''Katrik ଭାଇ ତୁମେ ବିଲାତ ଯିବ-ହିଁ ଆମ ପାଇଁ କ'ଣ ଆଣିବ ? କ'ଣ କହୁନ !'' ''ତମେ ଦିଲ୍ଲୀ ଯାଅ ଗଣେଶ ଭାଇ, ଲଡୁ ଆଣିବ ।'' ହସି ହସି ସମସ୍ତେ ଦୁଇ ଭାଇଙ୍କୁ ଘେରି ଠିଆ ହେଲେ । ଗଣେଶ କହିଲେ, ''ମୁଁ କୁଆଡ଼େ ନ ଯାଏ ବାବା ! ଭାଇଙ୍କ ହୁକୁମ—ଏଇ ନିର୍ଲଜ କଟକରେ ଓକିଲାତି କରିବି ।'' କାର୍ତ୍ତିକ କହିଲେ, ''ବିଲାତରୁ କ'ଣ ଓକିଲ ବାରିଷ୍ଟର ହେଇ ଆସିଲେ ହେବନାହିଁ ? ମୋତେ ବଡ଼ ଭାଇ କହି ସାରିଛନ୍ତି- ଘରକୁ କେବେ ଛାଡ଼ିବୁ ନାହିଁ —ଭୁଲିବୁ ନାହିଁ ।'' ଉର୍ମିଳା ହସି ହସି ଯୋଗ ଦେଲେ

"Barrister Katrik" "ମଧୁ ବାରିଷ୍ଟର ହେବ ତମେ K ଭାଇ ।" କୁଞ୍ଜଲତା କହିଲେ, "ମଧୁବାବୁ ବାରିଷ୍ଟର ପରି ହେଲେ ହେବନା— ଦେଖୁନା ସେ ଆସି ଘରେ ରହି କିପରି ଘରର, ଦେଶର କାମ ଆରମ୍ଭ କରିଦେଲେଣି !" ଆଈ କହିଲେ, "ହଁ ବାପ ତୁମେ ବିଲାଇତ ଯାଅ, କି ଡିଲ୍ଲୀ ଯାଅ, ଘର ଭୁଲନା । ଏଇ ମାଟି—ଏଇ ନିର୍ଲଜ୍ଜ କଟକ — ଆମ ଦେଶ — ଆମ ଘର !"

+ + + + +

ଗଣେଶ, କାର୍ତ୍ତିକ ଦୁହେଁ ଯାଆଁଳା ଭାଇ । ଗଣେଶ ବଡ଼, କାରଣ କାର୍ତ୍ତିକଠାରୁ ଏକ ମିନିଟ ପୂର୍ବରୁ ଜନ୍ମ । ଯମଜ ଲବକୁଶର ଉଦାହରଣ ନେଇ ଗଣେଶ କାର୍ତ୍ତିକଙ୍କୁ କୁଶ ବୋଲି ଡାକେ - କାର୍ତ୍ତିକ ମଧ ଗଣେଶଙ୍କୁ ନବା ବୋଲି ଡାକେ — କେହେଁ ତାଙ୍କୁ ଅଗ୍ରଜର ସମ୍ମାନ ଦିଏନାହିଁ ।

ଦୁଇ ଭାଇ ହେଲେ ମଧ ତାଙ୍କୁ ଦେଖି କେହି ଦୁଇଭାଇ ବୋଲି କହିବ ନାହିଁ– ଦୁହିଁଙ୍କ ଚେହେରାରେ ଏତେ ବେଶି ପ୍ରଭେଦ । ଗଣେଶ ହୋଇଥାଏ ଗୋଟିଏ ପ୍ରକାଣ୍ଡ ଲୋହିତ ଶିଶୁ । କାର୍ତ୍ତିକ ଗୋଟିଏ କ୍ଷୁଦ୍ର ଶ୍ୱେତ ଶୁଭ୍ର ରକ୍ତପିଣ୍ଡ । ବୟସ ସଙ୍ଗେ ସଙ୍ଗେ ଦୁହିଁଙ୍କ ଦେହଗତ ପାର୍ଥକ୍ୟ ଆହୁରି ସ୍ପଷ୍ଟତର ହୋଇଉଠିଲା । କଳାଭୁଷୁଣ୍ଡା ଗଣେଶ ଏକ ବୃହଦାକାର ଷଣ୍ଡାମାର୍କା ହୋଇଉଠିଲେ ଆଉ କାର୍ତ୍ତିକ ହେଲେ ପ୍ରକୃତରେ କାର୍ତ୍ତିକଟିଏ । ଦୁର୍ବଳ କ୍ଷୀଣ ଭଙ୍ଗୁର ଦେହରେ ରମଣୀସୁଲଭ ଲାଳିତ୍ୟ ଓ କମନୀୟତା ସଙ୍ଗେ ସଙ୍ଗେ ବିଷମ କେଶବିନ୍ୟାସ ଓ ପରିପାଟୀ ଘେନି ସ୍ୱାର୍ଥପରତାର ଏକ ଅବତାର ହୋଇଉଠିଲେ । ସ୍ୱଭାବ ସୌନ୍ଦର୍ଯ୍ୟ ସହିତ ତାଙ୍କର ହେଲା ଏକ ବାଳସୁଲଭ ଚପଳ ଆଚରଣ ଓ ହାସ୍ୟମୟୀ ପ୍ରକୃତି । ତଦୁପରି ହେଲା ତାଙ୍କର ସୂକ୍ଷ୍ମବୁଦ୍ଧି ଓ ସକଳ ପ୍ରକାର କାର୍ଯ୍ୟକାରଣ ତତ୍ତ୍ୱରେ ପ୍ରବେଶର ଅମିତ ଶକ୍ତି । ଗଣେଶ ବିଚାରା ମୋଟାସୋଟା । ରୁଚି ତା'ର ଅତି ସାଧାରଣ, ସ୍ୱଭାବ ଗମ୍ଭୀର, ଆଚରଣ ସରଳ । କିନ୍ତୁ ସଲଜ୍ଜ । କାର୍ତ୍ତିକ ପରି ତୀକ୍ଷ୍ଣବୁଦ୍ଧି ଓ ପ୍ରବେଶ ଶକ୍ତି ତାଙ୍କର ଥିଲେ ସୁଦ୍ଧା ନିଜଠାରେ ନିଜର ଆସ୍ଥା ନ ଥିବାରୁ ସେସବୁ ପ୍ରକାଶ ପାଇପାରେନାହିଁ । ସେଥିଯୋଗେ ଗଣେଶ ବୟସରେ ଏବଂ ଦୈହିକ ବଳରେ କାର୍ତ୍ତିକଠାରୁ ବଡ଼ ହୋଇଥିଲେ ସୁଦ୍ଧା କାର୍ତ୍ତିକ ହିଁ ସମସ୍ତଙ୍କର ଅଧିକତର ପ୍ରିୟ ହୋଇଥାନ୍ତି । କି ଘରେ କି ବାହାରେ କି ସ୍କୁଲରେ କି ଖେଳରେ ସର୍ବତ୍ର ହିଁ କାର୍ତ୍ତିକ ଗଣେଶଠାରୁ ଅଧିକ ସ୍ନେହ-ଆଦର ପାଇଥାନ୍ତି । ଗଣେଶ ନିଜର ନିକୃଷ୍ଟତା କେବେଁ ବୁଝିପାରନ୍ତି

ନାହିଁ । ଅଥଚ ପ୍ରତି କ୍ଷେତ୍ରରେ ଘଟନାଚକ୍ରରେ ତାଙ୍କୁ କାର୍ତ୍ତିକଠାରୁ ନ୍ୟୂନତା ସ୍ୱୀକାର କରିବାକୁ ହୋଇଥାଏ । ସମୟ ସମୟରେ ସେ ଭାବନ୍ତି, 'ଶଫରୀ ଫରଫରାୟତେ'–ଛାଡ଼ ସାନ ଭାଇଟାତ ! କାର୍ତ୍ତିକର ପ୍ରକୃତିକୁ ସେ ଭଲରୂପେ ବୁଝିରଖିଛନ୍ତି ଓ ନିଜର ଶକ୍ତି ଓ ସ୍ୱଭାବ ମଧ୍ୟ ତାଙ୍କୁ ଅଜଣା ନାହିଁ । ତଥାପି ଆତ୍ମପ୍ରତିଷ୍ଠାର ଇଚ୍ଛା କେଉଁଠି ତାଙ୍କ ମନରେ ପ୍ରବେଶ କରିନାହିଁ । କ୍ରମେ ଆତ୍ମାଭିମାନ ଓ ଲଜ୍ଜା ତାଙ୍କୁ ଏ ଅବିଚାରଟିକୁ ନତଶିରରେ ମାନିନେବାକୁ ବାଧ୍ୟ କରି ଦେଇଛି । ସେ ପୁଣି କାର୍ତ୍ତିକର କମ୍ ପକ୍ଷପାତୀ ନୁହନ୍ତି ! ପ୍ରକୃତରେ ତାଙ୍କୁ ଯଥେଷ୍ଟ ସ୍ନେହ କରନ୍ତି । ତଥାପି କାର୍ତ୍ତିକଙ୍କ ସହ ପ୍ରତିଦ୍ୱନ୍ଦ୍ୱିତାରେ ତାଙ୍କୁ ସମୟ ସମୟରେ ଏପରି ବିଧ୍ୱସ୍ତ ଓ ମର୍ମାହତ ହବାକୁ ହୋଇଛି ଯେ ସେ ଏକାଧିକବାର ନୀରବରେ ନିଜଗୃହରେ ବସି ନିଜ ଭାଗ୍ୟ ପ୍ରତି ଧିକ୍କାର ଦେଇ ରୋଦନ ପର୍ଯ୍ୟନ୍ତ କରିଛନ୍ତି ତଥାପି କେଉଁଠି କାର୍ତ୍ତିକ ପ୍ରତି ଅସଦ୍ ବ୍ୟବହାର ବା ଗୁରୁଜନମାନଙ୍କ ବ୍ୟବହାରର ପକ୍ଷପାତିତାରେ ଅସନ୍ତୋଷ ପ୍ରକାଶ କରି ନାହାନ୍ତି ।

କମଳଲୋଚନ ବଞ୍ଚିଥିବାଯାଏ ଏ ଦୁହିଁଙ୍କୁ ଠିକ୍ ଚିହ୍ନୁଥିଲେ ଏବଂ ଗଣେଶଙ୍କୁ କାର୍ତ୍ତିକଠାରୁ ଅଧିକ ସ୍ନେହ କରୁଥିଲେ । କାର୍ତ୍ତିକଙ୍କ ସ୍ୱଭାବ ତାଙ୍କୁ ଆଦୌ ଭଲ ଲାଗୁ ନଥିଲା । ଭଲ ପଡ଼ିଲେ କ'ଣ ହେବ ତାଙ୍କର ସଉକୀ ବାବୁଆନୀ ଦେଖିଲେ ତାଙ୍କ ହାଡ଼ ଜଳୁଥିଲା । ସେ ମଧ୍ୟ ଦୁଇଜଣଙ୍କର ଠିକ୍ ବିଚାରକରି ଯାହାର ଯାହା ପ୍ରାପ୍ୟ ଶାସନ ବା ପୁରସ୍କାର ନିନ୍ଦା ବା ପ୍ରଶଂସା ଯେତେବେଳେ ଯାହା ତାକୁ ତାହା ଦେଉଥିଲେ । ଏଥିରେ କାର୍ତ୍ତିକହିଁ ବେଶି ଦଣ୍ଡ ଓ ଶାସନ ପାଉଥିଲେ ବୋଲି ତାଙ୍କର କମଳଲୋଚନଙ୍କ ପ୍ରତି ଭୟ ରହୁଥିଲା । କିନ୍ତୁ କମଳଲୋଚନଙ୍କ କାଳ ହେଲାଦିନୁଁ ତାଙ୍କୁ 'ଇ'ବୋଲି କହିବାକୁ କେହିରହିଲା ନାହିଁ । ସେହି ଦିନୁ ସେ ଆହୁରି ଅଧିକ ନୀଚତା ଓ ସ୍ୱାର୍ଥପରତାରେ ଅଭ୍ୟସ୍ତ ହୋଇ ଉଠିଲେ ।

କମଳଲୋଚନଙ୍କ ବିଧବା ସ୍ତ୍ରୀ କୁଞ୍ଜଲତା ମଧ୍ୟ ଗଣେଶଙ୍କୁ ଅଧିକ ସ୍ନେହ କରନ୍ତି କାରଣ ସେ ଏ ଘରକୁ ଆସିଲା ଦିନୁଁ ଗଣେଶ ତାଙ୍କର ଅତିମାତ୍ର ବଶ - କିଣାକିଙ୍କର ହୋଇଥାନ୍ତି । କାର୍ତ୍ତିକ ତ ଭାଇଙ୍କୁ ଡରେ ତାଙ୍କ ପାଖ ମାଡ଼େ ନାହିଁ । ଏହି ସୁଯୋଗରେ ଗଣେଶ ନୂଆବୋଉଙ୍କ ହୃଦୟରେ ବେଶ ସୁନ୍ଦର ସ୍ଥାନଟିଏ ଜମାଇ ନେଇଥିଲେ । ଆଜିକାଲି ବିଧବା କୁଞ୍ଜଲତା ଏ ଘରର ଗୃହିଣୀ — ଶାଶୁଙ୍କ ହାତରୁ ସବୁ କାର୍ଯ୍ୟଭାର ନେଇ ବର୍ତ୍ତମାନ କର୍ମଜୀବନରେ ଆତ୍ମାହୁତି ଦେଇଛନ୍ତି । ଏପରି ନ୍ୟାୟରେ ଏପରି ନିଷ୍ଠାରେ ସେ ସଂସାର ଚଳାନ୍ତି ଯେ ନିକୃଷ୍ଟରୁ ନିକୃଷ୍ଟ ପ୍ରାଣୀଟିଏର ପର୍ଯ୍ୟନ୍ତ ଅସନ୍ତୋଷ ଥାଏ ନାହିଁ । ଶାଶୁ–ଶଶୁର ପର୍ଯ୍ୟନ୍ତ ତାଙ୍କ କଥାରେ କଥା କୁହନ୍ତି ନାହିଁ ।

କାର୍ତ୍ତିକ ବିଲାତ ଯିବାପରଠୁଁ– ସେ ଆଜିକୁ ୪ବର୍ଷ ପୂର୍ବର କଥା । କୁଞ୍ଜଲତା ଗଣେଶଙ୍କୁ 'ବାହାହୁଅ' 'ବାହାହୁଅ' ବୋଲି ଅଥିର କରୁଛନ୍ତି । ଶାଶୁ–ଶଶୁରଙ୍କ ପାଖରେ କହି ନିଜେ ପାତ୍ରର ଅନୁସନ୍ଧାନ କରି ଶେଷରେ ଯେତେବେଳେ କଥା ସ୍ଥିର ହେବାର ହେଲା ସେତେବେଳେ ଦିନେ ଗଣେଶ ଧୀରେ ଧୀରେ ଆସି ମୁହଁ ତଳକୁ ପୋତି ନୂଆବୋଉଙ୍କ ପାଖରେ ଠିଆ ହେଲେ । କୁଞ୍ଜଲତା ହସ ହସ ମୁହଁରେ ତାଙ୍କ ଆଡ଼କୁ ଅନାଇ କହିଲେ, ''କିହୋ, ଆଜି ଏତେ ବିରସ କିଆଁ ? ଗଣେଶ ଅତି କଷ୍ଟରେ ମୁହଁ ଟେକି ଟିକିଏ ମାତ୍ର ହସିଦେଇ ପୁଣି ହଠାତ୍ ଗମ୍ଭୀର ହୋଇ କହିଲେ, ''ନୂଆ'ଉ ଗୋଟେ କଥା କହନ୍ତି ?'' ''କିହୋ କହୁନା - ଏତେ ଲାଜ କରୁଛ କ'ଣ, ବହୂଟି କଥା ପଚାରିବ କି ?'' ''ନାଇଁ ମ, ମଲା ! ବହୂଟି ପାଇଁ ତ ମୋତେ ଆଉ ନିଦ ନାହିଁ !'' ''ଆଉ କ'ଣ କହ ତା' ହେଲେ !''

''ନୂଆ'ଉ ମୁଁ ବାହା ହେବି ନାହିଁ'' । ''ଓଃ ଏଇ କଥା- ହଉ'' କହି କୁଞ୍ଜଲତା ହସି ହସି ସେଠାରୁ ବାହାରି ଯିବାକୁ ଉଦ୍ୟତ ହେଲେ, ଗଣେଶ ପୁଣି ଯଥାସମ୍ଭବ କରୁଣ ଅଥଚ ଦୃଢ଼ ସ୍ୱରରେ କହିଲେ, ''ମୁଁ କେବେ ବାହାହେବି ନାହିଁ ନୂଆ'ଉ । ମିଛ କହୁନାହିଁ, - ତମକୁ କହି ରଖିଲି-ଏବେ ତମ ଇଚ୍ଛା ।''

କୁଞ୍ଜଲତା ହଠାତ୍ ଗମ୍ଭୀର ହୋଇ କିଛିକ୍ଷଣ ଭାବିଲେ, ତା' ପରେ ତାଙ୍କ ହାତଧରି ଗୋଟାଏ ଚଉକୀରେ ବସାଇ ନିଜେ ପାନ ଭାଙ୍ଗୁ ଭାଙ୍ଗୁ କହିଲେ, ''ସତେରେ ନବ, କ'ଣ କଥା ମତେ କହିବଟି ! ''କଥା ଆଉ କ'ଣ, ମୁଁ ବାହା ହେବିନାହିଁ, ଏଇୟା !'' ''ଛି କାହିଁକି ? କାରଣ ନ କହିଲେ ମୁଁ ସହଜରେ ଛାଡ଼ି ଦେଉଛି ପରା ! ଚୋର ମୋ ପାଖରେ କେତେ ଦିନ ଚୋରି କରିବ - ଆଜି ଧରା ପଡ଼ିଚ !'' ''କ'ଣ ମୁଁ ଧରା ପଡ଼ିଚି - ମୁଁ କ'ଣ ଚୋରି କଲି ! ମୁଁ ମୋର ବାହା ନ ହେବି !'' ''କାହିଁକି ବାହା ନ ହବ ନା !'' '' ସେ ଢ଼େର କଥା, ତୁମକୁ ବି ସେସବୁ କଥା କହି ପାରିବି ନାହିଁ !'' ''ନାଇଁନବ୍, ମୋତେ କହିବ ନାହିଁ ?'' ହଉ–'' ''ନୂଆ'ଉ ରାଗ ନାହିଁ । ତମୁକୁ ମୋ ରାଣେ ! ମୁଁ କହୁଛି, ଶୁଣ ମୋର ପ୍ରଧାନ କାରଣ ହଉଛି–'' ''କ'ଣ କହୁନା - ଫେରେ ଚୁପ୍ କରି ତଳକୁ ଅନାଇ ରହିଲ ଯେ ? ଛିଃ, କହିପକା, ମୋତେ କାହିଁକି ନାଜ ମ ।'' ''ନାଇଁ, ନୂଆ'ଉ ତମେ କ'ଣ ଭାବିବ କେଜାଣି, କ'ଣ କି ମୁଁ କେତେ ଦିନ ବଞ୍ଚିବି ତାର ଠିକଣା ନାହିଁ । ଆଜି ଗୋଟିଏ ବାହା ହେବି, କାଲି ଯଦି ମରିଗଲି ଗୋଟିଏ ଜୀବନତ ବୃଥାରେ ନଷ୍ଟ ଯିବ ।'' ''ଆଉ ଗୋଟାଏ ଜୀବନ–ତମେ ବା ସେ ଅମଙ୍ଗଳିଆ କଥାଗୁରାକ ଭାବୁଚ କାହିଁକି ।''

"ଜୀଇଁବା ମରିବା କାହାରି ହାତରେ ନାହିଁ ନୂଆ'ଉ । ସେହିପରି ଏ ପୋଡ଼ା ସମାଜ ଉପରେ ବି କାହାରି ହାତ ନାହିଁ । ଯେଉଁ ଅନିଷ୍ଟ ଘଟିଲେ ଏ ସମାଜରେ ଆଉ ତା'ର ପ୍ରତିକାର ନାହିଁ । ସେଇ ଅନିଷ୍ଟ ଘଟିବାର ବାଟଟି ବନ୍ଦ କରିଦେଲେ ତ ଯାଏ ! ଏଇ ମୋ କଥା ! ଆଉ ଗୋଟିକର ଜୀବନ ନଷ୍ଟ କରିବି ନାହିଁ –" "ଆଉ ଗୋଟିକର ଜୀବନ ମାନେ– ମାନିଲି ଯେ ବହୂଟି ହେଲା ଗୋଟିଏ– ଆଉ କାହା କଥା କହୁଚ ମୁଁ ଜାଣି ପାରୁନାହିଁ ନବ ! ମୁଁ ତ ମାଇପି ଲୋକ । ମୋର ଏତେ କଥା କିଏ ବୁଝୁଚି ! ମୁଁ ଖାଲି ତମୁକୁ ଏତିକି କହୁଚି- ଏ ପାଗଳାମି ଛାଡ଼ । ନିଜ ପାଇଁ ନହେଉ, ମୋ ପାଇଁ, ବାପା-ବୋଉଙ୍କ ପାଇଁ ବାହାହୋଇ ଗୋଟିଏ ବହୂ ଆଣ !"

କୁଞ୍ଜଲତାଙ୍କ ଆଖି ଛଳଛଳ ହୋଇ ଆସିଲା । ସେ ତାଙ୍କର ଏ ଉଦାର, ଉଚମନା ଦେବରଟିର ମର୍ମକଥା ବୁଝିପାରିଲେ । ମୁହଁରେ ନ ବୁଝିବାର କହିଲେ ସୁଦ୍ଧା ଗଣେଶଙ୍କର ସଂକଳ୍ପ ମୂଳରେ ଯେ ସେ ନିଜେ ଏ କଥା ଆଉ ତାଙ୍କୁ ଅଛପା ରହିଲା ନାହିଁ । ଏତେ ବଡ଼ ସହାନୁଭୂତିଟା ଅପ୍ରତ୍ୟାଶିତ ଭାବରେ ପାଇ ଆଉ ସେ ଥୟ ଧରି ରହି ପାରିଲେ ନାହିଁ । ତାଙ୍କ ହୃଦୟରେ ଗୋଟାଏ ଚିରସୁପ୍ତ ହାହାକାର କର୍ମ-ଅଭିନୟର ଅନ୍ତରାଳରେ ଯେଉଁ ଦୁଃଖ ଲୁକ୍କାୟିତ ରହିଥିଲା ସେଟା ପୁଣି ଜାଗି ଉଠିଲା । ପ୍ରାଣପଣ ବଳରେ ପ୍ରାଣର କୋହଟାକୁ ଚାପିରଖି ନତମୁଖରେ କହିଲେ "ତେମେ କାହା ପାଇଁ ତମର ସାରା ଜୀବନଟା ନଷ୍ଟ କରିଦେବ ଭଲା ! ଛି, ଛି ! ତମ ମୁହଁରେ ଏ କଥା ଶୋଭା ଦିଶୁଛି ଟି ! ତମୁକୁ ମୋ ରାଣେ ! ଯା କହିବ ନାହିଁ ।" "ନାଇଁ, ନୂଆ'ଉ ତମେ ବୁଝିପାରୁନା, ମୁଁ ଠିକ୍ କଥା କହୁଛି । ତମରି କଥା ବୋଲି ତମୁକୁ କହି ପାରୁ ନଥିଲି କାଳେ ତମ ମନରେ ଅଧିକ କ୍ଷୋଭ ହବ । ନ ହେଲେ ତେମେ ଭାବିବ ନାହିଁ ଯେ ଏଟା ଖାଲି ଗୋଟାଏ କଥାର କଥା ! ପ୍ରକୃତରେ ମୋର ବିଶ୍ୱାସ ହିନ୍ଦୁ ସମାଜରେ ପୁରୁଷ ଅମର ନ ହେଲେ କେଭେଁ ତା'ର ସ୍ତ୍ରୀ ଗ୍ରହଣ କରିବା ଉଚିତ ନୁହେଁ !"

କୁଞ୍ଜଲତା କିଛିକ୍ଷଣ ଧୀର ପ୍ରଶାନ୍ତ ଭାବରେ ବସିରହି ହଠାତ୍ ଗଣେଶଙ୍କ ହାତଧରି ପକାଇ କହିଲେ, "ନବ, ଭାଇ ତମେ ବାହା ନହେଲେ ମୁଁ କ'ଣ କରିବି ଜାଣ ? ନାଃ ମୁଁ ସେ କଥା ତମୁକୁ କହିବି ନାହିଁ । ଖାଲି ତମୁକୁ ଆଜି ସାବଧାନ କରି ଦଉଛି ଜାଣିଥା ! ମୁଁ ଏ ଘରେ କିପରି ଏକାରେ ଚଳି କଷ୍ଟ ପାଉଚି ତା' ଜାଣ । ତମେମାନେ ପିଲା ଥିଲ–ଘର ବାହାର ପୂରି ଉଠୁଥିଲା । ଏବକୁ ଯେଝା କାମରେ ଯିଏ ଲାଗିଲ – ମୁଁ କିପରି ଏ ଘର କରେଁ ତା' ଭାବୁଚଟି ନବ ? ତେମେ ଯେପରି ମୋର ସୁଖଦୁଃଖର ସାଥୀ ହୋଇ ଆଚିଯାଏ ମୋ ଅସାର ଜୀବନକୁ ଟାଣି ଆଣିଚ ସେହିପରି

ଗୋଟିଏ କାହାକୁ ମୋତେ ଆଣି ନଦେଲେ ମୁଁ କ'ଣ ତମକୁ ଛାଡୁଛି ! ନବ, ଭାଇ, ମୋ କଥା ମାନିବ ନାହିଁ ? ନାଇଁ ମୁଁ କିଛି ଶୁଣିବି ନାହିଁ। ମୋରି ପାଇଁ ଖାସେ ତୁମକୁ ନିଶ୍ଚେ ବାହାହବାକୁ ହବ !''

ଗଣେଶ ନୂଆ'ଉଙ୍କ କଥାର ବଳ ଓ ଢ଼ଙ୍ଗ ଦେଖି ସ୍ତମ୍ଭିତ ହୋଇଗଲେ ! କୁଞ୍ଜଲତା ଗଣେଶଙ୍କ ପ୍ରକୃତି ଭଲରୂପେ ଜାଣିଥିଲେ । ସେ ଜାଣିଥିଲେ ଯଦି କିଛି ଏ ଗମ୍ଭୀର ଯୁବକର ପ୍ରତିଜ୍ଞା ଟଳାଇପାରେ ସେ ଅନ୍ୟର ଉପକାର, ପରାର୍ଥେ ସ୍ୱାର୍ଥ ନୁହେଁ । ସେଯୋଗେ କୁଞ୍ଜଲତା ନିଜ ଉପରେ ଆରୋପିତ ସବୁ ଦୁଃଖ ବିନା ପ୍ରତିବାଦରେ ମାନିନେଇ ସେହି ଦୁଃଖ ଦୂରୀକରଣ ଛଳରେ ଗଣେଶଙ୍କ ଅସମର୍ଥତାରେ ତାଙ୍କୁ ନିରସ୍ତ୍ର କରିଦେଲେ । ଅନ୍ୟାନ୍ୟ ଅନେକ ଗୁରୁତର କାରଣ ଗଣେଶର ସ୍ୱାର୍ଥ ସଂକ୍ରାନ୍ତ ବୋଲିତା'ର ନାମ ମାତ୍ର ଧରିଲେ ନାହିଁ । କୁଞ୍ଜଲତାଙ୍କଠାରୁ ବଳି କାହାକୁ ବେଶି ଜଣାଥିଲା ଯେ ଗଣେଶ ପ୍ରମିଳାଙ୍କ ଆବାଲ୍ୟ ସଖ୍ୟ ରହିଛି ଏବଂ ସେହି ସଖ୍ୟ ଏବେ ପ୍ରେମରେ ପରିଣତ ବୋଲି ! ବୁଦ୍ଧିମତୀ ନାରୀସୁଲଭ ବିଚକ୍ଷଣତା ବଳରେ ଏ ସମସ୍ତ ଗୁରୁତର କାରଣମାନ ପରିତ୍ୟାଗ କରି ଧରିବସିଲେ କ'ଣ ନା ମୋର ଦୁଃଖ ଦୂରକର ।

ଔଷଧ ଠିକ୍ ଧରିଲା । ଗଣେଶ ଅନେକ କ୍ଷଣ ଚୁପ୍ ରହି ବସି ବସି ଶେଷରେ କହିଲେ, ''ନୂଆ'ଉ ମୁଁ କେଡ଼େ ନିର୍ବୋଧ ! ମୁଁ ବାହା ନ ହେବି ପ୍ରତିଜ୍ଞା କରି ମନେ ମନେ କେତେ ଆତ୍ମପ୍ରସାଦ ଉପଭୋଗ କରୁଥିଲି ଯେ କ'ଣ କହିବି ! ଭାବିଥିଲି ସେଇଟା ହିଁ ବଡ଼ କାମ ହେବ । କିନ୍ତୁ ମୁଁ କି ଅନ୍ଧ ! ଦେଖ, ମୋରି ଆଖି ଆଗରେ ତମେ ଏତେ ଦୁଃଖରେ ଅଛ ସେ କଥା ମୋତେ ତିଳେ ହେଲେ ଘେନିଲା ନାହିଁ । ଛି, ଛି ! –''ନୂଆ'ଉ ମୋତେ କ୍ଷମା କର !'' ଏହା କହି ଗଣେଶ କୁଞ୍ଜଲତାଙ୍କ ଗୋଡ଼ତଳେ ପଡ଼ିବାକୁ ଅଗ୍ରସର ହେଲେ କିନ୍ତୁ କୁଞ୍ଜଲତା ତାଙ୍କୁ ଆଗରୁ ଧରି ପକାଇଁ କହିଲେ, ''ଛି, ନବ ଏ କ'ଣ ! ମୋର ତମ ଉପରେ ଅଧିକାର ଅଛି ବୋଲି କହିଲି । ସବୁବେଳେ ତେମେ ମୋ କଥା ମାନିଥାଅ ବୋଲି କହିଲି ସିନା ! ତେମେ ମୋ ଦୁଃଖ ପାଇଁ ଭାବ ବୋଲି ତମକୁ ଦୁଃଖ କଥା କହିଲି—''

ଗଣେଶଙ୍କ ପକ୍ଷରେ ଏ ପ୍ରଶଂସା ଅସହ୍ୟ ହୋଇ ଉଠିଲା– ସେ ଅସଭ୍ୟ ଭାବରେ କୁଞ୍ଜଲତାଙ୍କ ହାତରୁ ହାତ ଛଡ଼ାଇ ନେଇ ସେଠାରୁ ପଳାଇଗଲେ ।

କୁଞ୍ଜଲତା ପଛଆଡୁ ଡାକି କରି କହିଲେ, ''ଏ କଥା କିନ୍ତୁ ମୁଁ ପ୍ରମିଳାକୁ କହି ଦଉଚି ।''

(୪)

ପ୍ରମିଳା ବା 'ପରୀ' ସହିତ ପାଠକଙ୍କର ଆଳାପ ପରିଚୟ ହୋଇନାହିଁ। ଆଗରୁ ବୋଲାଯାଇଛି ପ୍ରମିଳା ରମାନାଥବାବୁଙ୍କ ବଡ଼ ଝିଅ । ଆଜି ତାଙ୍କର ତ୍ରୟୋବିଂଶ ଜନ୍ମଦିବସ । ଆଜି ଏ ଶୁଭ ଅବସରରେ ଚାଲନ୍ତୁ ପାଠକେ ତାଙ୍କୁ ସନ୍ଧୋଳି ଆସିବେ ।

ରମାନାଥବାବୁଙ୍କ ଘରେ ଆଜି ଭାରି ଧୁମ୍‌ଧାମ ଲାଗିଛି । ଏକେତ ପରୀର ଆଜି ଜନ୍ମଦିବସ, ତା' ଉପରେ ପୁଣି କାଲି ତା'ର ଗଣେଶଙ୍କ ସହିତ ବିବାହର ଶୁଭନିର୍ବନ୍ଧ ଅନୁଷ୍ଠିତ ହେବ । ସେଯୋଗେ ରମାନାଥବାବୁ ବିଶେଷ କରି ସାରଦାବାବୁଙ୍କ ପରିବାରର ସମସ୍ତଙ୍କ ପାଇଁ ଯଥାସାଧ୍ୟ ଆଦରଆପ୍ୟାୟନର ଆୟୋଜନ କରିଛନ୍ତି । ରମାନାଥବାବୁଙ୍କ ଘରେ ବାହାରେ ଚାରିଆଡ଼େ କୋଳାହଳ ଧାଁ ଦଉଡ଼ ଲାଗିଛି । ସନ୍ଧ୍ୟା ୭ଟାରେ ନିମନ୍ତ୍ରିତ ଅତିଥିମାନେ ଆସି ପହଞ୍ଚିବେ ।

ସଞ୍ଜ ବୁଡ଼ିଲା ଉପରେ– ବେଳ ରତ ରତ ହେଉଛି । ଅଧା ଅନ୍ଧାର ଅଧା ଆଲୁଅରେ ଗଛପତର ଜନପ୍ରାଣୀ ଛବିରେ ଅଙ୍କାହେଲା ପରି ରଙ୍ଗା ଦିଶୁଛନ୍ତି । ଆକାଶରେ କିନାରା ଭିଡ଼ି ସୁନେଲି ରଙ୍ଗର ବିଚିତ୍ର ରେଖାଗୁଡ଼ିଏ ଚମକି ଉଠୁଛି । ତା' ଉପରକୁ ତା' ଉପରକୁ ରକମ ରକମ କେତେ ଜାତି ଛୋଟବଡ଼ ମେଘଖଣ୍ଡମାନ ମୁଣ୍ଡରେ ଉଜ୍ଜ୍ୱଳ ଆଭାଟିମାନ ପିନ୍ଧି କୁଆଡ଼େ କୁଆଡ଼େ ଭାସି ଭାସି ଯାଉଛନ୍ତି । ତଳେ କାଠଯୋଡ଼ି ବକ୍ଷରେ ଥରଥର ତରଳ ଢେଉଟିମାନଙ୍କୁ ବି ସେଇ ଆଲୁଅ ଅନ୍ଧାର ରହି ରହି ରଙ୍ଗ ଦେଇଯାଉଛି । ଦୋତାଲା ଉପର କାଠଯୋଡ଼ି ବନ୍ଧକୁ ଲାଗି ଯେଉଁ ବାଲକୋନି ଛାତ ଉପରେ କିଏ ଏ ସୁନ୍ଦରୀ ଯୁବତୀଟି ଗାଲରେ ହାତ ଦେଇ ବାଡ଼ାକୁ ଅନାଇ ଛିଡ଼ା ହୋଇଛି ? ଏଇକ'ଣ ପ୍ରମିଳା ? ଯାହା ପାଇଁ ଚାରିଆଡ଼େ ଆଜି ଏତେ କୋଳାହଳ ଲାଗିଛି ! ସେହି ପ୍ରମିଳା କାହିଁକି ଯେ ଏପରି ନିର୍ଜନରେ ଏକାକିନୀ ଚିନ୍ତାମଗ୍ନା ? ପ୍ରକୃତିର ଏ ଆଲୁଅ-ଅନ୍ଧାର ଖେଳ ଦେଖି କ'ଣ ଯୁବତୀଙ୍କର ତରୁଣ ମନରେ ବିଷାଦର ଛାୟା ପଡ଼ିଛି ? କେଜାଣି ?

ପାଠକେ ଅନ୍ଧାର ମାଡ଼ିଆସୁଛି – ପ୍ରକୃତିର ଏ ଅପୂର୍ବ ଚିତ୍ରପଟ କ୍ଷଣକେ ଆଖିଆଗରୁ ଢ଼ାଙ୍କି ହୋଇପଡ଼ିବ । ଯେପର୍ଯ୍ୟନ୍ତ ଆଲୋକ ଅଛି ସେପର୍ଯ୍ୟନ୍ତ ପ୍ରମିଳାଙ୍କୁ ଏ ସୌନ୍ଦର୍ଯ୍ୟ ଉପଭୋଗ କରିବାକୁ ଦିଅନ୍ତୁ ଓ ଆଲୁଅ ଥାଉଁ ଥାଉଁ ଥରେ ତାଙ୍କୁ ଭଲ କରି ଦେଖିନିଅନ୍ତୁ । ଯେଉଁ ଦେହ ଅବସନ୍ନ ଭାବରେ ଛାତବାଡ଼ା ଉପରେ ଢ଼ଳିପଡ଼ିଛି

ଆପଣ ତାକୁ କ୍ଷୀଣ ଓ ଖର୍ବ ବୋଲି ଭାବିପାରନ୍ତି କିନ୍ତୁ ଯେଉଁ କରୁଣ ମୁଖଟିର ଶ୍ୟାମଳ ଜ୍ୟୋତିରେ ସାନ୍ଧ୍ୟ ଆକାଶର ସେଇ ସୁନେଲି ଆଭା ଲାଗି ପ୍ରତିହତ ହୋଇ ଫେରିଆସୁଛି ସେ ମୁଖଟିର ଅପାର୍ଥିବ ଲାଳିତ୍ୟ ଓ ଅବର୍ଣ୍ଣନୀୟ ସୌନ୍ଦର୍ଯ୍ୟ ଥରେ ଭଲକରି ଲକ୍ଷ୍ୟକରି ଦେଖନ୍ତୁ । କ୍ଷୁଦ୍ର ନିରାଭରଣ ମୁଖଟିରେ କିପରି ଭିତରର ଆଲୋକିତ ଜୀବନର ପୁଲକିତ ବିକାଶ ଚହଟ ହୋଇ ଫୁଟିଉଠୁଛି । ଦେଖନ୍ତୁ, ଆଉ ଦେଖନ୍ତୁ, ସେହି ଛଳ ଛଳ ପଦ୍ମପଲାଶ ଉଜ୍ଜ୍ୱଳ ଆଖି ଯୋଡ଼ିକ; ସେଥିରେ ଚଞ୍ଚଳତା ନାହିଁ, ମାଦକତା ନାହିଁ – ଯାହା ଅଛି ସେଟା କି ନାମରେ ଅଭିହିତ ହେବ, ସ୍ୱର୍ଗୀୟତା ନା ଅପାର୍ଥିବତା ! ଭାବି ଦେଖନ୍ତୁ ଆଉ କୁହନ୍ତୁ ! ସେଇକ୍ଷୁଦ୍ର ମୁଖଟିର ମାଧୁରୀ ସେଇ ଆଶ୍ଚର୍ଯ୍ୟ ଆଖିଯୋଡ଼ିକ ଯୋଗେ କି ସେ ଆଖିଯୋଡ଼ିକର ସୌନ୍ଦର୍ଯ୍ୟ ସେଇ ମୁଖଟିର ଅନିନ୍ଦ୍ୟ ସୁନ୍ଦରଗଠନ ଓ ଚମତ୍କାର ଲାଳିତ୍ୟଯୋଗେ ଅଥବା ଦୁହେଁ ଭିତରର ସୌନ୍ଦର୍ଯ୍ୟର ଆଜ୍ଞାବହ ଅନୁଗାମୀ ମାତ୍ର ।

ହଁ, ସେଇ ଆଖିଯୋଡ଼ିକ ଛଳ ଛଳ କରୁଛି ! ଆଜି ଏ ସୁଖର ଦିନରେ ପ୍ରମିଳାଙ୍କର ଏ ବିପରୀତ ଭାବ ! କାଲି ପୁଣି ତାଙ୍କର ବିବାହର ନିର୍ବନ୍ଧ ହେବ ! କାହିଁ ତା'ର ସୁଖର ସ୍ୱପ୍ନ ! କାହିଁ ତା'ର ଆକାଶକୁସୁମର ଆଶୁ ଉପଲବ୍ଧିରେ ଆନନ୍ଦ ! ଜୀବନର ସଫଳତାର ଦ୍ୱାରରେ ଆଖିରେ ଲୁହ ! ବାସ୍ତବିକ୍ ପ୍ରମିଳାଙ୍କର ଏପରି ଦିନ ବି ଯାଇନି ଯେବେ ସେ ଗଣେଶଙ୍କର ପ୍ରୀତିଲାଭର ଆଶାକୁ ଆକାଶକୁସୁମ ବୋଲି ଭାବି ନିରାଶାର ଅନ୍ଧାରରେ ଦିନ ପରେ ଦିନ କଟାଇଛନ୍ତି । ଇୟେ ସେଇ ସେତେବେଳର କଥା, ଯେତେବେଳେ ଗଣେଶ ନିଜ ହୃଦୟର ସଚ୍ଚ ସ୍ୱପ୍ନ ଉପରେ କର୍ତ୍ତବ୍ୟର କଠୋର ଶାସନ ଚପାଇ ମହାନୁଭବତାର ଜୟଡ଼ଙ୍କା ବଜାଇବାର ପ୍ରତିଜ୍ଞା କରିବସିଥିଲେ । ଯେତେବେଳେ ସେ ନିଜ ହୃଦୟର ଅପାର ପ୍ରେମ ଗତିକୁ ପ୍ରତିରୋଧି କରିବା ଅଭିପ୍ରାୟରେ ପ୍ରମିଳାଙ୍କୁ ପଦେ ପଦେ କଠୋର ନିର୍ମମ ଭାବରେ ଆଘାତ ଉପରେ ଆଘାତ ଦେଇ ଶାନ୍ତ ନ ହୋଇ ଶେଷରେ ତାଙ୍କ ଛାୟା ପର୍ଯ୍ୟନ୍ତ ବର୍ଜନ କରିବା ଉପରେ ବସିଥିଲେ । କିନ୍ତୁ ସେ କାଳତ ଅନେକ ଦିନରୁ ଗଲାଣି ! କୁଞ୍ଜଲତାଙ୍କ ଦ୍ୱାରା ଗଣେଶଙ୍କର ମତି ପରିବର୍ତ୍ତନ ଘଟିଥିବା ପାଠକଙ୍କୁ ଅବିଦିତ ନାହିଁ । ଆଜି ସେ ଆକାଶକୁସୁମ ତାହାର ସମସ୍ତ ସରସତା ଓ ମହକ ଘେନି ପ୍ରମିଳାଙ୍କ କରଗତ ହେଲାପ୍ରାୟ । ତେବେ ଏ ଉଦାସ, ବିଷଣ୍ଣତା, ଏ ଅଯାଚିତ ଅଶ୍ରୁ କାହିଁ ପାଇଁ ? ପ୍ରକୃତିର ଏ ଆଲୁଅ–ଅନ୍ଧାର ଖେଳ ଦେଖି କ'ଣ ପ୍ରମିଳାଙ୍କର ଏ ଭାବ ? ନା, ନିଜ ଭିତରେ ତାଙ୍କର କୌଣସି ଦୁଃଖର ତାମସୀ ଛାୟା ପଡ଼ିଲାଣି ?

\+ + + + +

''ଛି ଆଖି ଛାଡ଼ ! ମୁଁ ଚିହ୍ନି ପାରିଛି - ଛାଡ଼ିଦିଅ ଭଲା !''

''କିଏ କହ—''

''ଓଃ ଏମିତି ଚିପିକରି କଥା କହିଲେ ମୁଁ ଚିହ୍ନି ପାରିବି କି ! ଉଃ, ଛାଡ଼ିଦିଅ ଭଲା ! ତମୁକୁ ଜୁହାର କରୁଚି, କାର୍ତ୍ତିକ ଭାଇ !'' ପ୍ରମିଳାଙ୍କ ଆଖି ଛାଡ଼ି ଦେଇ କାର୍ତ୍ତିକ ହସ ହସ ହୋଇ ଆଗକୁ ଆସିଲେ । ପ୍ରମିଳା କିନ୍ତୁ ଯେମିତି ସେମିତି ଦୂରକୁ ଚାହିଁଲା ପରି ସଳଖେ ନଈ ଆଡ଼କୁ ଚାହିଁ ରହିଲେ । ହସିବା ତ ଦୂରେ ଥାଉ ଆଉ କିଛି କହିଲେ ବି ନାହିଁ । କାର୍ତ୍ତିକ କିଛିକ୍ଷଣ ଅସ୍ପଷ୍ଟ ଆଲୋକରେ ତାଙ୍କ ମୁହଁକୁ ଚାହିଁ ଚାହିଁ କିଛି ନ ବୁଝିପାରି ହସ ବନ୍ଦ କରି ଚୁପ କରି ଠିଆହୋଇ ରହିଲେ । ତାଙ୍କ ଆଖି ଚିପି ଧରିଥିଲା ବେଳେ ଯେଉଁ ଟିକକ କଥାବାର୍ତ୍ତା ହୋଇଥିଲା ସେଥିରେ ପ୍ରମିଳାଙ୍କର କଣ୍ଠସ୍ୱରରେ ପ୍ରଚ୍ଛନ୍ନ ଅବସନ୍ନତାଟିକୁ କାର୍ତ୍ତିକ ବୁଝିପାରିଥିଲେ । ବର୍ତ୍ତମାନ ହଠାତ୍ ଯେମିତି ସାରା ପ୍ରକୃତି ଭାରାକ୍ରାନ୍ତ ହୋଇ ତାଙ୍କ ମନର ସମସ୍ତ ଫୂର୍ତ୍ତିକୁ ଢ଼ାଙ୍କି ପକାଇଲା । ସେ ବି ଅତର୍କିତ ଭାବରେ ବିଶ୍ୱଜଗତର ଆଲୁଅ-ଅନ୍ଧାର ଖେଳରେ ମନୋନିବେଶ କରିବାକୁ ବାଧ ହେଲେ । କିନ୍ତୁ ତାଙ୍କ ମନରେ ବଡ଼ ସନ୍ଦେହ ହେଲା ପ୍ରମିଳାଙ୍କର ଏ ଅଯଥା ଗାମ୍ଭୀର୍ଯ୍ୟ ଦେଖି —କାଲି ଯାହାର ବିବାହର ନିର୍ବନ୍ଧ ସେ ଯେ କାହିଁକି ଆଜି ଦୁର୍ଭାବନାଗ୍ରସ୍ତ ହୋଇପାରେ ତା'ର ଚଳିତ ଦେଶଗତ କାରଣକୁ ଉପେକ୍ଷା କରି ତାଙ୍କ ମନରେ ଆଶାର କ୍ଷୀଣାଲୋକ ଦେଖାଦେଲା ଓ ମୁଗ୍ଧ ବିସ୍ମୟରେ ସେ ଭାବିବସିଲେ ଏ ଅହେତୁକ ଗାମ୍ଭୀର୍ଯ୍ୟ ମୂଳରେ ସେ ନିଜେ ନାହାନ୍ତି ତ !

ଅନେକ କ୍ଷଣ ପରେ କାର୍ତ୍ତିକ ଭରସି କହିଲେ, ''ପରୀ ଆଜି ତୋର ଜନ୍ମଦିନ, କାଲି ପୁଣି ତୋ ବିବାହର ନିର୍ବନ୍ଧ ହେବ—ଏତେ ଗାମ୍ଭୀର୍ଯ୍ୟ କ'ଣ ସେଇଥିଲାଗି ? ପରୀ କାଲିଠାରୁ ତ ମୁଁ ତୋର ପର ହୋଇଯିବି – ଆଜି ଭାଇ ବୋଲି ଥରେ ତୋତେ ସଙ୍ଖୋଳିବାକୁ ଆସିଲି । ଏଇ ନେ-ଏ ସାମାନ୍ୟ ବ୍ରୁଚ୍ – ଆଜି ଶୁଭ ଦିନରେ ତୋ କାର୍ତ୍ତିକ ଭାଇର ଅସରନ୍ତି ସ୍ନେହର ନିଦର୍ଶନ ସ୍ୱରୂପ ନେଇଥା !'' ଗଦ୍‌ଗଦ୍ କଣ୍ଠରେ ଏତକ କହି କାର୍ତ୍ତିକ ପକେଟରୁ ଗୋଟିଏ ମାହାର୍ଘ୍ୟ ବ୍ରୁଚ୍ କାଢ଼ି ପ୍ରମିଳାଙ୍କ ଆଡକୁ ଅଗ୍ରସର ହୋଇ ଅତିଧୀରେ ଯାଇ ତାଙ୍କ କାନ୍ଧରେ ନିଜହାତ ରଖି ତାଙ୍କ ଅନ୍ୟମନସ୍କତା ଭାଙ୍ଗିବାକୁ ପୁଣି ଥରେ ସ୍ନିଗ୍ଧ କଣ୍ଠରେ ଡାକିଲେ, ''ପରୀ !''

ସେତେବେଳକୁ ଚତୁର୍ଥୀର ଚାନ୍ଦ୍ରମସୀରେଖା ରୂପେଲି ହସଟିଏ ହସି ବସିଲାଣି । ପଶ୍ଚିମର ବଉଦଶ୍ରେଣୀ ଗୋଟାଏ ପ୍ରକାଣ୍ଡ ରୌପ୍ୟ ପାତ୍ରରେ ଟଳମଳ କଳାପରି

ଦିଶୁଚି - ଶିରି ଶିରି ବାଆ ବହୁଚି । ଫଡ଼୍ ଫଡ଼୍ ଶବ୍ଦ କରି ସେ ପାରିର ନାଆ ଆସି ଘାଟ ଭିଡୁଛି ଆଉ ଶ୍ରାନ୍ତ ନାବିକ ଗାଉଛି, ''ଯାହା ହେବାର ହେଉ ଏଣିକି ମୁଁ ତ ଦେଇଛି ଜୀବନ ବିକି –''

ପ୍ରମିଳା ସ୍ତବ୍ଧ ହୋଇ ଅନ୍ତରର ଘୋର ଯୁଦ୍ଧକୁ ଶ୍ରାନ୍ତ କରିବାର ଉପକ୍ରମ କରୁଥିଲେ । କାର୍ତ୍ତିକ ତାଙ୍କ କାନ୍ଧରେ ହାତ ରଖି ନିର୍ନିମେଷ ନୟନରେ ତାଙ୍କ ମୁହଁକୁ ଚାହିଁ ସ୍ନେ ଉପହାରଟି ଆଗରେ ଧରିଲାରୁ ଅସମ୍ଭାଳ ହୋଇ କି ଆବେଗଭରେ ତାଙ୍କ କୋଳକୁ ଢ଼ଳି ପଡ଼ିଲେ କେଜାଣି ! କାର୍ତ୍ତିକ ମଧ ପରମ ଆଗ୍ରହରେ ତାଙ୍କୁ କୋଳକୁ ଆଉଜାଇ ଆଣି ଅନୁଭୂତିର ଆଧିକ୍ୟରୁ ନିଶ୍ଚେଷ୍ଟ ଭାବରେ ତଦବସ୍ଥ ହୋଇ ରହିଗଲେ । କିଛିକ୍ଷଣ ପରେ କାର୍ତ୍ତିକ ପ୍ରକୃତିସ୍ଥ ହୋଇ ଡାକିଲେ 'ପରୀ !' ପ୍ରମିଳା ଅଶ୍ରୁବେଗ ସମ୍ବରଣ କରୁ କରୁ କହିଲେ, 'ଉଁ'–

''ଭୟେ କ'ଣ ପରୀ, ଛି –– ଏ ଦୁର୍ବଳତା କ'ଣ ତୋତେ ସାଜେ !''

''ନାଇଁ, ମୁଁ ଆଉ ସହ୍ୟ କରିପାରିବି ନାହିଁ । ମୁଁ ବିବାହ କରିବି ନାହିଁ ।''

''କାହିଁକି ମ ! କଥା କ'ଣ ? ବିବାହ ନ ହେବାର କାରଣ କ'ଣ ମୋତେ କହିବୁ ନାହିଁ ?''

ପ୍ରମିଳା ନୀରବ ରହିବାରୁ ଆଶାବିକ୍ଷୁବ୍ଧ ହୃଦୟରେ କାର୍ତ୍ତିକ କହିଲେ –କଥାଗୁଡ଼ା ଯେପରି ତାଙ୍କର ଅନ୍ତରସ୍ଥ ପ୍ରଦେଶରୁ ବାହାରୁଥାଏ –''ପରୀ - ବିବାହ ବଡ଼ ମହାନ୍, ବଡ଼ ପବିତ୍ର । ଆତ୍ମା ସହିତ ଆତ୍ମାର ମିଳନ, ତାହାର ନାମ ବିବାହ । ସେ କେବଳ କେତୋଟି ନିୟମର ସୃଷ୍ଟି ନୁହେଁ, ବିବାହ ନାମରେ ଯେଉଁ ଅନୁଷ୍ଠାନ ବୁଝାଏ, ତାହାର ବି କୀର୍ତ୍ତି ରୁହେ । ପୁରୁଷ-ନାରୀ ମଧରେ ବିବାହ ବିଦ୍ୟୁତ ପରି କ୍ଷଣକର ସୃଷ୍ଟି ଅଥଚ ଆଲୋକ ପରି ଯୁଗ-ଯୁଗାନ୍ତର, ଜନ୍ମ-ଜନ୍ମାନ୍ତର ସ୍ଥାୟୀ । ବିବାହ ପୂର୍ବରୁ, ଏ ପ୍ରକୃତ ବିବାହ ହୋଇଥିଲେ – ଆତ୍ମା ଆତ୍ମାର ପ୍ରକୃତ ମିଳନ ଘଟିଥିଲେ, ସେ ଅନୁଷ୍ଠାନ ମହାନ୍ ପବିତ୍ର ନତୁବା ଅନ୍ତଃସାରଶୂନ୍ୟ । ଆଜି ତୁମେ ଅନୁଷ୍ଠାନଟିକୁ ଭୟ କରୁଚ କିନ୍ତୁ ଭୟ କରିବାର କିଛି ନାହିଁ ଯଦି ପ୍ରକୃତରେ ତୁମ ଆତ୍ମା ଭାଇଙ୍କ ଆତ୍ମା ଏ ଦୁଇଟି ଆଗରୁ ଏକ ହୋଇଚି । ଯଦି ତୁମେ ବାସ୍ତବରେ ଭାଇଙ୍କୁ ଚାହଁ, ତାହେଲେ ଯେ ବିବାହର ଅନୁଷ୍ଠାନ ନ ହୋଇ ସୁଦ୍ଧା ତୁମେ ଦୁହେଁ ଏକ ହୋଇ ଯାଇଛ; ଯଦି ବିବାହ ନ ବି ହୁଏ ଶେଷରେ କିଛି କ୍ଷତିନାହିଁ । କେବଳ ଦୁହିଁଙ୍କ ଆତ୍ମା ମିଳନରେ ପ୍ରକୃତ ବିବାହ ଘଟିଯାଇଛି ।''

ବ୍ୟଥିତ ପୀଡ଼ିତ ହେଲାପରି ପ୍ରମିଳା ଦୂରକୁ ଘୁଞ୍ଚିଯାଇ ବାଡ଼ା ଉପରେ ଢ଼ଳି ପଡ଼ିଲେ ଓ ଦୁଇ ବାହୁର ବନ୍ଧନ ଅନ୍ତରାଳରେ ଅଶ୍ରୁସିକ୍ତ ମୁଖଟିକୁ ଲୁଚାଇ ଆର୍ତ୍ତ କଣ୍ଠରେ କହିଲେ, ‘‘ମୋତେ ରକ୍ଷା କର କାର୍ତ୍ତିକ ଭାଇ – ! ମୋତେ କ୍ଷମାକର, ମୁଁ ଏଇନା ବୁଝିପାରୁ ନାହିଁ ମୁଁ ପ୍ରକୃତରେ ଗଣେଶ ଭାଇଙ୍କୁ ଚାହେଁ କି ନା ! ନାଃ, ଏଇନା ମୁଁ ବୁଝିପାରୁଚି – ମୋ ଭିତରୁ ଯେପରି କିଏ କହୁଚି, ମୁଁ ତାଙ୍କୁ ଚାହେଁନାହିଁ, ମୋର ତାଙ୍କ ପ୍ରତି ଯେ ସ୍ନେହ ସେ ବିବାହର ଉପଯୋଗୀ ସ୍ନେହ ନୁହେଁ । ମୁଁ ବର୍ତ୍ତମାନ ସ୍ପଷ୍ଟ ବୁଝିପାରୁଚି ମୁଁ ଗଣେଶଭାଇଙ୍କୁ ବିବାହ କଲେ ସୁଖୀ ହୋଇପାରିବି ନାହିଁ । ତାଙ୍କୁ ମୁଁ ସ୍ନେହ କରେ, ଖୁବ୍ ସ୍ନେହ କରେ - କିନ୍ତୁ ସେତ ବିବାହର ଉପଯୁକ୍ତ ସ୍ନେହ ନୁହେଁ !’’

‘‘ଏ ତଥ୍ୟ ଆଜି କିପରି ଜାଣିଲ ପରୀ ? ଏ ତଥ୍ୟ ଯଦି ଆଗରୁ ଜାଣିଥିଲ ଭାଇଙ୍କୁ କିପରି –’’

‘‘ନା, ମୁଁ ହତଭାଗିନୀ ଆଗରୁ ଜାଣିଲି କିପରି ! ନାଇଁ ନାଇଁ - ମୁଁ ମୋ ସ୍ନେହକୁ ବିବାହର ଉପଯୋଗୀ ମନୋଭାବ ବୋଲି ଭାବି ଭୁଲରେ ତାଙ୍କଠାରେ ପ୍ରତିଜ୍ଞାବଦ୍ଧ ହୋଇପଡ଼ିଚି । ବର୍ତ୍ତମାନ ଅସମ୍ଭବ – ପ୍ରତିଜ୍ଞା ରକ୍ଷା କରିବାକୁ ଇ ହେବ ଓ ଜୀବନବ୍ୟାପୀ ଦୁଃଖ ଭୋଗ କରିବାକୁ ହେବ –’’

‘‘କିନ୍ତୁ ପରୀ, ମୁଁ ପଚାରୁଛି ସେ ଭ୍ରମ ଆଜି କିପରି ଭାଙ୍ଗିଲା ? ଏବେ କିପରି ବୁଝିଲ ଯେ ତମେ ଭାଇଙ୍କୁ ବିବାହ କଲା ଭଳି ଭଲପାଅ ନାହିଁ !’’

କାର୍ତ୍ତିକର ସ୍ୱର କମ୍ପିଉଠିଲା - ତାଙ୍କର ସମସ୍ତ ଅନ୍ତରାତ୍ମା ଯେପରି ଲୋଲୁପ ହୋଇ ସେ ପ୍ରଶ୍ନର ଉତ୍ତରକୁ ଅନାଇ ରହିଚି ! ସେ ଉତ୍ତର ଉପରେ ଯେପରି ତାଙ୍କର ନିଜର ସାରା ଭବିଷ୍ୟତଟା ନିର୍ଭର କରୁଚି ! ନିର୍ବାକ ଭାବରେ ପ୍ରମିଳା ପାଦେମାତ୍ର ତାଙ୍କ ନିକଟକୁ ଅଗ୍ରସର ହୋଇ ଆସି ନିଷ୍ପନ୍ଦ ନେତ୍ରରେ କିଛିକ୍ଷଣ ତାଙ୍କ ମୁହଁକୁ ଚାହିଁ ଗୁରୁ ଗମ୍ଭୀର ସ୍ୱରରେ କହିଲେ, ‘‘ତମ୍ଭକୁ ଦେଖିଲାଠଉଁ ।’’ କାର୍ତ୍ତିକ ମଧ ଅଗ୍ରସର ହୋଇ ତାଙ୍କୁ ବାହୁପାଶରେ ବାନ୍ଧିପକାଇଲେ । ଦୁହେଁ ନୀରବ ! ଏ ପାରିରେ ନାଆ ଭିଡ଼ି ସାରି ପାଣିରେ ବାଜା ବଜାଉ ବଜାଉ ସେତେବେଳ ସୁଦ୍ଧା ମୂର୍ଖ ନାବିକ ଭୀଷଣ ଅନୁପଭୋଗ୍ୟ କଣ୍ଠରେ ଗାଉଥିଲା, ‘‘ମୁଁ ତ ଦେଇଚି ଜୀବନ ବିକି, ଯାହା ହେବାର ହେଉ ଏଣକି — !’’

\+ + + + +

ସେଦିନ ଗଣେଶ ମଧ ଅନେକ ଭାବିଚିନ୍ତି ଗୋଟିଏ ବଡ଼ ରକମ ଫୁଲତୋଡ଼ାଟିଏ ମାତ୍ର ପ୍ରମିଳାଙ୍କ ପାଇଁ ଜନ୍ମଦିନର ଉପହାରସ୍ୱରୂପ ଘେନି ଆସି ପହଞ୍ଚିଲେ । ଯାଡ଼େ ସ୍ୟାଡ଼େ ଚାହିଁ ଚାହିଁ ପ୍ରମିଳାଙ୍କର ସନ୍ଧାନ ନ ପାଇ ପୂର୍ବ ଆଭାସ ଅନୁଯାୟୀ ଉପର ଆଡ଼କୁ ଚାଲିଲେ । ଉପରକୁ ଯିବା ସିଡ଼ିରୁ ବାରଣ୍ଡାକୁ ଆସିଲା ମାତ୍ରେ ବାଲ୍‌କୋନିକୁ ଯିବାକୁ ଗୋଟିଏ ମାତ୍ର ଛୋଟ ଦୁଆର । ଶେଷ ପାବଚ୍ଛ ଉପରେ ନ ହେଉଁଣୁ ଗଣେଶଙ୍କୁ କାର୍ତ୍ତିକର କଣ୍ଠସ୍ୱର ଅସ୍ପଷ୍ଟ ହୋଇ ଶୁଭିଲା । କିଛି ମାତ୍ର ଆଶ୍ଚର୍ଯ୍ୟ ନ ହୋଇ ସେ ଦୁଆରଟି ପର୍ଯ୍ୟନ୍ତ ଆସିଲେ । ସେହିଠାରୁ କ'ଣ କହୁ କହୁ ଥକ୍କା ହୋଇ ଛିଡ଼ା ହୋଇଗଲେ । ପ୍ରମିଳାଙ୍କୁ କାର୍ତ୍ତିକର କାନ୍ଧରେ ଦେଖି ତାଙ୍କର ବିସ୍ମୟର ସୀମା ରହିଲା ନାହିଁ । ଜଡ଼ବତ୍ ସେଠାରେ ଛିଡ଼ା ହୋଇ ରହିଲେ । ତା' ପରେ ଯାହା ଘଟିଲା ଦୁହିଁଙ୍କ ମଧ୍ୟରେ ଯାହା କଥାବାର୍ତ୍ତା ହେଲା ଗଣେଶ ଦେଖିଲେ, ଶୁଣିଲେ ଆତ୍ମହରା ହୋଇ । ହଲ୍‌ଚଲ ହେବାର ଶକ୍ତି ମଧ ତାଙ୍କର ରହିଲା ନାହିଁ ।

ଏଣେ କେତେ କ୍ଷଣ ପରେ କେଜାଣି କାର୍ତ୍ତିକ ଓ ପ୍ରମିଳାଙ୍କର ଚେତନା ହେଲା—ତଳେ ଗୋଳମାଳ ଶୁଣି । ପ୍ରମିଳା ଦୀର୍ଘନିଶ୍ୱାସ ପକାଇ କହିଲେ, "ଜନ୍ମ ଦୁଃଖିନୀକୁ ଆଉ କାହିଁକି କଷ୍ଟ ଦେଉଚ - ଛାଡ଼, କାଲିଠାରୁ ଏ ଜୀବନ ବଳିଦେବାକୁ ତ ବସିଛି, ଦେବି !" କାର୍ତ୍ତିକ ହଠାତ୍ ଜାଗ୍ରତ ହେଲା ପରି ପ୍ରମିଳାଙ୍କୁ ଛାଡ଼ି ଦେଇ କହିଲେ, "ଏଥିରେ କ'ଣ କିଛି ପ୍ରତିକାର ନାହିଁ ପରୀ ? ନବାକୁ କହିଲେ ହୁଅନ୍ତା ନାହିଁ ? ଜାଣିଶୁଣି ସାରା ଜୀବନଟା ନଷ୍ଟ କରିଦେବୁ ? ଏକା କ'ଣ ନିଜର– ଗଣେଶଭାଇଙ୍କର ଜୀବନଟା ବା କେଉଁ ସୁଖର ହେବ ! ମୋ କଥା ତ ଛାଡ଼ —"

"ନା, ନା, କାର୍ତ୍ତିକଭାଇ, ମୋତେ ମୋ ପ୍ରତିଜ୍ଞା ପାଳନ କରିବାକୁ ହେବ– ନିଶ୍ଚୟ, ନିଶ୍ଚୟ ମୁଁ ଗଣେଶଭାଇଙ୍କ ଜୀବନଟାକୁ ମାଟି କରି ଦେଇପାରିବି ନାହିଁ ! ସେଥିରେ ମୋର ପକ୍ଷେ ଯେତେ ଦୁଃଖ ହେଉ ମୋତେ ଯେତେ ଆତ୍ମବିସର୍ଜନ ଦେବାକୁ ହେଉପଛକେ !"

ଗଣେଶ ଗଭୀର ମର୍ମାନ୍ତିକ ଯାତନାରେ ନିଶ୍ଚେଷ୍ଟପ୍ରାୟ ହୋଇ ଏସବୁ ଶୁଣୁଥିଲେ । ଏତିକିବେଳେ ହଠାତ୍ ତାଙ୍କର ସର୍ବାଙ୍ଗ ଦୋହଲାଇ ଗୋଟାଏ ମହାନୁଭବତାର ସ୍ପନ୍ଦନ ତାଙ୍କୁ ଆହୁରି ଅଭିଭୂତ କରିପକାଇଲା । ସେ ମତୁଆଲାଙ୍କ ପରି ଟଳି ଟଳି ସେଠାରୁ ହଟିଲାବେଳେ କାର୍ତ୍ତିକ ଓ ପ୍ରମିଳା ଚକିତରେ ତାଙ୍କୁ ଦେଖିପକାଇ ଦୁହେଁ ଦୁହିଁଙ୍କ ମୁହଁକୁ ଚାହିଁଲେ । ଗଣେଶ ସିଡ଼ିକୁ ପଛକରି ଯେପରି ଆସିଥିଲେ ସେହିପରି ସଳଖେ ଅନ୍ୟପଟ କୋଣ ଘର ଭିତରକୁ

ଚାଲିଯାଇ ସେଠାରେ ଭୂଇଁରେ ବସିପଡ଼ିଲେ । ପ୍ରମିଳା କାର୍ତ୍ତିକଙ୍କୁ ଛାଡ଼ିଦେଇ ଦଉଡ଼ି ଆସିଲେ ତାଙ୍କ ପଛେ ପଛେ । କାର୍ତ୍ତିକ ସେହିଠାରେ କିଛିକ୍ଷଣ କିଂକର୍ତ୍ତବ୍ୟବିମୂଢ଼ ହେଲାପରି ଛିଡ଼ା ହୋଇ ହଠାତ୍ ଧପ୍ ଧପ୍ କରି ତଳକୁ ଓହ୍ଲାଇ ଚାଲିଗଲେ ।

ଗଣେଶ ମୁହଁକୁ ତଳ କରି ଲମ୍ବହୋଇ ପଡ଼ିଥାନ୍ତି । ପ୍ରମିଳା ବଡ଼ ବ୍ୟସ୍ତ ହୋଇ ତାଙ୍କ ମୁଣ୍ଡ ପାଖକୁ ଆସି ଆଣ୍ଠେଇ ପଡ଼ି ତାଙ୍କୁ ଉଠାଇବାକୁ, ତାଙ୍କ ମୁହଁକୁ ଟେକିବାକୁ ଅନେକ ଚେଷ୍ଟାଯତ୍ନ କଲେ –କିନ୍ତୁ କିଛିରେ କିଛି ହେଲା ନାହିଁ । ଗଣେଶ ସେହିପରି କାଷ୍ଠଖଣ୍ଡପ୍ରାୟ ପଡ଼ିରହିଲେ । ଅନେକ କ୍ଷଣପରେ ଗଣେଶ ସେହିପରି ପଡ଼ିରହି କହିଲେ,— "ପ୍ରମିଳା-ତମ ପାଇଁ ଜନ୍ମଦିନ ଉପହାର ଏହି ଫୁଲତୋଡ଼ାଟି ଆଣିଥିଲି, ନିଅ, ମୋ ଦେହ ଭଲ ନାହିଁ । କିଛି ମନେ କରିବ ନାହିଁ, ଯାଅ ! ସ୍ୟାଡ଼େ ମା' ବିରକ୍ତ ହେବେ ।" ଏହା କହି ଛାତି ତଳୁ ନିଜ ଦକ୍ଷିଣ ହାତ କାଢ଼ି ଦଳିତ ନଷ୍ଟପ୍ରାୟ ଫୁଲତୋଡ଼ାଟି ବଢ଼ାଇଦେଲେ । ପ୍ରମିଳା ସାଶ୍ରୁ ନୟନରେ ତାହା ଗ୍ରହଣ କରି ଭାବ ଗଦ୍‌ଗଦ୍ ସ୍ୱରରେ କହିଲେ, "ଗଣେଶଭାଇ, ମୁଁ ଅବିଶ୍ୱାସିନୀ ନୁହେଁଟି ଭାଇ !" ଗଣେଶ କହିଲେ, "ପରୀ, ମୁଁ ବି ଅବିଶ୍ୱାସୀ ନୁହେଁଟି !" ପ୍ରମିଳା ଧୀରେ ଧୀରେ ସେଠାରୁ ଉଠିଲେ । ଭୂତଳଶାୟୀ ଏ ବଳିଷ୍ଠ ଦେହର ଅନ୍ତରାଳରେ ଯେଉଁ ଭୀଷଣ ଯୁଦ୍ଧ ଚାଲୁଥିଲା, ତାହା ଅନୁଭବ କରି ପ୍ରମିଳାଙ୍କର ଅନ୍ତରର ଅନ୍ତରତମ ପ୍ରଦେଶରୁ କୋହ ଉଠିଲା । ସେ ଅଶକ୍ତ ଚରଣରେ ପଳାଇ ଯାଉଁ ଯାଉଁ ଝୁଣ୍ଟି ପଡ଼ିଲେ କି କ'ଣ ଗଣେଶଙ୍କ ଚରଣରେ ମସ୍ତକ ରଖି ଯେତେବେଳେ ସେ ପୁଣି ଅଶ୍ରୁଧାରା ବୁହାଇଦେଲେ, ବ୍ୟସ୍ତ ହୋଇ ଗଣେଶ ଉଠିକରି ତାଙ୍କୁ ବଳପୂର୍ବକ ଉଠାଇ ଧରିଲେ ଓ ଗୁରୁଗମ୍ଭୀର ସ୍ୱରରେକହିଲେ, "ମୁଁ ବୁଝିଛି, ମୁଁ ବୁଝିଛି ପରୀ । ତୁମେ କେତେ ଉଦାର, ମୁଁ ବୁଝିଛି । ମୋର କର୍ତ୍ତବ୍ୟ ମୁଁ କରିବି - ଯାଅ ପରୀ । ଉତ୍ସବରେ ଯୋଗ ଦିଅ !"

କଇଁ କଇଁ ହୋଇ କାନ୍ଦୁ କାନ୍ଦୁ ପ୍ରମିଳା କହିଲେ, "ମୋତେ ଭୁଲ ବୁଝିବନାହିଁ, ଭାଇ ମୁଁ ତୁମରି - ମୁଁ ତୁମରି ।" "ହଁ ମୁଁ ବୁଝିଛି ପରୀ । କିନ୍ତୁ ତୁମେ ଯାଅ ମୋତେ ଏକା ଛାଡ଼ି ଚାଲିଯାଅ । ମୁଁ ତମ ଜନ୍ମଦିନ ଉତ୍ସବରେ ଯୋଗ ଦେଇ ପାରିଲି ନାହିଁ । ଆଉ ମା'ଙ୍କୁ ମୋ ପାଇଁ କହିବ - ମୁଁ ଅସୁସ୍ଥ ଯାଅ !" ପ୍ରମିଳା ଏ ଆଦେଶ ଅମାନ୍ୟ କରିପାରିଲେ ନାହିଁ । ଧୀରେ ଧୀରେ ସେଠାରୁ ବାହାରି ଚାଲିଗଲେ । ଏଣେ ଗୋଟାଏ ମହତ୍ତ୍ୱର ଝଡ଼, ଗୋଟାଏ ମହାନୁଭବତାର ଉତ୍ତାଳ ତରଙ୍ଗ ସେହି କ୍ଷୁଦ୍ର ବକ୍ଷଟିରେ ଅବରୁଦ୍ଧ ହୋଇ ଆତ୍ମପ୍ରକାଶର ଉଚ୍ଚତମ ମାର୍ଗର ସ୍ୱପ୍ନ ରଚନା କରିବାକୁ ଲାଗିଗଲେ ।

x x x x x x

## (୫)

''ହେଇଟି ଚ ଆଈ - ମଲା ଏତେ ରାତିଯାଏଁ ଶୋଇ ନା !'' ''ନାଇଁରେ ବାପ ଉଠୁ ଉଠୁ - ଶୋଉଚି ! ପୁଅକୁ ଅନାଇ ବସିଚି ପରା, କୋଉ ସଞ୍ଜ ପହରୁ ଅଫିସ୍‌ଘରେ ସାରଦା ପାଖରେ ବସି କ'ଣ ପରା ଲେଖାପଢ଼ି କରୁଛି !''

''କିଏ ମାମୁଁ ? ହଁ, ହଁ କାଲି ପରା ପରୀର ନିର୍ବନ୍ଧ ହେବ ନୁହେଁ ? ଆଚ୍ଛା ! ଆଈ ଏମିତିକାଟା କଲ କାହିଁକି ? ଲେଖାପଢ଼ି ନହେଲେ କ'ଣ ହୋଇନଥାନ୍ତା ? ସଭା ହବ, ହଉ - ପାଞ୍ଚଜଣଙ୍କ ଅନୁମତି ନେଇ କାମଟା ହବା ଦରକାର । ଦେଶରେ ତ ଏପରି କେବେ ହୋଇନାହିଁ । ତେବେ ଲେଖାପଢ଼ି କଥା - ସାରଦାବାବୁ ଜିଦି ଧରିଥିବେ— ''

''ନାଇଁରେ ପୁତ — ସାରଦା ଠୁଳେ ମଙ୍ଗୁ ନଥିଲା । ରମାନାଥ ତ ଜିଦି ଧରି ବସିଛି ଲେଖାପଢ଼ି ନହେଲେ ହବନାହିଁ । କ'ଣ ତା'ର ଇଚ୍ଛା କେଜାଣି ! ବୁଝିଲୁରେ ପୁଅ - ହେଁ ସେଇ ବହୂଯୋଗେ ଏତେ କଥା, ଜାଣିଚୁ ? ମୋତେ କିଛି କ'ଣ ପଚାରୁଚି ନା ବିଚାରୁଚି ? ଯାହା ତ ହେବାର ହେଲାଣି - ଉରୀଟାକୁ ଭସାଇ ଦବା କଥା ସିନା ! ଆଉ ବା ତା'ର ଦୋଷ କ'ଣ । ତା' ମା'କୁ ବା କିଛି ନଦେବୁ ନାହିଁ —''

''ହଁ, ଆଈ — ଉର୍ମିଳା କ'ଣ ଏ ବାହାଘରକୁ ଆସିବ ନାହିଁ ?''

''ଆରେ ବୈରାଗୀ, ତୁ ବାୟା ହେଲୁ ନା କ'ଣ ? ମୋ କରମ କଥା ସିଏ ରେ ପୁତ - ଲୁହା ବି ଶକତକୁ କମାର ବି ଶକତ - କେହି କାହାରିକୁ କମ୍ ନୁହଁନ୍ତି ! ପୁଅ ଟିକିଏ କୋହଳ ହେଲାବେଳକୁ ବହୂ ଦି'ଗୁଣ ଚଢ଼ି ବସୁଚି - ବହୂ କଅଁଳ ହେଲାବେଳକୁ ପୁଅ ମାଡ଼ି ବସୁଛି । କାହାକୁ ଏବେ କ'ଣ କହିବି ! ଏଇତ ଏଥର ପୁଅ ଲେଖିଲା ଉର୍ମିଳାକୁ ଏକା ପଠାଇଦିଅ, ନହେଲେ ପ୍ରମିଳା ନାଁରେ ସବୁ ସମ୍ପତ୍ତି ଲେଖିଦେବି । ବହୂ କହିଲା ମୁଁ ଉର୍ମିଳାକୁ ନେଇକରି ଯିବି - ସେଇଥିରୁ ସବୁ ପୁଣି ବିଗିଡ଼ିଗଲା । ଏ ଲେଖାପଢ଼ି ହଉଚି ସବୁ ସେଇଥିଯୋଗେ । ଦେଖ, ବାପ କ'ଣ ହଉଚି - ମୁଁ ତ ଉରୀ ପାଖକୁ ପରୀ ହାତରେ ଚିଠିଲେଖାଇଚି - ଯଦି ତା' ମା'କୁ କହିବୋଲି କରି ଆସିବ ତ ଆସୁ - ପୁଅକୁ ବି ଢେର ବୁଝାଇ କରି କହିଚି - ତା' ପାଇଁ କିଛି ଗୋଟାଏ ବନ୍ଦବସ୍ତ କରିବାକୁ । ହଇରେ ବୈରାଗୀ, ଏତେ ରାତିରେ ତୁ କୁଆଡୁ ଆସିଲୁ !''

''ନାଇଁ, ଆଈ - ମୁଁ ଗୋଟାଏ କଲରେ ଯାଇଥିଲି ଏଇ ଫେରୁଛି !''

"ସତେ— ତୁ ପୁଣି ଯାଇଥିଲୁ କଲରେ ? କଉ ସାଙ୍ଗର ଦିହ ଖରାପ ଥିଲା କହ - ଆମ ବୈରାଗୀ ପୁଣି କଲରେ ଯିବେ - ଏଡ଼େ ଭାଗ୍ୟ !"

"ନାଇଁ ଆଇ, ସତ କହୁଚି - ମୁଁ କଲରେଯାଇଥିଲି । ଏଇ ଦେଖ ୮ ଟଙ୍କା ରୋଜଗାର —"

"ଥାଉ, ଥାଉ - ମୁଁ ଢେର ଦେଖିଚି । ତୋତେ ମୁଁ ଚିହ୍ନି ନାହିଁ ପରା —"

"ଯାଃ — ମୁଁ ଏତେ କରି କହୁଚି ତେମେ ବିଶ୍ୱାସ କରୁନା ? ମୁଁ ଆଜି ପ୍ରତିଜ୍ଞା କରିଛି ଯେତେ ବଡ଼ ସାଙ୍ଗ ହେଲେ ସୁଦ୍ଧା କଲରେ ଗଲେ ଫି'ଟା ନିଶ୍ଚେ ନେବି । ଏଇ ଦେଖ - ୮ଟଙ୍କା କାହା ପାଖରୁ ପାଇଛି, ଜାଣିଚ ? କହିଲ ଭଲା ଆଇ - ଦେଖିବା ତମର କେତେ ବୁଦ୍ଧି !"

"ମୁଁ କହିପାରିବି ନାହିଁ । ତୋରି ଜିତ୍ ହେଲା - କହିଲୁ ଏବେ କିଏ ତୋତେ ଫି ଦେଇ ଡାକିଥିଲା, ଏତେ ଓଲୁ କିଏ ?"

"ତେମେ ଖାଲି ଥଟ୍ଟା କରିବ, ଆଇ - ମୁଁ କହିବି ନାହିଁ ଯାଃ ।"

"ରୋଗୀ ଗଣେଶ - ରୋଗ ପ୍ରେମ । ହସିଲେ ତ ! ଆଜି ୯ଟା ବେଳେ ଗଣେଶ ମୋତେ ଡକାଇ ପଠାଇଥିଲା । ମୁଁ ଗଲିନାହିଁ । କହିଲି ମୁଁ ପ୍ରତିଜ୍ଞା କରିଛି ବିନା କଲ୍‌ରେ କୁଆଡ଼େ ଯିବିନାହିଁ । ସେଇଠୁ ଖଣ୍ଡେ ଚିଠି ଆସିଲା ଗଣେଶ ଭାରି ପୀଡ଼ିତ । କଲରେ ଯିବାକୁ ହେବ । ଗଲି — ଦେଖିଲି ରୋଗ କିଛି ନୁହେଁ, ଖାଲି ପ୍ରେମ । ଅବଶ୍ୟ ସେ କଥା କାହାରିକୁ କହିଲି ନାହିଁ, ଟଙ୍କାଟା ନେଇ ଘଣ୍ଟାଏ ଦି' ଘଣ୍ଟା କେସ୍‌ଟିକୁ ଷଡ଼ି କରି ଚାଲି ଆସିଲି । ବଡ଼ ଗହନ କଥା ଆଇ —"

"ଆରେ ପଗଲା — ତୁ ବି ଯେମିତି ପଗଳା ସେ ଗଣେଶ ବି ସିମିତି ପଗଳା । ନୂଆ ବାହାଘର - ମୁଣ୍ଡ ଭ୍ରମି ଯାଇଥିବ ଟୋକାର ! ଆନନ୍ଦରେ ରୋଗହେଲେ ଡାକ୍ତର ଆମ ବୈରାଗୀ । ହଁ, ସତେ ଫିସ୍ ଟଙ୍କାଟା ଘରୁ ନେଇକରି ଯାଇଥିଲୁ ନା ଆସିଲାବେଳକୁ ଘରୁ ନେଇକରି ଆସିଚୁ କହିବୁଟି —"

"ନାଇଁ ଆଇ - ତମକୁ ମୁଁ ଆଉ ପାରିବି ନାହିଁ । ତେମେ ସିନା ନ ମାନିବ, ହେଲେ ମୁଁ କେଡ଼େ ସଂସାରୀ ଘରକରଣା ଲୋକ ହେଲିଣି ଆଇ କ'ଣ କହିବି ! ଆଜି ସଖାଲେ —"

"ସତେ ? ଆଚ୍ଛା ତୁ କେବେ ବାହାହଉଚୁ କହିବୁଟି ! ତୋ ଘରକରା ବୁଦ୍ଧି କ'ଣ ଜାଣିନାହିଁ ! ଘର ଯିଏ କରିଥାନ୍ତା ସେ ତ ଗଲା – ଆଉ ଛାଡ଼, କେବେ ବାହାହେଉଚୁ କହିବୁ ଟି ?"

"ଆଇ ମୁଁ ଯାଉଛି । ତମେ ମୋତେ ଜମାରୁ ବୁଝିଲ ନାହିଁ । ମୁଁ ଗୁଡ଼ାଏ ଖାଲି ବକିଲେ କ'ଣ ହେବ । ସମସ୍ତଙ୍କୁ ବୁଝାଇ ପାରିଲି - ତମୁକୁ ଖାଲି ପାରିଲି ନାହିଁ –"

"ଆରେ ବୈରାଗୀ - ବସ ବସ ଯାଉଚୁ କୁଆଡ଼େ ! ବସ, ରମାନାଥ ଆସୁ, ସାଙ୍ଗ ହେଇକରି ଖାଇକରି ଯିବୁ ରହିଥା । ବାପ, ତୁ ସମସ୍ତଙ୍କୁ ଠକାଇବୁ – ମୁଁ ବୁଢ଼ୀ ହେଲିଣି, କେତେ ଦେଖିଲିଣି । ମୋତେ କାହୁଁ ଠକାଇବୁରେ ପୁତ ! ନିଜେ ନିଜକୁ ବି ଠକାଉଛୁ । ତା' ବି ମୁଁ ବୁଝିପାରୁଛି ବାପ । କିନ୍ତୁ ଯେତେଦିନ ଯାଏଁ ଆଉ ଗୋଟିଏ ବାହା ନହେବୁ ସେତେଦିନ ଯାଏ ତୁ ଘର କରିପାରିବୁ ନାହିଁ । ଏ କଥା ଠିକ୍ ଜାଣିଥା ! ବାଇୟା କେବେ ଘର କଲାଣି ? ତୋ ପ୍ରତିଜ୍ଞା ଆଜି ଯେତିକି ଟାଣ ଅଛି କାଲି ସଖାଳୁ ସେତିକି ପାଣି ହୋଇଯିବ । ବାପ, ବୁଢ଼ୀ କଥା ମାନ, ନାତୁଣୀ ବହୂଟିଏ ଆଣ, ମୁଁ ମଲା ଆଗରୁ ତାକୁ ତାଲିମ କରିଦେଇ ଯାଏଁ –"

"ଆଚ୍ଛା ସେ କଥା ମୁଁ ମାନିଲି । ନାଇଁ ଗେଲ ନୁହେଁ - ଆଇ ଥାଉଁ ଥାଉଁ ବାହା ହେଲେ ହେବି ନୋହିଲେ ନାହିଁ । ଏଇୟା ତ ମୋର ଇଚ୍ଛା । ମୋ କଥା ପରେ ହବ ଆଇ - କହିବଟି ଆଗେ କାଲି କ'ଣ କ'ଣ ସବୁ ହଉଛି ?"

"କାଲି କ'ଣ ଆଉ ହବ । ଲେଖାପଢ଼ି ହୋଇ କାଗଜ ରେଜିଷ୍ଟରୀ ହବ – ଏ ବାହାଘର କାଳେ ରେଜିଷ୍ଟରୀ ନହେଲେ ହବନାହିଁ । ରମାନାଥତ ପ୍ରାଶ୍ଚିତ କରିବ ନାହିଁ - ମୁକ୍ତିମଣ୍ଡପ ତ ବିଧାନ ଦେଇଗଲା - ପ୍ରାଶ୍ଚିତ କରି ପକାଇଲେ ତ ଯାଇଥାନ୍ତା ! ଆମରି ହିନ୍ଦୁ, କରଣ ଘରର ସବୁ ବିଧି ହବ ଯେ - କାଳେ ସେଥିରେ ବି କ'ଣ ଗୋଳମାଳ ଅଛି - ରେଜିଷ୍ଟରୀ ବି କରିବାକୁ ହବ ! ମୁଁ କି ଜାଣେ ଲୋ ମା !"

"ବାହାଘର ଜାଣି ରେଜିଷ୍ଟରୀ ହବ - ସିଭିଲି ମେରେଜ ହବ ବୁଝିଲି ! ସମ୍ପତ୍ତିବାଡ଼ି ଲେଖାପଢ଼ି ହେବାଟା ପୁଣି କ'ଣ ? ସେଟା ତ ଲେଖାପଢ଼ି ନକଲେ ଚଳନ୍ତା, ଅନ୍ତତଃ ବାହାଘର ପରେ କଲେ ବି ତ ଚଳନ୍ତା !"

''ନାଇଁରେ ବାପ - ରମାନାଥର ଇଚ୍ଛା ବାହାଆଗରୁ ସବୁ ପକ୍କା ହୋଇଯିବ। ଜମି ଜମିଦାରୀ ଗଣେଶ ବୁଝି ଶୁଝି ନେବ - ଖାଲି ବେଙ୍କ ଟଙ୍କାତକ ତା' ନିଜ ନାଁରେ ଯେତକ ଅଛି ନେଇ ସେ କାଳେ ଯାଇ କାଶୀରେ ରହିବ –'

''ସବୁ ତା'ହେଲେ କ'ଣ ଗଣେଶ ନାଁରେ ଲେଖିଦେବ ?''

''ହଁ – ସବୁ, ଖାଲି ମୋର ଯେଉଁ ଜମିଦାରୀଖଣ୍ଡକ ମୋ ନାଁରେ ଅଛି ତାକୁ ମୁଁ ଦଉନାହିଁ। ମୁଁ ମୋର ଯାହାକୁ ଇଚ୍ଛା ତାକୁ ଦେବି। ଉର୍ମିଳା ତ ପୁଣି ବାହା ଚୋରାହେବ - କି କହୁନାହୁଁ କାହିଁକିରେ ବୈରାଗୀ ?''

''ମୋତେ ଏକା ଆଈ ଇୟେ ସବୁ ଚିତ୍ର ପରି ଲାଗୁଛି। ଗଣେଶକୁ ବି କାଳେ ଏଗ୍ରିମେଣ୍ଟ ଲେଖିଦେବାକୁ ହେବ – ଛି, ଛି ! ଜମିଦାରୀ, ହାତୀ, ଘୋଡ଼ାସବୁ ଦିଆହୁଏ - କାହିଁ କଉଁଠି ତ ଲେଖାପଢ଼ି ହୁଏନାହିଁ। ଇୟେସବୁ ନିହାତି ମାମଲତକାରୀ, ବାହାଘରଟା ବି ଶେଷେ ମାମଲାମକଦ୍ଦମା ପରି ଗୋଟାଏ।''

''କାହାକୁ କହୁଛୁରେ ପୁତ - ଇଂରାଜୀ ପଢ଼ି କରି ତ ସବୁ ସାରିଚ - ଦୋଷ କାହାକୁ ଦବୁ ! ଏଇମିତି କାଳେ ବିଲାଇତରେ ବାହାଘର ସବୁ ହୁଏ।''

''ଏଟା ତ ବିଲାତ ନୁହେଁ ଆଈ - ଏଟା ତୁଚ୍ଛା ଆମରି ନିର୍ଲଜ୍ଜ କଟକ ସହର। ଏଠି ଏସବୁ କାଣ୍ଡ କରିବସିଲେ ଦଶ ଜଣ କ'ଣ କହିବେ !''

''ସେଇଥିପାଇଁ ତ ଏ ସଭା ହଉଚିରେ ପୁତ - ସମସ୍ତେ ପାଞ୍ଚ ଲୋକ ଏକାଠି ବସିବେ - କାଗଜ ପଢ଼ି ଶୁଣାଇ ଦିଆଯିବ - ଗଣେଶ ବି ଦସ୍ତଖତ କରିବ - ପରୀ ବି ଦସ୍ତଖତ କରିବ - ରାଜିଗୁଜା ବାହାଘର ବୁଝିପାରୁନାହୁଁ ? କେଲା ଘର କାରଖାନା ବାପ - କହନା, କହନା। ମୁଁ ଏବେ କେତେ ଆଡ଼େ ସମ୍ଭାଳିବି ! ୟାଡ଼େ ପୁଅକୁ ବୁଝାଇବି ନା ସେ ଝିଅଟାକୁ ସମ୍ଭାଳିବି। ମେମ୍ ହେଇକରି ଜନମ ହେଲେ କ'ଣ ହେବ, ସେଟା ତୁଚ୍ଛା ଓଡ଼ିଆଣୀ - ତୁ ତ ଜାଣୁ ସେ ଧରି ବସିଚି ମୁଁ କେଉଁ କାଗଜଫାଗଜରେ ଦସ୍ତଖତ କରିବି ନାହିଁ ''

''ଆଚ୍ଛା – ଗୋଟାଏ କଥା ଆଈ ! ପରୀ ଗଣେଶକୁ ବାହାହବାକୁ ଷୋଳପଣ ରାଜି ତ ? ମୁଁ କାହିଁକି କହୁଥିଲି କି –''

''ତୁ କାହିଁକି ଏ କଥା ପଚାରୁଚୁ ମୁଁ ଜାଣେ । ତୁ ଭାବିଛୁ - କାର୍ତ୍ତିକକୁ ପରୀ ବେଶି ଶରଧା କରେ ନୁହେଁ ? କାର୍ତ୍ତିକ ବିଲାତରୁ ଫେରିଲା ପର୍ଯ୍ୟନ୍ତ କେହି ତା' କଥା ଭାବିନାହାନ୍ତି । ସେ ଫେରିବା ଦିନଠୁଁ ଏକଥା ଏକା ସମସ୍ତଙ୍କ ମନରେ ଖଟକା ଲଗାଇଦେଇଛି । ରମାନାଥ ବି ସେକଥା ମୋତେ କହୁଥିଲା - କିନ୍ତୁ ବାପ ! ଗଣେଶ କଥା ତ ଢେର ଦିନୁ ଠିକ୍ ହୋଇଗଲାଣି - କାର୍ତ୍ତିକ ବିଲାତରେ ଥାଉଁ ଥାଉଁ । ଆଉ ଗଣେଶ ବିଚାରା ପରୀ ବୋଇଲେ ବାଇୟା - ତୁତ ତା' ସାଙ୍ଗ ଭଲ କରି ଜାଣିଥିବୁ - ଏଇଲାଗେ ଆଉ ଉପାୟ କ'ଣ !''

''ବଜାରରେ ହୁରି ପଡ଼ିଚି କାର୍ତ୍ତିକ ପ୍ରମିଳାକୁ ବାହାହଉଚି । ମସ୍ତାନ ଦୋକାନରେ ଏହି କଥା ହଉଥିଲା - ମୁଁ କହିଲି ନାହିଁ - ଗଣେଶ ସଙ୍ଗରେ ପ୍ରମିଳାଙ୍କର ବିବାହ ହଉଛି - ସମସ୍ତେ ହସି କରି ଉଡ଼ାଇଦେଲେ । ସୂରଜମଲ ବଣିଆଁ ଟୋକା ବି ସେଠି ଥିଲା, ସେ କହିଲା ତାଙ୍କ ଦୋକାନରେ ମୁଦିରେ ନାଁ ଲେଖା ହେବାପାଇଁ ଅର୍ଡ଼ର ଦିଆହୋଇଛି - ସେ ଜାଣେ - କାର୍ତ୍ତିକ ନାମ ଖୋଳାହଉଚି ।

''ଯାଃ ଯାଃ – ମଦୁଆ ଟୋକାକୁ କିଏ ଅର୍ଡ଼ର ଦେଇଥିଲା ! ବେହାରମଲକୁ ମୁଁ ନିଜେ ଆଜି ସଖାଳେ ଗଣେଶ ନାଁ ଖୋଳାଇବାକୁ କହିଦେଇଚି ।''

''ଆଚ୍ଛା, ଆଇ – ମୁଁ ଦେଖେଁ, ମାମୁଁ କ'ଣ କରୁଛନ୍ତି । ମୋତେ ସେ ଡକାଇଥିଲେ ପରା –''

''ହଁ, ହଁ ଯା' ତାକୁ ଡାକି ଆଣ - ଏଇଠି ଏକାଠି ଖାଇ ବସି ଗପସପ ହେବ - ଯା' !''

(୬)

କାର୍ତ୍ତିକଚନ୍ଦ୍ର ବିଲାତରୁ ଫେରି କଟକରେ ବେଶିଦିନ ନ ରହୁଣୁଁ ତାଙ୍କୁ ସବୁ ବିରକ୍ତ ଲାଗିଯାଇଥିଲା । ସଖାଳୁ ବିଛଣାରୁ ନ ଉଠୁଣୁ Bed Tea ନାହିଁ । ସେପରି Bathroom ନାହିଁ, Bus ନାହିଁ, ଥିଏଟର ପର୍ଯ୍ୟନ୍ତ ନାହିଁ - ଏ ଦେଶରେ କି ମଣିଷ ରହେ । ତା' ଉପରେ ପୁଣି ଗୁରୁଜନମାନଙ୍କ ଦୃଷ୍ଟି ତଳେ ସଦାସର୍ବଦା ରହିବାକୁ ହେବ । ସମସ୍ତଙ୍କୁ ସନ୍ତୁଷ୍ଟ କରିବାକୁ ହେବ । ବାପାଙ୍କ ସଙ୍ଗରେ ବସି ଖାଇବା ଠାରୁ (ତଳେ ଆସନରେ ବସି) ବୋଉଙ୍କ ବଳାତ୍କାରରେ ସମୟ ଅସମୟରେ ପିଠାଟା, ମାଛ ଭଜାଟା ପର୍ଯ୍ୟନ୍ତ ତାଙ୍କୁ ଅସହ୍ୟ ବୋଧ ହେଉଥିଲା । କାହିଁ ପଇସା ଦେଇ ରୀତିମତ ରେସ୍ତୋରାଁରେ ବା

ହୋଟେଲରେ ପାନଭୋଜନ - କାହିଁ ଏ ବେନିୟମ, ଅତ୍ୟାଚାର । ସମୟ ସମୟରେ ତାଙ୍କ ପ୍ରାଣ 'ମୁକ୍ତି' 'ମୁକ୍ତି' ବୋଲି କାନ୍ଦି ଉଠୁଥିଲା । କୁଞ୍ଜଲତା ସବୁବେଳେ ତାଙ୍କୁ ଥଟ୍ଟା କରୁଥିଲେ ଓ କହୁଥିଲେ ଗୋଟିଏ ଜବରଦସ୍ତ ମାଇକିନିଆ ବାହା ନହେଲେ ସେ ପୋଷ ମାନିବେ ନାହିଁ । କାର୍ତ୍ତିକ ମଧ୍ୟ ପ୍ରାଣେ ପ୍ରାଣେ ବୁଝିପାରୁଥିଲେ ଯଦି ସେ ବିଲାତରେ ବାହାହୋଇ ପଡ଼ିଥାନ୍ତେ ତା'ହେଲେ କ'ଣ ହୋଇଥାନ୍ତା ? ମେମ୍‌ସାହେବକୁ ରଖିବାର ସ୍ଥାନଟି ପର୍ଯ୍ୟନ୍ତ ଯେ ଏ ଘରେ ନାହିଁ । ଆଉ ପରୀ- ସେ ମଧ୍ୟ ଚାହିଁ ବସିଛି । ଯାଉ - ସେତ ପୁରୁଣା କଥା । ଭଗବାନ ରକ୍ଷା କରିଛନ୍ତି ତାଙ୍କୁ । ତଥାପି ନିଜେ ନିଜର ରୁଚି ଅନୁଯାୟୀ ଘର ଓ ଚାକରବାକର କରିବାର ପ୍ରତିଜ୍ଞା କରି ତେବେ ଟିକିଏ ନିଶ୍ଚିନ୍ତ ଅଛନ୍ତି । ପ୍ରାକ୍ଟିସ୍ ଜମୁ ଆଗେ —

ଗଲା ରାତିରେ ତାଙ୍କୁ ଭଲ ନିଦ ହୋଇନାହିଁ । ନହେବାର କଥା ମଧ୍ୟ । ତଥାପି ତାଙ୍କ ମନରେ ଗୋଟାଏ ସ୍ୱସ୍ତି ଆସିଛି ଏତିକି ଜାଣି ଯେ, ପ୍ରମିଳା ତାଙ୍କୁଇ ଚାହେଁ । ଏତେ ବଡ଼ ତଥ୍ୟଟା ଜାଣିପାରି ନିଜ ଭାଇର ପ୍ରତିଦ୍ୱନ୍ଦ୍ୱୀ ସ୍ଥାନରେ ନିଜକୁ ଦେଖି ସ୍ଥିର ରହିବାଭଳି ସମତା ଓ ନୈତିକ ବଳ କାର୍ତ୍ତିକ ବିଲାତରୁ ସୁଦ୍ଧା ସଂଗ୍ରହ କରି ଆଣିପାରି ନାହାନ୍ତି । କ'ଣ କରିବି, କ'ଣ କରାଯାଇପାରେ, ଇତ୍ୟାଦି ଭାବି ଭାବି ଶେଷରେ ସ୍ଥିର କରିଛନ୍ତି ଯେ କିଛି କରିବା ନ କରିବାର ଭାର ତାଙ୍କ ଉପରେ ନାହିଁ । ଏତକ ଯେ ତାଙ୍କର ବିଲାତ ପ୍ରବାସର ଶିକ୍ଷାର ପ୍ରଭାବ ତାହା ମଧ୍ୟ ପାଠକେ ବୁଝି ପାରୁଥିବେ । ନହେଲେ ପୂର୍ବ କାର୍ତ୍ତିକ ହୋଇଥିଲେ ସେ ନିଜେ ଯେ ଏଥିରେ ଅଗ୍ରସର ହୋଇ ନିଜର ପଥ ପରିଷ୍କାର କରିବାକୁ ଛାଡ଼ିନଥାନ୍ତେ । ଆଉ ଗୋଟିଏ ମଧ୍ୟ ଭୟର କାରଣ କାର୍ତ୍ତିକଙ୍କର ଅଛି । ସେ ଉର୍ମିଳାଙ୍କ ଠାରେ ବାଗ୍‌ଦତ୍ତ । ଅବଶ୍ୟ ୪ ବର୍ଷ ପୂର୍ବର ଇତିହାସ - ବିଲାତ ଯିବା ପଥରେ କଲିକତାରେ ସେ ଉର୍ମିଳା ଓ ତାଙ୍କ ମାତାଙ୍କ ହାବୁଡ଼ରେ ପଡ଼ିଥିଲେ ଓ ଅବଶ୍ୟମ୍ଭାବୀ ଯାହା ଘଟିବାର ଥିଲା ତାହା ଘଟିଥିଲା । ସେ ଜାଲରୁ ସେ ଖସିପାରି ନଥିଲେ । ଅବଶ୍ୟ ଉରୀ ତାଙ୍କର ପକ୍ଷପାତୀ ଚିରଦିନ - ସେ ମଧ୍ୟ ତାଙ୍କୁ ଚାହାନ୍ତି । କିନ୍ତୁ ଯେଉଁ ପରୀ ଚିରଦିନ ତାଙ୍କର ବିରୋଧୀ - ଅନ୍ତତଃ ବାହାରେ ସେ ଯଦି ତାଙ୍କୁ ଅନ୍ତରରେ ଚାହେଁ ଯା' ଠାରୁ ବଳି କଥା ଆଉ ଅଛି ! ତା'ଛଡ଼ା କଟକ ଆସି ସେ ଉର୍ମିଳା ଓ ତାଙ୍କ ମା'ଙ୍କର ପୋଜିସନ୍ ବୁଝି ସାରିଛନ୍ତି । ସେମାନେ ପରିତ୍ୟକ୍ତା, କେବଳ ଭରଣପୋଷଣ ତାଙ୍କର ପ୍ରାପ୍ୟ - ରମାନାଥବାବୁଙ୍କର ସମ୍ପତ୍ତିର ମାଲିକ ନୁହଁନ୍ତି କୌଣସି ଅଂଶରେ । ଉର୍ମିଳା ଯଦି ମା'କୁ ଛାଡ଼ି ଆସିଥାନ୍ତା - ତା'ହେଲେ ଅଧାଅଧି ଦୁଇ ଭଉଣୀଙ୍କର ହୋଇଥାନ୍ତା - କିନ୍ତୁ ସେ ତ ଆସିନାହିଁ । ରମାନାଥବାବୁଙ୍କ କାତର କ୍ରନ୍ଦନ

ଓ ମିନତିପୂର୍ଣ୍ଣ ଆବେଦନକୁ ପ୍ରତ୍ୟାଖ୍ୟାନ କରିଛି - ଆସିଥିଲେ କ'ଣ କରିଥାନ୍ତେ ! ବା, ବା ନଆସିଛି ଭଲ ହୋଇଛି । ଭଗବାନ ତାକୁ ରକ୍ଷା କରିଛନ୍ତି । ଖାଲି ରକ୍ଷା ନୁହେଁ - ତାଙ୍କର ଅନୁକୂଳ ହୋଇ ପ୍ରମିଳା ତା' ସଙ୍ଗେ ସଙ୍ଗେ ସମସ୍ତ ସଂପତ୍ତି ଦିଆଇଛନ୍ତି । ଆହା - ଏହା କ'ଣ ହେବ - ଭଗବାନ ! ସେ ନିଜେ ସେ ଦିଗରେ କୌଣସି ଚେଷ୍ଟା ବା କାର୍ଯ୍ୟ କରି ନପାରନ୍ତି - କି ବିଡ଼ମ୍ବନା - ଯାହା କରିବେ ଗଣେଶ ବା ପ୍ରମିଳା - କରନ୍ତୁ ସେଇମାନେ ହିଁ କରନ୍ତୁ - କରିବେ କରିବେ - ନହେଲେ ସେ ନାଚାର, ନହେଲେ ସେ ନିଜେ ଜାଣିଶୁଣି ବଳେ ପଶି କଲେ ଉରୀଠାରେ ବିଶ୍ୱାସଭଙ୍ଗ ହୋଇ ତାଙ୍କର ଅବସ୍ଥା ବଡ଼ ଶୋଚନୀୟ ହୋଇପଡ଼ିବ - ଭଗବାନ, ଉରୀ ବା ତାଙ୍କ ମାତାଙ୍କ ଆଗକୁ ଯେପରି ତାଙ୍କୁ ଯିବାକୁ ନପଡ଼େ । ବୈରାଗୀଭାଇ ନବାକୁ କହିବ କହିଛି - କହୁ ବୈରାଗୀଭାଇ । ସେ ତ ପରୀକୁ ଚାହେଁ, ଚାହୁଁ । ନିଜ ଅବସ୍ଥାର ଜଟିଳତା ଓ କଠିନତା ସେ ସହଜରେ ହୃଦୟଙ୍ଗମ କରିପାରି ନିଶ୍ଚେଷ୍ଟ ରହିବା ହିଁ ଶ୍ରେୟସ୍କର ଭାବି ସବୁ ଭାବନାକୁ ଦୂରକୁ ଫିଙ୍ଗିଦେଇ ଶୋଇବାର ଚେଷ୍ଟା କରି ସୁଦ୍ଧା ବିଶେଷ ଫଳ ପାଇନାହାନ୍ତି । ପ୍ରେମିକର ପୂର୍ଣ୍ଣତା ଓ ଅନନ୍ତ ଆଶାର ଅନନ୍ତ ଚିରବିଶ୍ରାମ ତାଙ୍କୁ ପ୍ରମିଳାଙ୍କର ପଦେ କଥାରେ ମିଳିଯାଇଛି । ତାହାରି ସ୍ମୃତି ତାଙ୍କୁ ଯୁଗପତ୍ ଶାନ୍ତି ଓ ଅଶାନ୍ତି ଆଣିଦେଇଛି । ଫଳରେ ତାଙ୍କର ସୁଖର ପ୍ରଥମ ରଜନୀ ସ୍ୱପ୍ନ-ଜାଗରଣର ସୁଖକର ଦ୍ୱନ୍ଦ୍ୱରେ କଟିଯାଇଛି ।

ସକାଳୁ ନିଦ ଭାଙ୍ଗିକରି କାର୍ତ୍ତିକ ପ୍ରଥମେ ଦେଖିଲେ ବୋଉଙ୍କୁ - ବୋଉ ନିଜେ ଚା' କପ୍ ହାତରେ ଧରି ମୁଣ୍ଡ ପାଖରେ ଛିଡ଼ା ହୋଇଛନ୍ତି । 'ନେ, ଖା ! ତୋର ପୋଖରୀ ହଉନାହିଁ !' ବୋଲି କହି ମଶାରି ଟେକି ଦେଇ ବୋଉ ତାଙ୍କ କପାଳରେ ଅତି ସ୍ନେହରେ ହାତ ବୁଲାଇଦେଲେ । ଧଡ଼ପଡ଼ ହୋଇ ଉଠି କାର୍ତ୍ତିକ ଚା'କପଟା ହାତରେ ନେଇ କହିଲେ, ''ବୋଉ, ତୁ ନିଜେ ଚା' କରିପାରିଲୁ ନା ?'' ''ନାଇଁରେ କୁଞ୍ଜି କରି ପଠାଇଦେଲା ।'' କୁଞ୍ଜି ଅର୍ଥାତ୍ କୁଞ୍ଜଲତା । କାର୍ତ୍ତିକ ମର୍ମେ ମର୍ମେ ଲଜ୍ଜାରେ ମରିଗଲେ କିନ୍ତୁ କୃତଜ୍ଞତାରେ, ସ୍ନେହରେ ପ୍ରାଣ ଭରିଗଲା । ଏହି ଚା' କପ୍‌କ ! ବିଲାତରେ ଯାର ମୂଲ୍ୟ କ'ଣ ? କିଛି ନା - ଘରଭଡ଼ା ଭିତରେ ସକାଳର ଚା'ଟା ଯାଏ । ସେଥିପାଇଁ କିଛି ଦେବାକୁ ହୁଏ ନାହିଁ । ''ମୁହଁ ନଧୋଇ ଚା' ଖାଇବି ବୋଉ ?'' ବୋଲି କହି କାର୍ତ୍ତିକ ଅପରାଧୀ ଓଠଟାକୁ କପ୍‌ଠାରୁ ଦୂରକୁ ଘୁଞ୍ଚାଇ ଦେଇ ବିଛଣାରୁ ଓହ୍ଲାଇବାର ଚେଷ୍ଟା କଲେ । ବୋଉ କହିଲେ, ''ଖା, ଖା - ସେମିତି ଖା !'' ସ୍ୟାତ୍ତୁ କୁଞ୍ଜଲତା କବାଟ ସେପଟୁ ଟିପ୍ପଣୀ ଦେଲେ - 'ଅଧୁଆ ମୁହାଁ ।' କାର୍ତ୍ତିକ ଚା' କପ୍‌ଟି ହାତରେ ଧରି ନିଷ୍ପତିଭ ଓ ବିବ୍ରତ ହୋଇ ରହିଲେ । ବୋଉ କହିଲେ, ''ତୋରି ବୋପା ଅଧୁଆ

ମୁହାଁ - ଯା ହେଉ, ଚା'ତ ଥଣ୍ଡା ହୋଇଯିବ ଆଉ ଖାଇ କ'ଣ ହେବ ? ଖା, ଖା ତୁ - ସେ ବାୟାଣୀଟା କଥାରୁ କ'ଣ ପାଇବୁ ।'' କାର୍ତ୍ତିକ ଚୋରଙ୍କ ପରି ଚା' ଖାଇବାକୁ ଆରମ୍ଭ କରିଦେଲେ । କୁଞ୍ଜଲତା ଗଣେଶଙ୍କ ମଧ୍ୟରେ ସଖ୍ୟ ହେବାର ପାଠକଙ୍କୁ ଜଣାଅଛି । କାର୍ତ୍ତିକଙ୍କୁ କିନ୍ତୁ କୁଞ୍ଜଲତା ଆଡ଼ ହୋଇଚଳନ୍ତି - ଦୁଆର ଆଡୁଆଳରୁ କଥା କହିଲେ ସୁଦ୍ଧା ସମ୍ମୁଖୀନ ହେଲେ ପାଖେଇଯାନ୍ତି । କେଜାଣି କାହିଁକି ଗୋଟିଏ କଠିନ ସଙ୍କୋଚ ତାଙ୍କୁ ବାଧାଦିଏ । ଦୁଆର ସେପଟୁ କୁଞ୍ଜଲତା କହିଲେ, ''ବୋଉ - ମୁଁ ତ ନିପଟ ମଫସଲିୟାଣୀ - ମୋ ଚା' କ'ଣ ତାଙ୍କୁ ଭଲ ଲାଗୁଥିବ କି ! ଏଥର ତାଙ୍କ ପରୀ ନୂଆ'ଉ ଆସିଲେ କୌଣସି କଥାରେ ଅସଜ ହେବନାହିଁ ଯେ ଆଉ ! ଆଖି କାନ ବୁଜି କୌଣସି ମତେ ଚା'ତକ ଖାଇଦିଅନ୍ତୁ ନୋହିଲେ ମୋର ସବୁ ଆୟୋଜନ ବୃଥା ହୋଇଯିବ ! ମୁଁ ଦେଖେଁ ନବ ଉଠିଲେଣି କି ନା –''

ଏହା କହି କୁଞ୍ଜଲତା ଯେଉଁ ଘରେ ଗଣେଶ ଶୁଅନ୍ତି ସେହି ଆଡ଼କୁ ଚାଲିଲେ । ଗଣେଶଙ୍କର ଶରୀର ଅସୁସ୍ଥ ଏ କଥା ତାଙ୍କୁ କାଲି ରାତିରୁ ଜଣା । କାରଣ ଭାତ ବାଡ଼ି ବସି ଲୋକ ଉପରେ ଲୋକ ପଠାଇ ସୁଦ୍ଧା ତାଙ୍କୁ ସେ ଭିତରକୁ ଅଣାଇ ପାରିନଥିଲେ । ଯାହାହେଉ ବାରଣ୍ଡା ବାରଣ୍ଡା ଯାଇ ସେ ଦୁଆର ପାଖରେ ପହଞ୍ଚି ଦେଖିଲେ ଯେ ଦୁଆର ଏ ପର୍ଯ୍ୟନ୍ତ ଖୋଲା ହୋଇନାହିଁ ଅଥବା ଗଣେଶ ଇତି ମଧ୍ୟରେ କାଠଯୋଡ଼ି ଗାଧେଇବାକୁ ଯାଇସାରିଲେଣି କି କ'ଣ ଭାବି ଧୀରେ ଧୀରେ ଫେରୁଥିଲେ । ଏତିକିବେଳେ ଗଣେଶଙ୍କ ଭଣ୍ଡାରି ଟୋକା ଭୀମା ସେଆଡୁ ଆସି କହିଲା, ''ସାନ୍ତାଣୀ, ବାବୁ ଦୁଆରଦେଇ ଭିତରେ ଏକା ଶୋଇଛନ୍ତି - ଯେତେ କବାଟରେ ହାତମାରିଲେ ବି ଶୁଣିବାକୁ ନାହାନ୍ତି - ଆଜି ପରା ଏତା ହବ ହଁ, ଏତା କନିଆଁ ଘରକୁ ଯିବେ –'' । କୁଞ୍ଜଲତା କିଛିକ୍ଷଣ ଭାବି କହିଲେ, ''ହଉ ହଉ ଶୁଅନ୍ତୁ - କାଲି ରାତିରେ ଦିହର ସୁଖ ନଥିଲା - ଯାଉ ଯାଉ ତ ଦଶଟା - ଏଇନା ବେଳ ଅଛି । ହଇରେ ଭୀମା କାଲି ବାବୁ ଦାଣ୍ଡରେ ଥିଲାବେଳେ କିଏ ସବୁ ଆସିଥିଲେ କି ? କ'ଣ ବଇଠକଖାନାରେ ହଉଥିଲା କିରେ କାଲି ?'' ''ନାଇଁ ସାନ୍ତାଣୀ, ବାବୁ ମୋତେ ବଇରାଗୀ ଡାକ୍ତରକୁ ଡାକି ଆଣିବାକୁ କହିଲେ - ମୁଁ ଏତା ସପଟି ଗଲି । ସାନ୍ତାଣୀ କ'ଣ କହିବି, ସେ ଡାକ୍ତର ବାପୁଡ଼ା ନାଇଁ ଏତା - ଡାକ୍ତରବାବୁ କହିଲା - ମୋର ଟଙ୍କା ଆଣ ଯା ! ମୁଁ ପୁଣି ଏତା ଧାଇଁ ଧାଇଁ ଆଇଲି । ବାବୁ ଟଙ୍କା ଦେଲେ ମୁଁ ଯାଇ ସେ ଡାକ୍ତରକୁ ଟଙ୍କା ଦେଲି ତେବେ ସେ ଏତା ଡାକ୍ତର ଯାଇଁ ଆସିଲା । ତିନି ଥର ଦରଘା ବଜାରକୁ ଦଉଡ଼ି ଦଉଡ଼ି ସାନ୍ତାଣୀ - ମୋତେ ଏମିତିକା ଥକ୍କା ଲାଗିଲା ମୁଁ ଏତା କବାଟ କୁଣରେ ବସୁ ବସୁ ଶୋଇପଡ଼ିଲି -

ଡାକ୍ତର ବାପୁଡ଼ା ଏତା ବାବୁଙ୍କୁ କ'ଣ ଦେଲା - କ'ଣ କଲା ମୋର ଆଉ ମୂଳେ ହେଜ କରିଛି କି -''

''ହୁଁ, ବୈରାଗୀ ଡାକ୍ତର ଆସିଥିଲେ ନାଇଁ ? ପୁଣି ଟ୮ଙ୍କା ଫି ନେଇ ? ତୁ ଚିଲମଫିଲମ ଟାଣିନାହୁଁ କିରେ ?''

''ନାଇଁ ଆଇଜ୍ଞା - ମୁଁ ଏତା - ଚିଲମ ଏତା –''

''ହଉ ଯା – ଏଇନାଗେ ବାବୁଙ୍କୁ ଆଉ ଡକାହକା କରିବୁ ନାହିଁ – ୮ଟା ବେଳେ ମୁଁ ଆସି ଉାକିଦେବି ।'' ଭୀମା ଚାଲିଗଲା । କୁଞ୍ଜଲତା ଭାବିବାକୁ ଲାଗିଲେ - ବୈରାଗୀ ଡାକ୍ତର କାହିଁକି ଆସିଥିଲା । ପାଖରେ ତ' ଅଚ୍ୟୁତବାବୁ ବଡ଼ ଡାକ୍ତର - ନିତି ଆସି ବୁଲିଯାଉଛି - ସେ ଅଛତରା ବୈରାଗୀ ଡାକ୍ତରକୁ ପୁଣି ଟଙ୍କା ଦେଇ ଅଣା ହେଉଥିଲା କାହିଁକି । ହଁ ସାଙ୍ଗସୁଖ - ମନ ଖୋଲାଖୋଲି ହୋଇ ଗପ କରିବାକୁ ଡକାଉଥିବ - ଇମିତି କି ରୋଗ ଯେ, ଭାବି ଭାବି ଏ ଘର ସେ ଘର ହୋଇ ଯାଇ ନିଜ କାମରେ ମନ ଦେବାକୁ ଗଲେ କିନ୍ତୁ କାହିଁରେ ମନ ଲାଗିଲା ନାହିଁ । ଖାଲି ରହି ରହି କିପରି ଗୋଟାଏ ଖଟକା ମନରେ ଲାଗିବାକୁ ଲାଗିଲା - ଗଣେଶର କ'ଣ କାହିଁକି ହେଲା । ଆଜି ତାର ବଡ଼ ଦିନ — ଆଉ ସେ ଚିରଦିନ ବଡ଼ ସକାଳୁ ଉଠେ, କେହି ନଉଠୁଣୁ ତା' ଗାଧୁଆପାଧୁଆ ସରିଥାଏ । ଆଜି ସତରେ କ'ଣ ଦେହ ଖରାପ ହେଲା ନା ଆଉ କିଛି । କୁଞ୍ଜଲତାଙ୍କ ମନ କୌଣସିମତେ ମାନିଲା ନାହିଁ । ତାଙ୍କୁ ଅବଶ୍ୟ ଏ କଥା ଭଲରୂପେ ଜଣା ଯେ ଏଇ ଯେ ସବୁ ସଭା କରି ଲେଖାପଢ଼ି ରାଜିଖୁସି କରି ବାହା ହେବାର ସ୍ଥିର କରାଯାଇଛି ଏ ସବୁ ଗଣେଶର ପସନ୍ଦ ନୁହେଁ - ସେ ସଭାରେ କ'ଣ କରିବ, କ'ଣ କହିବ ଏଇୟା ଭାବି ମହାବିପଦରେ ପଡ଼ିଥିଲେ, ଏକଥା ମଧ କୁଞ୍ଜଲତାଙ୍କୁ ଭଲରୂପେ ଜଣାଅଛି- ତା' ବୋଲି ଯେ ସେ ଭୟରେ ବା ଲଜ୍ଜାରେ ଘରୁ ନ ବାହାରିବ ବା ତା'ର ଚିର ଅଭ୍ୟସ୍ତ କାର୍ଯ୍ୟାବଳୀର ବ୍ୟତିକ୍ରମ ଘଟିବାକୁ ଦେବ ସେ ପାତ୍ର ବି ତ ଗଣେଶ ନୁହେଁ । ନାଃ - ନିଶ୍ଚୟ ତା'ର କିଛି ହୋଇଛି ।

କୁଞ୍ଜଲତା ପୁଣି ଗଣେଶଙ୍କ ଘରଆଡ଼କୁ ଅନ୍ୟମନସ୍କ ଭାବରେ ଚାଲିବାକୁ ଲାଗିଲେ । ହଠାତ୍ ତାଙ୍କର ନଜର ପଡ଼ିଲାରୁ ଦେଖିଲେ ସେପଟ ବାରଣ୍ଡାରେ ଗଣେଶ ବିଷମ ବେଗରେ ଦଣ୍ଡକସରତ କରିଯାଉଛି । ଟିକିଏ ବିସ୍ମିତ ଟିକିଏ ନିଶ୍ଚିନ୍ତ ହୋଇ ଅପେକ୍ଷା କରି ରହିଲେ କସରତ କେତେବେଳେ ସରିବ । କସରତ ଶେଷରେ ଗଣେଶ

ଯେତେ୍‌ବେଳେ ଗୋଟାଏ ଚିଲାରେ ଚାରିହାତ ପାଞ୍ଚହାତ ବାଟ ଆଗେଇ ଆସିଲେ ସେତେବେଳେ ହସ ହସ ମୁହଁରେ କୁଞ୍ଜଲତା କହିଲେ, ''କି ଗୋ ଆଜିତ ଭାରି ଫୂର୍ତ୍ତି –'' ଗ୍‌ଣେଶ ମଧ୍ୟ ଅନ୍ୟମନସ୍କ ଥିଲେ କି କ'ଣ ଚମକି ପଡ଼ିଲାପରି ଫେରିକହିଲେ, ''କିଏ ନୂଆ'ଉ ?'' - ହୁଁ -। କୁଞ୍ଜଲତା ମଧ ତାଙ୍କର ଆହୁରି ପାଖକୁ ଆସି ପଚାରିଲେ, ''ତମର ପରା ଆଜି ନିର୍ବନ୍ଧ - ତମର ପୁଣି ଆଜି ଏତେ ଉଛୁର ? କ'ଣ ହେଇଛି ତୁମ ଦିହ ?'' ଗଣେଶଙ୍କ ମୁହଁରେ ହଠାତ୍ ମେଞ୍ଚାଏ କାଳି ଯେପରି ବୋଳିହୋଇଗଲା । ସେ ଅସଂଯତ ଚରଣରେ ନିଜ ଘର ଭିତରକୁ ପଳାଉ ପଳାଉ କହିଲେ, ''ନୂଆ'ଉ - ତେମେ ଯା', ମୁଁ ତମ ସାଙ୍ଗରେ ଏଇନା କିଛି କଥାଭାଷା କରିପାରିବି ନାହିଁ। ରାଗିବ ନାହିଁ, ନୂଆ'ଉ - ମୋ ରାଣ !'' କୁଞ୍ଜଲତା ଅଧିକତର ଆଶ୍ଚର୍ଯ୍ୟାନ୍ୱିତ ହୋଇ କହିଲେ, ''ମଲା ଇୟେ କ'ଣ ମ ?'' ଭିତରୁ ଦୁଆର ବନ୍ଦ କରିଦେଇ ଗଣେଶ ମିନତି ସ୍ୱରରେ କହିଲେ, ''ନୂଆ'ଉ, ତମେ ଯା' - ତମ ପାଖରେ ଅସତ୍ ହେବାକୁ ହେବ ଯଦି ତେମେ ରହ -''। ''ହଉ'' ବୋଲି କହି ଅଧେ ଅଭିମାନରେ ଅଧେ ରାଗରେ କ୍ଷୁଣ୍ଣ ମନରେ କୁଞ୍ଜଲତା ଧୀରେ ଧୀରେ ସେଠାରୁ ଚାଲିଗଲେ ।

\+ + + + +

''ଆରେ ଭୀମା - ଭୀମା - ଗଲା କୁଆଡ଼େ ଶଳା !''

''ଆଇଜ୍ଞା - ଯାଉଛି !'' ଆରେ ଦାଣ୍ଡ ଘଡ଼ିରେ କେତେଟା ବାଜିଲା ଦେଖିଆସିଲୁ ।''

''ଆଇଜ୍ଞା ! ୯ଟା ବାଜି ନଥିଲା - ଏତା ସାତ ମିନିଟ୍ ଏତା ଥିଲା - ଫେରେ ଦେଖି ଆସିବି ।''

''ନାଁ ବେ - ଡାକ୍ତର ପାଖରୁ ଔଷଧ ଆସିଲା ?''

''ଆଇଜ୍ଞା ! ଏତା - ରଙ୍ଗିୟା ଯାଇଛି - ଦେଖିବି ଟିକିଏ ଏତା '' ଆଗେଇ ଯାଇ ।

''ନା ଥାଉ, ଆସିଲେ ଏଇଠି ରଖିବୁ - ମୁଁ ଯାଉଚି - ନୂଆ'ଉଙ୍କ ପାଖରୁ ଆସେ -''

''ହଉ ଆଇଜ୍ଞା - ଔଷଧ ଆସିଲେ ଏତା ସାନ ସାନ୍ତାଣୀଙ୍କ ଘରକୁ ନେଇଯିବି ଚାଲ -'' । ଶେଷ କଥାଗୁଡ଼ିକ ନିମ୍ନ ସ୍ୱରରେ କହି ଭୀମା ଆଡ଼େଇ ଛିଡ଼ାହେଲା । ନୂଆ ଲୁଗା ଚାଦର ପିନ୍ଧି ଗଣେଶ ଥଙ୍ଗଥଙ୍ଗ ହୋଇ କୁଞ୍ଜଲତାଙ୍କ ଘର ଆଡ଼କୁ ଚାଲିଲେ ।

କୁଞ୍ଜଲତା ନିଜ ଘରେ କୋଣଟାରେ ବସି ବୁଢ଼ାବୁଢ଼ୀଙ୍କ ପାଇଁ ପାନ ଭାଙ୍ଗୁଥିଲେ । ଗଣେଶ ଟିକିଏ ମନ୍ଦ ମନ୍ଦ ହୋଇ ଯାଇ ହଠାତ୍ ଭୂମିଷ୍ଠ ହୋଇ ଦଣ୍ଡବତ କରି କହିଲେ, ''ନୂଆ'ଉ ଯାଉଛି ।'' ''ଜୟୀ ହୁଅ ।'' ବୋଲି କହି କୁଞ୍ଜଲତା ତାଙ୍କୁ ଗେଲକରି ଉଠାଇଦେଲେ । ରାଗ ଅଭିମାନ ଯାହା ମନରେ ଥିଲା, ସବୁ କୁଆଡ଼େ ଦଣ୍ଡକେ ଉଭେଇଗଲା । ଗଦ୍‌ଗଦ୍ କଣ୍ଠରେ କହିଲେ, ''ନବଭାଇ, ଯାଅ ! ସୁଖୀ ହୁଅ !'' ଗଣେଶଙ୍କ ଆଖି ଛଳଛଳ ହୋଇ ଆସିଲା - ଗୋଟାଏ ଦୁର୍ଜୟ କୋହ କାହୁଁ ଆସି ତାଙ୍କୁ ବାକ୍‌ଶକ୍ତିହୀନ କରିଦେଲା । କ୍ଷଣକେ ମନେ କଲେ ନିଜର ଦୁଃଖର କାହାଣୀ, ନିଜର କଠୋର ପ୍ରତିଜ୍ଞାର ଗଭୀର ବେଦନା - ଏହି ସହାନୁଭୂତିରେ ନିଜକୁ ଭସାଇ ଦେଇ ନିଉଭାର କିଞ୍ଚିତ ଲାଘବ କରିବେ । ତାଙ୍କ ଅନ୍ତରାତ୍ମା ଜାଣିପାରୁଥିଲା ଯେ ସେ ତାଙ୍କର ଏହି ଦେବୀପ୍ରତିମ ଭ୍ରାତୃବଧୂ ଠାରେ ମଧ୍ୟ ଆଜି କପଟାଚାରୀ, ଯାହାପାଖରେ ଦିନେ ବୋଲି ସତ୍ୟ ଛଡ଼ା ମିଥ୍ୟା ସେ କହିନାହାନ୍ତି । ତାଙ୍କୁ ହିଁ ସେ ପ୍ରବଞ୍ଚନା କରିବାକୁ ବାଧ୍ୟ । ସମସ୍ତେ ତାଙ୍କୁ ଯାହା ଭାବନ୍ତୁ - ନୂଆ'ଉଙ୍କ ଠାରେ ସେ ସଦା ନିଷ୍କପଟ, ଚିର ସତ୍ୟବାଦୀ, କିନ୍ତୁ ଆଜି — ପ୍ରାଣ ବ୍ୟାକୁଳ ହୋଇ ଉଠିଲା, ପ୍ରାଣର ସମସ୍ତ ଆବେଗ ଓ ସଂକଳ୍ପଭାର ସେହି ମୌନ ନିଶ୍ଚଳ ଦେବୀପ୍ରତିମ ଭ୍ରାତୃବଧୂର ଚରଣରେ ନିବେଦନ କରି ନିଜକୁ ଆହୁରି ଦୃଢ଼ କରିନେବାକୁ - କିନ୍ତୁ କି ଯେ କଠିନ ଲଜ୍ଜାର ବାଷ୍ପରାଶି ଆସି ତାଙ୍କ କଣ୍ଠରୁଦ୍ଧ କରିଦେଲା ତାହା ଗଣେଶ, ଚରିତ୍ରଜ୍ଞ କୁଞ୍ଜଲତାଙ୍କର ମଧ୍ୟ ଅବୋଧ । ଯେତେବେଳେ ବାକ୍‌ଶକ୍ତି ଫେରିଆସିଲା ସେତେବେଳେ ଗଣେଶ ନିଜକୁ କହୁଥିବାର ଶୁଣିଲେ, ''ନୂଆ'ଉ, ନୂଆ'ଉ ଆଜି ମୋର ସବୁ ବଦଳିଯାଇଛି - ଆଉ ଅଳ୍ପକ୍ଷଣପରେ ଜାଣିପାରିବ ମୁଁ ଆଜି କେଉଁ ନିର୍ବନ୍ଧର କଠୋର ଅଙ୍ଗୀକାର କରିଦେଲି ଆଜିଠାରୁ । ତମେ ଯାହା ଶୁଣିବ ସେଥିରେ ଆଶ୍ଚର୍ଯ୍ୟ ହେବନାହିଁ । ତମ ନବା ତମ ଠାରେ ବି ଯେ ବଦଳିଗଲା ଯା ଭାବି ରାଗିବ ନାହିଁ । ଆଶୀର୍ବାଦ କର ଆଜି ଯେଉଁ ଦୁର୍ଗମ ପଥରେ ସେ ଅଗ୍ରସର ହେବାକୁ ବସିଛି ସେ ପଥର କଷ୍ଟ ଯେପରି ତାଙ୍କୁ ତମରି ପରି ବଡ଼, ତମରି ପରି ମହାନ୍ କରୁ —''

''କ'ଣ କହୁଛ ଏଗୁରା ନବ - ଛି - ଏ କ'ଣ ? ମୁଁ ମୁହଁରେ କ'ଣ ଆଶୀର୍ବାଦ କରିବି ତୁମକୁ - ତେମେ ଜାଣ -''

"ଛି ଛି ନୂଆ'ଉ - ମୁଁ ପରା ଆଜି ଅତି ବଡ଼ କାର୍ଯ୍ୟରେ ବାହାରିଛି - ଛି କାନ୍ଦନାହିଁ ନୂଆ'ଉ ।"

ଗଣେଶ ଯେପରି ଆସିଥିଲେ ସେହିପରି ହଠାତ୍ ସେଠାରୁ ପଳାଇଗଲେ ନିଜେ କାନ୍ଦିଲା ପରି ହୋଇ । କୁଞ୍ଜଲତା ଭାବି ଭାବି କିଛି ସ୍ଥିର କରିପାରିଲେ ନାହିଁ । କାହିଁକି ଆଜି ଗଣେଶର ଏ ପାଗଳାମି ବାହାରିଛି । ତାଙ୍କ ପକ୍ଷରେ ଏପରି ପାଗଳାମି କିଛି ନୂତନ ନହେଲେ ସୁଦ୍ଧା କେଉଁ ବିଶେଷ ଘଟନାକୁ ଲକ୍ଷ୍ୟ କରି ଗଣେଶର ଏତେଗୁଡ଼ାଏ ବକ୍ତୃତା ହୋଇଗଲା ସେ ବିଷୟରେ ତାଙ୍କର ଏଇନା ଯଥେଷ୍ଟ ଦ୍ୱିଧା ପହୁଞ୍ଚିଗଲାଣି । ଭାବି ଭାବି କିଛି କୂଳକିନାରା ନ ପାଇ ଶେଷରେ ସ୍ଥିରକଲେ ସେ ନିଜେ ଯିବେ, ଯାଇ ଦୃଶ୍ୟପଟର ପଛଆଡୁ ଦୃଶ୍ୟର ତଥ୍ୟ ସଂଗ୍ରହ କରିବେ । ସଙ୍ଗେ ସଙ୍ଗେ ଉଠି ବୋଉଙ୍କୁ ଧରିଲେ ଯେ ଏକା ଏକା ତାଙ୍କ ମନ ଏଠି ଲାଗୁନାହିଁ । ଗାଡ଼ି ମଗାନ୍ତୁ ଏଇକ୍ଷିଣା, ତାଙ୍କ ଘରକୁ ଯିବା, ଆଉ ଘଣ୍ଟାଏ ଅଛି । ବୋଉ ମଧ୍ୟ ଛଟପଟ ନିଜେ ହେଉଥିଲେ କେବଳ କୁଞ୍ଜି କାମ ସରିନାହିଁ ବୋଲି ବସିଥିଲେ । କହିଲେ, "କୁଣା ଗାଡ଼ିରେ ଆମକୁ ନେଇଯିବ କହିଯାଇଚି - ଟିକିଏ ରହ -" କୁଞ୍ଜଲତା କହିଲେ, "ନାଇଁ ବୋଉ, ମୁଁ ଆଗେ ଯାଉଛି -"

(୭)

ପ୍ରମିଳାଙ୍କୁ ସାରା ରାତି ନିଦ ହୋଇନାହିଁ । ତାଙ୍କରି ଦୁର୍ବଳତା ଯେ ତାଙ୍କରି ସର୍ବନାଶ କରୁଛି ଏଟା ସେ ସ୍ଥିର ସିଦ୍ଧାନ୍ତ କରିସାରିଛନ୍ତି ଅଥଚ ବେଳେବେଳେ ମନେ ହେଉଛି ସେଟା ତାଙ୍କର ଦୁର୍ବଳତା କାହିଁକି ହେବ ! ହୃଦୟ ଡାକ ସେ-ଶୁଣି ବୁଝି ଯଦି ନଜାଣିଲା ପରି ନିଜର ପୂର୍ବ ସ୍ୱୀକୃତି ଅନୁସାରେ କାର୍ଯ୍ୟ କରିଥାନ୍ତେ ତାହେଲେ ସେଟାବି କ'ଣ ଦୁର୍ବଳତା ହୋଇନଥାନ୍ତା ? ସାରା ରାତି ସେ ନିଜର ଅନ୍ତରଟାକୁ ଏପାଖ ସେପାଖ ଓଲଟପାଲଟ କରି ଦେଖୁଛନ୍ତି, କାର୍ତ୍ତିକ ଓ ଗଣେଶ - ଏ ଦୁହିଁଙ୍କ ମଧ୍ୟରୁ କାହାକୁ ସେ ଅଧିକ ଚାହାନ୍ତି ! ଦୁହିଁଙ୍କୁ ସେ ନିଶ୍ଚୟ ସ୍ନେହ କରନ୍ତି ଏଥିରେ ସନ୍ଦେହ ନାହିଁ ତେବେ କାହାକୁ ବେଶି ? କାହାକୁ ସେ ସ୍ୱାମୀ ରୂପେ ପାଇଲେ ସୁଖୀ ହୁଅନ୍ତେ ? ଏ ପ୍ରଶ୍ନର ସମାଧାନ ଇତି ପୂର୍ବରୁ ଶତାଧିକବାର କରିସାରିଥିଲେ ସୁଦ୍ଧା ବର୍ତ୍ତମାନ ଗଣେଶଙ୍କ ପକ୍ଷ ନେଇ ସେ ନିଜ ବିରୋଧରେ ଦଣ୍ଡାୟମାନ ହେବାକୁ ବ୍ୟଗ୍ର ହୋଇଉଠିଛନ୍ତି । ସେ ଯେ କେତେ ବଡ଼ ଆଘାତ ଆଜି ସନ୍ଧ୍ୟାରେ ଗଣେଶଙ୍କୁ ଦେଇଛନ୍ତି ତାହା ଥରେ ମାତ୍ର ତାଙ୍କର ମୌନ ଭୂଲୁଣ୍ଠିତ ମୂର୍ତ୍ତିଟି ଦେଖି ସେ ମର୍ମେ ମର୍ମେ ଉପଲବ୍ଧି କରିପାରିଛନ୍ତି ।

କାର୍ତ୍ତିକଙ୍କୁ ବିବାହ କରି ସେ ସୁଖୀ ହୋଇପାରନ୍ତି କିନ୍ତୁ ଗଣେଶଙ୍କର ଅବସ୍ଥା ଯେ, କ'ଣ ହେବ ଏହା ଭାବିଲା ବେଳକୁ ତାଙ୍କର ହୃତ୍‌କମ୍ପ ହେଉଛି । ନାଃ - ସେ ଯା କୌଣସି ମତେ କରିପାରିବେ ନାହିଁ । ଲୋକେ ପୁଣି କ'ଣ କହିବେ - ଛି !

ଆଉ କାର୍ତ୍ତିକ ? ତାଙ୍କର ପୁଣି କ'ଣ ହେବ - ସେ ତ ତାଙ୍କର ପିଲାଟି ଦିନରୁ ପକ୍ଷପାତୀ ନଥିଲେ ବରଂ ଉର୍ମିଳାର ଅଧିକ ପକ୍ଷପାତୀ ଥିଲେ । ସେଇଥିପାଇଁ ସମ୍ଭବତଃ ନିଭୃତରେ ହୃଦୟକୋଣରେ ପ୍ରମିଳା କାର୍ତ୍ତିକଙ୍କୁ ହିଁ ଚିରଦିନ ବସାଇ ଆସିଛନ୍ତି । କର୍ମକ୍ଷେତ୍ରରେ ପଦେ ପଦେ ସେ କାର୍ତ୍ତିକଙ୍କର ବିପକ୍ଷତା କରିଛନ୍ତି ସତ କିନ୍ତୁ ସେଟା କେବଳ ଉରୀ ଯୋଗୁଁ । ବାଲ୍ୟକାଳର ଅନେକ କଥା ଆଜି ତାଙ୍କର ମନେପଡୁଛି । କିପରି କାର୍ତ୍ତିକ ଉର୍ମିଳାର ହୋଇ ଗଣେଶଙ୍କ ସଙ୍ଗରେ କଳି ତକରାଳ କରନ୍ତି - କିପରି ସେ ନିଜେ ଗଣେଶଙ୍କ ହାତଧରି ଦୁହିଁଙ୍କୁ ଛଡ଼ାଇ ଦିଅନ୍ତି ଓ ବିଜୟୀ କାର୍ତ୍ତିକ କିପରି ଉର୍ମିଳାକୁ ନେଇ କେତେ ଉଲ୍ଲାସରେ ଅନ୍ୟତ୍ର ଖେଳିବାକୁ ଚାଲିଯାନ୍ତି ଓ ଗଣେଶ ତାଙ୍କର ସ୍ୱାଭାବିକ ଗାମ୍ଭୀର୍ଯ୍ୟ କ୍ଷଣକ ପାଇଁ ପରିତ୍ୟାଗ କରି ତାଙ୍କ ହାତଟି ଧରି ଗଭୀର ତୃପ୍ତି ସହିତ ତାଙ୍କୁ ଆଣି ଘରେ ଛାଡ଼ିଯାନ୍ତି ଆଉ ସେ ହୃଦୟଭରା ଅତୃପ୍ତି ନେଇ କିପରି କାର୍ତ୍ତିକ ଓ ଉର୍ମିଳାଙ୍କ ଫେରିଲା ବାଟକୁ ଉଦଗ୍ରୀବ୍ ଓ ସତୃଷ୍ଣ ନୟନରେ ଚାହିଁ ବସିଥାନ୍ତି । ଦୁର୍ଦ୍ଦାନ୍ତ ଉର୍ମିଳା ତାଙ୍କ ଉପରେ ଅତ୍ୟାଚାର କଲେ, କାର୍ତ୍ତିକ ଯେତେବେଳେ ଲକ୍ଷ୍ୟ କରନ୍ତି ସେତେବେଳେ ତାଙ୍କ ହାତ ଧରି ନିର୍ଭର ସ୍ନେହରେ ଟାଣି ଆଣନ୍ତି ସେତେବେଳେ ଉର୍ମିଳା କିପରି ଉପେକ୍ଷା ଦୃଷ୍ଟିରେ ଗ୍ରୀବାଭଙ୍ଗୀ କରି ପଳାଇଯାଏ ଓ କାର୍ତ୍ତିକ କିପରି ବ୍ୟସ୍ତ ହୋଇ ତାଙ୍କୁ ସେହିପରି ଛାଡ଼ି ଉର୍ମିଳା ପଛରେ ଗୋଡ଼ାଇଯାନ୍ତି । ଗଣେଶ ଓଡ଼ିଆରେ ଉର୍ମିଳାକୁ କିଛି କହିଲେ ଉର୍ମିଳା କିପରି ଗର୍ବିତଭାବରେ ବଙ୍ଗଳାରେ କାର୍ତ୍ତିକଙ୍କୁ ଅନାଇ କହନ୍ତି ଓ କାର୍ତ୍ତିକ କିପରି ଉର୍ମିଳା ସଙ୍ଗରେ ଶତ ନିଷେଧ ଉପେକ୍ଷା କରି ସବୁବେଳେ ବଙ୍ଗଳାରେ କଥାବାର୍ତ୍ତା କରନ୍ତି; ଗଣେଶଙ୍କୁ ବଙ୍ଗଳା ଭଲ କହି ଆସେନା, ଠିକ୍ ତାଙ୍କରି ପରି - ଗଣେଶ କେଉଁ ବଙ୍ଗଳାରେ କଥା କହିପାରନ୍ତି ନାହିଁ ବୋଲି ଉର୍ମିଳା ଠାରୁ ଅଧିକ ସେଇ ନିଜେ ତାଙ୍କୁ ମନେ ମନେ ଅଗ୍ରାହ୍ୟ କରନ୍ତି - କାର୍ତ୍ତିକ କେଡ଼େ ପରିଷ୍କାର ବଙ୍ଗଳା କହିପାରନ୍ତି !

ଏହିପରି ସବୁ କେତେ କେତେ ହୃଦୟର ଅନ୍ତରତମ ପ୍ରଦେଶର ଋପ୍ତକଥା ଆଜି ପ୍ରମିଳାଙ୍କର ମନେପଡ଼ି ତାଙ୍କୁ ଅଧିକତର ବିଚଳିତ କରିପକାଉଅଛି । କାର୍ତ୍ତିକଙ୍କ ଅନୁପସ୍ଥିତିରେ ଗଣେଶ ଏକେଶ୍ୱର ହୋଇ ତାଙ୍କ ସମ୍ମୁଖରେ ବିରାଜମାନ କରୁଥିଲେ ।

ତାଙ୍କଠାରେ ଯେ ଗଣେଶ ଅଧିକତର ଅନୁଗତ ସେ କଥା ପ୍ରମିଳାଙ୍କୁ ଚିରଦିନ ଜଣା ତଥାପି ତାଙ୍କ ପ୍ରତି ପ୍ରକୃତରେ କେଭେଁ ଆକୃଷ୍ଟ ହୋଇନଥିଲେ । କିନ୍ତୁ ଯେତେବେଳେ ସେହି ଗଣେଶ ପୁଣି ମାସ ପରେ ମାସ ତାଙ୍କ ତ୍ରିସୀମାନା ମାଡ଼ିଲେ ନାହିଁ — ଏ ସେତେବେଳର କଥା ଯେତେବେଳେ ଗଣେଶ ବିବାହ ନକରିବାର ଭୀଷ୍ମପ୍ରତିଜ୍ଞା କରି ବସିଥିଲେ - ସେତେବେଳେ ନାରୀହୃଦୟ ତାଙ୍କର ଗଣେଶଙ୍କ ପାଇଁ ହିଁ ବ୍ୟାକୁଳ ହୋଇଉଠିଥିଲା । ସେହି ପୁନର୍ମିଳନ ଅବସରରେ କି ରିଆକ୍‌ସନ୍ ବଳରେ ପ୍ରମିଳା ବଶୀଭୂତ ହୋଇ ଗଣେଶଙ୍କୁ ବାଗ୍‌ଦାନ କରି ପକାଇଥିଲେ । ହାୟ ! ସେତେବେଳେ ଯଦି ସେ ଟିକିଏ ନିଜ ହୃଦୟକୁ ଦରାଣ୍ଡି ଦେଖିଥାନ୍ତେ !

କିନ୍ତୁ ବାଗ୍‌ଦାନ କରିଛନ୍ତି ତ ଆଉ ବର୍ତ୍ତମାନ ଉପାୟ କ'ଣ ? ଆଜି କାର୍ତ୍ତିକଙ୍କୁ ଏଂ ଭାବରେ ହୃଦୟ ନିବେଦନ କରିବା ତାଙ୍କର ଘୋରତର ଅନ୍ୟାୟ ଓ ଚପଳମତି ଓ ଦୁର୍ବଳତାର ପରିଚାୟକ । ଠିକ୍ କିନ୍ତୁ - ପୋଡ଼ା ମନ ଯେ କାର୍ତ୍ତିକଙ୍କୁ ହିଁ ଚାହେଁ । ହେଉପଛେ - ତାଙ୍କୁ କିନ୍ତୁ ଗଣେଶଙ୍କୁ ହିଁ ବିବାହ କରିବାକୁ ହେବ । ସେ ଯୋଗେ ଯେତେ ଆତ୍ମବଳିର ପ୍ରୟୋଜନ ସେଇଥିପାଇଁ ନିଜକୁ ପ୍ରସ୍ତୁତ କରିବାକୁ ହେବ । ପ୍ରତିଜ୍ଞା ରକ୍ଷା କରିବାକୁ ହିଁ ହେବ ।

ହାୟ୍, ନାରୀ ! ତୁମର ପ୍ରତିଜ୍ଞାର ମୂଲ୍ୟ କିଏ ଲୋଡୁଛି ? କ'ଣ ଗଣେଶ ? ଏ କ'ଣ ଜୀବନର ସବୁ ବିକାକିଣା ପରି କାରବାର ଯେ ଏଥିରେ କଥା ପଦକର ସାକ୍ଷ୍ୟରେ ହାରଜିତ୍ ନିର୍ଦ୍ଧାରଣ ଚଳିବ ? କିଏ ତମର ପ୍ରତିଜ୍ଞା, ତମ ସ୍ୱୀକାରର ସାକ୍ଷୀସବୁତ ଘେନି ତମ ପାଇଁ ନାଲିସ୍ ଦାଏର୍ କରୁଛି ? କିଏ ତମ ବିରୋଧରେ ଦରବାର କରୁଛି ? ତେବେ କାହିଁକି ତମର ଏ ସ୍ୱର୍ଦ୍ଧାନ୍ୱିତ କରୁଣା, ଏ ଅନୁକମ୍ପାର ସତତ ଚେଷ୍ଟା, ଏ ଅର୍ଥହୀନ ମହାନୁଭବତା ?

\+ + + + +

ସମବେତ ଭଦ୍ରବୃନ୍ଦ,

ଆଜି ଆମ୍ଭେମାନେ ଗୋଟିଏ ଅଭିନବ ବିବାହର ମୂଳଭିତ୍ତି ସ୍ଥାପନ ନିମନ୍ତେ ଏଠାରେ ସମବେତ । ଆପଣମାନଙ୍କୁ ଅବିଦିତ ନାହିଁ ଯେ, ଆମ୍ଭମାନଙ୍କର ପରମପ୍ରିୟ ଅତିଥିପରାୟଣ ବନ୍ଧୁ ରମାନାଥବାବୁ ବ୍ରାହ୍ମମତରେ ବିବାହ କରିଥିଲେ । ତାଙ୍କର ପ୍ରଥମ କନ୍ୟା, ମୋର ଆଶୀର୍ବାଦନୀୟା ଶ୍ରୀମତୀ ପ୍ରମିଳା ଦେବୀଙ୍କ ସହିତ ମୋର ପୁତ୍ର

ଶ୍ରୀମାନ୍ ଗଣେଶଚନ୍ଦ୍ରର ଶୁଭବିବାହର ନିର୍ବନ୍ଧ କରିବା ପୂର୍ବରୁ ମୁଁ ଆପଣମାନଙ୍କ ଅନୁମତି ପ୍ରାର୍ଥନା କରୁଅଛି । କରଣମାନଙ୍କ ମଧ୍ୟରେ ଯେଉଁମାନେ ପ୍ରଧାନ ନେତା ଓ ସମାଜର ଯେଉଁମାନେ ଗୁରୁ ସେମାନଙ୍କୁ ସମସ୍ତଙ୍କୁ ମୋର ଏତିକି ଅନୁରୋଧ ଯେ ସମସ୍ତେ ଏ ବିବାହରେ ସମ୍ମତି ପ୍ରଦାନ କରନ୍ତୁ - Legally, ଏଥିରେ ଅନେକ ଅଡୁଆ ଥିଲେ ସୁଦ୍ଧା ମୋ ମତରେ ସମାଜ ହିସାବରେ କୌଣସି ଅଡୁଆ ନାହିଁ । କାରଣ ରମାନାଥବାବୁ ବ୍ରାହ୍ମହେଲେ ସୁଦ୍ଧା ହିନ୍ଦୁ, ପୁଣି ତାଙ୍କର ଆଭିଜାତ୍ୟ ଅତି ପୁରାତନ କରଣ ବଂଶରୁ । ଆଇନର ଅନୁମୋଦନ ନେବାପାଇଁ Civil Marriage ନାମରେ ମୋର କୌଣସି ଆପତ୍ତି ନାହିଁ । କିନ୍ତୁ ସମାଜର ବିପକ୍ଷତା କରିବାକୁ ମଧ୍ୟ ମୋର ସାହସ ନାହିଁ । ଶାସ୍ତ୍ର ଅନୁସାରେ ଏ ବିବାହରେ ଯେ କୌଣସି ଦୋଷ ନାହିଁ ଏହାର ପ୍ରମାଣ ଶ୍ରୀମନ୍ମହାମହୋପାଧ୍ୟାୟ ଶ୍ରୀ ବାଚସ୍ପତି ଶର୍ମା ବାଣୀଭୂଷଣ କାବ୍ୟ - ବ୍ୟା-ସ-ପୂ-ତୀର୍ଥ ମହାଶୟ ମୁକ୍ତିମଣ୍ଡପର ଯେଉଁ ବିଧାନ ଘେନିକରି ଆସିଛନ୍ତି ତାହା ସେ ସ୍ୱୟଂ ବ୍ୟକ୍ତକରିବେ ।

ଏତକ କହି ସାରଦାବାବୁ ଆସନ ଗ୍ରହଣ କଲେ । ବାଚସ୍ପତି ଶର୍ମା ନସ୍ୟ ଗ୍ରହଣାନ୍ତେ ତୀକ୍ଷ୍ଣଭାବରେ ଉଠି ତୀବ୍ରଭାବରେ କହିଲେ :

ସାରଦାବାବୁ, ରମାନାଥବାବୁ ଓ ଭଦ୍ରସମାଜ,

"ମୁଁ ଅତି ଅଜ୍ଞ, ଅତି ବୁଦ୍ଧିହୀନ । ମୋର ଏ ବିବାହରେ ସଂପୂର୍ଣ୍ଣ ମତ ବା ଅମତରେ କାହାରି ଲାଭ ବା କ୍ଷତି କିଛି ନାହିଁ । କିନ୍ତୁ ମୁଁ ମୁକ୍ତିମଣ୍ଡପର ଆଜ୍ଞା ଆଣିଛି । ହିନ୍ଦୁ ଶାସ୍ତ୍ରରେ ଏ ପ୍ରକାର ବିବାହ ବିରୋଧରେ ଉଲ୍ଲେଖ ନାହିଁ । ବ୍ରାହ୍ମଧର୍ମ ଶାସ୍ତ୍ରକାରମାନଙ୍କୁ ଜଣା ନଥିଲା କହୁଛନ୍ତି ? ସେଥିଯୋଗେ ଶାସ୍ତ୍ରରେ ବିପକ୍ଷରେ ବା ସପକ୍ଷରେ ଉଲ୍ଲେଖ ଆସିଲା କାହୁଁ ? ହାଃ... ହାଃ... ଅବଧାନମାନେ ଶାସ୍ତ୍ରରେ ଯାହା ନାହିଁ ତାହା ହେଲା କିପରିକା ? ଶାସ୍ତ୍ରକାରମାନେ ଯାହା ନଜାଣିଛନ୍ତି ତାହା ସମ୍ଭବ କିପରି ? ଶାସ୍ତ୍ରକାରମାନେ ବ୍ରାହ୍ମଧର୍ମର ସତ୍ତା ଜାଣି ନଥିଲେ ତେବେ ବ୍ରାହ୍ମଧର୍ମ ଆସିଲା କାହୁଁ ? ଯୁକ୍ତି ହୋଇପାରେ ଯୁଗେ ଯୁଗେ ଶାସ୍ତ୍ରକାରମାନେ ତ ଜନ୍ମଗ୍ରହଣ କରୁଛନ୍ତି - ନୂତନ ଶାସ୍ତ୍ରକାରଙ୍କ ନୂତନ ସୃଷ୍ଟି ଏହି ବ୍ରାହ୍ମଧର୍ମ । ନାହିଁ ଅବଧାନମାନେ - ସନାତନ ଧର୍ମର ସନାତନ ଶାସ୍ତ୍ରଠାରୁ ପାହୁଣ୍ଡେ ବି ଅଗ୍ରସର ହେବାର ପଥନାହିଁ । ଯାହା କିଛି ହୋଇଥିଲା, ହେଉଛି ଓ ହେବ ସମସ୍ତ ପୂର୍ବତନ ମହାମନୀଷୀଗଣ ସେହି ଶାସ୍ତ୍ରରେ ଖଞ୍ଜିଯାଇଛନ୍ତି । ଶାସ୍ତ୍ରରେ ବ୍ରହ୍ମର ଅର୍ଥ କ'ଣ ଲେଖାଅଛି ? ଛାଡ଼ନ୍ତୁ - ଯଦି କାହାରି ଏ ବିଷୟରେ କୌଣସି ଦ୍ୱିଧା ବା

ସନ୍ଦେହ ଥାଏ - ତାହେଲେ ମୁକ୍ତିମଣ୍ଡପରେ ମୋର ଶାସ୍ତ୍ରଚର୍ଚ୍ଚାର କିୟଦଂଶ ପଢ଼ିଲେ ସେ ସମସ୍ତ ଦୂର ହେବ। ବର୍ତ୍ତମାନ ମୋର ଆପଣମାନଙ୍କୁ ଏତିକି କହିବାର କଥା ଯେ, ବର୍ଣ୍ଣାଶ୍ରମର ନିୟମ ଦ୍ୱାରା ଏ ବିବାହ ସୀମାବଦ୍ଧ ହୋଇନପାରେ, ତେଣୁ କରି ଏହା ନିର୍ଦ୍ଦୋଷ ! ତେଣୁକରି ମୁକ୍ତିମଣ୍ଡପ ଏ ବିବାହ ଅନୁମୋଦନ କରୁଅଛି।''

ଏତକ କହି ବାଚସ୍ପତି ଶର୍ମାଏ ନିଜ ପ୍ରକ୍ଷିପ୍ତ ଶିଖାକୁ ସଙ୍କୁଚିତ କରି ସ୍ପଷ୍ଟଭାବରେ ଭୂମିଷ୍ଠ ହେଲେ। କରତାଳି ଶବ୍ଦରେ ସଭା ପ୍ରକମ୍ପିତ ହେବା ସଙ୍ଗେ ସଙ୍ଗେ ଶଙ୍ଖହୁଳହୁଳି ମଙ୍ଗଳଧ୍ୱନି ସଭାସ୍ଥ କେତେକ ଅତି ଭଦ୍ରଙ୍କୁ ଚମକିତ କରିଦେଲା। ସମସ୍ତେ ଛପା ପ୍ରୋଗ୍ରାମ ଆଡ଼କୁ ଥରେ ଚାହିଁ ଉଦଗ୍ରୀବ ହୋଇ ରହିଲେ। ବାଳିକା କଣ୍ଠରେ ଗୋଟିଏ ମଙ୍ଗଳଗୀତି ହାରମୋନିଅମ୍ ସାହାଯ୍ୟରେ ଗାନ ହେଲା ବେଳେ ସମସ୍ତେ ଯେପରି ତନ୍ମୟ ହୋଇ ରହିଲେ। ଗୀତାନ୍ତେ ରମାନାଥବାବୁ ଉଠି ସଭା ଉଦ୍ଦେଶ୍ୟରେ ଗୋଟିଏ ବିନୀତ ନମସ୍କାର କରି ଅନ୍ଦର ସଂଲଗ୍ନ ସାମାନ୍ୟ ବେଦୀ ଉପରକୁ ଯାଇ ସେଠାରେ ଥିବା ମାର୍ବଲ ପଥରର ଟେବୁଲ ଉପରେ ରକ୍ଷିତ ଦଲିଲଭଳିଆ କେତେଗୁଡ଼ିଏ କାଗଜ ଉଠାଇ ନେଇ ପଢ଼ିବାକୁ ଆରମ୍ଭ କଲେ। ପ୍ରଥମଟି ଗୋଟିଏ ଏଗ୍ରିମେଣ୍ଟ ପତ୍ର - ବରକନ୍ୟାଙ୍କ ମଧ୍ୟରେ ଯେଉଁ ସର୍ତ୍ତରେ ବିବାହ ହେବାର କଥା ସେ ସମସ୍ତ ଲେଖାଯାଇଛି - ବରକନ୍ୟା ଉଭୟେ ତହିଁରେ ସ୍ୱାକ୍ଷର କରିବେ। ପାଠ ଶେଷହେଲା ମାତ୍ରକେ - ଟେବୁଲଟିର ଦକ୍ଷିଣ ପଟ ଭେଲଭେଟ୍ ପରଦା ଧୀରେ ଧୀରେ ଅପସାରିତ ହେଲା—ଅନ୍ତରାଳରେ ଅନ୍ୟରମଣୀ ପରିବେଷ୍ଟିତ ହୋଇ ନୂତନ ବସ୍ତ୍ର ପରିହିତା ଦୃଷ୍ଟି ଉଦଭ୍ରାନ୍ତ ବେଶା ଶ୍ରୀମତୀ ପ୍ରମିଳା ଚକିତରେ ଆସନ ଛାଡ଼ି ଛିଡ଼ା ହୋଇ ବିନମ୍ରଭାବରେ ସଭା ସମ୍ମୁଖରେ ନତମସ୍ତକ ହେଲେ। ସାରଦାବାବୁ ଇତି ମଧ୍ୟରେ ସଭାରୁ ଉଠିଆସି ରମାନାଥବାବୁଙ୍କ ନିକଟରେ ପହଞ୍ଚିଲେଣି। ଯେଉଁ ପଟରେ ଏତେବେଳଯାଏଁ ନାନାଦି ହାସପରିହାସରେ ସଭାକାର୍ଯ୍ୟର ଗୁରୁତ୍ୱ ଗାମ୍ଭୀର୍ଯ୍ୟରୁ ପରିତ୍ରାଣ ପାଇବାର ଚେଷ୍ଟା କରୁଥିଲେ ସେଠାରେ ଏ ସମୟରେ ଗୋଟାଏ ତଡ଼ାତଡ଼ି ପଡ଼ିଗଲା। 'ଗଣେଶ କାହିଁ ?' 'ଗଣେଶ କାହିଁ ?' ବୋଲି ସମସ୍ତେ ଚାରିଆଡ଼କୁ ଅନାଇବାକୁ ଲାଗିଲେ। କିଏ କହିଲା Marble table ତଳୁ ସେ ଏଇ ବାହାରିଲା ବୋଲି ଜାଣ - କିଏ କହିଲା ଛାତରୁ ଏଇଲାଗେ ଗୋଟିଏ କଡ଼ି ଖସିବ ଓ ଗଣେଶ କାର୍ଯ୍ୟସ୍ଥାନରେ ପ୍ରବେଶ କରିବ - ଆଉ ବା କିଏ କହିଲା ମୂଷାର ଗତି ଉପରେ କଟକ ମ୍ୟୁନିସିପାଲିଟି ବୋଧହୁଏ Speed Limit ଜାରି କରିଛି ! ରମାନାଥବାବୁ ଏଣେ ଚଞ୍ଚଳ ଦୃଷ୍ଟିରେ ଚାରିଆଡୁ ଅନାଇ ଗଣେଶଙ୍କୁ କାହିଁ ନ ଦେଖି ବିରକ୍ତି ଗୋପନ କରି ଅଦୂରରେ ମୌନଭାବରେ ବସିଥିବା କାର୍ତ୍ତିକଙ୍କୁ ପାଖକୁ

ଡାକିଲେ । କୁଣ୍ଠିତ ଚରଣରେ କାର୍ତ୍ତିକ ଟେବୁଲ ପାଖକୁ ଆସୁ ଆସୁ କେହି କେହି ତାଙ୍କୁ ହିଁ ଗଣେଶ ବୋଲି ଭାବି କରତାଳି ଆରମ୍ଭ କରିଦେବା ସମୟରେ ଦେଖାଗଲା Drawing Room ପଶ୍ଚିମ ଦ୍ୱାର ଦେଇ ଗଣେଶ ଧୀରସ୍ଥିର ଭାବରେ ପ୍ରବେଶ କରି କାହାରି ଆଡ଼କୁ ନଚାହିଁ ସଳଖେ ବେଦୀ ଆଡ଼କୁ ଚାଲିଛନ୍ତି । ଯେଉଁମାନେ ତାଙ୍କୁ ଚିହ୍ନିଥିଲେ ସେମାନେ ତାଙ୍କର ବିଳମ୍ବ ଦେଖି ଅତି ବିସ୍ମିତ ହେଲେ ସୁଦ୍ଧା ବର୍ତ୍ତମାନ ତାଙ୍କ ଚେହେରା ଦେଖି ଓ ଅତି ଗମ୍ଭୀର ଭାବ ଦେଖି ଅଧିକତର ଆଶ୍ଚର୍ଯ୍ୟ ହୋଇ ତାଳିଦେବାକୁ ମଧ ଭୁଲିଗଲେ । କାର୍ତ୍ତିକ ଶୁଷ୍କ ମୁଖରେ ବେଦୀ ଉପରୁ ତଳକୁ ଆସି ଗଣେଶଙ୍କୁ ବାଟ ଛାଡ଼ିଦେଲେ । ପିତାଙ୍କ ସଙ୍କେତରେ ଓ ରମାନାଥବାବୁଙ୍କ ଅଭ୍ୟର୍ଥନାରେ ଗଣେଶ ସେହିପରି ଧୀରସ୍ଥିରଭାବରେ ବେଦୀ ଉପରକୁ ଯାଇଁ ସମସ୍ତଙ୍କୁ ଉଦ୍ଦେଶ୍ୟ କରି ଗୋଟିଏ ପ୍ରଣାମ କଲେ । ଯେଉଁମାନେ ଏ ପର୍ଯ୍ୟନ୍ତ ମୁଖର ଭାବ ଲକ୍ଷ୍ୟକରି ପାରିନଥିଲେ ସେମାନେ ବର୍ତ୍ତମାନ ଦେଖି ଚମତ୍କୃତ ହେଲେ - କି ପ୍ରତିଜ୍ଞା କଠିନ, କି ଧୀର ନିଷ୍ପନ୍ଦ ସେ ଚାହାଣୀ । କି ସଂଯତ କଠିନ ଅଙ୍ଗ କୁଞ୍ଚିତ ଭ୍ରୂ ଓ ଚିବୁକ । କାର୍ତ୍ତିକ ରହି ରହି ତାଙ୍କ ଆଡ଼କୁ ଥରେ ଥରେ ଚାହିଁ ଚାହିଁ ଦେଖୁଥାନ୍ତି ଓ ଥରେ ଥରେ ପ୍ରମିଳାଙ୍କ ଆଡ଼କୁ ଚାହୁଁଥାନ୍ତି । ପ୍ରମିଳା ଗଣେଶଙ୍କର ଏ ଆଶ୍ଚର୍ଯ୍ୟ ଭାବ ଦେଖି ଅନିଶ୍ଚିତଭାବରେ ଠିଆ ହୋଇ ପିତାଙ୍କ ଆଦେଶକୁ ପ୍ରତୀକ୍ଷା କରୁଥାନ୍ତି । ସଭାସ୍ଥ ସମସ୍ତେ ଭାବୁଥାନ୍ତି ଯେ ଜୀବନର ଏତେ ବଡ଼ ମୁହୂର୍ତ୍ତରେ ସମ୍ଭବତ ବିବେକୀ ପୁରୁଷର ଏହିପରି ଭାବ ହୁଏ ।

ରମାନାଥବାବୁ ଗଣେଶଙ୍କ ହାତଧରି ଟେବୁଲ ପାଖକୁ ତାଙ୍କୁ ବଳାଇ ଆଣି କହିଲେ, "ବାପ ଗଣେଶ ! ଯେଉଁ ସ୍ୱୀକାରପତ୍ର ବର୍ତ୍ତମାନ ମୁଁ ସଭାରେ ପଢ଼ି ଶୁଣାଇବି ତାହା ଥରେ ଦେଖିନିଅ ଓ ଦସ୍ତଖତ କରିଦିଅ ।" ସାରଦାବାବୁ କାଗଜଟି ଗଣେଶଙ୍କ ହାତକୁ ବଢ଼ାଇଦେଲାରୁ ସେ ତାହା ଅତି ମନୋଯୋଗପୂର୍ବକ ପାଠ କରିବାକୁ ଲାଗିଲେ - ସଭାଗୃହ ଏକାବେଳକେ ନିସ୍ତବ୍ଧ । ପାଠ ଶେଷହେଲାରୁ ସେ କିଛି କହିବାକୁ ଯାଉଁ ଯାଉଁ ରହିଗଲେ । ସେହିପରି ଦାମ୍ଭିକଭାବରେ କଲମ ଗୋଟିଏ ଉଠାଇ ଦସ୍ତଖତ କରିବାକୁ ଯାଉଁ ଯାଉଁ ହଠାତ୍ କୌଣସି କଥା ମନେପଡ଼ିଲା ପରି ରହି ଗମ୍ଭୀର କଣ୍ଠରେ ରମାନାଥବାବୁଙ୍କୁ କହିଲେ, "ମହାଶୟ ! ଆପଣଙ୍କ ଦାନପତ୍ରର ଖସଡ଼ାଟା ଏଥିପୂର୍ବରୁ ଥରେ ପଢ଼ି ଶୁଣାଇଦେଲେ ଭଲ ହୁଅନ୍ତା ନାହିଁ କି ?" ଚକିତରେ ସମସ୍ତଙ୍କ ଦୃଷ୍ଟି ଏ ଧୃଷ୍ଟ ଯୁବକଟିଠାରେ କେନ୍ଦ୍ରୀଭୂତ ହୋଇଗଲା । ଯେଉଁମାନେ ଗଣେଶଙ୍କୁ ଜାଣନ୍ତି ସେମାନେ ବୁଝିପାରିଲେ ନାହିଁ କିପରି ଗଣେଶ ହୋଇ ସେ ଏପରି ଗର୍ହିତ ନୀଚକଥାଟାଏ

କହିପାରିଲେ । ଗଣେଶ କିନ୍ତୁ କିଞ୍ଚିତମାତ୍ର ଅପ୍ରତିଭ ବା ସଙ୍କୁଚିତ ନହୋଇ କଲମଟିକୁ ଟେବୁଲ ଉପରେ ସ୍ୱସ୍ଥାନରେ ପୁନଃସ୍ଥାପନ କରି ଗ୍ରୀବା ଉନ୍ନତ କରି ପ୍ରମିଳା ଥିବା ଦିଗରୁ ଦୃଷ୍ଟି ଫେରାଇ ଆଣି ନିର୍ନିମେଷ ନୟନରେ ଶୂନ୍ୟକୁ ଚାହିଁରହିଲେ । ପାଖରେ ଥିବାଲୋକେ ଦେଖି ଆଶ୍ଚର୍ଯ୍ୟ ହେଲେ ଯେ ଗଣେଶର ଚକ୍ଷୁ ରକ୍ତବର୍ଣ୍ଣ, ଦୃଷ୍ଟି ଶୂନ୍ୟରେ ଆବଦ୍ଧ । ରମାନାଥବାବୁ ଏକାବେଳକେ ସ୍ତମ୍ଭିତ ହୋଇଯାଇଥିଲେ । ସେ ଏତେବେଳେ ସାରଦାବାବୁଙ୍କ ଆଡ଼କୁ ଅପମାନିତ ହେଲାପରି ଚାହିଁଲାରୁ, ସାରଦାବାବୁ ଅଗ୍ରସର ହୋଇ ଗଣେଶଙ୍କୁ କହିଲେ, "ଦେଖ, ଦାନପତ୍ର ପାଠ ସବାଶେଷ କାର୍ଯ୍ୟ ।" ଗଣେଶ ସେହିପରି ଧୃଷ୍ଟଭାବରେ କହିଲେ, "ଦାନପତ୍ର ପାଠ ନକରି ମୁଁ ସ୍ୱୀକାରପତ୍ର ସ୍ୱାକ୍ଷର କରିବାକୁ ପ୍ରସ୍ତୁତ ନୁହେଁ ।" ଛି, ଛି Shame, Shame ବୋଲି ଚାରିଆଡୁ ଚିତ୍କାର ଉଠିଲା । ରମାନାଥବାବୁ ଅଧର ଦଂଶନ କରି କହିଲେ, "ମୁଁ ଦାନପତ୍ର ପାଠ କରୁଛି, ଶୁଣ ! ନ ଶୁଣିଲେ କ'ଣ ହୋଇନଥାନ୍ତା ? ଦୃପ୍ତ ଯୁବକ - ମୁଁ ଯାହା ଦାନ କରିଛି ତାହା ଶୁଣିଲେ ବୁଝିବ । ଏପରି ଦାନ କେହି କରେନାହିଁ ।" ଲଜ୍ଜାରେ ନତଶିର ଅଥଚ ଅସୀମ କ୍ରୋଧରେ ଜର୍ଜର ହୋଇ ରମାନାଥବାବୁ ଦାନପତ୍ର ପାଠ କଲେ । ସାରଦାବାବୁଙ୍କୁ ଏ ସମସ୍ତ ଯେମିତି ବିଚିତ୍ର ବୋଧ ହେଉଥିଲା । ତାଙ୍କ ପୁତ୍ର ଗଣେଶ - ସେ ପୁଣି ଏପରି ନୀଚ, ଏପରି ବର୍ବର ଆଚରଣ କରିପାରେ । ପ୍ରମିଳା କାଷ୍ଠପୁତ୍ତଳିକା ପରି ଛିଡ଼ା ହୋଇଥିଲେ - ଗଣେଶଙ୍କର ମମତାଶୂନ୍ୟ କଥାରେ ତାଙ୍କ ମଥା ନଇଁ ପଡ଼ିଲା । ନିର୍ଭରରେ ସେଠାରେ ଛିଡ଼ାହେବା ତାଙ୍କ ପକ୍ଷରେ ଅସମ୍ଭବ ହୋଇପଡ଼ିଲା । ସେ ଗୋଟାଏ ହାତରେ ଚୌକିର ବାହାଟାଏ ଧରି ଓ ଅନ୍ୟ ହାତରେ ଟେବୁଲର କଡ଼ଟାକୁ ଧରିପକାଇ ରହିଯିବା ସମୟରେ ବ୍ୟସ୍ତ ହୋଇ ବୁଢ଼ୀ ଆସି ତାଙ୍କୁ ପରଦା ମଧ୍ୟକୁ ନେଇଗଲେ । ଗଣେଶ କାହାରି ଆଡ଼କୁ ଦୃଷ୍ଟିପାତ ସୁଦ୍ଧା ନକରି ମନୋଯୋଗପୂର୍ବକ ଦାନପତ୍ରରେ ବିବୃତ ଦାନଗୁଡ଼ିକ ଶୁଣିବାକୁ ଲାଗିଲେ । ଗୋଟିଏ ଲୋକ କେବଳ ଗଣେଶଙ୍କ ଆଚରଣରେ ବ୍ୟଥିତ, କୁଣ୍ଠିତ ବା ଆଶ୍ଚର୍ଯ୍ୟାନ୍ୱିତ ହେଲେ ନାହିଁ - ସେ କୁଞ୍ଜଲତା । ଏ ଅଭିନୟର ପରିଣତି ସେ ସଂପୂର୍ଣ୍ଣ ଅନୁମାନ କରିସାରିଥିଲେ । ଆନନ୍ଦର ପରଦା ଭେଦକରି ଯେଉଁ ବିଷାଦ ଶିଖାଟିକ ସଖୀଙ୍କୁ ତାଙ୍କର ଆଖିରେ ପଡ଼ିସାରିଥିଲା ତାହାର କାରଣ ଅନୁସନ୍ଧାନ କରିବା ପାଇଁ ଏ ଘରକୁ ଆସି ପ୍ରମିଳା ହେରିକାକୁ ଜେରା କରି ଅନେକ ତଥ୍ୟ ଆବିଷ୍କାର କରିସାରିଥିଲେ ଓ ଅଭିମାନୀ ଗଣେଶ କିପରି ଭାବରେ ଚାରିଆଡ଼କୁ ରକ୍ଷା କରିବ ସେହିତା ଭାବି ଆକୁଳ ହେଉଥିଲେ । ବର୍ତ୍ତମାନ ଏ ନୃଶଂସତାର ଅଭିନୟ ଦେଖି ସ୍ରୋତର ଗତି କେଉଁ ଦିଗକୁ ତାହା ଅତି ସହଜରେ ଅନୁମାନ କରିପାରିଥିଲେ ।

(୮)

ରମାନାଥବାବୁ ନିଜ ଦାନର ଅନ୍ୟାୟ ଗର୍ବ କରିନଥିଲେ ଦାନପତ୍ରର ନିଃଶେଷ ପଢ଼ାଯିବା ପୂର୍ବରୁ କରତାଳିରେ ସଭାଗୃହ କମ୍ପିତ ହୋଇଉଠିଲା । ଯାହା କିଛି ତାଙ୍କର ସ୍ଥାବରାସ୍ଥାବର ସମ୍ପତ୍ତି ପ୍ରାୟ ସବୁ ସେ ଗଣେଶ ଓ ପ୍ରମିଳାଙ୍କ ନାମରେ ଲେଖି ଦେଇଛନ୍ତି । କେବଳ ନିଜର ବୋଲି ସେ ଘରଟା ଓ ବ୍ୟାଙ୍କରେ ଗଚ୍ଛିତ କେସ୍‌ଟଙ୍କା । କିନ୍ତୁ ସମସ୍ତେ ଭାବିଲେ ଯେ ତାଙ୍କର ଯଥାସର୍ବସ୍ୱ ଦେଇପକାଇଛନ୍ତି, ତେଣୁ ସମସ୍ତେ 'ସାଧୁ' 'ସାଧୁ' ବୋଲି ଚିତ୍କାର କରିଉଠିଲେ । ଗଣେଶ ନିଶ୍ଚଳ କାଷ୍ଠପୁତଳିକାଟି ପରି ଯେପରି ଠିଆ ହୋଇଥିଲେ ସେହିପରି ଅବିଚଳିତଭାବରେ ରହିଲେ, ସ୍ୱୀକାରପତ୍ର ସ୍ୱାକ୍ଷର କରିବା ପାଇଁ ତିଳେମାତ୍ର ଆଗ୍ରହ ପ୍ରକାଶ କଲେନାହିଁ । ରମାନାଥବାବୁ କପାଳରୁ ଝାଳ ପୋଛି ତାଙ୍କ ଆଡ଼କୁ ଟିକିଏ ଅଗ୍ରସର ହୋଇ କହିଲେ, ''କି ଗଣେଶବାବୁ - ସନ୍ତୁଷ୍ଟ ହେଲ ?'' ଏତକ ସ୍ନେହ-ଆର୍ଦ୍ର କଣ୍ଠରେ କହି ସ୍ୱୀକାରପତ୍ର ଖଣ୍ଡିକ ଆଗେଇ ଦେଲେ । ତଥାପି ଗଣେଶ ନିଶ୍ଚେଷ୍ଟ ହୋଇରହିଲେ । ରମାନାଥବାବୁ ଅତିଶୟ ବିରକ୍ତ ହୋଇ ନିକଟକୁ ଆସି କହିଲେ, ''କି ଗଣେଶ - ଇୟେ କ'ଣ ? ଦସ୍ତଖତ କାହିଁ କି କରୁନାହଁ ?'' ଗଣେଶ କିଛିମାତ୍ର କୁଣ୍ଠିତ ନ ହୋଇ ଏସବୁ ନ ଶୁଣିଲା ପରି କହିଲେ, ''ମହାଶୟ - ଆପଣ ଯାହା ଦେଇଛନ୍ତି ସେଥିରେ ମୁଁ ଆଦୌ ସନ୍ତୁଷ୍ଟ ନୁହଁ । କଥା ହେଲା — କିଛି ନଗଦ ଦେବାର ।''

''କ'ଣ ହେଲା, ନଗଦ ? ନଗଦ ? ନଗଦ ୧୦/୨୦ ହଜାର ଟଙ୍କା ଯୌତୁକ ଦେବାକୁ ମୁଁ ପ୍ରସ୍ତୁତ ଥିଲି କିନ୍ତୁ ତମ ଧୃଷ୍ଟତା ଦେଖି ମୁଁ ଆଶ୍ଚର୍ଯ୍ୟ ହେଉଅଛି ଗଣେଶ । ତମପରି ଅସ୍ଥିରମତି ନୀଚ ପ୍ରକୃତି ଯୁବକ...'' ଏତିକିବେଳେ ସାରଦାବାବୁ ଏ ସ୍ଥାନରେ ବାଧା ଦେଇ କହିଲେ, ''ଗଣେଶ - ସାବଧାନ ! ଆମେମାନେ ଥାଉଁ ଥାଉଁ Business ବ୍ୟାପାରରେ ମୁଣ୍ଡପୂରାଇ ଅପରିପକ୍ୱତାର ପରିଚୟ ଦିଅନାହିଁ । ଆଜି କ'ଣ ହୋଇଛି ତୋର ?'' ଏହା କହି ସାଶ୍ଚର୍ଯ୍ୟେ ଗଣେଶର ସମ୍ମୁଖୀନ ହେଲେ - ତାଙ୍କ ମୁଖ ଓ ଚକ୍ଷୁର ଭାବ ଦେଖି ତାଙ୍କୁ ଅତି ଆଶ୍ଚର୍ଯ୍ୟ ଲାଗୁଥିଲା । ଗଣେଶ ସେହିପରି ଅବିଚଳିତ ଭାବରେ କୌଣସି ଆଡ଼କୁ ଭ୍ରୂକ୍ଷେପ ନକରି କହିଲେ, ''ମୋତେ ହିଁ ବିବାହ କରିବାକୁ ହେବ - ମୋତେ ହିଁ ସ୍ୱାକ୍ଷର କରିବାକୁ ହେବ - ମୁଁ ଆଉ କାହା ଉପରେ ନିର୍ଭର କରିବି କାହିଁକି ? ଯଦି ସେହି ନଗଦ ୨୦ହଜାର ବିଷୟ ଦାନପତ୍ରରେ ଉଲ୍ଲେଖ କରାଯାଏ ତା ହେଲେ ମୁଁ ସ୍ୱୀକାରପତ୍ର ଦସ୍ତଖତ କରିବାକୁ ପ୍ରସ୍ତୁତ, ନଚେତ୍ ନୁହେଁ ।''

ଛି-ଛି-Shame ! Shame । ବିକଟ ଚିତ୍କାର ଧ୍ୱନିରେ ସଭାଗୃହ ପ୍ରତିଧ୍ୱନିତ ହୋଇଉଠିଲା । ଟିକିଏ ନିସ୍ତବ୍ଧତା ଆସିବାମାତ୍ରକେ ଆହତ କ୍ରୁଦ୍ଧ ରମାନାଥବାବୁ କହିଲେ, ''ଯଦି ମୁଁ ସେ ବିଷୟ ଦାନପତ୍ରରେ ଉଲ୍ଲେଖ କରିବାକୁ ଅସମ୍ମତ ହୁଏ ?'' ''ତାହେଲେ ମୁଁ ବିଦାୟ ନେଉଛି -'' ''ଶୀଘ୍ର ଏଠାରୁ ଦୂର ହୁଅ ।'' ବୋଲି ଚିତ୍କାର କରି ସାରଦାବାବୁ ଗଣେଶ ଆଡ଼କୁ ପ୍ରଧାବିତ ହେଲେ । ଗଣେଶ କିନ୍ତୁ ସେହିପରି ଅବିଚଳିତ ନିଶ୍ଚିନ୍ତଭାବରେ ରମାନାଥବାବୁଙ୍କୁ, ସାରଦାବାବୁଙ୍କୁ, ସଭା ଗୃହକୁ ଓ ପରଦା ଭିତରେ ରମଣୀସମାଜକୁ ବୁଲି ବୁଲି ନମସ୍କାର କରି ଧୀରେ ଧୀରେ ବେଦୀ ଉପରୁ ଓହ୍ଲାଇ ଆସିଲେ । ଧୃଷ୍ଟତାର ସୀମା ଅଛି - ସହ୍ୟ ଗୁଣର ମଧ ସୀମା ଅଛି । ସାରଦାବାବୁ ପାଗଳଙ୍କ ପରି ହୋଇ ତାଙ୍କ ପଛରେ ଗୋଡ଼ାଇ ଆସି କହିଲେ, ''ଏଠାରୁ ଯେଉଁଆଡ଼େ ଇଚ୍ଛା ସେ ଆଡ଼େ ଚାଲି ଯା - ମୋ ଘରେ .ପ୍ରବେଶ କରିବାକୁ ମଧ ଚେଷ୍ଟା କରିବୁ ନାହିଁ, ଭଣ୍ଡ ସଇତାନ ।'' ''ଯେ ଆଜ୍ଞା'' ବୋଲି କହି ସେହିପରି ଧୀରସ୍ଥିର ଭାବରେ ଗଣେଶ ସଭାଗୃହ ଅତିକ୍ରମ କରିବାକୁ ଲାଗିଲେ । ସଭାସ୍ଥ ସମସ୍ତେ କିଛିକ୍ଷଣ ମୂକ ହୋଇ ତାମସା ଦେଖୁଥିଲେ । ହଠାତ୍ ସମସ୍ତଙ୍କର କ୍ରୋଧ ଏକାବେଳକେ ଜାଗିଉଠିଲା - ଯିଏ ଯାହା ପାଇଲା କାଗଜକଲମ, ପାନବିଡ଼ି, ସିଗାରେଟ୍, ଚୁରୁଟ୍, ଡିଆସିଲି ଧରି ସେହି ନିର୍ବିକାର ପ୍ରଶାନ୍ତ ମୂର୍ତ୍ତିଟି ଉପରେ ଫୋପାଡ଼ିବାକୁ ଲାଗିଲେ । ଗଣେଶଙ୍କ ଉପରେ କିଛି ଉତ୍ତମ-ମଧମର ବ୍ୟବସ୍ଥା ହେବାର ଉପକ୍ରମ ମଧ ହେଉଥିଲା ଯୁବକଦଳ ତରଫରୁ କିନ୍ତୁ ସେଠାରେ ବୈରାଗୀ ଡାକ୍ତର ଗୋଟିଏ ଫୁଲଚାଙ୍ଗୁଡ଼ିଟିଏ ଆଣି କ୍ରୋଧାନ୍ଧ ଯୁବକମାନଙ୍କ ଉତ୍ତେଜିତ ହସ୍ତ ସମ୍ମୁଖରେ ଧରିବାରୁ ସେମାନେ ମୁଠାଏ ମୁଠାଏ ଗୋଲାପ ନେଇ ପ୍ରାଣପଣ ବଳରେ ଗଣେଶଙ୍କ ଉପରକୁ ଫୋପାଡ଼ି କ୍ରୋଧର ବେଗ ପ୍ରଶମିତ କରି ପକାଇଥିଲେ । ଫଳରେ ଗଣେଶ ସଭାଗୃହରୁ ନିଷ୍କ୍ରାନ୍ତ ହେଲାବେଳକୁ ତାଙ୍କ ଉପରେ କଠୋର ପୁଷ୍ପବୃଷ୍ଟି ହେଉଛି । ସେତିକିବେଳେ ପ୍ରମିଳା ଗଣେଶଙ୍କ ଉଦ୍ଦେଶ୍ୟ ସମ୍ୟକ୍ ବୁଝିପାରି ଅଜ୍ଞାନ ହୋଇ ପଡ଼ିଥିଲେ ଓ ମୂର୍ଚ୍ଛା ଢୋରରେ କହୁଥିଲେ,. ''ମା', ମା' ସବୁ ମୋରି ଦୋଷ - ତାଙ୍କୁ ଫେରାଇଆଣ । ଏ ସତ୍ୟ ଗଣେଶ ନୁହେଁ ମା' - ଏ ଘୋର ଛଳନା - ଏ ଖାଲି ଅଭିନୟ ମା' ! ସବୁ ମୋରି ଦୋଷ ।'

କିନ୍ତୁ ଗଣେଶଙ୍କୁ କେହି ଫେରାଇଆଣିଲେ ନାହିଁ ।

ସଭାଗୃହରେ ଏଣେ ଘୋର ଅଶାନ୍ତି ଉପସ୍ଥିତ ହେଲା । ରମାନାଥବାବୁ ମର୍ମାହତ ହୋଇ କିଛିକ୍ଷଣ ନୀରବରେ ଭାବିନେଲେ । ତା'ପରେ ସଭା ଉଦ୍ଦେଶ୍ୟରେ କହିଲେ, ''ମହାଶୟ/ମହାଶୟାଗଣ - ମୋର ଦୁର୍ଭାଗ୍ୟ ଯେ ଆଜି ଆପଣମାନଙ୍କୁ ଏ ଦାରୁଣ

ଦୃଶ୍ୟ ଦେଖାଇବାକୁ ହେଲା, ମୁଁ ସେଇଥିପାଇଁ କେତେ ବ୍ୟଥିତ ଓ ଲଜ୍ଜିତ ତାହା କିପରି ବ୍ୟକ୍ତ କରିବି ! ଆପଣମାନେ ଅବସ୍ଥା-ସଙ୍କଟ ବୁଝିପାରିବେ ଏବଂ ନିଜ ଗୁଣରେ ମୋତେ କ୍ଷମା କରିବେ ।'' ଏତିକିବେଳେ ସାରଦାବାବୁ କାର୍ତ୍ତିକଙ୍କୁ ପାଖକୁ ଡାକି ନିମ୍ନ ସ୍ୱରରେ ତାଙ୍କ ସହିତ କ'ଣ କଥାବାର୍ତ୍ତା କରୁ କରୁ ଅଗ୍ରସର ହୋଇ ଆସି ଗଳା ସଫା କରି ଖୁବ୍ ବଡ଼ ପାଟିରେ କହିଲେ, ''ଭଦ୍ରମହୋଦୟଗଣ, ମୋର ପରମବନ୍ଧୁ ରମାନାଥବାବୁ ଏ ଦୁର୍ଘଟଣା ପାଇଁ ତିଳେମାତ୍ର ଦାୟୀ ନୁହନ୍ତି । ମୁହିଁ ଏକା ଷୋଳପଣ ଦାୟୀ ! ମୁଁ ସମସ୍ତଙ୍କର ତୁଷ୍ଟି ସକାଶେ ଏହି ସଭାଗୃହରେ ବର୍ତ୍ତମାନ ମୋର ଉଦ୍ଦେଶ୍ୟ ବ୍ୟକ୍ତ କରୁଛି, ଟିକିଏ ଅବଧାନ ହେଉନ୍ତୁ ! ଗଣେଶ ବୋଲି ଯାହାକୁ ଆପଣମାନେ ଆଜିଯାଏଁ ଜାଣିଥିଲେ - ଯେଉଁ ବର୍ବର ବର୍ତ୍ତମାନ ଆପଣମାନଙ୍କ ସମ୍ମୁଖରେ ସମସ୍ତ ପାଶବିକତାର ପରିଚୟ ଦେଇଗଲା ସେ ସେହି ମୁହୂର୍ତ୍ତରୁ ହିଁ ମୋର ପୁଅ ନୁହେଁ - ମୁଁ ଏ ଜୀବନରେ ଆଉ ତା'ର ମୁଖ ଦର୍ଶନ କରିବି ନାହିଁ। ସତ୍ୟ ସତ୍ୟ ସତ୍ୟ, ତ୍ରିବାର ସତ୍ୟ । ଭାଇ ରମାନାଥ - ତମ ସରଳ ପ୍ରାଣରେ ବଡ଼ ଆଘାତ ଲାଗିଛି - ମା' ପ୍ରମିଳା ତମ କୋମଳ ହୃଦୟରେ ଦାରୁଣ ଶେଳଘାତ ହୋଇଛି - କିନ୍ତୁ ଏ ବୁଢ଼ାର ହୃଦୟ ଆଜି ଦଳିତ - ଚୂର୍ଣ୍ଣୀଭୂତ ହୋଇଯାଇଛି । ଭାଇ ରମାନାଥ - ମୋତେ କ୍ଷମାକର । ଭଦ୍ରଗଣ ଯେଉଁ ପ୍ରତିକାର ବ୍ୟବସ୍ଥା କରିବେ, ଯେଉଁ ଦଣ୍ଡ ଆଦେଶ କରିବେ ତାହା ନତଶିରରେ ଗ୍ରହଣ କରିବାକୁ ମୁଁ ପ୍ରସ୍ତୁତ ।'' ''ସାଧୁ ! ସାଧୁ !'' Hear ! Hear ! ବୋଲି ଚାରିଆଡୁ ଚିତ୍କାର ହୋଇଉଠିଲା । ସମସ୍ତ ସଭାଗୃହ ଯେପରି ଏତେବେଳେକେ ସ୍ୱସ୍ତିର ନିଶ୍ୱାସ ପକାଇ ବଞ୍ଚିଉଠିଲା ! ଏତିକିବେଳେ ବୈରାଗୀ ଡାକ୍ତର ତ୍ରବବର ହୋଇ ବେଦୀ ନିକଟକୁ ଆସି ଗମ୍ଭୀରଭାବରେ ପ୍ରକାଶ କଲେ ଯେ ଗଣେଶଙ୍କ ଯମଜ ଭ୍ରାତା ଶ୍ରୀମାନ୍ କାର୍ତ୍ତିକଚନ୍ଦ୍ର ଏହି ମୁହୂର୍ତ୍ତରେ ଏ ଘଟଣାରେ ଅପମାନିତା ପ୍ରମିଳାଙ୍କର ସମ୍ମାନ ରକ୍ଷାର୍ଥେ ପ୍ରମିଳାଙ୍କ ପାଣିଗ୍ରହଣ ପ୍ରାର୍ଥୀ - ବିନା ସର୍ତ୍ତରେ, ବିନା ଦାନରେ, ବିନା ଯୌତୁକରେ !

ବିରାଟ ସାଧୁବାଦ ସଙ୍ଗେ ସଙ୍ଗେ ଯୁବକସମାଜ କାର୍ତ୍ତିକଙ୍କୁ କାନ୍ଧରେ ଉଠାଇ ନେଇ ଆଣି ବେଦୀ ଉପରେ ପହଞ୍ଚାଇଦେଲେ । ଆନନ୍ଦ କଳରବରେ ସଭାଗୃହ ପୁଣି ବିକଶିତ ହୋଇ ଉଠିଲା । ରମାନାଥବାବୁଙ୍କ ପରେ ସାରଦାବାବୁଙ୍କ ଚରଣଧୂଳି ନେଇ ସପ୍ରତିଭ କାର୍ତ୍ତିକ ସଭାର ସମ୍ମୁଖୀନ ହୋଇ ସମସ୍ତଙ୍କ ଉଦ୍ଦେଶ୍ୟରେ ନମସ୍କାର କରି ଠିଆହେଲେ । ତାଙ୍କଠାରୁ କିଛି ଶୁଣିବା ଅପେକ୍ଷାରେ ସମସ୍ତେ ଉଦ୍‌ଗ୍ରୀବ ହୋଇ ଚାହିଁ ରହିବାରୁ କାର୍ତ୍ତିକ ପୁଣି ନମସ୍କାର କରି କହିଲେ, Ladies and gentlemen – ମୁଁ ବିଶେଷ କିଛି ଗୋଟାଏ ତ୍ୟାଗ ସ୍ୱୀକାର ବା ମହାନୁଭବତାର କାର୍ଯ୍ୟ କରୁଛି ବୋଲି

ଭାବୁଥାନ୍ତି ତା'ହେଲେ ସେ ଧାରଣା ମନରୁ ଦୂର କରିଦିଅନ୍ତୁ। ମୁଁ ବାଲ୍ୟକାଳରୁ ପ୍ରମିଳାଙ୍କ ପକ୍ଷପାତୀ ଓ ମୋର ଭାଇ ଗଣେଶଙ୍କର ତାଙ୍କ ସହିତ ବିବାହ ପ୍ରସଙ୍ଗ ନହୋଇଥିଲେ ମୁଁ ନିଶ୍ଚୟ ପ୍ରମିଳାଙ୍କର କରପାର୍ଥୀ ହୋଇଥାନ୍ତି। ଅତଏବ, ମୋର ଆଜି ସୁଖର ଦିନ। ବାମନର ଚନ୍ଦ୍ର ଲାଭରେ ଯେତେ ଆନନ୍ଦ ହେବାର କଥା ଆଜି ମୋର ତହୁଁ ବଳି ଆନନ୍ଦ। ସେଥିଯୋଗେ ଯେଉଁ ସୁଯୋଗଟି ଆଜି ମୋତେ ଭଗବାନ ଦେଲେ ସେଥିପାଇଁ ମୁଁ ତାଙ୍କଠାରେ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି। ମୁଁ ଦାନଯୌତୁକ କିଛି ମାଗୁନାହିଁ, ଧନସମ୍ପଦରେ ମୋର ଆବଶ୍ୟକ ନାହିଁ, ମୋତେ ପ୍ରମିଳାଙ୍କୁ ଦାନକରି କୃତାର୍ଥ କରନ୍ତୁ।'' ଏତକ କହି କାର୍ତ୍ତିକ ରମାନାଥବାବୁଙ୍କ ସମ୍ମୁଖରେ ନତଜାନୁ ହୋଇ ଥରେ ତାଙ୍କ ଆଡ଼କୁ ଥରେ ପ୍ରମିଳାଙ୍କ ଆଡ଼କୁ ଚାହିଁବାକୁ ଲାଗିଲେ।

ବାଃ! ଏଇତ ଚାହି। ଯାରି ନାମ ତ ପ୍ରେମ, ନିଷପଟ ନିଷାମ (?) ନିର୍ଭର ନିଃସ୍ୱାର୍ଥ ପ୍ରେମ। ଯାରି ନାମ ତ ଶିକ୍ଷା, ଯାରି ନାମତ ସଂଯମ, ଯାରି ନାମ ତ ବିନୟ, ଯାରି ନାମ ତ ସଭ୍ୟତା, ଭବ୍ୟତା, ଯାରି ନାମ ତ ଶୀଳତା। ଧନ୍ୟ କାର୍ତ୍ତିକ ଧନ୍ୟ, ଧନ୍ୟ! ନାନା ଭାଷାରେ 'ବାହାବା' 'ବାହାବା' ରବରେ ହଲ୍‌ଗୃହ ପୁଣି ପ୍ରତିଧ୍ୱନିତ ହୋଇଉଠିଲା। ରମାନାଥବାବୁ ଓ ସାରଦାବାବୁ ଦୁଇ ବୃଦ୍ଧଙ୍କ ଆଲିଙ୍ଗନ ଓ ଚକ୍ଷୁରେ ଅଶ୍ରୁ ସହିତ ହାସ୍ୟର ଯୁଦ୍ଧ ଦେଖି ଦର୍ଶକମାନଙ୍କ ଚକ୍ଷୁ ମଧ ବାଷ୍ପଜଡ଼ ହୋଇଯାଇଥିଲା ନିଶ୍ଚୟ ତା' ନହେଲେ ବାହାର ତରଫରୁ ଯେ ଜଣେ ପରମାସୁନ୍ଦରୀ ନବୀନା ଅଯନ୍ ବିନ୍ୟସ୍ତ ବେଶରେ ହଲ୍‌ରେ ପ୍ରବେଶ କରି କେତେବେଳୁ ଗୋଟିଏ କୋଣରେ ଏକା ଏକା ଛିଡ଼ା ହୋଇ ଅନିଶ୍ଚିତଭାବରେ ଚାରିଆଡ଼କୁ ଚାହୁଁଥିଲେ ତାଙ୍କୁ କେହି ଦେଖିପାରିଲେ ନାହିଁ କିପରି! ନବାଗତା ଅଭିଭୂତ ହେଲାପରି ସେହିଠାରେ ଗୋଟିଏ ଚୌକି ଟାଣିନେଇ ବସିପଡ଼ି Platform ଉପରର ଦୃଶ୍ୟ ଦେଖିବାକୁ ଲାଗିଲେ। ତାଙ୍କୁ ଏ ସମସ୍ତ ବାସ୍ତବିକ ଗୋଟାଏ କୌଣସି ପ୍ରକାର ଅଭିନୟ ପରି ମନେହେଲା। ଏଣେ ଯେତେବେଳେ ସାରଦାବାବୁ ଭିତରର ପରଦା ଉଠାଇ ଟିକିଏ ମନ୍ଦ ମନ୍ଦ ଭାବରେ ଆସି ସଭାରେ ବ୍ୟକ୍ତ କଲେ ଯେ ପ୍ରମିଳାଙ୍କର ଦେହ ଓ ମନର ଅବସ୍ଥା ଠିକ୍ ନାହିଁ ଯଦି କାହାରି ଆପତ୍ତିନଥାଏ ତା'ହେଲେ ଆଜି ସଭାଭଙ୍ଗ କରାଯାଉ। ପରେ ଅନ୍ୟ ଶୁଭଦିନ ଦେଖି ଆଜିକାର ବାଗ୍‌ଦାନ ଇତ୍ୟାଦି କାର୍ଯ୍ୟ ହେବ। ସେତେବେଳେ ନବାଗତା ତରୁଣୀ ଘଟନାର ଅର୍ଥ ବୁଝନ୍ତୁ କି ନବୁଝନ୍ତୁ ଟିକିଏ ଅପ୍ରତିଭ ହୋଇ ଉଠିଲେ ଓ ତାଙ୍କ ମୁଖରେ ହାସ୍ୟର କ୍ଷୀଣରେଖା ମଧ ଦେଖାଦେଲା। ବୋଧେ ନିୟତି ମଧ ସମସ୍ତଙ୍କ ପଛଆଡ଼େ ଏହିପରି ମୁଚକିହସା ଦେଉଥିଲେ।

ଯେତେବେଳେ କାର୍ତ୍ତିକ ପୁଣି ଥରେ ନତଜାନୁ କୃତାଞ୍ଜଳି ପୁଟରେ ରମାନାଥବାବୁ ଓ ସଭାଜନଙ୍କୁ ଜଣାଇଲେ ଯେ ସେ ପ୍ରସ୍ତୁତ, ଆଜି ହେଉ, କାଲି ହେଉ - ଯେତେବେଳେ ପ୍ରମିଳାଙ୍କର ଅଭିରୁଚି ହେବ ସେତେବେଳେ ସେ ହାଜର ହେବେ - ଜଳ, ସ୍ଥଳ ଓ ଆକାଶର ସମସ୍ତ ଶକ୍ତି ଏକତ୍ରିତ ହୋଇ ଯଦି ତାଙ୍କ ବିରୋଧରେ ଠିଆ ହୁଅନ୍ତି ତାହାହେଲେ ମଧ ତାଙ୍କୁ ଅଟକାଇ ପାରିବେ ନାହିଁ, ସେତେବେଳେ ନିୟତିଙ୍କର ପ୍ରତିନିଧିସ୍ୱରୂପ ଏ ନବାଗତା ଅସ୍ତବ୍ୟସ୍ତ ହୋଇ ଉଠି ମଞ୍ଚ ଆଡ଼କୁ ଚାଲିଲେ । ସମସ୍ତେ ଅବାକ୍ ବିସ୍ମୟରେ ତାଙ୍କୁ ଓ ତାଙ୍କ ଦ୍ୱିଧା ସଙ୍କୋଚହୀନ ଗତି ପ୍ରତି ଲକ୍ଷ୍ୟ କରୁ କରୁ ହଠାତ୍ କେତେବେଳେ ଆସନ ଛାଡ଼ି ଛିଡ଼ା ହୋଇ ପଡ଼ିଲେ । ସମ୍ଭ୍ରମରେ ସମସ୍ତଙ୍କ ମସ୍ତକ ଟିକିଏ ଅଧିକଭାବରେ ହିଁ ଝୁଙ୍କି ପଡ଼ିଲା - ଏ ଯେପରି ସୌନ୍ଦର୍ଯ୍ୟର ବେଦୀତଳେ ଜଗତର ସ୍ୱତଃ (Spontaneous) ଶ୍ରଦ୍ଧାର ଆତ୍ମନିବେଦନ । ଦୁଇ ହାତ ଟେକି ସୁନ୍ଦରୀ ସଭା ଉଦ୍ଦେଶ୍ୟରେ ଗୋଟିଏ ନମସ୍କାର କରି ହସ ହସ ହୋଇ ବେଦୀଆଡ଼କୁ ଅଗ୍ରସର ହେଲାବେଳେ ସାରଦାବାବୁ କହିଲେ, ''କିଏ ! ରୀନା !'' ''ଉର୍ମିଳା ! ରାଣୀ !'' ବୋଲି କହି କାର୍ତ୍ତିକ ମଧ ସମ୍ଭ୍ରମରେ ବେଦୀରୁ ଓହ୍ଲାଇ ଆସି ତାଙ୍କୁ ସମାରୋହରେ ବେଦୀ ଉପରକୁ ନେଇଗଲେ । ''ମୁଁ ଏହିମାତ୍ର ଷ୍ଟେସନ୍‌ରୁ ଆସୁଛି'' ବୋଲି କହି ଉର୍ମିଳା ସଲଜ୍ଜ ଅଥଚ ଅବିଚଳିତ ଚରଣରେ ବେଦୀ ଉପରକୁ ଯାଇ ସାରଦାବାବୁ ରମାନାଥବାବୁ ପ୍ରଭୃତିଙ୍କର ଚରଣ ବନ୍ଦନା କଲେ । କାହାର ସାଧ ହେଲାନାହିଁ ବଡ଼ ପାଟିରେ ଗୋଟାଏ ଆଶୀର୍ବାଦ ପର୍ଯ୍ୟନ୍ତ କରିବାକୁ ବା ଗୋଟାଏ କୁଶଳ ପ୍ରଶ୍ନ କରିବାକୁ । ନିୟତି ଆଜି ଅତି ବଡ଼ ବଡ଼ ଦାନ ଖେଳି ସାରିଥିଲା ଏହି ଅଳ୍ପ କେତୋଟି ମାନବଙ୍କ ଚଉପାର ପାଲିରେ - ଏପର୍ଯ୍ୟନ୍ତ ଏମାନେ ଜାଣିପାରି ନଥିଲେ ବାଜି ଜିତିଲେ କି ହାରିଲେ, ନ ବୁଝିପାରି ବିମୂଢ଼ପ୍ରାୟ ହୋଇଯାଇଥିଲେ । ଏପରି ଅବସ୍ଥାରେ ନିୟତିର ଏହି ପାରିଲା ସାରଟି ଉଠିବସି ନୂଆ କରି ଚାଲିବାର ଉଦ୍ଦେଶ୍ୟ କେହି ସମଝି ନପାରି ଯେପରି ଏକାବେଳକେ ମୂକ, ନିଶ୍ଚେଷ୍ଟ ହୋଇ ରହିଲେ । ସମସ୍ତଙ୍କ ମନରେ ଗୋଟିଏ କଥା ଯୁଗପତ୍ ଖେଳିଗଲା, ''ଏକି ଉତ୍ପାତ, ଏକି ବିଭ୍ରାଟ ! କଥା ନାହିଁ ବାର୍ତ୍ତା ନାହିଁ, - ଖବରଅନ୍ତରର ନାମମାତ୍ର ନାହିଁ - ଇଏ କାହୁଁ ଆସିଲା - କାହିଁକି ଆସିଲା !'' ଉର୍ମିଳା କିଛି ମାତ୍ର ଅପ୍ରତିଭ ନହୋଇ କହିଲେ, ''ମାମା କାହିଁ ? - ଦିଦି କାହିଁ ?'' କାର୍ତ୍ତିକ ମଧ କି ଗୋଟାଏ ଘୋରରେ ଘାଣ୍ଟି ହେଉଥିଲେ - ଚାହିଁ ଉଠି କହିଲେ, ''ଭିତରକୁ ଯିବ ଚାଲ !'' ''ତମେ ଯଦି ପ୍ରସ୍ତୁତ ମୁଁ ବି ପ୍ରସ୍ତୁତ କାର୍ତ୍ତିକ ଭାଇ !'' ବୋଲି କହି ଉର୍ମିଳା ଗୋଟାଏ ଉଚ୍ଚ ହସ ହସି କାର୍ତ୍ତିକଙ୍କ ଆଡ଼କୁ ଅଗ୍ରସର ହୋଇ ଆସିଲେ ।

(୯)

ଏ ସଂସାର ତପୋବନରେ ପ୍ରତ୍ୟେକ ପୁରୁଷ ପାଇଁ ସେହି ଗୋଟିଏ ନାରୀ ଓ ପ୍ରତ୍ୟେକ ନାରୀ ପାଇଁ ସେହି ଗୋଟିଏ ପୁରୁଷ କେଉଁଠି ଲୁଚି ରହିଛି ଯାହା ପାଇଁ ସମସ୍ତେ ଯେପରି ତପସ୍ୟା କରୁଛନ୍ତି ସାରା ଜୀବନଟା ଯାକ। ସେହି ଜଣକ ପାଇଁ। ସେହି ଜଣକ କେତେବେଳେ ଧ୍ୟାନଗତ ମୂର୍ତ୍ତି ତ୍ୟାଗ କରି ସଶରୀରରେ ପହଞ୍ଚିଯିବ ଏହି ପ୍ରତୀକ୍ଷାରେ। ପହଞ୍ଚିଗଲେ ଚିହ୍ନିବାକୁ ତିଳେ ବିଳମ୍ବ ନାହିଁ - ସେ ଯେପରି ବହୁକାଳର ପରିଚିତ, ଚିର ଆପଣାର। ସେହିଜଣକ ଆଉ କେହି ନୁହେଁ। ସେହିଜଣକ ହୃଦୟର ଦ୍ୱାର ମୁକୁଳାଇ ତନ୍ତ୍ରୀ ତନ୍ତ୍ରୀରେ ବୀଣାର ଝଙ୍କାର ତୋଳିପାରେ - ସ୍ମୃତି ପଟରୁ ଶତଯୁଗର ଶତଜନ୍ମ - ଜନ୍ମାନ୍ତରର ଅନ୍ଧାର କ୍ଷଣକ ମଧ୍ୟରେ ପୋଛି ପକାଇ ଦେଖାଇ ଦେଇପାରେ, 'ହଁ-ମୁଁ ସେହି।' ଦେହରେ ମନରେ ସାରା ଅନୁଭୂତିରେ ପୁଲକର ସଞ୍ଚାର କରି ଏ ଜ୍ଞାନ ଯେତେବେଳେ ସେ ପୁରୁଷ ବା ନାରୀର ଅସ୍ତିତ୍ୱକୁ କ୍ଷଣକ ମଧ୍ୟରେ ଗ୍ରାସ କରି ବସେ ସେତେବେଳେ ସେ ନିର୍ବିବାଦରେ ଭୂତ, ଭବିଷ୍ୟତ, ବର୍ତ୍ତମାନ ଭୁଲିଯାଏ। ଅନ୍ତଃସଲିଳା ଫଲ୍‌ଗୁଧାରାରେ ପଡ଼ି ଅତୀତ ଘଟନାଯାକ କ୍ଷୁଦ୍ର କ୍ଷୁଦ୍ର ଝରଣା ପରି ବା ଅସଂବଦ୍ଧ କୁଟାକାଠିପତ୍ର ପରି କୁଆଡ଼େ ଭାସି ଗୋଳାଇମିଳାଇ ଯାଏ। ଆଶାଆକାଂକ୍ଷା, କାମନାବାସନା ଯାହା କିଛି ତତ୍‌ପୂର୍ବରୁ ହୃଦୟକୁ ଅଧିକାର କରିରଖିଥାଏ ସବୁ ଯେପରି ଏ ଝଙ୍କାର ଫୁତ୍‌କାରରେ ଛିନ୍ନଭିନ୍ନ ହୋଇଯାଏ।

ହୃଦୟରାଜ୍ୟର ଏ ଯାଦୁକରର ମାୟା, ଏ ଘୋର ବିଡ଼ମ୍ବନା କାର୍ତ୍ତିକଙ୍କୁ ସେଦିନ ସେହି ମୁହୂର୍ତ୍ତରେ ପ୍ରକଟିତ ହେଲା ଯେଉଁ ମୁହୂର୍ତ୍ତରେ ଉର୍ମିଳା ଆସି ଉଦାସୀନ ଅଥଚ ପ୍ରଗଳ୍‌ଭ ହସଟିଏ ହସି ତାଙ୍କ ସମ୍ମୁଖରେ ବେଦୀ ଉପରେ ଛିଡ଼ା ହୋଇ ପରିହାସ ଛଳରେ କହିଲେ, ''ତୁମେ ଯଦି ପ୍ରସ୍ତୁତ କାର୍ତ୍ତିକ ଭାଇ - ମୁଁ ବି ପ୍ରସ୍ତୁତ।'' ବାଲ୍ୟକାଳର ଉର୍ମିଳାଙ୍କୁ ଆଉ ଚିହ୍ନିବାର ଉପାୟ ନାହିଁ। ସୌନ୍ଦର୍ଯ୍ୟଦେବତା ଯେପରି ତାଙ୍କୁ ଦୁଇ ହାତରେ ମଣ୍ଡି ଦେଇଛି। ସରଳ ଉଚ୍ଚ ଗଠନ ଅନୁପାତରେ ମାଂସଳ ଦେହ ରକ୍ତିମାଭ ଗୌରବର୍ଣ୍ଣରେ ଲାବଣ୍ୟର ଛଟାଦୀପ୍ତ କମଳଲୋଚନ ଯୁଗଳରେ ଭାବର ମଦିରା - ସ୍ଫୁଟ ବିମ୍ବାଧରରେ ମୋହିନୀ ଛଟାକୁ ଲକ୍ଷ୍ୟ କରି ଶିଳ୍ପୀର ନିପୁଣ ହସ୍ତ ଯେପରି ଭ୍ରୂଯୁଗଳରୁ ତୀକ୍ଷ୍ଣ ନାସାର ଶରଟିକୁ ଚିରସନ୍ଧାନ କରି ରଖିଦେଇଛି - ବହୁମାନୀ ଚିବୁକଟି ସେଯୋଗେ କ୍ଷଣେ ଉପରକୁ କ୍ଷଣେ ତଳକୁ ଭଙ୍ଗୀ କରୁଛି - ବିମ୍ବୌଷ୍ଠର ପ୍ରଗଲ୍‌ଭତାରେ ମାତି ତା'ର ଜଡ଼ତାରେ ନିଷ୍ପିଷ୍ଟ ହୋଇ। ନିବିଡ଼ ବଦନରେ ଦେହଲତାକୁ

ବାନ୍ଧିରଖିଛି ଯୌବନର ଶିହରଣ - ମଧୁମୟ ବନ୍ଧନର ଢେଉ ତରଙ୍ଗାୟିତ ଦେହରେଖାରେ ସୁସ୍ପଷ୍ଟ ଦେଖାଯାଉଛି ଅଥଚ ଲୁଚି ରହିଛି ଦୃଷ୍ଟ ଅଦୃଷ୍ଟର ସନ୍ଧି ଓ ସୀମାନ୍ତ ରେଖା ପରି । ବାଲ୍ୟକାଳର ଉର୍ମିଳା ଆଉ ନାହିଁ - ସେ ଲୀଳା ଚପଳ ଭଙ୍ଗୀର ଅବଶିଷ୍ଟ ଯାହା ଯୌବନର ଭାରରେ ସୁଦ୍ଧା ଲୀନ ହୋଇପାରି ନାହିଁ ଓ ସେହି ସଙ୍ଗୀତପ୍ରିୟ ତୀବ୍ର ଓ ତୀକ୍ଷ୍ଣ କଣ୍ଠସ୍ୱର ଯାହା ଟିକିଏ ମାତ୍ର ପରିବର୍ତ୍ତିତ ହୋଇନାହିଁ । ଏହିଥିରୁ କେବଳ ପୂର୍ବ ଉର୍ମିଳାର ଆଭାସ ମିଳେ । କାର୍ତ୍ତିକ ମଧ ସେହି ଲକ୍ଷଣରୁ ଓ ତାଙ୍କ କାର୍ଯ୍ୟ ପରମ୍ପରାରୁ ଉର୍ମିଳା ବୋଲି ଚିହ୍ନିଲେ । କିନ୍ତୁ ଭୟେ ଚିହ୍ନାଚିହ୍ନି ପୂର୍ବରୁ ତାଙ୍କ ହୃଦୟ, ଉର୍ମିଳାଙ୍କୁ ଚିହ୍ନି ସାରିଥିଲା ସେହି ଜଣକ ଉର୍ମିଳା ବୋଲି ଯାହାଙ୍କ ପାଇଁ ସେ ଓ ଯେ ତାଙ୍କ ପାଇଁ ସୃଷ୍ଟି ! ବିନା ଦ୍ୱିଧାରେ - ବିନା ବିଚାରରେ !

ଆଉ ପ୍ରମିଳା ? କିଏ ସେ ? ଅଚିହ୍ନା ଅଜଣା ପରି କାର୍ତ୍ତିକଙ୍କ ମନ ପ୍ରମିଳାର ଚିନ୍ତାକୁ ଆଗରୁ ହଟାଇ ଦେଲା କ୍ଷଣକ ମଧରେ । ନ ମାନିଲା ସେଦିନ ପ୍ରେମର ଅଭିନୟ ଓ ଆତ୍ମନିବେଦନ - ନ ମାନିଲା ଆଜିକାର ବୀରତ୍ୱ ଓ ମହତ୍ୱର ଆସ୍ଫାଳନ ! ପ୍ରମିଳାଙ୍କୁ ତ ସେ ଭଲ ପାଉନାହାନ୍ତି - ପ୍ରମିଳା ଯଦି ତାଙ୍କୁ ଭଲପାଉଛି ସେଟା ତା'ର ଦୋଷ - କାର୍ତ୍ତିକଙ୍କର କିଛି ଦୋଷ ନାହିଁ ତହିଁରେ । ଆଉ ସେ ଯେ ତାଙ୍କୁ ବିବାହ କରିବାକୁ ପ୍ରସ୍ତୁତ ହୋଇଥିଲେ ତାହା କେବଳ ବୀରତ୍ୱ ଓ ମହତ୍ୱର ପରାକାଷ୍ଠା ଦେଖାଇବା ପାଇଁ । ସେତ ଯାଇ ଗଣେଶଙ୍କ ଗୋଡ଼ ଧରିନଥିଲେ ପ୍ରମିଳାଙ୍କୁ ଏପରିଭାବରେ ପରିତ୍ୟାଗ କରିବାକୁ - ହଁ, ସେ ପ୍ରମିଳାଙ୍କୁ ଚାହିଁଥିଲେ ସତ୍ୟ କିନ୍ତୁ ସେପରି ଅନେକେ ଅନେକଙ୍କୁ ଚାହିଁଥାନ୍ତି ସ୍ୱାର୍ଥ ପାଇଁ । ଆଉ ରୂପସୀ ତରୁଣୀ ବାଗ୍‌ଦତ୍ତା ହେଲେ ସୁଦ୍ଧା ଆତ୍ମନିବେଦନ କଲାରୁ ଯାହା ସେ କହିଥିଲେ ବା କରିଥିଲେ ତାହା ଧର୍ତ୍ତବ୍ୟ ମଧରେ ନୁହେଁ । ହୁଏ ତ ସେ ନିଜେ ନିଜର ମନ ଭଲ ରୂପେ ବୁଝି ନଥିଲେ ସେତେବେଳେ । କେବଳ ଭିତରର ହାହାକାର ହିଁ ଶୁଣିଥିଲେ - ବିଲାତ ପ୍ରବାସ ପରେ କଟକରେ ତାଙ୍କ ଅନ୍ତର ସ୍ଫୁର୍ତ୍ତିର ଆଦୌ ଅବକାଶ ନଥିଲା । ବାଲ୍ୟସ୍ମୃତି ଉପରେ ନିର୍ଭର କରି ଓ କେବଳ ପ୍ରମିଳାଙ୍କ ଠାରେ ବିଦେଶୀ ହାୱାର ସନ୍ଧାନ ପାଇ ତାଙ୍କୁ ହିଁ ଯେ ସେ କ୍ଷୁଧିତ ଅନ୍ତରର ଭୋଗ ରୂପେ ଗ୍ରହଣ କରିଥିଲେ । ଏଟା କିଛି ବିଶେଷ ଅନ୍ୟାୟ ବା ଆଶ୍ଚର୍ଯ୍ୟ ବିଷୟ ନୁହେଁ ତ ! ତାଙ୍କ ଭାଗର ଧନଲାଭର ଆଶାକୁ ଛାଡ଼ିଦେଲେ ମଧ ହାୟ ପ୍ରମିଳା ! ହାୟ ଗଣେଶ ! ହାୟ କାର୍ତ୍ତିକ !

\+ + + + +

ସଚକିତ ନୟନରେ କାର୍ତ୍ତିକ ଉର୍ମିଳାଙ୍କ ଆଖିକୁ ଚାହିଁଲେ କିନ୍ତୁ ଉର୍ମିଳା ଅନ୍ୟ ଆଡ଼କୁ ଅନାଇରହିଲେ । ସାରଦାବାବୁ କହିଲେ, ''କାର୍ତ୍ତିକ ଉରୀକୁ ଭିତରକୁ ନେଇଯାଅ !'' 'ଆସ !' ବୋଲି କହି କାର୍ତ୍ତିକ ଅଗ୍ରସର ହେଲେ । କୁଣ୍ଠା ଓ ସଙ୍କୋଚକୁ ଏଡ଼ିଦେଇ ଉର୍ମିଳା ସଙ୍ଗେ ସଙ୍ଗେ ଚାଲିଲେ କିନ୍ତୁ କାର୍ତ୍ତିକଙ୍କ ମୁହଁକୁ ଚାହିଁ ପାରିଲେ ନାହିଁ । ତାଙ୍କର ସମସ୍ତ ପ୍ରଗଳ୍ଭତା ଓ ସରସତା ଯେପରି କ୍ଷଣକେ ଉଭେଇ ଯାଇଥିଲା । ପରଦା ପାରହୋଇ ଉର୍ମିଳା କହିଲେ, ''ମୁଁ ଦିଦି ପାଖକୁ ଯିବି'' - ସେହିପରି ଅନ୍ୟଆଡ଼କୁ ମୁହଁ ଫେରାଇ ।

ସେ ହଲ୍‌ଟିରେ କେହି ନଥିଲେ । ଦୂର କୋଣଘରୁ ସ୍ତ୍ରୀ କଣ୍ଠ ଶୁଣାଯାଉଥିଲା - ବୋଧହୁଏ ପ୍ରମିଳା ସେଘରେ ହତଚେତନ ହୋଇ ପଡ଼ିଥିଲେ । କାର୍ତ୍ତିକ ସାହସ ସଂଗ୍ରହ କରି କହିଲେ, ''ମୋତେ କ'ଣ କିଛି କହିବାର ନାହିଁ, ରାଣୀ ?''

''ରାଣୀ-ନା ? Will you explain please - please ?'' ବୋଲି ତୀବ୍ର ଭାବରେ କହି ହଠାତ୍ ଉର୍ମିଳା ଫେରି ଠିଆ ହେଲେ ଓ କାର୍ତ୍ତିକଙ୍କ ଠାରୁ କୈଫିୟତ ମାଗିଲେ - ଠିକ୍ କୌଣସି ମହାରାଣୀ ପରି । କାର୍ତ୍ତିକ ବିବ୍ରତ ଅଥଚ ଦୃଢ଼ସ୍ୱରରେ କହିଲେ, ରାଣୀ - ତୁମେ କ'ଣ ଭାବିଛ ମୁଁ ତୁମକୁ ଭୁଲିଯାଇଛି ନା ? ମୁଁ ଭୁଲି ନାହିଁ । ମୁଁ ତୁମକୁ ଚାହେଁ - I want you, you only''.

''ଶୁଣି ସୁଖୀ ହେଲି - ଧନ୍ୟବାଦ । କିନ୍ତୁ ଆଜିକାର ଘଟନାଗୁଡ଼ିକ ମୋତେ ଟିକିଏ ବୁଝାଇ ଦେଇପାରିବକି ଦୟାକରି ? ମହାତ୍ମା ପୁରୁଷ - ତୁମର କେଉଁଟି ସ୍ୱରୂପ ?'' ବୋଲି ଶ୍ଳେଷଦଗ୍ଧ ସ୍ୱରରେ କହି ଉର୍ମିଳା କାର୍ତ୍ତିକଙ୍କ ପାଖକୁ ଆଗେଇ ଆସିଲେ ।

କାର୍ତ୍ତିକ ବ୍ୟଗ୍ରଭାବରେ ତାଙ୍କ ହାତ ଧରି ମିନତି ସ୍ୱରରେ କହିଲେ, ''ଅଧୀର ହୁଅନାହିଁ - ମୁଁ ବୁଝାଇ ଦେଉଛି ରାଣୀ ! ଆଜି ମୁଁ ଯାହା କଲି ବା କହିଲି ତାହା କେବଳ ଜବରଦସ୍ତି ଏତକ କ'ଣ ବୁଝିପାରୁନାହଁ ? ଏପରି ଘଟନାଚକ୍ର ଓ ଅବସ୍ଥା ସଙ୍କଟରେ ପଡ଼ିଲେ କାହାର ମସ୍ତିଷ୍କ ବିକୃତି ନଘଟିବ ? ଏପରି ଅପ୍ରତ୍ୟାଶିତ ଭାବରେ ପିତାଙ୍କର ଅଧୀର ଆହ୍ୱାନ, ଯୁବମଣ୍ଡଳୀର ସାଗ୍ରହ ଅପେକ୍ଷା ଓ ନାରୀର ଅପମାନ - ଏ ସମସ୍ତକୁ ଉପେକ୍ଷା କରିବା ଭଳି ସମତା ମୋର ନଥିଲା । ନ ହେଲେ ମୁଁ ପ୍ରମିଳାଙ୍କର କରପ୍ରାର୍ଥୀ କେବେ ନଥିଲି ବର୍ତ୍ତମାନ ମଧ୍ୟ ନାହିଁ । ନାଁ ନା ମୁଁ ପ୍ରତିଜ୍ଞା କରି କହୁଛି ଆଉ ମୋର ବିଶ୍ୱାସ, ନବା କୌଣସି ଭ୍ରମବଶତଃ ଏପରି କରିଛି । ସେ ଭ୍ରମ ଭାଙ୍ଗିଲେ ତା'ର ପ୍ରମିଳାଙ୍କର ମିଳନ ହେବ ।''

''ହଁ, ହୁଁ - ଯା ଭିତରେ ଆଉକିଛି ନିଷ୍ଚୟ ଅଛି । ମୁଁ ସବୁ ଦେଖିଛି, ଶୁଣିଛି । ଗଣେଶ ଭାଇଙ୍କୁ ମୁଁ ଶ୍ରଦ୍ଧା କରେ - ମୁଁ ଜାଣେ ସେ କେବେଁ କୌଣସି ପ୍ରକାର ନୀଚକାର୍ଯ୍ୟ କରିନପାରନ୍ତି । ଯା ଭିତର ଘଟଣା ଆଉ କିଛି ନିଷ୍ଚୟ ଅଛି ' ମୋତେ ଲୁଚାଇଲେ ମୁଁ ଛାଡ଼ିବି ନାହିଁ - ମୁଁ ନିଷ୍ଚୟ ଜାଣିବି । ନିଷ୍ଚୟ ନିଷ୍ଚୟ । ଆଉ ମୁଁ ନଜାଣିବା ପର୍ଯ୍ୟନ୍ତ ତୁମେ ମୋଠାରୁ ଦୂରରେ ରହିବ - ଯାଅ ! ମନେକରିବ ନାହିଁ ଯେ ମୁଁ ତୁଚ୍ଛାଟାରେ ଆସିଛି କଲିକତାରୁ ଧାଇଁ - ଅଲୋଡ଼ା, ଅଖୋଜାରେ ! ମୁଁ କାଲିମାତ୍ର ଜାଣିଲି ଯେ ତୁମେ ବିଲାତରୁ ପ୍ରାୟ ମାସେ ହେଲା ଫେରିଛ ଓ ଆଜି ଦିଦିର ନିର୍ବନ୍ଧ । ଆଚ୍ଛା ବିଲାତରୁ ଆସି ମାସେ ହେଲା ଚିଠି ଦେଇନାହଁ - ଆସିବାର ଖବରଟି ପର୍ଯ୍ୟନ୍ତ ଦେଇନାହଁ - ଯାର କିଛି ଜବାବ୍ ଦେଇ ପାରିବକି ତୁମେ, ମା' ପଚାରିଛନ୍ତି ?

''ମା' ପଚାରିଛନ୍ତି - ତୁମେପଚାରୁନାହଁ ରାଣୀ ?''

''ନା ମୁଁ ସବୁ ବ୍ୟାପାରରେ ମା'ଙ୍କର ଅଧୀନ ଜାଣ ତ ! ତୁମର ସମସ୍ତ ଚିଠିପତ୍ର ଓ ମୁଦିଟି ଯାହା ବିଲାତ ଯିବା ପଥରେ ମୋତେ କଲିକତାରେ ଦେଇଯାଇଥିଲ ଆଜିକୁ ୩ ବର୍ଷ ପୂର୍ବେ ସବୁ ମା'ଙ୍କ ଜିମା କରିଦେଇଛି ।'' ''ଅର୍ଥାତ୍ ।'' '' ହଁ, ଅର୍ଥାତ୍ You must explain fully (ପୂରା କୈଫିୟତ ଆବଶ୍ୟକ) ଦରକାରହେଲେ କୋର୍ଟରେ । ନା-ନା, ମୋ ହାତ ଧରିବାର ଅଧିକାର ତୁମର ନାହିଁ - ଦୂରରେ ରୁହ - ଯାଅ - ମୁଁ ତୁମକୁ ଘୃଣା କରେ - ନୀଚ ପ୍ରବଞ୍ଚନାକାରୀ ।'' ଏତକ କହି ଦ୍ରୁତଗତିରେ ଉର୍ମିଳା ଭିତରକୁ ଚାଲିଗଲେ । କାର୍ତ୍ତିକ ସେହି ସ୍ଥାନରେ ଠିଆହୋଇ ଭାବିବାକୁ ଲାଗିଲେ । ହଁ ଠିକ୍ ତ ! କଲିକତାରେ ଉର୍ମିଳା ତାଙ୍କ ବିବାହ ପ୍ରସ୍ତାବରେ ରାଜି ହୋଇ କହିଥିଲେ,''ତୁମେ ଯେତେବେଳେ ପ୍ରସ୍ତୁତ ମୁଁ ବି ପ୍ରସ୍ତୁତ ବୋଲି ଜାଣିବ !'' ଆଜି ସେଇ କଥାର ନକଲ କରି ଉର୍ମିଳା ସଭାବେଦୀ ଉପରେ ତାଙ୍କୁ ଆଚମ୍ବିତ କରିଦେଇଥିଲା ପରା । ଆଉ ତାଙ୍କ ହାତରେ ସେହି ମୁଦିଟା ଥିଲା ନା - ଯେଉଁଟା ବିଲାତ ଯାତ୍ରାର ଠିକ୍ ପୂର୍ବରୁ ପିନ୍ଧାଇ ଦେଇ ଯାଇଥିଲେ ? କାର୍ତ୍ତିକ ଆଉ ବେଶି ଭାବିପାରିଲେ ନାହିଁ । ବିଲାତର ବହୁଦର୍ଶିତା ଲାଭ କରି କାର୍ତ୍ତିକ ଶେଷ ଆଡ଼କୁ ଉର୍ମିଳା ପ୍ରସଙ୍ଗ ପରିତ୍ୟାଗ କରିବାକୁ ସଚେଷ୍ଟ ହେଲେ । ପ୍ରଥମେ କଟକ ଆସି ତାଙ୍କୁ ଅନୁସନ୍ଧାନ କରି ଜାଣିବାକୁ ବିଳମ୍ବ ହେଲା ନାହିଁ ଯେ ଉର୍ମିଳା ପିତୃଧନରୁ ବଞ୍ଚିତା - ନହେଲେ ସେ ବୋଧହୁଏ ବହୁପୂର୍ବରୁ କଲିକତା ଯାଇସାରିଥାନ୍ତେ । ସେ ଜାଣିଶୁଣି ଝାରସୁଗୁଡ଼ା ଓ ସମ୍ବଲପୁର ବାଟେ କଟକରେ ପହଞ୍ଚିଥିଲେ ବୋମ୍ବେଇରୁ ।

''କାର୍ତ୍ତିକ - ବାବା, ସାଗରମଲ ଏହି ମୁଦିଯୋଡ଼ିକ ଦେଇଗଲା - ତା'ର ଭୁଲ୍ ଧାରଣା ଆମର କାମକୁ ଆସିଛି - ନୁହେଁ ? ପ୍ରମିଳା ଓ ଗଣେଶ ପରିବର୍ତ୍ତେ ପ୍ରମିଳା ଓ କାର୍ତ୍ତିକଙ୍କ ନାମ ଖୋଳାଇଛି - ସେ ଭୁଲ୍ କିନ୍ତୁ ଠିକ୍ ହେଲା ! ଯାହା ହେଉ ବାବା, ଚାଲ ମୁଦିଟିଏ ପ୍ରମିଳାକୁ ପିନ୍ଧାଇ ଦେଇ ଆଜି ଦିନଟିକୁ ଧନ୍ୟ କରିଦେଇ ଯା ବାବା -ଆସ ସାରଦାଭାଇ - ରେଜିଷ୍ଟରୀ ପାଇଁ କାଗଜପତ୍ର ସବୁ ଦେଇ ଆସିଲ ନା ? ଏଣେ ମୁଦିଯୋଡ଼ିକ ଆସି ପହଞ୍ଚିଛି - ମୁଁ କାର୍ତ୍ତିକକୁ କହୁଥିଲି ପିନ୍ଧାଇ ଦେଇଯାଉ -''

ସାରଦାବାବୁ ହତଭମ୍ବ କାର୍ତ୍ତିକଙ୍କୁ କହିଲେ, ''କାର୍ତ୍ତିକ - ଧର, ମୁଦି ନେଇ ଚାଲ - କେଉଁ ଘରେ ଅଛି ମୋ ମା ?'' କହି ଅଗ୍ରସର ହେଲେ । ''ଯେ ଆଜ୍ଞା'' ବୋଲି କହି କାର୍ତ୍ତିକ ମଧ ପଛେ ପଛେ ଚାଲିଲେ ।

+ + + + +

ଉର୍ମିଳାଙ୍କ କୋଳରେ ମୁହଁ ରଖି ପ୍ରମିଳା ନୀରବରେ ଅଶ୍ରୁତ୍ୟାଗ କରୁଥିଲେ । ଉର୍ମିଳା ବଜ୍ରକଠିନ ଦୃଷ୍ଟିରେ ଶୂନ୍ୟକୁ ଚାହିଁ ରହିଥିଲେ । ମଝିରେ ମଝିରେ ଅଧରକୋଣରେ ଟିକିଏ ଟିକିଏ ଦରହାସ ମଧ ଫୁଟି ଉଠୁଥିଲା । ପ୍ରମିଳାଙ୍କ ଠାରୁ ସେ ସବୁ ଘଟନା ଶୁଣି ସାରିଥିଲେ - ତାଙ୍କ ଜନ୍ମ ଦିନର ଘଟନା ପର୍ଯ୍ୟନ୍ତ ଆଭାସରେ ବୁଝି ସାରିଥିଲେ । ଏତିକିବେଳେ ବାହାରେ ତାଙ୍କ ପିତାଙ୍କର ଓ ସାରଦାବାବୁଙ୍କର କଣ୍ଠସ୍ୱର ଶୁଣାଗଲା । ''ଦିଦି-ମୁଁ ଯାଏଁ-କିଏ ସବୁ ଆସୁଛନ୍ତି ପରା ତୋ ପାଖକୁ'' ବୋଲି କହି ସଯତ୍ନରେ ପ୍ରମିଳାଙ୍କୁ ଶୁଆଇଦେଇ ଉର୍ମିଳା ଅନ୍ୟ ଦ୍ୱାର ଦେଇ ସେ ଘରୁ ବାହାରି ଗଲେ ।

କାର୍ତ୍ତିକ ହାଣମୁହଁକୁ ଗଲାପରି ଅଗ୍ରସର ହୋଇ ପ୍ରମିଳାଙ୍କ ଦକ୍ଷିଣ ହସ୍ତଟି ନିଜ ହସ୍ତରେ ନେଇ ମୁଦିଟି ପିନ୍ଧାଇଦେଲେ । ଅନାମିକାରେ ମୁଦିଟି ଠିକ୍ ହେଲା - କେବଳ ଯାଉଁ ଯାଉଁ ମଧମାରେ ଥିବା ଗୋଟାଏ ମୁଦିରେ ବାଜି ଟିକିଏ ଶବ୍ଦ ହେଲା । ସେଥିରୁ ସ୍ୱପ୍ନବେଷ୍ଟିତ କାର୍ତ୍ତିକ ଚକିତରେ ସେ ମୁଦିଟି ଦେଖିଲେ - ଦେଖି ଚିହ୍ନିଲେ ଓ ହଠାତ୍ ଚମକୃତ ହୋଇ କିଂକର୍ତ୍ତବ୍ୟବିମୂଢ଼ ପ୍ରାୟ କ୍ଷଣେକାଳ ରହିଗଲେ ସେହିପରି ପ୍ରମିଳାଙ୍କ ହାତଧରି । ଏତିକିବେଳେ ସେପଟ ଦ୍ୱାର ଫାଙ୍କରୁ ଉର୍ମିଳାଙ୍କ କଣ୍ଠ ନିଃସୃତ ହୁଳହୁଳି ହାସ୍ୟ ମୁଖରିତ ଅଶ୍ରୁସିଞ୍ଚିତ ହୋଇ ତାଙ୍କୁ ଆହୁରି ଚମତ୍କୃତ କରିଦେଲା । ସେ

ହଠାତ୍ ସେ ମୁଦିଟିକୁ ପ୍ରମିଳାଙ୍କ ମଧ୍ୟମାଙ୍ଗୁଳିରୁ ସବଳେ ଛଡ଼ାଇ ନେଇ ସେଠାରୁ ବେଗରେ ବାହାରି ପଳାଇଗଲେ । ସେ ମୁଦିଟି 'କାର୍ତ୍ତିକ' ନାମାଙ୍କିତ ସେହି ମୁଦି ଯାହା ସେ ଉର୍ମିଳାଙ୍କ ଅନାମିକାରେ ବିଲାତ ଯାତ୍ରା ପୂର୍ବରୁ ପିନ୍ଧାଇ ଦେଇଯାଇଥିଲେ ଓ ଯାହା ଉର୍ମିଳା ମା'ଙ୍କୁ ଦେଇଆସିଛି ବୋଲି କିଛିକ୍ଷଣ ପୂର୍ବେ କାର୍ତ୍ତିକଙ୍କୁ ଜଣାଇ ଧମକାଇଥିଲେ ।

ପ୍ରମିଳାଙ୍କ ଠାରୁ ସବୁକଥା ବାହାର କରିନେଇ ଉର୍ମିଳାଙ୍କ ହୃଦୟ ଅନଭ୍ୟସ୍ତ କରୁଣରେ ଆର୍ଦ୍ର ହୋଇଯାଇଥିଲା । ଦିଦି ସୁଖୀ ହେଉ ବୋଲି ମନାସି ତାଙ୍କ ସୁଖପଥର କଣ୍ଟକ ଏହି ଶୁଭଦିନର ସ୍ମାରକସ୍ୱରୂପ ଅଙ୍ଗୀକାର ମୁଦ୍ରିକାଟି ସେ ପରମ ଆଦରରେ ପ୍ରମିଳାଙ୍କ ହାତରେ ପିନ୍ଧାଇ ଦେଇଥିଲେ - ସେହି ମୁହୂର୍ତ୍ତରେ ଯେଉଁ ମୁହୂର୍ତ୍ତଟି ଏ ସ୍ୱାର୍ଥପର ଜଗତରେ ସାର - ଯେଉଁ ମୁହୂର୍ତ୍ତଟି ଭାବରାଜ୍ୟର ଅଧିକାରରେ, ଯେଉଁ କ୍ଷଣକରେ ଅନ୍ତରର ମହନୀୟତା ଓ କମନୀୟତା ହଠାତ୍ ସ୍ୱାର୍ଥଚିନ୍ତାକୁ ଡୁବାଇ ଆନନ୍ଦର ଜୟଗାନ ଗାଇ ଉଠେ ଆତ୍ମଦାନରେ ଆତ୍ମବଳୀରେ ।

ଉର୍ମିଳାଙ୍କ ଆତ୍ମବଳୀର ଗନ୍ଧ ପର୍ଯ୍ୟନ୍ତ ପ୍ରମିଳା ପାଇପାରି ନାହାନ୍ତି ତାଙ୍କର ବର୍ତ୍ତମାନ ମନ ଅବସ୍ଥାରେ । ସେ ମୁଦିର ଇତିହାସ ପ୍ରମିଳାଙ୍କୁ ଅଜଣା । ମା' ଦେଇଥିବେ ପରା — ନହେଲେ ଉର୍ମିଳା କାହିଁକି ଦିଅନ୍ତା ପ୍ରଶ୍ନ କରିବାକୁ ମଧ ମନହେଲା ନାହିଁ — ମା'ଙ୍କ ପ୍ରସଙ୍ଗ ଦୁହିଙ୍କ ମଧରେ କେବେହେଲେ ଉଠିନାହିଁ — ଦୁହେଁ ଯେପରି ଜାଣିଶୁଣି ସେ ପ୍ରସଙ୍ଗକୁ ଏଡ଼ି ଚାଲିଥାନ୍ତି । ପ୍ରମିଳା ମଧ ନିଜ ଭାବରେ ନିଜେ ବ୍ୟସ୍ତ - ଉର୍ମିଳାଙ୍କ ବ୍ୟବହାର ଓ କଥାବାର୍ତ୍ତାର ଭଙ୍ଗୀ ଲକ୍ଷ୍ୟ କରିବାର ତାଙ୍କୁ ସମୟ କାହିଁ ? ନହେଲେ ଯେଉଁ ଘୋର ଯୁଦ୍ଧ ଉର୍ମିଳାଙ୍କ ଅନ୍ତର ମଧରେ ଚାଲିଥିଲା ତାହା ସେ ଅନ୍ୟ ସମୟ ହୋଇଥିଲେ ନିଶ୍ଚୟ ଲକ୍ଷ୍ୟ କରି ପାରିଥାନ୍ତେ । ମୁଦିଟିରେ ଯେ 'K' ବୋଲି କାର୍ତ୍ତିକଙ୍କ ନାମ ଲେଖାଅଛି ଓ ମନୋଗ୍ରାମରେ 'R' ଅକ୍ଷର ମଧ (ରାଣୀ ଉର୍ମିଳାଙ୍କର ଡାକନାମ) 'K' ସହିତ ଯୁକ୍ତ ଏହା ମଧ ସେ ଲକ୍ଷ୍ୟ କରିନାହାନ୍ତି ବା ସହଜରେ ନିଜ ନାମର 'P' ବୋଲି ଭୁଲ୍ କରିଛନ୍ତି ।

କାର୍ତ୍ତିକ ଯେତେବେଳେ ନିର୍ବନ୍ଧର ମୁଦିଟି ପିନ୍ଧାଇ ଦେଇ ଗଲେ ସେତେବେଳେ ମଧ ପ୍ରମିଳା ସେହିପରି ନିର୍ବିକାର ଭାବରେ ରହିଲେ । ତାଙ୍କ ମୁହଁକୁ ସେ ଚାହିଁନାହାନ୍ତି ନ ହେଲେ ତାଙ୍କର ଅସ୍ୱାଭାବିକ ଆଚରଣ ନିଶ୍ଚୟ ତାଙ୍କ ଦୃଷ୍ଟି ଆକର୍ଷଣ କରିଥାନ୍ତା । ଯେତେବେଳେ ସେ ମୁଦିଟି ପିନ୍ଧାଇ ଦେଇସାରି ଅନ୍ୟ ମୁଦିଟି - ଉର୍ମିଳା-ଦତ୍ତ ମୁଦିଟି

ତାଙ୍କ ହାତରୁ ହଠାତ୍ କାଡ଼ିନେଇଗଲେ ସେତେବେଳେ ମଧ୍ୟ ତାଙ୍କ ଉଦାସୀନତା ଭାଙ୍ଗିଲା ନାହିଁ । ସେ ମନେକଲେ ତାଙ୍କ ନିଜ ମୁଦିଭାବି ନିର୍ବନ୍ଧ ଆହୁରି ସୁଦୃଢ଼ କରିବା ଉଦ୍ଦେଶ୍ୟରେ ସେ ମୁଦି ବଦଳ କଲେ ପରା । ଯା ହେଉ ତାଙ୍କୁ ଆଉ ବେଶି ଭାବିବାକୁ ଭଲଲାଗିଲା ନାହିଁ । ଭାବିବାର ଶକ୍ତି ମଧ୍ୟ ନଥିଲା । ଗୋଟାଏ ଭୁଲ୍ ସେ କରିଛନ୍ତି - ମାରାତ୍ମକ ଭୁଲ୍ - ଏହିପରି ଗୋଟାଏ ଧାରଣା ତାଙ୍କ ମୁଣ୍ଡରେ ଆଜି ସଖାଳୁ ବଡ଼ ଜୋର୍‌ରେ ପଶିଯାଇଛି । ଗଣେଶଙ୍କ ବ୍ୟବହାରର କ୍ରୁରତା ଓ ଅସମ୍ଭବତା ତାଙ୍କୁ ଚାବୁକ୍‌ମାରି ଦେଖାଇ ଦେଇଥିଲା ଗଣେଶଙ୍କ ଭିତରେ ସତ୍ୟ ମନୁଷ୍ୟଟିକୁ । କିନ୍ତୁ କାର୍ତ୍ତିକଙ୍କ ନିର୍ବିକାର ସ୍ୱାର୍ଥପରତା ଓ ଜନପ୍ରିୟ ଆଚରଣ ତାଙ୍କ ବୁଦ୍ଧିବୃତ୍ତିକୁ ଲୋପ କରିଦେଲା ଏକାବେଳକେ - କାର୍ତ୍ତିକଙ୍କୁ ତାଙ୍କ ଚକ୍ଷୁରେ ଛୋଟ, ଅତି ଛୋଟ, ଅତି ନୀଚ କରିଦେଇ । କିନ୍ତୁ ସେତ ଏହି କାର୍ତ୍ତିକଙ୍କୁ ହିଁ ଚାହିଁଥିଲେ ଗଣେଶଙ୍କ ଠାରୁ ବେଶି ବଡ଼ କରି ଓ ଆଜି ବି ଚାହାନ୍ତି - ହା ହତଭାଗିନୀ !

କିନ୍ତୁ ଗଣେଶ କେତେ ବଡ଼ - କେତେ ମହାନ୍ ! ସଭାରେ ଅଜ୍ଞାନ ହୋଇପଡ଼ିବା ପୂର୍ବରୁ ସେ ଥରେ କେବଳ ଚିହାର କରି କହିଥିଲେ, ''ଏ ସତ୍ୟ ଗଣେଶ ନୁହେଁ ମା' ତାଙ୍କୁ ଫେରାଅ ! ଏ ମିଥ୍ୟା ଗଣେଶ - ସବୁ ମୋରି ଦୋଷ !'' ବା ଏହିପରି କିଛି । ଜ୍ଞାନ ହେଲାପରେ ମଧ୍ୟ ସେହିପରି କେତେକ'ଣ ସେ ବହୁବାର ବକିଛନ୍ତି — ସମସ୍ତେ କେବଳ ତାଙ୍କୁ ସାନ୍ତ୍ୱନା ଦେଲେ - କେହି ତାଙ୍କ ମନକଥା ବୁଝିଲେ ନାହିଁ ।

କେବଳ କୁଞ୍ଜଲତା ବୁଝିଥିଲେ କିଛି କିଛି । ତାଙ୍କ ଅନ୍ତରାତ୍ମା ମଧ୍ୟ କହୁଥିଲା ଯେ ଏ ସତ୍ୟ ଗଣେଶ ନୁହେଁ, ମିଥ୍ୟା ଗଣେଶ । ଗଣେଶ ଅଭିନୟ କରିଗଲେ ମାତ୍ର । ଅଳ୍ପ ସମୟ ମଧ୍ୟରେ ସେ ପ୍ରମିଳାଙ୍କୁ ସାଷ୍ଟମ କରି ତାଙ୍କଠାରୁ ଘଟନାଟି ବୁଝିନେଲେ ଓ ଉର୍ମିଳା ସେ ଘରେ ପ୍ରବେଶ କଲା ମାତ୍ରକେ ତାଙ୍କ ଜିମାରେ ପ୍ରମିଳାଙ୍କୁ ଛାଡ଼ି ଗାଡ଼ି ଡକାଇ ସିଧା ଘରକୁ ଫେରି ଆସିଲେ ବୋଉଙ୍କ ସହିତ ପରାମର୍ଶ କରିବାକୁ । ବାପା ତାଙ୍କୁ ନେଇ ଛାଡ଼ି ଦେଇଁ ଆସିଥିଲେ ବହୁପୂର୍ବରୁ, କାରଣ ଗଣେଶଙ୍କ ସଭା ଚାଲିବାବେଳେ ସେ ମଧ୍ୟ ଅଚେତନ ହେବାର ଲକ୍ଷଣ ଦେଖାଯାଉଥିଲା ।

ଘରେ ଆସି ବୋଉଙ୍କୁ ସାଷ୍ଟମ ଦେଖି ପଚାରିଲେ କ'ଣ କରାଯିବ - ବାପା ଯେ ଏତେ ବଡ଼ ଦଣ୍ଡ ଗଣେଶଙ୍କୁ ଦେଲେ ତା'ର କ'ଣ ହେବ ! ବୋଉ ମଧ୍ୟ କୌଣସି ଉପାୟ ଭାବି ପାରିଲେ ନାହିଁ । ନୀରବରେ ଅଶ୍ରୁତ୍ୟାଗ କରିଗଲେ । କୁଞ୍ଜଲତା ବଳାଇବାରୁ ଶେଷରେ କହିଲେ ''ମା' - ତୋର ଯାହା ମନ ତାହା କର - ମୋତେ ଆଉ

ପଚାରନା - ମୁଁ କ'ଣ କହିବି - ମୁଁ ତ କିଛି କୂଳକିନାରା ପାଉନାହିଁ ମା' ! ଥରେ ଭଲା ସେ ଗଉଡ଼କୁ ଦେଖନ୍ତି ହେଲେ କହନ୍ତି ତାକୁ -'' ''ହଉ - ବୋଉ ମୁଁ ତା'ହେଲେ ଯାଉଛି, ଯେମିତି ହଉ ତାକୁ ଧରି ଆଣି ତମରି ଗୋଡ଼ ତଳେ ପକାଇବି ତେବେ ପାଣି ଛୁଇଁବି'' ବୋଲି କହି କୁଞ୍ଜଲତା ବୋଉଙ୍କ ଗୋଡ଼ ତଳେ ମୁଣ୍ଡିଆ ମାରି ଉଠିଲା ବେଳକୁ ବୋଉ ତାଙ୍କୁ ହଠାତ୍ କୋଳରେ ଧରି କଇଁ କଇଁ ହୋଇ କାନ୍ଦିବାକୁ ଲାଗିଲେ । କୁଞ୍ଜଲତା ପୁଣି କହିଲେ - ଆଖିରେ ଲୁହ ସହିତ ଗୋଟାଏ କଠୋର ପ୍ରତିଜ୍ଞାର ତେଜ ଫୁଟି ଉଠୁଥାଏ - କହିଲେ, ''ବୋଉ - ତମ ବଡ଼ ପୁଅ ଆଜି ନାହାନ୍ତି - ନହେଲେ କ'ଣ ହୋଇଥାଆନ୍ତା ଆଜି ଭାବିଲେ ମୋ ଛାତି ଥରୁଛି । ସେ ଗୋଟି ଗୋଟି ସମସ୍ତଙ୍କୁ ଚିହ୍ନିଥିଲେ । ଏହିପରି କିଛି ଗୋଟାଏ ଘଟିବ ବୋଲି ସେ ଜାଣିପାରିଥିଲେ, ଆଉ ସେଇଥିପାଇଁ ମୋ ଭାର ଏଇ ଅଘୋରୀ ଭାଇଟି ଉପରେ ଥୋଇଦେଇଗଲେ ଆଉ କହିଗଲେ ଦେଖ ବୁଝି ସାବଧାନ କେଉଁ କଟକ ଛାଡ଼ି ଯିବୁନାହିଁ ନବା - ମୋ ଦିହ ଛୁଇଁ କହ - ନବା ପରା ତାଙ୍କ ଗୋଡ଼ ଛୁଇଁ ନିୟମ କଲାରୁ ତେବେ ତାକୁ ଛାଡ଼ିଲେ, ହସି ହସି କହିଲେ ମୁଁ ଆଶୀର୍ବାଦ କରୁଛି ନବା ତୁ ବଡ଼ ହ — ସେ ଦୃଶ୍ୟ ମୁଁ ଭୁଲିନାହିଁ ମୋ ଆଖି ଆଗରେ ଜଳ ଜଳ ଦିଶୁଛି ପରା ବୋଉ ସେ ଦିନ ପରି — ନା ନବ ଏଇ କଟକରେ ଅଛନ୍ତି ମୁଁ ଜାଣେ ତାଙ୍କର ଆଡ୍ଡା ଜାଗା କଉଁଠି କଉଁଠି । ମୁଁ ଯାଉଛି ବୋଉ ଗୋଟାଏ ଭଡ଼ା ଗାଡ଼ି କରିବାହାରିବି - ସଞ୍ଜ ତ ହେଲାଣି - ମୁଁ ଠିକ୍ ତାକୁ ଧରି ଆଣିପାରିବି - ବୋଉ କିଛି ଭାବନା ! ଘରଗାଡ଼ି କଥା କହୁଛ ? ନା ସେ ଚିହ୍ନିପାରିବେ - ଜାଣିଗଲେ ପଳେଇବେ, ମୁଁ ଆଉ ତାଙ୍କୁ ଧରିପାରିବି ନାହିଁ ।''
''ତେବେ ଭୀମାକୁ ସାଙ୍ଗରେ ନେଇ ଯା'', ବୋଉ କହିଲେ ।

ଉର୍ମିଳା ପଚାରିଲେ, ''ଦିଦି ଇଯେ ସବୁ ଅଜବ ଘଟନା ହେବାର ଥିଲା ବୋଲି ଆଗରୁ ଖବର ପର୍ଯ୍ୟନ୍ତ ନାହିଁ । ଦିଦି ସତ କହିବୁ କାହିଁକି ଗଣେଶ ଭାଇ ଏପରି କାଣ୍ଡ କଲେ । ମୋତେ କହିବୁ ନାହିଁ ? ଦିଦି ମୁଁ ଆଜିକୁ ୨ ଦିନ ହେଲା ଶୁଣିଲି କାର୍ତ୍ତିକ ଭାଇ ବିଲାତରୁ ଫେରିଛନ୍ତି ବୋଲି । ସେ ଖବର ମଧ ମୋତେ କେହି ଦେଲନାହିଁ । ଯାହାହେଉ - ଆଜିକାର ଘଟନା ମୁଁ କିଛି ବୁଝି ପାରୁନାହିଁ । ମୁଁ ଯେଉଁଥିପାଇଁ କଲିକତାରୁ ଧାଇଁ କରି ଆସିଛି ତାହା ତୁ ବୁଝିପାରୁଥିବୁ, ଦିଦି ତୋତେ ମୋ ରାଣ - ମୋତେ କହ ତୁ ଗଣେଶ ଭାଇଙ୍କୁ ଚାହୁଁ ନା କାର୍ତ୍ତିକ ଭାଇଙ୍କୁ ?

ପ୍ରମିଳା ନୀରବରେ ଅଶ୍ରୁତ୍ୟାଗ କରିବାକୁ ଲାଗିଲେ । କିଛି କହିଲେ ନାହିଁ । ବୋଧହୁଏ ତାଙ୍କର କଥା କହିବାର ଇଚ୍ଛା ଥିଲେ ମଧ ଶକ୍ତି ନଥିଲା । ଏତିକିବେଳେ

କୁଞ୍ଜଲତା ଫେରିଆସି କହିଲେ, "ଉର୍ମୀ ଗୋ - ମାମା ଡାକୁଛନ୍ତି - ଚାଲ କ'ଣ ଖାଇବ !" ପ୍ରମିଳା କୁଞ୍ଜଲତାଙ୍କ ହାତଧରି ପକାଇ କହିଲେ, "—ଅପା ଉର୍ମୀକୁ ଆଜିକାର ଘଟନାଗୁଡ଼ିକ ଟିକିଏ ବୁଝାଇ ଦିଅ - ମୁଁ କହିପାରୁ ନାହିଁ।" ଯା କହି ସେ କର ଲେଉଟାଇ ଶୋଇଲେ।

କୁଞ୍ଜଲତା ଇତିମଧ୍ୟରେ ପ୍ରମିଳାଙ୍କ ଠାରୁ ତାଙ୍କ ଜନ୍ମଦିନର ଘଟନାଟି ବାହାର କରିସାରିଥିଲେ ଓ ଗଣେଶଙ୍କର ଭାବବ୍ୟତିକ୍ରମର ମର୍ମ ବୁଝିପାରିଥିଲେ। ସେଥିଯୋଗେ ଆଜି ତାଙ୍କୁ କାର୍ତ୍ତିକଙ୍କ ଆଗରେ ହେବାକୁ ମିଥ୍ୟା-ଲଜ୍ଜା ବାଧାଦେଇ ପାରିଲା ନାହିଁ। ତାଙ୍କ ପାଇଁ ମଧ୍ୟ ଆଜି ପୃଥିବୀ ଟଳିଯାଇଚି ଗଣେଶଙ୍କର ଗଭୀର ବେଦନା ବୁଝି। କାର୍ତ୍ତିକଙ୍କୁ ସେ ଅତି ହେୟ ତୃଣଠାରୁ ତୁଚ୍ଛ ଜ୍ଞାନ କରୁଛନ୍ତି। ନୀଚ ଅତି ନୀଚ-ଛି- ସେ ନିଃସଙ୍କୋଚରେ ତାଙ୍କର ମତ ବ୍ୟକ୍ତକରି ଦେଖିଲେ ହଠାତ୍ ଉର୍ମିଳାଙ୍କ ମୁହଁ କଳାକାଠ ପଡ଼ିଗଲା। ସେ ଯେପରି ଆହୁରି ଗୋଟାଏ ତଥ୍ୟ ଆବିଷ୍କାର କରିପକାଇଲେ ସେହି ମୁହୂର୍ତ୍ତକ ମଧ୍ୟରେ। କ୍ଷଣକ ମଧ୍ୟରେ ତାଙ୍କୁ ଦିବାଲୋକ ସ୍ପଷ୍ଟ ହୋଇ ଦିଶିଗଲା। ସେ ପ୍ରମିଳାଙ୍କ ସମ୍ମୁଖରେ ଛିଡ଼ା ହୋଇ ଅତି ଗମ୍ଭୀରଭାବରେ କହିଲେ, "ଦେଖ, ତୁମେ ଦୁଇ ଭଉଣୀଯାକ। ତୁମମାନଙ୍କର ମନ ଭିତରର କଥା ମୁଁ କିଛି କିଛି ଜାଣେ ବୋଲି କହୁଛି। ଜଣଙ୍କର ପୁଣ୍ୟଇଚ୍ଛା ଏହି ହୃଦୟରେ ମୁଁ ବହୁଦିନରୁ ଗୋପନରେ ରଖିଆସିଛି। ଗଣେଶ ପାଇଁ ପ୍ରମିଳା ଓ କାର୍ତ୍ତିକ ପାଇଁ ଉର୍ମିଳା ଏହାହିଁ ଚିରଦିନ ମୋର ଏବଂ ସମସ୍ତଙ୍କର ଇଚ୍ଛା। ଦୈବଦୁର୍ବିପାକରେ ଏ ଅଘଟନ ଘଟି ଅଭିମାନୀ ଗଣେଶକୁ ମତାଇଦେଇଛି। ସେ ଚାଲିଯାଇଛି ସମସ୍ତଙ୍କ ଠାରେ ଦୋଷୀ ହୋଇ ଘୋର କଳଙ୍କ-କାଳିମାରେ ତା'ର ଶିର ଉଚ୍ଚରଖି। ସେ ଯାଇଛି, ଆଉ ତା'ର ପ୍ରତିକାର ପାଇଁ କେହି ଚେଷ୍ଟା କରୁ ନକରୁ ମୁଁ କରିବି ଜାଣିଥା। ଯଦି ସମସ୍ତେ ତାକୁ ପରିତ୍ୟାଗ କରନ୍ତି ମୁଁ କରିପାରିବି ନାହିଁ! ମୋ ପ୍ରତି ଆଦେଶ ଅଛି ଯେ ଚିରକାଳ ମୁଁ ତାର ଅଭିଭାବକ ଭାବରେ ଥିବି - ଅନ୍ତତଃ ଯେତେଦିନ ଯାଏଁ ସେ ବିବାହିତ ନୁହେଁ। ବର୍ତ୍ତମାନ ସମୟ ଆସିଛି - ମୁଁ ସବୁ ବୁଝିପାରିଛି - ସମୟ ଆସିଛି ତାକୁ ଫେରାଇବାର ଚେଷ୍ଟା କରିବାର। କାର୍ତ୍ତିକର କାର୍ଯ୍ୟ ନୁହେଁ ସେ ତା'ର ପାଷାଣ ପ୍ରତିଜ୍ଞାକୁ ଟଳାଇପାରିବ, ମୋତେ ନିଜେ ସେଥିରେ ବ୍ରତୀ ହେବାକୁ ହେବ। କିନ୍ତୁ ଯିବା ପୂର୍ବରୁ ତୁମକୁ କହି ଦେଉଛି - ଦୁଇ ଭଉଣୀ ଭାବି ସ୍ଥିର କରିନିଅ - ତୁମ ମନ ସ୍ଥିର କରିଦିଅ - ମୁଁ ତୁମର ବଡ଼ ଭଉଣୀ ଭଳିଆ - ଭଲରେ ମନ୍ଦରେ ପଦେ କହିବାର ଅଧିକାର ରଖେ - ବିଶେଷକରି ଗଣେଶ ସମ୍ବନ୍ଧୀୟ ବ୍ୟାପାରରେ।"

(୧୦)

ଗଣେଶ ଆଉ କିଛି ଚାହାନ୍ତି ନାହିଁ - କେବଳ ଥରେ ବୈରାଗୀଭାଇ ସଙ୍ଗରେ ଦେଖାହେଲେ ସେ ତାଙ୍କର ଭବିଷ୍ୟତ ପନ୍ଥା ସ୍ଥିର କରିବେ । ବୈରାଗୀଭାଇ ସଙ୍ଗେ ଦେଖା ହେବା ଦରକାର - ଗଣେଶ ସେଇ ଯେ ସଭାରୁ ଓ ଗୃହରୁ ବିତାଡ଼ିତ ହୋଇ ରାଜପଥକୁ ଓହ୍ଲାଇ ପଡ଼ିଥିଲେ ନିଜର ଲଜ୍ଜାର ଗୌରବ ଓ ନିଜର ନିଷ୍ଫଳତାର ଆନନ୍ଦମାତ୍ର ନେଇ ଆଉ ସେ ପଛକୁ ଚାହିଁନାହାନ୍ତି, ଏକମୁହାଁ ହୋଇ ଚାଲିଛନ୍ତି ଅନିର୍ଦ୍ଦିଷ୍ଟ ଭାବରେ । କେବଳ ଏତିକିମାତ୍ର ତାଙ୍କର ଖିଆଲ ଅଛି ଯେ ବଜାର ଜନଗହଳି ଯେଉଁ ବାଟରେ ପଡ଼ିବ ଯେତେଦୂର ସମ୍ଭବ ସେ ତାହା ପରିତ୍ୟାଗ କରିବେ । ନିର୍ଜନ ପଥ ହିଁ ତାଙ୍କର କାମ୍ୟ । କେହି ଦେଖିବ - ଚିହ୍ନାଜଣା ଲୋକଙ୍କୁ ହାବୁଡ଼ିଲେ ବିପଦ । କେବଳ ବୈରାଗୀଭାଇ ତାଙ୍କର ଦରକାର ଥରେମାତ୍ର । ସେତ ରହିଗଲେ ସଭାସ୍ଥଳରେ - ସେଠାର ଭାର ସେହି ବୈଭାଇ ଉପରେ । ଗଣେଶ ଚାଲିଆସିଲା ପରେ କ'ଣ କିପରି ହେଲା - କାର୍ତ୍ତିକ ତା'ର ପ୍ରତିଶ୍ରୁତି ରଖିଲା ତ, ପ୍ରମିଳା ତ ହତଭମ୍ବ ହୋଇଯାଇଥିଲେ - ଛି ! ତାଙ୍କୁ ଆଗରୁ ଟିକିଏ ଚେତାଇ ଦେବା ଉଚିତ ଥିଲା ପରା - ବୈଭାଇଙ୍କର କାମ ଏଟା, ତାଙ୍କର ବୁଝିବା ଉଚିତ ଥିଲା । ଯାହାହେଉ ତା' ପରେ କ'ଣ କିପରି ହେଲା ଜାଣିବା ଦରକାର । କାର୍ତ୍ତିକ ତା'ର କାର୍ଯ୍ୟ କରି ନଥିବ ନା, ନା ନିଶ୍ଚୟ କରିଥିବ ! ସେ ଆଗେଇଯାଇଥିବ ନିଶ୍ଚୟ ଏ ସୁଯୋଗକୁ ଗ୍ରହଣ କରିବା ପାଇଁ । ଆଉ ପ୍ରମିଳା ଯଦି ପ୍ରଥମେ ଟିକିଏ ବିବ୍ରତ ବା ଚମକିତ ହୋଇଥିବ ଟିକିଏ ସାମାନ୍ୟ (Shock) ସକ୍ ପଡ଼ିଥିବ କିନ୍ତୁ ପରେ ସେ ବି ଆଗେଇଆସିଥିବ କାର୍ତ୍ତିକକୁ ଗ୍ରହଣକରିବା ପାଇଁ - ଆହା ଦୁହେଁ କେତେ ଖୁସି ହୋଇନଥିବେ ! ଆଉ ସମସ୍ତେ ମଧ୍ୟ ! ସ୍ୱୀକାର (Engagemnet) ସଂପୂର୍ଣ୍ଣ ହୋଇଯାଇଥିବ । ଗଣେଶ ଭାବୁଛନ୍ତି -ସେତେବେଳକୁ ସନ୍ଧ୍ୟା ହେବାକୁ ବସିଲାଣି ଆଉ ସେ ମହାନଦୀ କୂଳଧରି ଚାଲିଛନ୍ତି । ମାତାମଠ ପାର ହୋଇ ଜୋବ୍ରା ଆଡ଼କୁ କିପରି ଏତେ ବାଟ ଆସିଲେ ତାଙ୍କର ଆଦୌ ଖିଆଲ ନାହିଁ । ମଝିରେ କେବଳ କେଣ୍ଟନମେଣ୍ଟ ବାଟରେ ନିଛାଟିଆରୁ ଥରେମାତ୍ର ମନେପଡ଼ିଥିଲା ଯେ ସେ ମେଡ଼ିକେଲକୁ ଯାଉଛନ୍ତି କାରଣ ମେଡ଼ିକେଲ ନିକଟରେ ମହାନଦୀ କୂଳରେ ବୈରାଗୀ ଡାକ୍ତରଙ୍କ ନର୍ସିଂହୋମ୍ ଯାହା ପ୍ରମିଳାଙ୍କ ମା'ଙ୍କ ଦିଆ ଟଙ୍କାରେ ୨ ବର୍ଷ ହେଲା ଖୋଲା ହୋଇଛି ଓ ବୈରାଗୀଙ୍କ ତତ୍ତ୍ୱାବଧାନରେ ଚାଲୁଛି । ଅଜଣାରେ ସେ ମାତାମଠ

ପାଖରେ ମହାନଦୀ ବନ୍ଧରାସ୍ତା ଧରିଛନ୍ତି । କେହି ନଦେଖନ୍ତୁ ଏହି ଉଦ୍ଦେଶ୍ୟ ତ ! ଅଥଚ ଧରିନେଇଛି ବୈରାଗୀ ଯେ ନର୍ସିଂହୋମ୍‌କୁ ଫେରିନଥିବ । ଅଧିକା ସମୟତକ କେଉଁଠି ଲୁଚିରହିବେ ଏଇ ଭାବନା ! ଏହି ମହାନଦୀ କୂଳ ନିର୍ଜନ ଓ ତାଙ୍କ ଉଦ୍ଦେଶ୍ୟ ପାଇଁ ପ୍ରଶସ୍ତ - ସନ୍ଧ୍ୟା ପରେ ନର୍ସିଂହୋମ୍‌ରେ ଯାଇ ବସିଲେ ମଧ୍ୟ ଚଳିବ । ଜଜ୍‌ସାହେବଙ୍କ ବଙ୍ଗଳା ପଛରେ ଜଙ୍ଗଲ - ନର୍ସିଂହୋମ୍‌ଟି ଦେଖାଗଲା - ଭାବିଲେ ଏଇନା ଦିନ ଥାଉ ଥାଉ ସେଠା ଦର୍ଶନକୁ ନଯାଇ ବରଂ ନଦୀ ବାଲିରେ ବସିବେ । କିଛି ସମୟରେ ସେ ନର୍ସିଂହୋମ୍ ପାଖରେ ବେଶ୍ ଲୋକ ଯିବାଆସିବା ଓ ଗୋଟାଏ ଚାଞ୍ଚଲ୍ୟ ଲକ୍ଷ୍ୟ କଲେ । ଭାବିଲେ କଲେକ୍ଟରଙ୍କ ବଙ୍ଗଳା ପଛକୁ ଯାଇ କାଠ ଆମ୍ବ ଭିତରେ ଯାଇ ଲୁଚି ରହିବେ । କ୍ରମେ ସନ୍ଧ୍ୟା ମଧ୍ୟରେ ନର୍ସିଂହୋମ୍‌ରେ ବିଦ୍ୟୁତବତୀ ଦିଆଲୀ ପରି ଜଳି ଉଠିଲା, ବାଦ୍ୟରଙ୍ଗ ଓ ନୃତ୍ୟଗୀତର କଳରବ ଶୁଭିଲା, ଯେପରି ବିଶେଷ କୌଣସି ଘଟଣା ସେଠାରେ ହେଉଛି ମନେହେଲା । ବୈରାଗୀଭାଇ ନିଶ୍ଚୟ ଥିବେ ଜାଣିସୁଦ୍ଧା ଭରସି ସେଆଡ଼କୁ ଆଉ ଯାଇପାରିଲେ ନାହିଁ -ଅନ୍ଧାର ହେଲା ପରେ ମଧ୍ୟ । ତାଙ୍କର ମନେପଡ଼ିଲା ଆଜି ଗୋଟିଏ ଉତ୍ସବକୁ ବୈଭାଇ ତାଙ୍କୁ ଡାକିଥିଲେ ଏହି ହୋମ୍‌ର ଜନ୍ମତିଥି ଉପଲକ୍ଷେ କିନ୍ତୁ ସେ ତ ଆଉ ସେଠାକୁ ଯାଇନାହାନ୍ତି । ଅବଶ୍ୟ ବେଶି ଡାକ୍ତରଡାକ୍ତରାଣୀ ନର୍ସଧାଈଙ୍କ ସମାଗମ ହେଲେ ମଧ୍ୟ କେହି କେହି ଆଜି ନିର୍ବନ୍ଧ - ସଭାରୁ ଫେରି ଏଠି ନିମନ୍ତ୍ରିତଙ୍କ ମଧ୍ୟରେ ନିଶ୍ଚୟ ଥିବେ । ନାଃ - ଏହିଠାରେ ଅପେକ୍ଷା କରାଯାଉ ! ଉତ୍ସବ ଭଙ୍ଗ ହେଲେ ଦେଖାଯିବ । ବୈଭାଇ ସଙ୍ଗରେ ତ ଯେକୌଣସିମତେ ଦେଖାକରିବାକୁ ହେବ ଯେତେ ରାତି ହେଉ - ସେ ଦୁଇଟି କାଠ ଗଣ୍ଡି ମଝିରେ ଗୋଟାକ ଉପରେ ଆଉଜି ଓ ଅନ୍ୟଟା ଉପରେ ଗୋଡ଼ ଦୁଇଟି ରଖି ଚୁପ୍‌ଚାପ୍ ବସିରହିଲେ । ଅବସ୍ଥାଟା ତାଙ୍କ ମନକୁ ପାଇଲା - ତାଙ୍କୁ କେହି ଖୋଜୁଥିବେ ନିଶ୍ଚୟ । ଭାଉଜବୋଉଙ୍କ କଥା ମନେପଡ଼ିଲା ତା'ପରେ ବୋଉଙ୍କ କଥା ସଙ୍ଗେ ସଙ୍ଗେ । ସେମାନଙ୍କୁ ତ କିଛି କୁହାହୋଇ ନାହିଁ, ସେମାନେ କ'ଣ ଭାବୁଥିବେ — କାର୍ତ୍ତିକ ବା ବାପାଙ୍କ କଥା ଛାଡ଼ିଦିଅ - ଜଣକର ସମୟର ଅଭାବ ଆଉ ଜଣକର ତ କଥାନାହିଁ ! ବାପା ତ ତାଙ୍କୁ ତ୍ୟାଜ୍ୟପୁତ୍ର କରିଦେଇଛନ୍ତି ଆଉ କିଏ ଖୋଜିବ ? ଭାଇ ଯଦି ଭୀମା ବା ତାଙ୍କ ସିରସ୍ତା ପ୍ରଭୃତିଙ୍କୁ ପଠାଇଥିବେ କିନ୍ତୁ କେହି ଏ ସ୍ଥଳରେ ତାଙ୍କ ସନ୍ଧାନ ପାଇପାରିବେ ନାହିଁ — କିଏ କାହିଁକି ଭାବିବ ଯେ ଗଣେଶ ବାବୁଙ୍କ ଆମ୍ବ ଭିତରେ ଲୁଚି ରହିଛନ୍ତି ? ପୁଣି ଭାବୁଛନ୍ତି - କିଏ କାହିଁକି ଖୋଜିବ ଅବା - ହେଉ ସେମାନେ ସମସ୍ତେ ସୁଖୀ ହୁଅନ୍ତୁ, ତାଙ୍କୁ ଅପଦାର୍ଥ ଓ

ଅପରାଧୀ ବୋଲି ଧରି ନିଅନ୍ତୁ ପଛକେ - ନେଇ ସାରିଛନ୍ତି ତ' କିନ୍ତୁ ପରୀ ସୁଖୀ ହେଉ, ତା' ମନସ୍କାମନା ପୂର୍ଣ୍ଣ ହେଉ କୁଶକୁ ନେଇ ସେ ଘର କରୁ - ସୁଖର ସଂସାର ବାନ୍ଧୁ ! ହଁ, ଯଦି କୁଶା କୌଣସି କାରଣରୁ ତାଙ୍କୁ ଅବହେଳା କରେ - କୁଶାକୁ ସେ କ'ଣ ଜାଣନ୍ତି ନାହିଁ, ହଁ ଯଦି ପରୀକୁ ସେ ସୁଖୀ ନକରେ, ନକରିପାରେ ତା'ହେଲେ - ନାଃ, ତା କାହିଁକି ହେବ - ଦୁହେଁ ଦୁହିଁଙ୍କୁ ଚାହାନ୍ତି - ତା'ଛଡ଼ା ବୈରାଗୀଭାଇ ଅଛି - ନହେଲେ ପରୀ ଯଦି କୌଣସି କାରଣରୁ ଅବହେଳିତା ହୋଇ ଦୁଃଖ ପାଏ ତା'ହେଲେ - ତା' ହେଲେ ହେ ଭଗବାନ ! ତମେ ତ ଅଛ ! ତମେଇ ଦିନରାତି କରୁଛ, ତମେ ଦେଖ ମୁଁ କ'ଣ କରୁଛି, କିପରି ଶାସ୍ତି ମୁଁ ସେ ଚଣ୍ଡାଳକୁ ଦେବି ! ନା,ନା ମହାପ୍ରଭୁ ଯା ଯେପରି ନହୁଏ - ମୋ ହୃଦୟବେଦୀର ଭଗ୍ନସ୍ତୂପ ଉପରେ ଏ ତାଣ୍ଡବ ନୃତ୍ୟ —

ନା-ନା ସେମାନେ... ସୁଖୀ ହେଲେ ମୋର ଅନ୍ତରାତ୍ମା ସୁଖୀ ହବ ଯେ —।



# ଅଦ୍ୱିତୀୟା

"ଅସଂଖ୍ୟ ତାରା ତମ ଚାରିଆଡ଼େ, ତମେ ଏକା ଚାନ୍ଦ—ତାରାପତି !"

"ତମେ ତାରାରାଣୀ - ଅଦ୍ୱିତୀୟା - ମନେରଖ କିନ୍ତୁ !"

"ନାହିଁ, ନାହିଁ - ତମେ ଚନ୍ଦ୍ର - ମୁଁ ତାରା, ଏତିକି ମୋର ଯଥେଷ୍ଟ । ଅନ୍ୟ ତାରାଙ୍କ ସଙ୍ଗେ ମୋର କ'ଣ ଅଛି, ଥିଲେ ଥିବେ । ଥାଆନ୍ତୁ କିନ୍ତୁ ମୁଁ ବି ଥାଏ - ମୁଁ ଏତିକି ମାଗୁଛି -"

ଖୋଲା ଛାତ ଉପରେ ସେଦିନ ନିଶାରାତିରେ ଆମର କଥାବାର୍ତ୍ତା — ଉପରେ ମୁକ୍ତ ଆକାଶ - ପୂର୍ଣ୍ଣ ଚାନ୍ଦିନୀ - ଦିଗନ୍ତଭରି ତାରାରାଜି ମିଟି ମିଟି କରି ଚାହିଁରହିଥାଆନ୍ତି । ମୁଁ ଏ ରାଜଭବନକୁ ଏ କେତେଦିନ ହେଲା ଆସି ଯେପରି ନିଜକୁ ନିଜେ ହଜାଇ ବସିଥାଏଁ । ସ୍ୱାମୀ ଚନ୍ଦ୍ରକାନ୍ତ ମୋର ଅନ୍ତରର ଅଭାବ, ଅଭିଯୋଗ ଓ ଭୟର ସନ୍ଧାନ ପାଇଥିଲେ ପାଇଥିବେ, କିନ୍ତୁ ସେ ତ ବେଶିକଥା କୁହନ୍ତି ନାହିଁ - ବଡ଼ ଶୁଦ୍ଧ, ସରଳ ତାଙ୍କର ଆଚରଣ । ସେ ମତେ ଭଲ ପାଇଛନ୍ତି - ପାଇଛନ୍ତି କି ? ବନ୍ଧୁ ଆତ୍ମୀୟ ପରିଜନ ଏ ଘରେ । ବେଶି ଯୁବତୀ ସ୍ତ୍ରୀ । କିଏ ଦାଦା, ନନା, କିଏ ଚନ୍ଦ୍ର ଡାକୁଛି, ଆସୁଛି ଯାଉଛି - ହସ କୌତୁକର ଅନ୍ତ ନାହିଁ । ଏ ଉତ୍ସବ ବାସରରେ ଦାସୀପରିଚାର ଯେ ଯାହାର କାର୍ଯ୍ୟ କରିଯାଉଛନ୍ତି; କିନ୍ତୁ ସମସ୍ତେ ହାଜର ଅଛନ୍ତି । କଥାପଦକର ଅପେକ୍ଷାରେ ସମସ୍ତେ ଯେପରି ଉଦ୍‌ଗ୍ରୀବ ହୋଇ ରହିଛନ୍ତି । ଯାହାହେଉ - ମୋ ମନରେ ଭୟ ପଶିଯାଇଛି - ଯାଙ୍କୁ ମୁଁ ପାଇବି କେବେ - ପାଇ ମଧ ଧରି ରଖି ପାରିବି କି ? "ତାରାପତି ଚନ୍ଦ୍ରଙ୍କ ଅନ୍ୟନାମ" - ଏହାନେଇ କେତେ ରହସ୍ୟ କରୁଥା'ନ୍ତି ସମସ୍ତେ ଆସିଲା ଦିନୁ' - ଝିଅ, ପୁଅ ସମସ୍ତେ । ମୋର ନାମ ତାରାମଣି, ତାଙ୍କ ନାମ ଚନ୍ଦ୍ରକାନ୍ତ । ତାଙ୍କ ନିବିଡ଼ ଆଲିଙ୍ଗନରେ ଆବଦ୍ଧ ଥାଇ ମୁଁ ମଧ ଟିକିଏ ରହସ୍ୟ ଛଳରେ ଏଡ଼େ ଗୁରତର, ମୋର ଏତେ ନିକଟତମ ପ୍ରଶ୍ନର ସମାଧାନ ଚାହିଁଲି ।

ଆଜି ମନର କଥା ବାହାରି ପଡ଼ିଲା ଛାଏଁ । ଅସୀମ, ମୁକ୍ତ ଆକାଶ ତଳେ ଜ୍ୟୋତ୍ସ୍ନାପ୍ଲାବିତ ଏହି ମଧୁମୟ ରଜନୀରେ ସମସ୍ତ ଜଗତରେ ଆମେ ଦୁଇଟି ପ୍ରାଣୀ—

ଆମର ଦୁଇଟି ହୃଦୟତନ୍ତ୍ରୀ ଯେପରି ଏକ ତାନଲୟରେ ବାଜି ଉଠୁଛି ପ୍ରକୃତିର ଏହି ମୋହମଦିର ରାଗିଣୀରେ - ସ୍ତବ୍ଧ ବିସ୍ମୟରେ ମୁଁ ଏହା ଉପଲବ୍ଧି କରି ହଠାତ୍ ଭୟଭ୍ରାନ୍ତ ହୋଇ ସେହି ତାରାପତିଙ୍କୁ ଉପଲକ୍ଷ କରି ମୋର ଅନ୍ତରର ଅନ୍ତସ୍ତମ ଆଶା ଓ ଆକାଂକ୍ଷା ତାଙ୍କଠାରେ ନିବେଦନ କରି ପକାଇଲି —କିନ୍ତୁ ତାଙ୍କର ସେହି ଏକକଥା - ତମେ ତାରାରାଣୀ - ମନେରଖ - ତମେ ଅଦ୍ୱିତୀୟା ।

ମୁଁ ଅଦ୍ୱିତୀୟା ତାରା ? ସତେ ?

\+ + + + +

ତାରାପତି ! ମୁଁ କୌତୁକ ଛଳରେ କଥାଟା ଆରମ୍ଭ କରିଥିଲି । ସେଥିରେ ଟିକିଏ ରହସ୍ୟ ମଧ ଥିଲା । ଏ ଘରେ ଆଉ ଜଣେ ତାରା ଅଛନ୍ତି - ଅବାଧ ଗତି ତାଙ୍କର - ଯାଙ୍କ ସାଙ୍ଗରେ ଭାଇଭଉଣୀ ସମ୍ବନ୍ଧ - କିପରି ଜାଣେ ନାହିଁ - । ଏହି ତାରା ହିଁ ମୋତେ ଦେଖାଇ ଶୁଣାଇ 'ତାରାପତି' ବୋଲି ତାଙ୍କୁ ବେଶି ଡାକେ । ଯାହାହେଉ - ମୁଁ ମଧ ଛାଡ଼େ ନାହିଁ - ତାକୁ ମଧ ଓଲଟି ଜବାବ ଦେଇ ଅପଦସ୍ତ କରିବାକୁ ଚାହେଁ କିନ୍ତୁ ସେ ଆଦୌ ଦିହକୁ ନିଏ ନାହିଁ । ବଡ଼ ସପ୍ରତିଭ - ସତେଜ । ମୁଁ ଏଇ ନୀଳ ତାରାକୁ ଲକ୍ଷ୍ୟ କରି ତାଙ୍କୁ ପ୍ରଥମ ତାରାପତି ଆସନ ଗ୍ରହଣ କରିବାକୁ ସେଦିନ ଛଳାଇ କହିଥିଲି—ପରେ କିନ୍ତୁ ରହସ୍ୟ, କୌତୁକ ମୋ ମନର ଗୁପ୍ତ ବେଦନାରେ ଗମ୍ଭୀର ହେଇ ପଡ଼ିଲା । ହଁ - ରହସ୍ୟ ବା କୌତୁକ ଆଉ କ'ଣ କି, ମନର ନିଭୃତ କୋଣ ଉପରେ ପରଦା ଦବା ଏଇ ରସିକତା ମୂଳରେ ନାହିଁକି ? ଗେଲ, ଥଟ୍ଟା, ରହସ୍ୟ, କୌତୁକ ସବୁ ମୂଳରେ ତ ଭିତର ଭାବଟି ଅଛି । କିଏ କହିଛନ୍ତି ପରା - ଯାହା ସତରେ ଭାବ, ତାହା ଗେଲରେ କହିବାର ନାମ ହେଉଛି ରହସ୍ୟ ବା କୌତୁକ ।

ଯାଉ - ଏଇ 'ତାରା' ନଣନ୍ଦ ତ ମୋର ପ୍ରତିଦ୍ୱନ୍ଦ୍ୱୀ - ତାରା ନୁହେଁ ? ତାଙ୍କ ଉପରେ ତା'ର ପ୍ରଭାବ ଓ ଅଧିକାର ଦେଖି ବିସ୍ମିତ ହୁଏ କିନ୍ତୁ ତାକୁ ଛୋଟ ପିଲାଟି ପରି ଧରି ପ୍ରହାର କରିବାର ତହିଁ ଆର ଦିନ ମୁଁ ଦେଖିଲି । ବୋଧହୁଏ ମୋର ପ୍ରଚ୍ଛନ୍ନ ରହସ୍ୟ ଓ ରସିକତା ସେ ବୁଝିଥିଲେ କାଲି ରାତିରେ । ତାରାକୁ ଆଜି କ'ଣ କହିଲେ ନିଶ୍ଚୟ । - ତାରା କ'ଣବା କହିଲା, ମୁଁ କିଛି ଶୁଣି ନାହିଁ, କିନ୍ତୁ ସେ ପାଟିକରି କାନ୍ଦି ଉଠିଲା ଓ ମୁଁ ସେଠାକୁ ଧାଇଁଯାଇ ଦେଖି ସ୍ତମ୍ଭୀତ । ସେ କହିଲେ ସାବଧାନ ! କହି ବାହାରି ଚାଲିଗଲେ ମୋ ଆଡ଼କୁ ଚାହିଁ ହସିଦେଇ । 'ମ୍ନିତ' ବୋଲି କହି ମୁଁ ତାକୁ ତାରା

ନଣନ୍ଦକୁ ଉଠାଇ ନେଲି । ସେ ବି ମୋତେ କୁଣ୍ଢାଇ ଧରି କାନ୍ଦିଲା- ମୁଁ କହିଲି ଛିଃ ! କିନ୍ତୁ 'ତାରାପତି' କଥାଟା ଓଲଗୁଣା ଦବାକୁ ଛାଡ଼ିଲି ନାହିଁ । ଛି- ମନର ଏକି ଛଳନା ବାହାରେ ସ୍ୱତଃ ପ୍ରକଟ ହୋଇଉଠେ କେଜାଣି ! ଏଇ ଛୋଟ ଝିଅଟି - ପ୍ରଗଲ୍ଭା ସପ୍ରତିଭା - ଯାର ଭିତର ବାହାର ଯେପରି ସମାନ - କଥାରେ କାର୍ଯ୍ୟରେ ଛଳ ନାହିଁ - ମନରେ ବୋଧହୁଏ ଛଳନାର ଲେଶମାତ୍ର ନାହିଁ - କିନ୍ତୁ ମୋର ଇଏ କ'ଣ ହେଲା ? ଭିତର ବାହାର ଯୋଡ଼ି ଦେଖିଲେ ମନେ ହୁଏ ଯେପରି ମୁଁ ଗୋଟିଏ ନୁହେଁ - ଯୋଡ଼ିଏ ଲୋକ । କି ବିଡ଼ମ୍ବନା !

ମୁଁ ବିଚଳିତ - ମୋର କ'ଣ ଦୋଷ ହେଲା ? ମୁଁ ତ ଏ ଘରକୁ ମାସେ ଦି ମାସ ଆସିଲିଣି; କିନ୍ତୁ ସେଇ 'ମିତ' ମୋର - ସେଇ ସବୁ କରିବ - କାହିଁକି ମୁଁ କୁଆଡ଼େ ଗଲିକି ? 'ମିତ' ମୋର ସେହି ନଣନ୍ଦ ତାରା - କାଳେ ତାଙ୍କର ସେକ୍ରେଟେରୀ ସେ । ତାଙ୍କର ସବୁ ବୁଝେ — ଦେଖେ - ଶୁଣେ । ସେ ଦିନ ତାଙ୍କ ଲାଇବ୍ରେରୀ ଘରେ ମୁଁ ଅବାକ୍ ହୋଇ ବସି ଆଲମାରୀ ଦେଖୁଛି । ୟେ ବି. ଏ. ପାସ୍ କରିନାହାନ୍ତି । କିନ୍ତୁ ପଢ଼ା ବହୁତ ଦୂରକୁ ବୋଲି ଶୁଣିଥିଲି । ଯାହାହେଉ - ଲାଇବ୍ରେରୀ ଦେଖି ଭୋଳ ହୋଇଗଲି - ବସିଲି ସେଠି ଘଣ୍ଟାଏ - ଦୁଇଘଣ୍ଟା - ପରେ 'ମିତ' ଆସି ମତେ ଲାଇବ୍ରେରୀର ଚାବିଗୋଛାଟା ଦେଇଗଲା ହସି ହସି । ସେ ଦିନୁ ମୋର ବେଶି ସମୟ କଟେ ସେଇ ଘରେ । ସେ ଦିନ ମୁଁ ବୁଝି ପାରିନଥିଲି - ମିତ କାହିଁକି ଚାବି ଆଣିଦେଲା । ୟେ କାହିଁକି ଦିନେ ବୋଲି ଏ କଥା ପ୍ରସଙ୍ଗ ଉଠାଇନାହାନ୍ତି । ମୁଁ ବି. ଏ. ପାସ୍ କରିଛି - ଲେଖାଲେଖି କରେ - ରେଡ଼ିଓରେ କହେଁ - ଗୀତ ଗାଏଁ - ନୂଆ । ୟେ ତ ମୋର ସେ ସବୁ ସୁବିଧା କରିଦେଇଛନ୍ତି - ଓଃ - ସେଥିପାଇଁ ବୋଧହୁଏ ମୋତେ ଏପରି ଅଲଗା ଅଲଗା ଦୂର ଦୂର କରି ରଖୁଛନ୍ତି । ବାପା ତ ପ୍ରଫେସର ଲୋକ - ୟାଙ୍କୁ କାଳେ ମୋ ପାଇଁ ଏସବୁ ମାଗି ନେଇଥିଲେ । ଘଡ଼ିକଣ୍ଟା ପରି ସବୁ ପ୍ରୋଗ୍ରାମ ଚାଲିଛି । ୟାଙ୍କ ଘର ବଡ଼ ମୋଟରରେ ମୁଁ ଦିନେ ଦିନେ ରେଡ଼ିଓ ଷ୍ଟେସନକୁ ଯାଏଁ - ଆଗରୁ କେବେହେଲେ ମନରେ କିଛି ହୋଇନାହିଁ - ଏବେ କିନ୍ତୁ ଭାରି ମାଡ଼ି ମାଡ଼ି ପଡୁଛି । ବାପା ଗୋଟିଏ ଛୋଟ ମଟର ଦେବେ ବୋଲି କହିଥିଲେ - କାହିଁ ଆଜିଯାଏଁ ତ ଦେଇ ନାହାନ୍ତି । ଅବଶ୍ୟ ୟାଙ୍କୁ ଦବାର କଥା । ମୋତେ ନୁହେଁ - ହେଲେ ବି !

ଏ ସବୁ କ'ଣ ମୋର ଦୋଷ - ମୋତେ କାହିଁକି ୟେ ଏପରି ଦୂରରେ ରଖି ସେଇ 'ମିତ'କୁ ଏତେ ନିକଟ କରି ପକାଇଛନ୍ତି ? ଏତେ ନିକଟ ! ତାକୁ ଶାସନ ତ

ସବୁବେଳେ କରୁଥାଆନ୍ତି କିନ୍ତୁ ବାଡ଼ାନ୍ତି, ପିଟନ୍ତି ମଧ । ଆଜି ଦେଖିଲାରୁ ମୋର କ'ଣ ହୋଇଗଲା । କାହିଁକି - ମୋତେ କ'ଣ ଶାସନ କରନ୍ତେ ନାହିଁ ? ମାରନ୍ତେ, ପିଟନ୍ତେ ପଛକେ, ମୋର କେଡ଼େ ଆନନ୍ଦ ହୁଅନ୍ତା ! ଆପତ୍ତି ? ମୋର କାଳେ ଆପତ୍ତି ହୁଅନ୍ତା । ଛିଃ —ମୋର ଏହିପରି ମାଡ଼କୁ ମନ - ନିଜର, ଆପଣାର ଜିନିଷ ହେଲେ ତ ମାରିପାର - ହାଣିପାର - ଗେଲବସର ବି କରିପାର ! କିନ୍ତୁ ମୁଁ ତ ଏ ପର୍ଯ୍ୟନ୍ତ ତାଙ୍କୁ ସେପରି ଭାବରେ ପାଇଲି ନାହିଁ । ମୁଁ ମୋ ରାସ୍ତାରେ ଚାଲିଛି - ସେ ତାଙ୍କ ରାସ୍ତାରେ, ସେ କାହିଁକି ମୋତେ ତାଙ୍କ ନିଜର କରିନନେଲେ - ମୁଁ କ'ଣ ତାଙ୍କ ସେକ୍ରେଟାରୀ ହବାର ବି ଅଯୋଗ୍ୟା ?

ମୁଁ ତାଙ୍କଠାରେ ଆତ୍ମନିବେଦନ କରିବି କି ସେ ମୋତେ ତାଙ୍କ ସାଙ୍ଗକୁ ନେଇଯିବେ —ଭାବିପାରୁନାହିଁ । ସେ ତାଙ୍କ ଘରେ ପଢୁଥିବେ ମୁଁ ମୋ ଘରେ ଲେଖୁଥିବି ବା ସୀତାର ବଜାଉଥିବି ! ଏଇଟା କ'ଣ ଠିକ୍, ସ୍ୱାଭାବିକ୍ ନା ଉଚିତ ? ସେ କିପରି ଏହା କରାଇ ଦେଉଛନ୍ତି ? ମୁଁ ବି କାହିଁକି ତାଙ୍କ ବନ୍ଦୋବସ୍ତ ଭାଙ୍ଗିବାକୁ ବା ବଦଳାଇବାକୁ ଯିବି ? 'ମିତ' ତାରା ତାଙ୍କର ପ୍ରିୟ ଓ କାମ୍ୟ - ନିଜର ! ମୁଁ କିଛି ନୁହଁ - କେହି ନୁହଁ - ନା ?

ସେଦିନ ରାତିରେ ତାଙ୍କୁ କହିଲି - ''ମୁଁ ଆଉ ରେଡ଼ିଓ ଷ୍ଟେସନକୁ ଯିବି ନାହିଁ ।''

''କାହିଁକି'' ? ସେ ପଚାରିଲେ ।

''ମଟରରେ ବସି ଏକା ଏକା ଯିବାକୁ ଭଲ ଲାଗୁନାହିଁ ଆଉ ।''

''କାହିଁକି ?''

''ଭଲ ଲାଗୁନାହିଁ - ଲୋକେ କ'ଣ ଭାବୁଥିବେ - କହୁଥିବେ ।''

''ବାପା ଗାଡ଼ି ଦେଲେ ନାହିଁ ବୋଲି କି ? ଛିଃ, ମୁଁ ତାଙ୍କୁ ସଫା ଲେଖିଲି - ମୋର ଗାଡ଼ି ଦରକାର ନାହିଁ - ଦେବାର କୌଣସି ଦରକାର ନାହିଁ ।''

''ତମଘରେ କେତେକଥା କହୁଚନ୍ତି, ନ ଦେବେ କିପରି !''

''କାହା କଥାରେ କ'ଣ ଅଛି ? ମୋର ଗାଡ଼ି ଦରକାର ନାହିଁ । ଯୋଉ ଗାଡ଼ିଟା ଅଛି —''

"ସେଟାକୁ ବିକି ଦିଅ - ମୁଁ ଆଉ ଗାଡ଼ି ଚଢ଼ିବି ନାହିଁ ।"

"ଦେବି, କିନ୍ତୁ ପରେ - ମୋର ଯେତେବେଳେ ଆଶ୍ରମଟା ରେଡ଼ି ହୋଇଯିବ ବାରକୁଦରେ । ତମେ ରେଡ଼ିଓ ଷ୍ଟେସନକୁ ଯିବା ବନ୍ଦ କର ନାହିଁ - ମଟରରେ ଯାଅ । ମୋ ମନ ଭାରି ଖରାପ ହେବ ଯଦି ଯିବା ବନ୍ଦ କରିଦେବ ।"

'ମୁଁ ତାହାହେଲେ ଏଥର 'ମିତ'କୁ ସାଙ୍ଗରେ ନେଇ ଗଲେ'—

"ମିତ ?" "ତମ ତାରା" - "ଓ—ସେଇ ଡାଆଣୀଟା ! ହଉ ନେଇଯିବ ତାକୁ - ସେ ବି ଟିକିଏ ଦେଖୁ, ଶୁଣୁ - ମନ୍ଦ କ'ଣ ?".

"ଆଚ୍ଛା ତାକୁ ଆଜି ମାରୁଥିଲ କାହିଁକି ? ଏଡ଼େ ଝିଅଟା ?"

"ବଡ଼ ବଡ଼ କଥା କହିଲାଣି ଟୋକୀ - ତମେ ଜାଣନା ! ତମ "ତାରାପତି' କଥାଟା ସେ ବାହାର କରିଚି, ଜାଣ ? ପୁଣି ମୁଁ ପଚାରିବାରୁ କହୁଚି ନୂଆବୋଉ - ତାରାଙ୍କ ପତି । ହସିହସିକା କିନ୍ତୁ ମୋର ମନେହୁଏ—"

"ତାକୁ କାହିଁକି ତମେ ପଚାରିଲ ଯେ—" ତାଙ୍କ ମୁହଁରୁ କଥା ଛଡ଼ାଇ ନେଇ ମୁଁ କହିଲି । ମୁଁ କ୍ଷୁଣ୍ଣ ହୋଇ ମୁହଁ ଚଳକୁ କରିପକାଇଲି । ସେ ବି କିଛିକ୍ଷଣ ନୀରବ ରହି କହିଲେ - "ତମେ ସେଦିନ ତାକୁ ଲଗାଇ ମୋତେ 'ତାରାପତି' ଡାକିଲ ।" ଏତକ କହି ସେ ଯେପରି ଲଜ୍ଜାରେ ସେଠାରୁ ହଠାତ୍ ବାହାରି ଚାଲିଗଲେ ।

ଲାଗିଗଲା ଦ୍ୱନ୍ଦ୍ୱ ମୋ ମନରେ । ନିଜପ୍ରତି ଯେତିକି ରାଗ ଆସିଲା ସେତିକି ମଧ୍ୟ ଆନନ୍ଦ । ଆନନ୍ଦ ଏଥିପାଇଁ ଯେ ସେ ମୋ କଥାରେ ତାକୁ ବାଡ଼େଇଲେ - ମୋ ମନ ଭିତରେ କିଏ ଯେପରି ଟିପ୍ପଣୀ ଦେଲା । ମୁଁ ଅଦ୍ୱିତୀୟା ସତେ ! ମୋତେ କିନ୍ତୁ ବାଧିଲା ପୁଣି ଯେ ସେ ମୋ ଉପରେ ମନଦୁଃଖ କଲେ ପରା । ମୋ କଥାଟା ତାଙ୍କୁ ଆଘାତ ଦେଲା । ସନ୍ଦେହ ନାହିଁ କିନ୍ତୁ ମୋର ଈର୍ଷାପର ଭାବ ଦେଖି ସେ ସୁଖୀ ବା ସନ୍ତୁଷ୍ଟ ହୋଇନାହାନ୍ତି ନିଶ୍ଚୟ - ନହେଲେ ଏପରି ହଠାତ୍ କଥାଟା କହି ପକାଇଯାଆନ୍ତେ କାହିଁକି ? ମତେ ଦି'ପଦ ଶୋଧିଲେ ନାହିଁ ? ମୋ କଥାରେ ଅସନ୍ତୁଷ୍ଟ, ଏଟା ଜଣାଇଲେ ନାହିଁ ଜୋର କରି ? ତେବେ କ'ଣ ମୁଁ ଯେଉଁ ପରକୁ ସେହି ପର - ମିତ କେବଳ ତାଙ୍କର ଆପଣାର - ହଁ, ସତେ ତ —ତାକୁ ବାଡ଼େଇ ପାରିଲେ ଆଉ ମତେ ଟାଣ କରି ପଦେ କହିବି ପାରିଲେ ନାହିଁ - ଯାଃ ମୋର ଆଉ ଆନନ୍ଦ କରିବାର ରହିଲା

କ'ଣ ବା ଚାହେଁଲେ ? —ପୁଣି ମନ ଫାଟିଗଲା । ମୁଁ ବିଛଣାରେ ଲୋଟି ହୋଇ ପଡ଼ିଲି ।

ବିଷାଦ- ପ୍ରତିମା ତାରା କେତେବେଳେ ଆସି ମୋ ଗୋଡ଼ ପାଖରେ ବସି ଆଉଁଷିବାରେ ଲାଗିଛି ଜାଣେନାହିଁ । ଯେତେବେଳେ ଚେତା ହେଲା ପ୍ରଥମେ ଭାବିଲି— ଭାଗ୍ୟକୁ ଚୋକୀ ମୋ ମୁଣ୍ଡ ଆଡ଼କୁ ଆସିନାହିଁ, ନହେଲେ ଆଖିର ଲୁହରେ ତକିଆବିଛଣା ତିନ୍ତିବାର ଦେଖିପାରିଥା'ନ୍ତା— ଝଟ୍ ମୁହଁ ତଳକୁ କରି ତକିଆରେ ମାଡ଼ି ରଖି ପଚାରିଲି, କି ଗୋ ମିତ ! ସେ ମୁଣ୍ଡ ତଳକୁ କରି କାନ୍ଦୁଥିଲା କି କ'ଣ ବୋଧହୁଏ —କିଛି କହିଲା ନାହିଁ । ଇତି ମଧ୍ୟରେ ମୁଁ ଆଖି ପୋଛାପୋଛି କରି ସାରିଥିଲି, ଉଠିପଡ଼ି ତା' ହାତ ଧରିଲି - ଏ ବାଳିକା ମୋ ପ୍ରତିଦ୍ୱନ୍ଦ୍ୱୀ - ଅନ୍ତତଃ ତାଙ୍କ ମନରେ — ତଥାପି ତା' ପ୍ରତି ମୋର ସମ୍ମାନବୋଧ ଆସିଛି । କହିଲା - ''କି ମିତାରା - କ'ଣ, କଥା କ'ଣ ?'' କହି ପାଖକୁ ଟାଣିଆଣିଲି । ସେ ମୋ ଉପରେ ଲୋଟି ପଡ଼ି କହିଲା ''ମିତାଉ - ମୁଁ ତମ ସେକ୍ରେଟେରୀ ହେବି - କେବେ ଆଉ ଭାଇଙ୍କ ସେକ୍ରେଟେରୀ ହେବିନାହିଁ -''

''କାହିଁକି କ'ଣ ହେଲା ?'' ବୋଲି କହି ଉଠିବସିଲି । ଅସ୍ୱାଭାବିକ ଗାମ୍ଭୀର୍ଯ୍ୟ ତାକୁ ମାନୁଥିଲା ବେଶ୍ - ଛୋଟ ହେଲେ ମଧ୍ୟ କି ଭାବ ତା' ମୁଣ୍ଡରେ ପଶିଛି ଜାଣିପାରିଲି କିନ୍ତୁ କାହିଁକି —କିପରି ? ବହୁତ ଜିଗର କରି ଧରିବାରୁ ଶେଷରେ ସେ କହିଲା, ''ଭାଇ ଆଉ ମାରୁ ନାହିଁ - ଆଉ କିଛି କହୁନାହିଁ ।''

ମୁଁ କେତେ ନୀଚ - କେତେ ଛୋଟ - ଏଇ ପିଲାଟା ସଙ୍ଗରେ ବାଦ ପକାଇବି ନା ? ତା' ମନରେ ପାପ ନାହିଁ, କେବଳ ମୋରି ମନରେ ପାପ - ଆଉ ତାଙ୍କର—ନା - ସେ ବି ବୋଧହୁଏ ନିଷ୍ପାପ । ତାଙ୍କୁ ମିଛରେ ଦୋଷୀ କରୁଛି ସିନା । ନହେଲେ - ମୁଁ କେଉଁ ଏବେ ତାଙ୍କର ନିଜର ବୋଲି ଆଗେଇଛି । ମନ ଭିତରକୁ ଚାହିଁ ମୁଁ କ'ଣ କହିପାରେ ଯେ ମୁଁ ତାଙ୍କୁ କାୟମନୋବାକ୍ୟରେ ଚାହିଁଛି ବୋଲି — ଏକନିଷ୍ଠ ଓ ନିରପେକ୍ଷ ଭାବରେ ? ସେ ଯଦି ମୋ ସାଧନା ଓ ମୋ କାର୍ଯ୍ୟର ସମ୍ମାନ ରଖି ମୋ ପିତାଙ୍କ କଥା ଅନୁସାରେ ମୋତେ ମୋ ପଥରେ ଯିବାକୁ ଦେଲେ, ସେଟା ତାଙ୍କର ଉଦାରତା, ତାଙ୍କର ମହତ୍ୱ । ମୋର ସେଠି ଉଚିତ୍ ନଥିଲା କି, ତାଙ୍କୁ ଏ ତ୍ୟାଗରୁ ମୁକ୍ତ କରି, ଜୋର୍‌କରି ତାଙ୍କ ପଥର ଅନୁଗାମିନୀ ହେବା ? ତାହା ନ କରିବାରୁ ସେ

କ'ଣ ବୁଝିବେ ନାହିଁ ଯେ ସେଥିରେ ମୋର ପୂର୍ଣ୍ଣ ମତ ଅଛି ବା ସେ ଭୟ ଚାହେଁ ? କିନ୍ତୁ ସେ ପୁରୁଷ — ମୁଁ ନାରୀ - -

ସେଦିନ ତାଙ୍କ ଲାଇବ୍ରେରୀରେ ମୁଁ ପ୍ରଥମ ରାମାୟଣ ପଢୁଥିଲି । ରାମ-ସୀତା ବିବାହ ପରେ ବାସର ଶଯ୍ୟାରେ ଦୀପକୁ ସାକ୍ଷୀ ରଖି ଯେଉଁ ପ୍ରତିଜ୍ଞାମାନ କଲେ ନିଜ ନିଜ ଭିତରେ ତାହା ଆଜି ମୋର ମନେ ପଡୁଛି ଆଉ ସେ ଯେଉଁ କଥା ଥରେ ଅଧେ ମତେ ଜଣାଇଛନ୍ତି - ବିବାହ ବେଦୀରେ ଅଗ୍ନିସାକ୍ଷୀ କରି ଯେଉଁମନ୍ତ୍ରରେ ଆମେ ଦୁହେଁ ବିବାହିତ ହେଲୁଁ ତାହାର ଦାୟିତ୍ୱ - ସେଇ ଏକା ଜିନିଷ - ଏ ସବୁର ସାର୍ଥକତା କ'ଣ ନାହିଁ ? ସେ ତ କହନ୍ତି - ସେହି ଧର୍ମରେ - ସେଇ ମର୍ମରେ ସେ ତାଙ୍କ ବିବାହିତ ଜୀବନ ସ୍ଥିରଭାବରେ ଚଳାଇଛନ୍ତି । ଆଉ ମୁଁ ? ପାପୀୟସୀ — ନା - କାହିଁକି ଏହା ପାପ ? କାହିଁକି ମୁଁ ହେବି ପାପୀୟସୀ ? ମୋର ବିବାହ - ପୂର୍ଣ୍ଣଚନ୍ଦ୍ରଙ୍କ ସଙ୍ଗରେ - ପୂର୍ଣ୍ଣଭାଇ 'ଆଲେଖ୍ୟ'ର ଏଡିଟର - ଦେଶର କର୍ମୀ ଓ ମୋର ପଥପ୍ରଦର୍ଶକ ପୂର୍ଣ୍ଣଭାଇ । ତାଙ୍କୁ କି କେବେହେଲେ ମୁଁ ଛାଡ଼ିପାରେ ? ବିବାହ ମନ୍ତ୍ର ମୁଁ ବୁଝିନାହିଁ - ବାସର ଦୀପ ଆଗରେ ଶପଥ ମଧ୍ୟ କରିନାହିଁ - ବିବାହର ମନ୍ତ୍ର ବାହାରଟା ଘଟିଛି ଯାଙ୍କ ସାଙ୍ଗରେ ।

ନା - ଆଉ ପ୍ରବଞ୍ଚନା କରିବି ନାହିଁ । ମାନିଯିବି - ମାଗିନେବି - ତାଙ୍କୁ ସବୁ କହି କ୍ଷମା ଭିକ୍ଷା କରିବି । କିନ୍ତୁ ହାୟ —କି ବିଡ଼ମ୍ବନା ! ମୁଁ ଯେ ପୁଣି ତାଙ୍କୁ ବି ଚାହେଁ । ତାଙ୍କଠାରୁ ଦୂର ହୋଇଗଲେ କଷ୍ଟ ହେବ । ଅସହ୍ୟ ମନେ ହେଉଛି ସେ କଷ୍ଟ । ତାଙ୍କ ଉଦାର ମୂର୍ତ୍ତି କିପରି ଭୁଲିବି ? ସେ ମତେ ବକିଲେ ନାହିଁ, ମାଡ଼ ମାରିଲେ ନାହିଁ । ଏ ଯେ ମୋର ଅତି ଆନ୍ତରିକ ଦୁଃଖ - ଯାକୁ କୋଉଠି ରଖିବି । ମନଟା ଏପରି ବାଦୁଆ ଏପରି ଅସହାୟ - ଏପରି ନିଲଠା ପୁଣି । ଯାହାହଉ ଏ ପ୍ରହସନର ଯବନିକା ଅତି ଶୀଘ୍ର ପଡ଼ିବା ଆବଶ୍ୟକ ।

\+ + + + +

କେତେ ମାସ ଚାଲିଯାଇଛି । ପ୍ରହସନ କହ, ଅଭିନୟ କହ, ଯାହା ଯେପରି ଘଟୁଥିଲା ସେହିପରି ଘଟିଚାଲିଛି । ମିତାରା ମୋର ସେକ୍ରେଟେରୀ ହିସାବରେ ମୋର ଗଳ୍ପ, ପ୍ରବନ୍ଧ କପିଲେଖି 'ଆଲେଖ୍ୟ'କୁ ପଠାଏ । ମୋର ଚିଠିପତ୍ର ଲେଖେ, ପଢ଼େ —ମୁଁ ତାକୁ ଅବାଧ ଅଧିକାର ଦେଇଛି —ପୂର୍ଣ୍ଣଭାଇଙ୍କର ଚିଠି ମଧ୍ୟ । ସେ ତାଙ୍କ କାମ କରେ - ଦରକାର ହେଲେ ନାଇଟ୍ କ୍ଲାସ ଓ ଦିନ ସ୍କୁଲ ମଧ୍ୟ ଛାଡ଼ିଦିଏ । ସେ ଏକା

ସବୁ ବୁଝାଇଛି । ମୋତେ ଡାକିଛନ୍ତି ଥରେ ଅଧେ - ମୁଁ ମନାକରେ । ଦିନରାତି ସବୁ କ୍ଲାସ ଏବେ ବନ୍ଦ ଉପରେ । ଯାଙ୍କର ସେଇ ଆଶ୍ରମ ବାରକୁଦରେ - ସେଠାରେ ସବୁ ପ୍ରସ୍ତୁତ ବୋଲି ଏଇ କେତେଦିନ ହେଲା ଶୁଣାଯାଉଛି । ସେ ଅତି ସରଳ, ସାଧାସିଧା, ଖଦଡ଼ ପିନ୍ଧୁଛନ୍ତି - ହବିଷ କଲାପରି ରହିଛନ୍ତି । ମୋତେ କହିନାହାନ୍ତି, କିନ୍ତୁ ମୁଁ ପାରିବି ନାହିଁ ଜଣାଇଛି ।

ସେ କ'ଣ ସତେ ଟିକିଏ ହେଲେ ବି ଆଗ ସ୍ୱୀକାର କରିଛନ୍ତି ? ଭଗବାନ - ତାଙ୍କ ମନର ଅଭିଳାଷ, ସାଧ, ଆହ୍ଲାଦ ସେ ଯଦି ପଛରେ ପକାଇ ମୋତେ କେବଳ ସୁଖୀ ଓ ଖୁସି କରିବା ପାଇଁ ଏପରି ଢ଼ଙ୍ଗ ଧରିଥା'ନ୍ତି - ତାହାହେଲେ ମୋ ଠାରୁ ଭାଗ୍ୟବତୀ କିଏ ? ଭଗବାନ - ମୋର ପଛକେ, ଦୋଷ ହେଉ - ମୁଁ ଅନ୍ଧନାରୀ ବୁଝିପାରି ନାହିଁ - କିନ୍ତୁ ସତେ ସେ ଯଦି ତ୍ୟାଗ ସ୍ୱୀକାର କରି ଜାଣିଶୁଣି ମୋତେ ମୋ ବାଟରେ ଯିବାକୁ ଦେଇଥାଆନ୍ତି ! ମୋତେ ତାହାହେଲେ ତ ସେ ଚାହାନ୍ତି - ନିବିଡ଼ ଭାବରେ - ଅନ୍ତରର ସହିତ । ହାୟ - ଏହା ଯଦି ସତ୍ୟ ହୁଅନ୍ତା — !

କିନ୍ତୁ ମନମୋର ଆଗେଇ ପାରୁନାହିଁ କାହିଁକି ? ମୁଁ କ'ଣ ସତରେ ତାଙ୍କୁ ମୋର କରିବାକୁ ଚାହେଁ ? ମୁଁ ଚାହିଁନାହିଁ, ପାଇନାହିଁ, ନ ଚାହିଁଲି ବା କାହିଁକି ? ହାୟ - ହତଭାଗିନୀ -ଏଡ଼େ ତଥ୍ୟଟା ଆଜିଯାଏଁ ବୁଝିନାହିଁ ମୁଁ । ନହେଲେ, ମୋ ମଣିଷ କାହିଁକି ମୋର ନ ହୁଅନ୍ତା ? ହଁ - ସତେ ସେ ଯଦି ପ୍ରକୃତରେ ମିତ ତାରାର ପକ୍ଷପାତୀ ହୋଇଥାଆନ୍ତି ଆଗରୁ... ତାଙ୍କର ବା ଦୋଷ କ'ଣ, ଆଉ ନିଜେ ପୂର୍ବଭାଇର ହୋଇଥାଏ ମୁଁ - ଏଇୟା ନା ?

ନା, ପୁଣି ଭୁଲ କରୁଛି ? ନିଜର ଯେଉଁ ଦୋଷ ଅଛି ତାଙ୍କର ବି ସେଇ ଦୋଷ ଥିବ - ଅଛି - ଏଇ ଅବିଚାର ମୁଁ କରିଛି - କରୁଛି । ମିତ ତାରାଠାରେ ସେ ଆସକ୍ତ ଅଛନ୍ତି, ମୋର ଏ ଭାବର ମୂଳରେ ମୋରନିଜର ମୂକ ଅବସ୍ଥାଟି ନାହିଁ ତ ? ବିଚାରୀ ତାରା ନଣନ୍ଦ - ନିଷ୍ପାପ - ସରଳ - ନିର୍ଦ୍ଦୋଷ - ଆଉ ସେ ମୋର ସ୍ୱାମୀ, ସେ ବି ବୋଧହୁଏ ସେହିପରି ସରଳ ବିଶ୍ୱାସରେ ତାଙ୍କ କର୍ତ୍ତବ୍ୟ କରିଚାଲିଛନ୍ତି । ଯାଡ଼େ ମୁଁ - ମୋର ନିଜ ଦୋଷ ତାଙ୍କ ଉପରେ ଆରୋପ କରି ନିଜ କର୍ତ୍ତବ୍ୟଚ୍ୟୁତିର ଅବକାଶ ଖୋଜିଛି । ଭାଗ୍ୟକୁ ଆଖିଠାର ମାରିବା ସହଜ । କିନ୍ତୁ ଯାହା ସତ୍ୟ ତାହା ସତ୍ୟ ପରା ।

ମୋର ଏସବୁରା ବୁଝିବା ଆବଶ୍ୟକ ଓ ଉଚିତ୍ ଥିଲା ପୂର୍ବରୁ । ମୁଁ ପାଠ ପଢ଼ିଛି - ବିଶେଷତଃ ସାଇକଲଜି ମୋରି ସବ୍‌ଜେକ୍ଟ ଥିଲା - ମୁଁ କାହିଁକି ଏତେ ବଡ଼ ଛଳନାରେ ପଡ଼ିଲି ? ମୁଁ ତ ନିଜେ ପୂର୍ଣ୍ଣଭାଇଙ୍କୁ ଓ ତାଙ୍କ ନିର୍ଦ୍ଦେଶକୁ ଏଡ଼ିଦେଇ ପାରିବି ନାହିଁ ! ତାଙ୍କୁ ଭୁଲିବାର ଶକ୍ତି ତ ମୋର ନାହିଁ ? ତେବେ ଏ ବିବାହରେ ସମ୍ମତି ଦେଇ ଦେଲି କାହିଁକି ? ଯେଉଁ ସର୍ତ୍ତରେ ଦେଇଥିଲି ସେଗୁଡ଼ିକ ସେ ଠିକ୍‌ଭାବରେ ପାଳନ କରିଯାଉଛନ୍ତି, ତେବେ ତାଙ୍କର ଦୋଷ କେଉଁଠି ?

କାଲି ତାଙ୍କ ପିଲାଗୁଡ଼ିକ - ଅନାଥ ଶିଶୁ - ବାଳକବାଳିକାଗଣ ବାହାରି ବାରକୁଦ ଯାତ୍ରା କଲେ । ତହିଁ ଆରଦିନ ସେ ନିଜେ ଯିବେ । ଆଜି ସେ ଆସି ମୋ ଶୋଇଲା ଘରେ ଛିଡ଼ା ହୋଇ କହିଲେ, ''ତାରା - ତୁମେ ବାରକୁଦ ଆଶ୍ରମର ଭାର ନବ ? ମତେ ପାର୍ଟି କାର୍ଯ୍ୟରେ ଏଣେତେଣେ ହେବାକୁ ପଡ଼ିବ । ଯିବ ତମେ ?'' ମୁଁ ଆଗରୁ ଏ ଖବର ଜାଣେ - ମିତଠାରୁ ଶୁଣିଥିଲି— ଭାବିଥିଲି ଯଦି ଡାକନ୍ତି ଯିବି - ତାଙ୍କର ବ୍ରତରେ ବ୍ରତୀ ହୋଇ । ପୂର୍ଣ୍ଣଙ୍କୁ ବରଂ ବୁଝାଇ ଲେଖିହେବ । ମତେ ନୀରବ ଦେଖି ସେ ପୁଣି କହିଲେ- ''ଦେଖ- ତୁମ ସାହିତ୍ୟ - ସେବା - ସଙ୍ଗୀତ ଚର୍ଚ୍ଚା, ଏସବୁ କାହିଁରେ ବାଧା ବା ତ୍ରୁଟି ହେବନାହିଁ - ତମେ ଚାଲ, ଯିବ, କୁହ ?'' ବୋଲି କହି ମତେ ପ୍ରାୟ କୋଳକୁ ଭିଡ଼ିନେଲେ । ମୁଁ ତଥାପି ହଁ କି ନାହିଁ କିଛି କହିପାରୁନି । ସେ ପୁଣି କହିଲେ ''ଲେଖକ - କବି - 'ଆଲେଖ୍ୟ'ର ସମ୍ପାଦକ ପୂର୍ଣ୍ଣବାବୁ କହିଛନ୍ତି ସେ ଆଶ୍ରମର ଅଧ୍ୟକ୍ଷ ହେଇଯିବେ ।'' ମୁଁ ପୁଣି ଅବାକ୍ । ସଙ୍ଗେ ସଙ୍ଗେ କହିଲି, ''ମୁଁ ଯାଇପାରିବି ନାହିଁ - ପାରିବି ନାହିଁ - ମତେ କ୍ଷମାକର ତମେ ।'' କହି ମୁଁ ତାଙ୍କ ପାଦ ଧରିବାକୁ ଗଲି । ସେ ଚକିତରେ ଇଆଡ଼େସିଆଡ଼େ ଚାହିଁ ଚାହିଁ କହିଲେ,— ''ଦେଖ ରାଣୀ, ମତେ ତ ଯିବାକୁ ହବ ମୋର ବ୍ରତ ଉଦ୍‌ଯାପନ କରିବାକୁ, ପାର୍ଟି କାର୍ଯ୍ୟ କରିବାକୁ ଟିକିଏ ପଡ଼ିପାରେ । ତମେ ଯାଇପାରିଥିଲେ ଭାରି ଭଲ ହେଇଥାଆନ୍ତା । ତମେ ଯିବନାହିଁ, ସତ କହୁଚ - ଯାଇପାରିବ ନାହିଁ ?'' ମୁଁ ମୁଣ୍ଡ ହଲାଇ ଜଣାଇଲି —ଯାଇ ପାରିବି ନାହିଁ — କହିଲି— ''ମୁଁ ଯାଇପାରିବି ନାହିଁ - ସତରେ ଯିବିନାହିଁ ।''

''ବୁଝିଲି — ମୋ ବ୍ରତରେ ତମର ଆସ୍ଥା ନାହିଁ - ମୋ କାର୍ଯ୍ୟ ମୋର — ଏକା ମୋର ହଉ — ତମ ଇଚ୍ଛା !''

''ନା - ମୁଁ ଯିବିନାହିଁ । ତମର ଶକ୍ତି ଥିଲେ ମୋତେ ଜୋର କରି ନବତ ନିଅ !''

"ନା - ନା - ମୁଁ ଜୋର କରିବିନାହିଁ - ତମର ଯେବେ ମନ ବଦଳିବ - ଯେବେ ତମର ଇଚ୍ଛା ହବ - ତେବେ - ତମେ ଆସିବ । ତେବେ ମୁଁ ଜୋର କରି କହୁଛି - ତମେ ଆସିବ ଦିନେ - ନିଶ୍ଚୟ ଆସିବ - ହଁ ନିଶ୍ଚୟ ଆସିବ - ଅଗ୍ନୀ ସାକ୍ଷୀ ।"

ମୁଁ ତଥାପି ମୁଣ୍ଡପାତି ରହି ଅଶ୍ରୁବରଣ କରୁ କରୁ କହିଲି —"ମୋ ମିତାରାକୁ ନିଅ - ସେ ସେଠା ଭାର ମୋ ପାଇଁ ନବ ।" "ହଉ !" ବୋଲି କହି ସେ ମୋ ଚିବୁକ ଧରି ମୁହଁକୁ ମୁହଁ ଚାହିଁଲେ କିଛିକ୍ଷଣ - କେତେକ୍ଷଣ କେଜାଣି - । "ହଉ - ମୋ ପ୍ରତି ଦୟା କରୁଚ ନା ?

"ଦୟା କ'ଣ ତମର ଏକଚାଟିଆ" କହି ମୁଁ ମୁହଁ ଓହଳାଇଲି । ସେ କହିଲେ "ହଉ - ତମର ମଙ୍ଗଳ ହେଉ - ତମେ ଦିନେ ବୁଝି ପାରିବ; ଦୟାର ସ୍ଥାନ ଆମ ଦୁହିଁଙ୍କ ଭିତରେ ନାହିଁ । ଦୟା କରିବେ, କରି ପାରିବେ କେବଳ ସେଇ ଦୟାସାଗର ଭଗବାନ । ବୁଝିବ - ଜାଣିବ । କିନ୍ତୁ ମନେରଖ - ତୁମେ ମୋର, ମୁଁ ତମର -" କହି ଚାଲି ଯାଉଥିଲେ ଟିକିଏ ତୀକ୍ଷ୍ଣ ଭାବରେ ।

ମୁଁ ବାଟ ଓଗାଳି କହିଲି "ଆହେ, ମତେ କ'ଣ ଜୋର କରି ନବାରେ ତମର ଟାଣ ନାହିଁ - ନା ନଥିଲା ? ତମେ ମତେ ନବ ନାହିଁ - ମୁଁ ତମ ବ୍ରତର ଯୋଗ୍ୟା ପୂଜାରିଣୀ ନୁହଁ - ମତେ ନେବ ନାହିଁ ବୋଲି ନଉ ନା । ମୁଁ ବି ବ୍ରତ କରିବି ଦୂରରେ ଥାଇ । କିନ୍ତୁ ତମେ ମିତାରାକୁ ନେଇ ଯାଅ - କହ— ନେବ ?"

"ହଁ ନେବି !"

"ସେ ପାରିବ - ଦ୍ୱିତୀୟା ତାରା ତମର - ସେ ପାରିବ, ମୁଁ ପାରିବି ନାହିଁ" କହି ତାଙ୍କ ଗୋଡ଼ ତଳେ କଚାଡ଼ି ହୋଇ ପଡ଼ିଲି । ମୋର ଚେତା ବୁଡ଼ିଗଲା ।

\+ + + + +

ତାଙ୍କ ଯିବା ଲଗ୍ନ ଆସିଲା । ମିତାରାକୁ ମୁଁ ଜୋର କରି ପ୍ରସ୍ତୁତ କରାଇଥିଲି । ସେ କାନ୍ଦି କାନ୍ଦି ଯିବାକୁ ରାଜି ହେଉଥିଲା । ମୋଟରରେ ଷ୍ଟେସନକୁ ଯିବା କଥା । ଆମେ ଦୁହେଁଯାକ ଯାଇ ଗାଡ଼ିରେ ବସିଲୁ । ଶଙ୍ଖ ବାଜିଲା - ମଙ୍ଗଳ ବଢ଼ା ହେଲା —ସେ

ଆସି ଗାଡ଼ିରେ ବସିଲେ । ଗାଡ଼ି ଚାଲିଲା ଷ୍ଟେସନ ଅଭିମୁଖେ— କାହାରି ମୁହଁରେ କଥା ନାହିଁ । ମୁଁ ଯେ କାହିଁକି ଯାଉଛି କେହି ପଚାରିଲେ ନାହିଁ । ଏହା ମଧ୍ୟ ମୁଁ ନିଜେ ବୁଝି ପାରିନାହିଁ । ମୁଁ ଖାଲି ବଳାଇ ଦେବାକୁ ଯାଉଛି । ଷ୍ଟେସନରେ ପହଞ୍ଚି ସେ ଆମକୁ ନେଇ ଗୋଟିଏ ପାଖରେ ଛିଡ଼ା କରାଇଲେ ଓ ହଠାତ୍ କହିଲେ -''କାହିଁ - ପୂର୍ଣ୍ଣବାବୁଙ୍କୁ ତ ଦେଖୁନାହିଁ -ଗାଡ଼ି ଟାଇମ୍ ହେଲା ଯେ !'' କହି ଅନ୍ୟ ଆଡ଼େ ଚାଲିଗଲେ । ଗାଡ଼ି ଆସିଲା । କିଏ ଜଣେ ଆସି ଆମକୁ ଡାକିଦେଲେ - ଗାଡ଼ି ଭିତରକୁ ଚାଇନ୍ତୁ । ଡବା ଦୁଆରେ ଦେଖିଲୁ ସେ ଓ ପୂର୍ଣ୍ଣ ଭାଇ - ସେ କହିଲେ ''ଆସ, ଆସ ଭିତରକୁ ଆସ !'' ମିତାରା ଉଠିଲା । ମୁଁ ଛନ୍ଦମନ୍ଦ ହବାରୁ କହିଲେ - ''ଗାଡ଼ି ଅନେକ ବେଳଯାଏ ରହିବ, ସିଟି ଦେଲେ ଓହ୍ଲାଇ ଯିବ - ଯାଅ ଭିତରକୁ !'' ଯାଇ ପୂର୍ଣ୍ଣଭାଇଙ୍କୁ ଜୁହାର ହେଲି ଓ ମିତାରାକୁ କୁହାଇ ତାଙ୍କୁ ମଝିରେ ଥୋଇଲା ପରି ହୋଇ ବସିଲି । ପୂର୍ଣ୍ଣଭାଇ କହିଲେ,''ତୁ ଯାଉନାହୁଁ ତାରା ?''

''ନା'' ବୋଲି କହି କଷ୍ଟରେ ଠିଆ ହେଲି । ସିଟି ଶୁଭିଲା । ସେ ତରବର ହୋଇ ଉଠିଲେ । ମୁଁ ଆଗେଇ ଜୁହାର ହେଲି ତାଙ୍କ ଗୋଡ଼ ଉପରେ ମୁଣ୍ଡ ରଖି । ''ଆସିବଟି !''

''ଦରକାର କ'ଣ ଅଛି ସତେ ?'' କହିଲି । ସେ ମୋ ହାତ ଧରି ଓହ୍ଲାଇ ଦେଉଁ ଦେଉଁ କହିଲେ, ''ହଁ ଦରକାର ଅଛି, ଦରକାର ମୋର, ତମର ବି ଅଛି । ଆସିବ ତ ? ବୁଝିବ —ଆସିବ —ନିଶ୍ଚୟ ଆସିବ —ଆସିବ—ଆସିବ ବୋଲି କାହାର ଆଜ୍ଞା - ତାରାପତି ଚନ୍ଦ୍ରକାନ୍ତଙ୍କର ଆଜ୍ଞା — ଜାଣତ ତମେ କିଏ ?''

ଗାଡ଼ି ଚାଲିଲା ପରା ! ମିତାରା ଉଠି ଦୁଆର ପାଖକୁ ଆସି ହାତ ବଢ଼ାଇଲେ । ''ଆସ ମିତାଉ !'' ''ନା ନା ତୁ ଯା ତ ମୁଁ ପରେ ଯିବି !'' ପୂର୍ଣ୍ଣ ଭାଇ ବିଦାୟଟା ନ ଦେଖିବା ପାଇଁ ସେପଟକୁ ମୁହଁ କରି ବସି ଥାଆନ୍ତି ଦେଖିଲି । ଯାଙ୍କୁ କହିଲି - ''ନେଲ ତ ନାହିଁ - ମୁଁ କ'ଣ ଏଇନା ଯାଇ ନ ଥାଆନ୍ତି - ତମେ ନବ ନାହିଁ - ତମେ ଯାଅ ଉଠ - ଗାଡ଼ି ଛାଡ଼ିଲା ଯେ !'' ଉଠୁ ଉଠୁ ସେ କହିଲେ - ''ହଉ ମୁଁ ତୁମକୁ ନେବି ନାହିଁ - ତମେ ନିଜେ ନିଜେ ଯିବ - ତମେ ମୋ ତାରାରାଣୀ ଅଦ୍ୱିତୀୟା - ମନେ ରଖିଥିବ ।''

❑ ❑ ❑

# 'ପାଇ ନ ପା'

ମୁଁ ପ୍ଲାଟଫର୍ମରେ ଏକା ଛିଡ଼ା ହୋଇଗଲି - ମତେ ଲାଗିଲା ମୁଁ ଯେପରି ହଜି ଯାଉଛି । ହାରିଲି ନା ହରାଇଲି ବୁଝି ପାରିଲି ନାହିଁ - ଗାଡ଼ିଟା କାହିଁକି ଚାଲିଯାଏ ଧାଇଁ ଧାଇଁ କ'ଣ ତାକୁ ଥକ୍କା ଲାଗେ ନାହିଁ —ହଁ - ଚାଲିଯାଏ ଆଉ ଯେଉଁମାନେ ରହିଯାଆନ୍ତି ନାଃ - ଯେଉଁମାନେ ନୁହଁ - ଯେଉଁ ଲୋକ ଅର୍ଥାତ୍ ଜଣକ–ଯଥା ମୁଁ । ଯିବା ଉଚିତ ଥିଲା ମୋର — ଗଲେ ତ ଯାଇ ପାରି ଥାଆନ୍ତି - କ'ଣ ଫେରାଇ ଦିଅନ୍ତେ ନାଁ ଗାଡ଼ିରୁ ଓହ୍ଲାଇ ଦିଅନ୍ତେ —ଯୁଗପତ୍ ସହସ୍ର ଭାବ ଅଗଣିତ ଇଙ୍ଗିତ—ଅଜସ୍ର ଆଶଙ୍କା ମତେ ଘେରି ପକାଇ ନିବିଷ୍ଟ କରିଦେଲା । ଡ୍ରାଇଭର ଓ ଅନ୍ୟ ଘରର ଲୋକମାନେ ସମସ୍ତେ ମତେଇ ଅପେକ୍ଷା କରିଥାନ୍ତି - ମୁଁ କିନ୍ତୁ କାଠପିତୁଳାଟି ପରି ସେହି ସ୍ଥାନରେ ଛିଡ଼ା ହୋଇ ଗାଡ଼ି ଲାଇନ୍‌କୁ ସେହିପରି ଚାହିଁ ରହିଥାଏଁ । କେତେବେଳଯାଏଁ ଯେ ଏପରି ରହିଥାଆନ୍ତି କେଜାଣି ହଠାତ୍ ବାପା ସେଆଡୁ ନସରପସର ହୋଇ ଆସି ମୋ କାନ୍ଧରେ ହାତରଖି କହିଲେ "ଏଁ - ଗାଡ଼ି ଛାଡ଼ି ଦେଲା ? ମୋର ଡେରି ହେଇଗଲା, ତାରା - ନା - ନା - ମୁଁ କହିଥିଲି ପହଞ୍ଚିପାରେ - ସିଆଡ଼େ ଗୋଟେ କଥାରେ ରହିଗଲି ଝିଅ । ହଉ - ହଉ ଚାଲ ଏଥର ତତେ ଛାଡ଼ି ଦେଇ ଆସେ ।" ଏକା ନିଃଶ୍ୱାସକେ ଏତକ କହି ବାପା ଚାରିଆଡ଼କୁ ଚାହିଁ ପୁଣି ଥରେପଚାରିଲେ "ତୁ ତାହାହେଲେ ଗଲୁନାହିଁ ? ଭଲକଲୁ - ତୋ କାମ ତୁ କର - ଏଠା କାମ - ସେଗୁଡ଼ା ଫେର କିପରି ଚଳନ୍ତା । ଭୁଲ ହେଲା" —ମତେ ନୀରବ ଦେଖି କହିଲେ ଚାଲ - ଚାଲ - ଗାଡ଼ିରେ କଥାବାର୍ତ୍ତା ହବା - ହଁ - କ୍ଲାସ ଟାଇମ୍ ହେଇଗଲାରେ, ହଉ ଚାଲ - ମତେ କଲେଜ ଫାଟକ ପାଖେ ଛାଡ଼ି ଦେଇଯିବୁ - ମୁଁ ପୁଣି ସଞ୍ଜକୁ ଆସିବି ।"

ଧୀରସ୍ଥିର ଭାବରେ ଯାଇଁ ଗାଡ଼ିରେ ବସିଲି । ବାପା ମଧ୍ୟ ବସିଲେ କିନ୍ତୁ ତାଙ୍କର ଯେଉଁ ହେଲାମନ - ଆଉ ସେ ପ୍ରସଙ୍ଗ ଉଠେଇଲେ ନାହିଁ - କହିଲି ଏଇ ମଟର - ଏତେ ଗାଡ଼ି, ତା'ର କେଉଁ ଅଭାବ - ମତେ ମନା କରି ଲେଖିଲା - ଆଉ ଗାଡ଼ି ଦେବେ ନାହିଁ ଯେତେ ଜିଗର କଲେ କ'ଣ ହେବ - ଯା ହଉ - ଏଟାତ ଅଛି କାମ ଚଳୁଛି - ମୁଁ ଭାବୁଛି - ଗୋଟାଏ ବେଶିକ୍ ଚେୟାର ପାଇଁ ଟଙ୍କା ଦେଇଦେବି ।

ବିଚିତ୍ର ଏହି ମନର ଖେଳ - ବିଚିତ୍ର ତା'ର ଲୀଳା । ଏବେ ପୁଣି ଆହୁରି ଗୋଟିଏ ଯାଦୁକରୀ ପ୍ରବାହ ବିଷୟ ବାପାଙ୍କଠାରୁ ଶୁଣିଥିଲି । ଜିନିଷ ପୁରୁଣା ହେଲେ ମଧ ନୂଆ ହୋଇ ତା'ର ନାମ ବାହାରିଛି - ଛାୟାପାତ୍ ଓ ପ୍ରବର୍ତ୍ତନ । ଯେପରି ଛାୟାଚିତ୍ରର ପଟ୍ଟଭୂମି ଉପରେ ଛବିର ଛାୟା ପଡ଼ି ଜୀବନ୍ତ ହୁଏ ସେହିପରି ଗୋଟିଏ ଅନ୍ତରର ବା ଗୋଟିଏ ଚରିତ୍ରର ଛାୟା ମନର ପ୍ରବର୍ତ୍ତନରେ ପ୍ରତିବିମ୍ବିତ ହୁଏ । ଅନ୍ୟ ଅଧିକୃତ ମନର ପଟରେ - ଅଜାଣତରେ ନିଶ୍ଚୟ । କିନ୍ତୁ ସବଳେ ମଧ - ଜୋର କରି —କୌଣସି ବାଧାବିରୋଧ ନ ମାନି । ଯେପରି ରାଧାଭାବ, ସଖୀଭାବ - ବାତ୍ସଲ୍ୟ । ଆଜି ବୈଷ୍ଣବ ସାଧନାର ଧାରା କୃଷ୍ଣପ୍ରୀତିରେ ପ୍ରକଟିତ । ବାପା ବୁଝଉଥିଲେ ପ୍ରଭେଦ କେବଳ ଏତିକି —ବାପା କହୁଥିଲେ ଯେ ପ୍ରତ୍ୟେକ ବୈଷ୍ଣବ ନିଜ ପାଇଁ ଗୋଟିଏ ଗୋଟିଏ ଭାବ ଅନୁମାନ କରି ପ୍ରତିକଳ୍ପର ସାଧନା କରେ କିନ୍ତୁ ଏହା ମଧ ସତ୍ୟ ଯେ ଯେଉଁ ଭାବଟି ବାଛି ନିଏ ତାହା ତା' ମନ ଉପରେ ସ୍ୱତଃ ଚିତ୍ରିତ ହୁଏ ନ ହେଲେ ଜଣେ କାହିଁକି ସଖା ବା ସଖୀ ଭାବରେ ଜଣେ ମାତା ଯଶୋମଣି ଭାବରେ ବା ଜଣେ ସ୍ୱୟଂ ରାଧା ଭାବରେ ଅନୁପ୍ରାଣିତ ହୁଏ ? ପଟ୍ଟଭୂମିର ମନ ଓ ଛାୟାଦାୟୀ ମନ ଉଭୟଙ୍କର ଏଥିରେ କୃତିତ୍ୱ ରହିଛି, ଏଥିରେ ସନ୍ଦେହ କ'ଣ ?

+ + + + +

ମୁଁ କାହିଁକି ଏସବୁ ଗହନକଥାଗୁଡ଼ା ମିଛରେ ଆବୃତ୍ତି କରି ଚାଲିଛି ? କମପ୍ଲେକ୍ସ, ପ୍ରୋଜେକ୍ସନ ଏସବୁ ନେଇ ମୋର ମୁଣ୍ଡ କିଆଁ ବଥଉଛି କି ଆଜି ? କିଆଁ କାହିଁକି ମୋ ମୁଣ୍ଡ ଭିତରେ କ'ଣ ହେଇଯାଉଛି ବୁଝିପାରୁନାହିଁ । ଗୋଟାଏ ବିଷୟରେ ମନରେ ବଡ଼ ସନ୍ଦେହ ହୁଏ । ମଣିଷ କାହାକୁ ଭଲପାଏ - କାହାକୁ ପାଖରେ ରଖେ । ଯେ ତାହାଠାରୁ ମନରେ ବା ଦେହରେ ଊଣା ନୁହେଁ କି ? ଛୋଟ ବାଳୁତ ଶିଶୁଠାରୁ ବୃଦ୍ଧ ସ୍ଥବିର କୁହ ବା ଅନୁଗତ ପୂର୍ଣ୍ଣ ବୟସ୍କ ଲୋକ - ସାଙ୍ଗସାଥୀ ହେଉ ବା ଗୁରୁଜନ ହେଉ - କାହାରିକୁ ସ୍ନେହ ଆଦର ମମତା ଦେବା ଭିତରେ ମନ ଭିତରର ଏହି ଗଭୀର ତଥ୍ୟ ଲୁଚି ରହିଛି ତ ? ସମାସ୍କନ୍ଧ ସଙ୍ଗରେ ଝଟାପଟା ଭିତର ଦେଇ ମାୟା—ମମତା ଅଳ୍ପବହୁତ ଜନ୍ମିପାରେ - ବନ୍ଧୁତ୍ୱ ଯାହାକୁ କହନ୍ତି ଉପର ସ୍ତର ପାଇଁ ସମୀହ ଭକ୍ତି ସ୍ୱତଃ ଉଦୟ ହୋଇପାରେ କିନ୍ତୁ ଏ ସବୁ ମନ ଜୀବନର ନିତ୍ୟନୈମିତ୍ତିକ ଆହାର ନୁହେଁ । ଯେଉଁ ରସରେ ମନ ବଞ୍ଚିରହେ - ଯେଉଁ ବଡ଼ ପରିବା ଦେଇ ମନର ଦୈନନ୍ଦିନ

ତରକାରୀ ତିଅଣ ତିଆରି ହୁଏ ତାହା କେବଳ ନିମ୍ନ ସ୍ତରର । କୁକୁର ବା ବିଲେଇ ପିଲାଟି ଠାରୁ ଧରିନିଅ ତୁମର ସ୍ୱାମୀ (ବା ସ୍ତ୍ରୀ) ପର୍ଯ୍ୟନ୍ତ । ମନ ଭିତରେ ବଡ଼ ଗୋଟିଏ ନିମ୍ନମୁଖୀଗାମୀ ଅନ୍ତଃସ୍ରୋତ ରହିଛି ପରା । ସେ ଯଦି ଭାବିଲା ସେ ଅଯୋଗ୍ୟ ବା ଅକ୍ଷମ ତା' କଥା ସରିଲା । କିନ୍ତୁ ତା' ସଙ୍ଗେ ସଙ୍ଗେ ତା'ର ଚେଷ୍ଟା ହେବ ଯେପରି ସେ ପ୍ରଭୁତ୍ୱ ବା ଅଧିକାର ରଖିବ କାହାରି ଉପରେ ଯେତେ ସେ ନିଜେ ତଳକୁ ଯାଉପଛେ - ତହୁଁ ତଳ ଜୀବକୁ ସେ ଆଦରିବ ତା' ଭିତରର ମଜ୍ଜାଗତ ଏହି ଅଭାବଟିକୁ ପୂରଣ କରିବା ପାଇଁ । ଧର ଯେପରି ଗୋଟିଏ ଖେଳନା ତା'ର ଆବଶ୍ୟକ - ଯାହାକୁ କୁଣ୍ଢେଇ ପାରେ - କାଖେଇ ପାରେ - ଗୋଡ଼େଇ ଦେଇ ପୁଣି କୋଳକୁ ଟାଣି ଆଣି ପାରେ କିନ୍ତୁ ତାକୁ ତା'ର ଦରକାର - ପୁଣି ଉଚ୍ଚ ସ୍ତରର ଜୀବପ୍ରତି ମାୟା ସଙ୍ଗେ ସଙ୍ଗେ ସମ୍ଭବ ମଧ ଜନ୍ମିପାରେ ରହି ରହି ସେହି ମନ କୋଣରେ । ତାକୁ ଅନୁକରଣ କରିବାର ପ୍ରବୃତ୍ତି ସେଠାରେ ଜାଗିଉଠେ । ତାକୁ ଦମନ କରିବାର ବାସନା ଓ ତାହା ସଙ୍ଗେ ସଙ୍ଗେ ଗୋଟାଏ ଈର୍ଷାଭାବ ଓ ଗୋଟାଏ ଉଚ୍ଚାଭିଳାଷ । ଏଟା ମନର ଉର୍ଦ୍ଧ୍ୱମୁଖୀ ତଥା ନିମ୍ନମୁଖୀ ପ୍ରଭାବ । ( Superiority ଏବଂ Inferiority Complex) ।



# ପାଗଳା ରହିମ୍

ଲୋକେ ତାକୁ ପାଗଳା ରହିମ୍ ବୋଲି କହୁଥିଲେ ।

ସେ ଥିଲା ପୂରା ଚାରିହାତ ଲମ୍ବ - ପତଳା ଯେ, ହାତ ଦିଖଣ୍ଡରେ ମାଉଁସ ଅଛି କି ନାହିଁ ଜଣାଯିବ ନାହିଁ । ପଠାଣ ଘରେ ଜନମ ହୋଇଥିଲା ସେ, କିନ୍ତୁ କଞ୍ଚା ଉମରରୁ ତା'ର ହେଲା ପୂରା ହିନ୍ଦୁ ରୀତିନୀତି ଆଉ ହିନ୍ଦୁ ଆଚରଣ । ସହରିଆ ଗୁଣ୍ଡା ତା'ର ବାପା, ଭାଇ, ସାଇ-ପଡ଼ିଶା ସମସ୍ତେ । କାହାରି ସଙ୍ଗରେ ରହିମ୍‌ର ବନୁ ନଥିଲା । କେଉଁ ବଡ଼ ଜ୍ୟୋତିଷ କାଳେ ତାକୁ କହିଥିଲା ସେ ତାହାରି ଜାତିଭାଇଙ୍କ ହାତରେ ମରିବ—

କେହି ବି ତାକୁ ଶରଧା କରୁ ନଥିଲେ । ଗୁଣ୍ଡାର ପୁଅ, ଗୁଣ୍ଡାର ନାତି, କ'ଣ ନା କାଫେରଙ୍କ ସଙ୍ଗେ - ଓଡ଼ିଆଙ୍କ ପତରଚଟା । ଏଇଟା କେଉଁ ତା' ଜାତି ଭାଇଙ୍କ ହାତରେ ଯାଉ ନଥିଲା । କେଉଁଦିନୁ ତାକୁ କଟକର ଗୁଣ୍ଡାମାନେ ସାବାଡ଼୍ କରିସାରନ୍ତେଣି — ଖାଲି ତା' ବାପ କରିମ୍ ଶେଖ ଯୋଗେ ଆଉ ସେତକ କରି ପାରୁନଥିଲେ । ଗୁଣ୍ଡାଙ୍କ ଭିତରେ କରିମ୍‌ର ନାଁ ଡାକ ଯେମିତି —ହାତରେ ଟଙ୍କାବି ସେମିତି —ଦିହରେ ବଳବି ସେମିତି ।

ରହିମ୍ ଇସ୍କୁଲରେ ପଢ଼ିଥିଲା । ତା' ବାପ କରିମ୍ ଦିନେ କହିଲା, ଇସ୍କୁଲରେ ପୂରାଇ "—ବେକୁଫ୍ ପାଠ ପଢ଼୍ ଅଉର କବୁ କରେଗା, ହାରାମଜାଦା-" ରହିମ୍ ଇସ୍କୁଲକୁ ଗଲା । କିନ୍ତୁ ପଢ଼ାପଢ଼ିରେ ବେଶିକିଛି କରିପାରିଲା ନାହିଁ —ଛୋଟଛୋଟ ପିଲାମାନଙ୍କ ପାଇଁ ଲଢ଼ିବା, ସମସ୍ତିଙ୍କ ବୋଇହାକ କରିବା, କାହାରି କାହାରି ପାଇଁ Home Task ପର୍ଯ୍ୟନ୍ତ କରିଦବା ଥିଲା ତା'ର କାମ । ନିଜପାଇଁ ପଢ଼ି ବସିଲେ ପଢ଼ାରେ ତା'ର ମନ ଲାଗୁନଥିଲା । ଶେଷରେ ଥାର୍ଡ଼ କ୍ଲାସରୁ Good Conduct Prize ଟିଏ ପାଇ ଇସ୍କୁଲରୁ ବିଦାୟ ନେଲା । ସେତେବେଳକୁ ତାକୁ ବୟସ ୨୨ ବର୍ଷ ।

ଏବେ ଏଣିକି ତା'ର କାମ ହେଲା କଟକ ସହରଯାକ ବୁଲି ବୁଲି ଯାହା ତାହା ପାଇଁ ମାଗଣାରେ ବୋଲୁଟା ହାକୁଟା କରିଦବା । ଦୁଃଖିରଙ୍କିଙ୍କ ପାଇଁ ମଜୁରୀ ଲାଗି ରୋଜଗାର କରିବା ତା'ର ହେଲା ବ୍ୟବସା - କୁଲିଙ୍କ ସାଙ୍ଗରେ ନଈରୁ ବାଲି ବୋଝ ବୋହିଛି ସେ -

ଇଟା ଭାଟିରୁ ଇଟା ନେଇ ଗାଡ଼ି ବୋଝେଇବି କରିଛି ସେ । ଏମିତି ଛୋଟବଡ଼ କାମ ନାହିଁ ଯାହା ସେ ନ କରିଛି —ପରଙ୍କ ପାଇଁ । ନିଜପାଇଁ ତା'ର ମୋଟେ ଭାବନା ନଥାଏ - ଏହି ପରି ସେ କଟକର ଯେତେ ମୂଲିଆମଜୁରୀୟା ଗରୀବଗୁରୁବା ତାକୁ ଭଲ କରି ଜାଣିଗଲେ । ରହିମ୍ ଟିକିଏ ବାଟରେ ଚାଲିଗଲେ ଦଶଲୋକେ ତାକୁ ହସି ହସି କଥା କହନ୍ତି - ମଜୁରାଣୀ ମାଇକିନିୟାମାନେ ଦଣ୍ଡେ ତା' ସାଙ୍ଗରେ ଗପ ନ କରି ତାକୁ ଛାଡ଼ି ଦିଅନ୍ତି ନାହିଁ ।

ସେ ବର୍ଷ ଭାରି ଜାଡ଼ ପଡ଼ିଥାଏ। ଜାଡ଼ ହେଲେ କ'ଣ ହବ, ଖରାର ଝାଞ୍ଜିବି ଭାରି ଟାଣ ହୋଇ ଆସିଥାଏ ମାଘ ଶେଷ ବେଳକୁ । ବଜାରରେ ଘରେ ଘରେ ଠାକୁରାଣୀ ଲାଗିଥାଆନ୍ତି । ରହିମ୍ ଦିନେ ଉଦୁଉଦିଆ ଖରାବେଳେ ରଘୁ ଲେଙ୍କା ଘରୁ ତା' ପୁଅକୁ ଦେଖି ଫେରୁଛି (ରଘୁ ଲେଙ୍କା ପୁଅ ତମାକୁ ବସନ୍ତ ମାଁ ହୋଇଥିଲେ) । ନଈବନ୍ଧ ବାଟେ ସେ ଆସୁ ଆସୁ ଦେଖିଲା ତାଙ୍କ ମହାଲା କେଶରପୁରିଆ ଜଣେ ଗୁଣ୍ଡା ବନ୍ଧରୁ ଗଡ଼ି ବାଲି ଭିତରକୁ ଯାଉଛି । ସେ ଲୋକଟି ଛିଡ଼ା ହେଇଗଲା । କହ - ଧୂମା ଏଠି କରୁଛି କ'ଣ ଏତେବେଳେ । ନଈ ଭିତରକୁ ଅନେକ ଦୂରକୁ ଅନାଇଲା - ବସନ୍ତ ଝପଟା ବାଆ ବାଲି ଉଡ଼ାଇ ଅନ୍ଧାର କରିଛି, ଯେଉଁଠି ପାଣି ସେଇଠି ହେଇକରି ଯୋଡ଼ିଏ ମଜୁରାଣୀ ଟୋକୀ ପାଚିଆରେ ବାଲି ପୁରଉଛନ୍ତି । ଧୂମା ତାଙ୍କରି ଆଡ଼କୁ ଚାଲିଛି । ରହିମ୍ ଦେଖିଲା - ଗୋଟାଏ ଟୋକୀ ବାଲିପାଚିଆ ମୁଣ୍ଡରେ ନେଇ ବନ୍ଧ ଆଡ଼କୁ ଆସିଲା ଆରଟି . ଖାଲି ପାଚିଆରେ ବାଲି ପୁରଉଥାଏ । ଧୂମା ବି କ୍ରମେ ତା'ରି ପାଖକୁ ପାଖକୁ ଯାଉଛି । ରହିମ୍ କୁ ଜଣାଗଲା - ଦୂରରୁ ଭଲ ଠଉର ହଉ ନଥାଏ । ଧୂମା ଯେପରି ଟୋକୀଟିକୁ ଧରିପକାଇଲା ସେ ତା' ହାତ ଛିଞ୍ଚାଡ଼ି ଦେଇ ବାଲିରେ ବାଲିରେ ଦଉଡ଼ିବାକୁ ଆରମ୍ଭ କଲା । ଧୂମା ଥାଏ ବନ୍ଧଆଡ଼କୁ - ସେ ଯୋଗେ ସେ ଧାଉଁଥାଏ ଆହୁରି ନଈର ଭିତରକୁ ଭିତରକୁ - ବନ୍ଧ ସମାନରେ ଧୂମା ଗୋଡ଼ାଇଥାଏ । ଧୂମା ଟିକିଏ ରାସଭାରି ଲୋକ । ପୁଣି ପଇଲୁମାନ । ପହିଲୁ ପହିଲୁ ଧୂମା ପଛକୁ ପଡ଼ି ପଡ଼ି ଗଲା । ଟୋକୀଟି ପ୍ରାଣ ବିକଳରେ ଧାଇଁଥାଏ ପଛକୁ ଅନାଇବାକୁ ବି ସାହସ କରୁ ନଥାଏ - ଆଗକୁ ବି କ'ଣ ଅନଉଥାଏ ।

ସେ ଯେଉଁ ଆଡ଼କୁ ଧାଉଁଥାଏ ସେ ଆଡ଼େ ତ ଆଶ୍ରା ଭରସା ଟିକିଏ ହେଇକରି ନାହିଁ । ତଥାପି ସେ କେଉଁ ଆଶ୍ରା ଆଶାରେ ଧାଇଁଥାଏ କେଜାଣି । ରହିମ୍ ଆଉ ଥୟ ହେଇ ରହିପାରିଲା ନାହିଁ - ତୂଠ ପଟଟା ଚାରିଆଡ଼ ଶୂନ୍‌ଶାନ୍ - କେଉଁଆଡ଼େ ଜନପ୍ରାଣୀ ନାହିଁ - ଧୂମାକୁ ତ ସେ ଜାଣେ ଆଗରୁ ଭଲକରି - ଧୂମାର ତା' ଉପରେ ରାଗ ଅଛି ଏକଥା ବି ଜାଣେ । ତଥାପି ଛିଡ଼ା କମିଜ ଖଣ୍ଡ ମଇଳା କୁରୁତା ଉପରେ ଗୋଟାଏ

ହାତରେ ଚାପଧରି - ଆର ହାତରେ ଢ଼ିଲାପାଇଜାମାଟିକୁ ସମ୍ଭାଳି ସମ୍ଭାଳି ବନ୍ଧରୁ ଧୀରେ ଧୀରେ ଗୋଟିକ ପରେ ଗୋଟିଏ ପାବଚ୍ଛ କରି ଓହ୍ଲାଇବାକୁ ଆରମ୍ଭ କଲା । ଯାଡ଼େ ଧୂମା ଟୋକୀଟାକୁ ଧରିବା ଉପରେ । ରହିମ୍ ସିଆଡ଼େ ଚାହିଁବ ନା ଓହ୍ଲେଇବ—ଫଳରେ ସେ ତିନିଟି ପାବଚ୍ଛ ଢମାରୁ ଯାଇଛି ସେତିକିବେଳେ ଧୂମା ସେ ଟୋକୀଟାକୁ ଧରି ପକାଇଲା - ରହିମ୍ କ'ଣ କରିବ ଭାବୁଛି ଓ ଗୋଟି ଗୋଟି କରି ଆହୁରି ପାବଚ୍ଛ ଓହ୍ଲାଉଛି । ଏତିକିବେଳେ ଧୂମା ସେ ନିଃସହାୟା ଟୋକୀଟାକୁ ଏକାବେଳେକେ ଟେକି କାନ୍ଧରେ ପକାଇ ବୁରୁଜ ସନ୍ଧି ଖୋପରେ ଥିବା ବାଲି ଆଡ଼କୁ ଏକାମୁହାଁକି ଦଉଡ଼ିଲା । ରିହିମ୍ ଥିଲା ବୁରୁଜ ଉପରେ ଗୋଟାଏ କନ୍ଦିରେ - ସେ ଧୂମାକୁ ଦେଖି ପାରିଲେ ମଧ ଧୂମାର ତାକୁ ଦେଖିବାର ଉପାୟ ନଥିଲା । ଧୂମା ସେ ଟୋକୀଟିକୁ ଓହ୍ଲାଇ ତଳେ ଥୋଇଲା - କିନ୍ତୁ ସେ ଅବଶ ନିଶ୍ଚେଷ୍ଟ ଭାବରେ ବାଲିରେ ଲୋଟି ହେଇ ପଡ଼ିଲା - ରହିମ୍ ଏତେ ଦୂରରୁ ବି ବୁଝିପାରିଲା ତା'ର ଚେତା ନାହିଁ - ସେ ହତବୁଦ୍ଧି ହୋଇ ସାରିଥିଲା । ଗୋଟି ଗୋଟି ପାବଚ୍ଛ ଓହ୍ଲାଇ ବୁରୁଜ ବୁଲି ଧୂମା ପାଖକୁ ଯାଉଁ ଯାଉଁ ବୋଧହୁଏ ତାକୁ ଘଣ୍ଟାଏ ଲାଗିଯିବ । ବ୍ୟସ୍ତ ହେଇ ସେ ବୁରୁଜ ଉପର ଚଟାଣ ଉପରକୁ ଯାଇ ସେହିଠାରୁ ତଳକୁ ଅନାଇ ରହିଲା । ଏଥର ଯାହା ଦେଖିଲା ସେଥିରେ ତା'ର ମୁଣ୍ଡର ନୁଖୁରା ବାଳ ଓ ପ୍ରତି ଲୋମକୂପ ଟାଙ୍କୁରି ଉଠିଲା - ତା' ମୁଣ୍ଡଠାରୁ ଗୋଡ଼ଯାଏଁ ଶିରାରେ ଶିରାରେ ରକ୍ତ ଯେପରି ଫୁଟିବାକୁ ଲାଗିଲା କି ଆଉ । ରହିମ୍ ଆଉ ସହି ପାରିଲାନାହିଁ । ହୁଙ୍କାର ଦେଇ ବୁରୁଜ ଉପରୁ ୨୫ ହାତ ତଳକୁ ଡେଇଁ ପଡ଼ିଲା ।

ଭାଗ୍ୟକୁ ସେ ପଡ଼ିଲା ଯାଇଁ ବାଲିର ଗୋଟାଏ ଢିପ ଉପରେ । ଧଡ଼୍‌ପଡ଼୍ ହେଇ ଠିଆ ହେଇ ପଡ଼ିଲା ବେଳକୁ ଧୂମା ଏକା ଚିହାରେ ତା' ଉପରେ ଆସି ପଡ଼ିଲା - ଧୂମାର କେଶହୀନ ମୁଣ୍ଡିତ ମସ୍ତକରୁ ଯେଉଁ ଯୋଡ଼ିକ ପୈଶାଚିକ ଚକ୍ଷୁ ଘୃଣାରେ, କ୍ରୋଧରେ ପୂର୍ଣ୍ଣ ହୋଇ ତାକୁ ବିନ୍ଧିଗଲା, ତାହାର ଚାହାଣୀରେ ସେ କ୍ଷଣକେ ଆତ୍ମବିସ୍ମୃତ ହୋଇ ସେହିଠାରେ ଜଡ଼ ହୋଇ ଠିଆ ହୋଇ ରହିଗଲା - ମୁହୂର୍ତ୍ତକ ପାଇଁ ତା'ର ଚେତା ହେଲା ଯାଇଁ ଯେତେବେଳେ ତା' ମୁଣ୍ଡରେ ଏକ ପ୍ରଚଣ୍ଡ ମୁଷ୍ଟ୍ୟାଘାତ କରି ଧୂମା ତାକୁ ତଳକୁ ଓଟାରି ଆଣିଲା । ସେ ଦିଗ୍‌ବିଦିଗ ଜ୍ଞାନଶୂନ୍ୟ ହୋଇ ତଳେ ପଡ଼ିଥିବା ଖଣ୍ଡେ ପଥର ଉଠାଇ ନେଇ ଧୂମା ମୁଣ୍ଡରେ ପ୍ରାଣପଣ ବଳରେ ଆଘାତ କଲା - ଧୂମା ଆହତ ହୋଇ ପତ୍ରୁ ପତ୍ରୁ ଉଠି ବନ୍ଧ ଉପରକୁ ଧାଇଁଲା - ଗଲାବେଳେ କହିଗଲା, "ଶାଲା - ଅଭି ପୁଲିଶ ବୁଲାତେ ହେଁ, ଠେର ଶାଲା !" ରହିମ୍‌ର ସେଥିପ୍ରତି କିଛି ଭ୍ରୂକ୍ଷେପ ମାତ୍ର ନାହିଁ । ଧୂମାକୁ ଆଘାତ

କରିପାରିଲାବେଳୁ ତା'ର ପୂର୍ଣ୍ଣ ଆତ୍ମସଂଯମ ଆସିଯାଇଥିଲା । ସେ ଧୀରେ ଧୀରେ ଯାଇଁ ସଞ୍ଜ୍ଞାହୀନ ଭୂଲୁଣ୍ଠିତା ନାରୀ ଦେହଟିର ମୁଣ୍ଡ ପାଖରେ ଛିଡ଼ା ହେଲା । ହଠାତ୍ ତା'ର ନଜର ପଡ଼ିଲା ତା'ର ମୁହଁଟି ଉପରେ— ଏ କ'ଣ ? ଏଇ ଯେ ମେରି ଚମ୍ପା - ମେରି ଜାନ୍ - ରଘୁ ଲେଙ୍କା ଝିଅ ଚମ୍ପା— !

ରହିମ୍ ସଯତ୍ନରେ ତା' ମୁଣ୍ଡଟି ଉଠାଇଲାବେଳେ ଚମ୍ପାର ଚେତନା ହେଲା । ସେ କଷ୍ଟରେ ଆଖି ଖୋଲି କହିଲା - "ପାଣି ଟୋପେ" । ହାୟ ! ପାଣି ନାହିଁ - ପାଣି ଯେ ମାଇଲିଏ ଦୂରରେ । ତଥାପି ରହିମ୍ ଦଉଡ଼ିଲା - ତା' ମୁଣ୍ଡ ଝିମ୍ ଝିମ୍ କରୁଥାଏ । ଧୂମାର ଗୋଟିଏ ବିଧାର କାର୍ଯ୍ୟ । ଧାଇଁ ଧାଇଁ ପାଣି ପାଖରେ ପହଞ୍ଚିଲା ବେଳକୁ ଶୋଷରେ ତା'ର ପ୍ରାଣ ଓଷ୍ଠାଗତ । ସେ ଚଁ ଚଁ କରି ପେଟେ ପାଣି ପିଇଗଲା । ନିଜ କମିଜଟି ପାଣିରେ ବୁଡ଼ାଇ ଭିଜାଇ ନେଲା - ନିଜର ଟୋପିଟିର ଫାଙ୍କରେ ହାତ ଦେଇ ସେଥିରେ ବି ଥୋଡ଼େ ପାଣି ଧରି ଫେରିଲା-

ଚମ୍ପା ପାଟିରେ ପାଣି ନ ଗଳେ ସରିଲା । ଗୋଟାଏ ଅନିଶ୍ଚିତ ଭୟରେ ରହିମ୍‌ର ପ୍ରାଣ କାନ୍ଦି ଉଠିଲା - "ମେରି ଚମ୍ପାରେ - ମେରି ଜାନ୍" ବୋଲି କହି ରହିମ୍ ତା' ଉପରେ ଢ଼ଳିପଡ଼ିଲା ଓ ନିଜେ ପାଟିରେ ପାଣି ନେଇ ବହୁତ ଚେଷ୍ଟାରେ ଚମ୍ପାକୁ ଆଁ କରାଇ ସେଥିରେ ସେ ପାଣି ଟୋପାଏ ଟୋପାଏ ଛାଡ଼ିଲା । କିନ୍ତୁ କିଛି ହେଲା ନାହିଁ - ସବୁ ଗଡ଼ିପଡ଼ିଲା ।

ଶେଷରେ ଚମ୍ପାର ଶୁଷ୍କ ତାଳୁରେ ନିଜର ଆର୍ଦ୍ର ଜିହ୍ୱା ଚାଳନ କରି ତା'ର ତାଟି ଊଣା କରିବାର ପ୍ରୟାସ କଲା କିନ୍ତୁ ସବୁ ନିଷ୍ଫଳ ହେଇଗଲା । ହଠାତ୍ ରହିମ୍ ଲକ୍ଷ୍ୟ କଲା ଚମ୍ପାର ଦେହ ମୁହଁରେ ସଦ୍ୟ ବସନ୍ତର ଚିହ୍ନ । ଚୋରାବସନ୍ତ ବୋଧହୁଏ । ତଥାପି ତା'ର ଚେଷ୍ଟା କମିଲା ନାହିଁ । "ମେରି ଚମ୍ପୀ - ଜରା ଭି ବୋଲ ତୁ ।" ବୋଲି କହି ନିଜ ଜିହ୍ୱା ଜଳରେ ତା'ର ଶୁଷ୍କ ଜିହ୍ୱାକୁ ସିକ୍ତ କରିବାର ପ୍ରୟାସ କରିବାକୁ ଲାଗିଲା । ଏହିପରି ପ୍ରାୟ ଘଣ୍ଟାଏ କାଳ ଗଲାଉତ୍ତାରୁ ଆଉ କିଛି ଫଳ ନାହିଁ ଦେଖି - ହଠାତ୍ କ'ଣ ଭାବି ତା'ର ଚାରି ହାତ ଲମ୍ବ ଦେହ ଘେନି ରହିମ୍ ଚମ୍ପାର ମୃତ ଦେହଟିର ଗୋଡ଼ପାଖରେ ଲମ୍ବତମ୍ବ ହୋଇ ପଡ଼ିଗଲା ଓ ଆକୁଳ ହୋଇ ଡାକିଲା, "ମାଁ - ମୁଝେ ପ୍ରସନ୍ନ ହୋ - ହମେ ଭୀ ଲୋ ମାଁ -"

"ଲେତା ହୁଁ !" ବୋଲି କହି ସେ ଆଡୁ ଗୋଟାଏ ନାଲି ପଗଡ଼ି ସଙ୍ଗରେ ଧୂମା ଆସି ପହଞ୍ଚିଲା ।

ରହିମ୍‌କୁ ଧରିବାକୁ ଗଲାବେଳେ ରହିମ୍ ପ୍ରାଣବଳରେ ଚମ୍ପାର ମୃତ ଦେହଟିକୁ କୁଣ୍ଢାଇ ଧରି ପଡ଼ିରହିଲା । ଆଉ ସେଠାରୁ ହଲିଲା ନାହିଁ । ଧୂମା ନ ଛାଡ଼େ । ସେ ତାକୁ ଓ ଚମ୍ପାକୁ ଏକତ୍ର କରି ଚମ୍ପାର ଲୁଗା ଖଣ୍ଡିକରେ ବାନ୍ଧିବାକୁ ଗଲା । ହଠାତ୍ ତା ନଜର ପଡ଼ିଲା ଦୁହିଁଙ୍କ ଦେହରେ ସଦ୍ୟ ବସନ୍ତର ଅସଂଖ୍ୟ ଚିହ୍ନ । ‘‘ଆରେ ରାମ୍ ଛୋଡ଼’’ ବୋଲି କହି ଧୂମା ପାଞ୍ଚହାତ ଦୂର ତଫାତ୍ ହେଇଗଲା ।



# ଯୋଗ ବାରୁଣୀ

ସେ ବର୍ଷ କାହିଁକି କେଜାଣି ବାରୁଣୀକୁ ଅନେକ ଲୋକ ଆସିଥାନ୍ତି - ସାଧାରଣ ବାରୁଣୀକୁ ଏତେ ଲୋକ ହବା ଦେଖାଯାଏ ନାହିଁ । ଦଶାଶ୍ୱମେଧ ଘାଟ ଓ ବରାହ ମନ୍ଦିର ମଧ୍ୟରେ ଶ୍ମଶାନ ବାଲି ସବୁଆଡ଼େ ଲୋକର କିଛି ପାର୍ଯ୍ୟନ୍ତ ନଥାଏ । ଏପରିକି ନଈ ବନ୍ଧ ଉପରୁ ଚାହିଁଲେ ବାଲି ଦିଶିବା କଷ୍ଟ । ଯୋଗଥାଏ ରାତି ୧୨ଟା ବେଳକୁ । ଆମେ ଇସ୍କୁଲ ପିଲାଯାକ ଛୁଟିପାଇ ହଷ୍ଟେଲରୁ ସନ୍ଧ୍ୟା ପୂର୍ବରୁ ଖିଆପିଆ ସାରି ବାହାରି ଆସିଥାଉଁ । କଥା ଥାଏ ଯୋଗ ମୁହୂର୍ତ୍ତରେ ସ୍ନାନ ଦର୍ଶନାଦି ସାରି ଫେରିଲେ ପୁଣି ଖିଆପିଆ ହେବ । ସନ୍ଧ୍ୟାବେଳକୁ ପ୍ରାୟ ୯ଟା ଯାଏଁ ଏ ମନ୍ଦିର ସେ ମନ୍ଦିର ବୁଲି ବୁଲି ଥକ୍କା ହୋଇ ଶେଷରେ ବରାହ ମନ୍ଦିର ସେପଟ ଧାର ଉପରେ ବାଲିରେ ସମସ୍ତେ ପଡ଼ିଗଲୁ । ମଦନକୁ ସମସ୍ତେ ଧରି ବସିଲେ ଗୀତ ଗା' ବୋଲି । ମଦନ କିନ୍ତୁ ଏତେ ଥକି ଯାଇଥାଏ ଯେ, ସେ ମୋ କଥା ବି ଏଡ଼ିଦେଇ ମୋରି କୋଡ଼ରେ ମୁଣ୍ଡରଖି ତତ୍‌କ୍ଷଣାତ୍ ଶୋଇ ପଡିଲା । ମଧୁର ବଂଶୀ ବଜାଇବାର ଭାରି ସଉକ୍ କେହି ଜାଣନ୍ତି ନାହିଁ ସେ କେମିତି ଅଣ୍ଟାରେ କି କେଉଁଠି ପୁରାଇ କରି ତା' ରସ ବଇଁଶୀଟିକୁ ଆଣିଥିଲା । ମଧୁର ବଇଁଶୀ ଆମର ଗୋଟିଏ ଭାରି କୌତୁକର ସାମଗ୍ରୀ । ମଧୁର ସ୍ୱରଜ୍ଞାନ ସମ୍ବନ୍ଧରେ ଆମେ ସମସ୍ତେ ଅତ୍ୟନ୍ତ ସନ୍ଦିଗ୍ଧ । ମଦନକୁ ଯେତେବେଳେ ଯିଏ ଦେଖେ ସୁବିଧା ଥିଲେ ଟିକିଏ ଗୀତ ଗାଇବାକୁ କହେ - କିନ୍ତୁ କହିବା ବାହୁଲ୍ୟ ଯେ ମଧୁକୁ କେହି କେବେ ବଇଁଶୀ ବଜାଇବାକୁ ଅନୁରୋଧ କରିନାହିଁ ବରଂ ବଜାଇଥିଲେ ସମସ୍ତେ 'ସ୍ଥାନ ତ୍ୟାଗେବ ଦୁର୍ଜନ' ନୀତି ଅନୁସାରେ ସ୍ମରଣ କରି ଇସ୍କୁଲ ପଣ୍ଡିତଙ୍କ ମାନରକ୍ଷା କରିଥାଉଁ । ବଇଁଶୀ ବଜାଇବା ଯୋଗେ ମଧୁ ସଙ୍ଗରେ ପ୍ରାୟ ସମସ୍ତଙ୍କର ବେଳେ ଅଧେ କଳି ହୋଇଯାଇଛି । ରଙ୍ଗରହସ୍ୟ ତ ସବୁଦିନେ ସବୁବେଳେ ଲାଗିଥାଏ । ଯେତେବେଳେ ଅନ୍ୟ କିଛି କାମ ନଥାଏ - ଆମେ ମଧୁକୁ କହୁଁ ଟିକିଏ ବଇଁଶୀ ବଜା - ପ୍ରଥମେ ପ୍ରଥମେ ମଧୁ ଭାରି ରାଗିଉଠେ । କିନ୍ତୁ ଟିକିଏ ଜୋର କଲେ ସତ ଭାବି ଗମ୍ଭୀରଭାବରେ ବଜାଇ ବସେ ଓ ଯିଏ ଯେଉଁଠାରେ ଥା'ନ୍ତି ସମସ୍ତେ ଆସି ପହଞ୍ଚି ନାନା ପ୍ରକାରର ପ୍ରଶଂସା ଓ ଚାଟୁବାଦରେ ତାକୁ ଅଥୟ କରି ପକାନ୍ତି । ମଧୁ ସେ

ଛଳଚାତୁରେ ବିଚ୍ଳିତ ନହୋଇ ଅତିଶୟ ଗମ୍ଭୀରଭାବରେ ବଜାଇଯାଏ ଓ ସମସ୍ତଙ୍କର ଆନନ୍ଦର ଆଉ ସୀମା ନଥାଏ । ଆଜି ମଦନର ଅବସ୍ଥା ଦେଖି କେହି ଆଉ ତାକୁ ଗୀତ ବୋଲିବାକୁ ଜୋର କଲେ ନାହିଁ । ହଠାତ୍ ପୂର୍ଣ୍ଣ କହିଲା, "ମଧୁଟା ଭଲା ତା' ବଇଁଶୀଟାକୁ ଆଣିଥାଆନ୍ତା । କେହି କିଛି ହେଲେ କଥା କହ ଭଲା - ଏମିତିରେ କ'ଣ ହେବ ଆଉ ।" ଏହା କହି ଫାଁ ହୋଇ ପଡ଼ିଯାଇ ସେତ ଦଣ୍ଡେ ଶୋଇପଡ଼ିଲା ।

ଏଣେ ମଧୁ ବଇଁଶୀଟାକୁ ଅଣ୍ଟାରୁ କି କଉଁଠୁ କାଢ଼ି ହାତରେ ଧରି ଖେଳଉଥାଏ । ଭରସି ଆରମ୍ଭ କରିପାରୁନଥାଏ କି କ'ଣ ଖାଲି ଏ ହାତ ସେ ହାତ କରୁଥାଏ । ମୋ ନଜର ପଡ଼ିବାରୁ ମୁଁ କହିଲି, "କିରେ ବଜାଇବୁ ତ ବଜା - ବଇଁଶୀଟାକୁ ଧରି ବସିଲୁ କାହିଁକି ? ଯେଉଁମାନେ ଲମ୍ବା ହେଇ ପଡ଼ିଯାଇଥିଲେ ସମସ୍ତେ ବେକଟେକି ମୋ ଆଡ଼କୁ ଚାହିଁ ହସି ହସି କହିଲେ, "ବଇଁଶୀ ତାହାହେଲେ ଆସିଚି ନା ? ଏବେ ବାଜୁ !" ଏହା କହି ସମସ୍ତେ ଅଳ୍ପ ହସି ଦୁର୍ବଳ ଭାବରେ ପୁଣି ଶୋଇବାର ଆୟୋଜନ କଲେ । ଏଣେ ମଧୁ ବି ବଂଶୀ ଆରମ୍ଭ କରିଦେଲା । କିଛିକ୍ଷଣ ପରେ କିଏ ଗୋଟାଏ କହିଲା, "ଆବେ ମଧୁ - ମୁଁ ଶୋଇଲି ତୁ ଠିକ୍ ୧୨ଟା ବେଳେ ମୋତେ ଡାକିଦବୁ । ଗୋଟାଏ କାନ କଚେରୀ ଘଡ଼ିକୁ ଦେଇଥିବୁଟି !" ଆମେ ଯେତେଜଣ ସେତେବେଳେ ଯାଏଁ ସଚେତ ଥିଲୁ ସମସ୍ତେ "ହଁ ହଁ ଠିକ୍ ଠିକ୍" କହି ବିଧିମତେ ଶୋଇବାର ଆୟୋଜନ କଲୁ । ମଟ ରାମ କି ବିଷ୍ଣୁ କିଛି ନ କହି ବଜାଇବାରେ ମନ ଦେଲା । ମୋତେ ଛାଇ ନିଦ ଲାଗି ଆସୁଛି ଏହି ସମୟରେ ବିଚ୍ରାକୁ ନିଦ ଲାଗିଲା କି ଡର ଲାଗିଲା ମୁଁ ଜାଣେ ନାହିଁ - ମଧୁ ହଠାତ୍ ଧଡପଡ଼ ହୋଇ ଉଠି କହିଲା, 'ବାହା ବାହାରେ - ଭାରି ଚାଲାଖି ତମେ ସବୁ, ନାହିଁ । ଲଏ ସବୁ ଶୋଇବେ ମୁଁ ଏଠି ଚଉକି ଦେବି, ନାହିଁ !" ଏହା କହି ତିନି ଚାରିଜଣଙ୍କୁ ଭିଡ଼ିଓଟାରି ପକାଇଲା କିନ୍ତୁ - କେହି ଜବାବ ପର୍ଯ୍ୟନ୍ତ ଦେଲେ ନାହିଁ - ମୁଁ ମଧ କରଲେଉଟାଇ ଶୋଇପଡ଼ିଲି । ଅତ୍ୟଧିକ କ୍ରୋଧରେ "ହଉ ଶୁଅ ସବୁ !" ବୋଲି କହି ମଧୁ ପୁଣି ବଇଁଶୀ ଆରମ୍ଭ କରିଦେଲା ।

+ + + + +

କେତେବେଳେ ଯାଏଁ ଶୋଇଗଲୁ ଠିକ୍ କହି ହେବ ନାହିଁ । ହଠାତ୍ ମୁହଁ ଉପରେ କାହାର କୋମଳ ଶୀତଳ ସ୍ପର୍ଶରେ ମୋ ନିଦ ଭାଙ୍ଗିଗଲା । ସେତେବେଳେ ଜହ୍ନ ଉଠିଲାଣି । ମୁଁ ଆଖି ଖୋଲିବାମାତ୍ରେ ଦେଖିଲି ଚଞ୍ଚଳ ଭୀତ ଉଜଣ୍ଣାପୂର୍ଣ୍ଣ ହରିଣୀ ଆଖି

ପରି ଯୋଡ଼ିଏ ଆଖି ମୋ ମୁହଁ ଉପରେ ବ୍ୟଗ୍ରଭାବରେ ମୁହୂର୍ତ୍ତକ ପାଇଁ ସ୍ଥାପିତ ହୋଇ ପରମୁହୂର୍ତ୍ତରେ ସେଠାରୁ ଅପସାରିତ ହୋଇଗଲା । ମୋ ନିଦ ସଂପୂର୍ଣ୍ଣ ଭାଙ୍ଗି ନଥାଏ - ସ୍ୱପ୍ନ କି ସତ୍ୟ ଜାଣିବା ପାଇଁ ମୁଁ ମୁଣ୍ଡଟେକି ଚାହିଁବାରୁ ପୁଣି ଦେଖିଲି ସେ ଆଖିଯୋଡ଼ିକ ଯାହାର ସେ ଗୋଟିଏ ୮/୧୦ବର୍ଷର ବାଳିକାଟିଏ । ସେ ଯାଇଁ ଅତି ସନ୍ନିକଟରେ ଶୋଇଥିବା ମଦନର ମୁହଁଟିକୁ ଧରି ବୁଲେଇ ଦେଖୁଛି । ହଠାତ୍ ମୋର ଭୟ ହେଲା । ଅତି କଷ୍ଟରେ ମଧୁ ଯେଉଁଠାରେ ବସି ବଇଁଶୀ ବଜାଉଥିବାର ଦେଖି ଶୋଇଥିଲି ସେ ଆଡ଼କୁ ଥରେ ଚାହିଁ ଦେଖିଲି ଯେ ମଧୁ ଘୋର ନିଦରେ ପଡ଼ିଛି । ମୁଁ ପୁଣି ଥରେ ଅତି କଷ୍ଟରେ ମଦନ ଆଡ଼କୁ ଥରେ ଚାହିଁ ଦେଖିଲି ବାଳିକାଟି ସେଠାରେ ନାହିଁ । ଆଉ ଟିକିଏ ବୁଲିକରି ଚାହିଁବାରୁ - ଦେଖିଲି ମୋ ପଛଆଡ଼େ ଶୋଇଥିବା ବିପିନ୍ ମୁଣ୍ଡପାଖରେ ଛିଡ଼ାହୋଇ ସେ ଏକା ଦୃଷ୍ଟିରେ ତା' ମୁହଁକୁ ଦେଖୁଛି । ମୁଁ ଶୋଇଲା ପରି ହୋଇ ପଡ଼ିରହିଲି । ହଠାତ୍ ପୁଣି ସେହି ସ୍ପର୍ଶ ମୋ ଗାଲରେ ଲାଗି ମୋ ଆଖି ବଳେ ବଳେ (ଭୟରେ ଆତଙ୍କରେ) ଖୋଲିଗଲା - ମୁଁ ଦେଖିଲି ସେହି ବାଳିକା ! ସେ ଅତି କରୁଣଭାବରେ ମୋ ମୁହଁକୁ ଚାହିଁ ଚାହିଁ ମୋତେ ଜାଗରିତ ଦେଖି ହଠାତ୍ କାନ୍ଦି ପକାଇଲା । ଖୁବ୍ ଉଚ୍ଛ୍ୱସିତ ଭାବରେ କାନ୍ଦୁ କାନ୍ଦୁ ସେଠାରେ ସେ ବସିପଡ଼ିଲା । ମୁଁ ଧଡପଡ଼ ହୋଇ ଉଠିବସିଲି - ମଦନକୁ ଓ ବିପିନକୁ ଏକାବେଳେକେ ଗୋଇଠାଏ ଓ ଧକ୍କାଏ ମାରିଦେଇ କହିଲି "ତୁ କିଏ ସେ - ତୁ କିଏ ସେ" ଝିଅଟି ଖାଲି କାନ୍ଦୁଥାଏ । ତାକୁ ବିକଳ ଭାବରେ କାନ୍ଦିବାର ଓ ଅତି ସାଧାରଣ ଝିଅଟିଏ ପରି ଦେଖାଯାଉଥିବାର ଦେଖି ମୋ ଛାତିରେ ବଳ ହେଲା । ଏଣେ ସାଙ୍ଗଙ୍କ ଭିତରୁ ୨/୩ ଜଣ ଉଠି ପଡ଼ିଲେ ।

ମୁଁ ସାହାସ କରି ଝିଅଟିର ହାତ ଧରିଲି - କହିଲି, "କ'ଣ ହେଇଚି କହ କି - ଏଇଠିକି ଆ - ତୁ କାହା ଝିଅ କହ ?" ଝିଅଟି କହିଲା, "ମୋର ବାପା ନାହିଁ - ମୋ ଚକଭାଇ" ଏହା କହି ପୁଣି କାନ୍ଦି ଉଠିଲା । ମୁଁ ତାକୁ ସାହସ ଦେଇ ପୁଣି କହିଲି, "ହଁ, କ'ଣ ହେଲା - ତୋ' ଚକଭାଇ କାହିଁ ? ଏଥିରେ କିଛି ଉପକାର ହେଲା ନାହିଁ -ପିଲାଟି ସେହିପରି କାନ୍ଦିବାକୁ ଲାଗିଲା । ମୁଁ ପୁଣି ପଚାରିଲି, "ଏଠି କାହାକୁ ଖୋଜୁଥିଲୁ ? ଚକଭାଇ ତୋର କୁଆଡ଼େ ଗଲା ?" ବ୍ୟାକୁଳ ଭାବରେ ଚାରିଆଡ଼କୁ ଚାହିଁ ଝିଅଟି ଜଣାଇଲା ଯେ ଚକଭାଇକୁ ହିଁ ଖୋଜୁଥିଲା, କୁଆଡ଼େ ଗଲା ସେ ଜାଣେ ନାହିଁ । ଏଣେ ସମସ୍ତେ ଉଠି କ୍ରମେ କ୍ରମେ ଅବସ୍ଥାଟା ବୁଝି ମୋ ସାହାଯ୍ୟ ପାଇଁ ଝିଅଟିକୁ ଧରି ନାନାପ୍ରକାର ପ୍ରଶ୍ନ କରିବାକୁ ଲାଗିଲେ । ଝିଅଟି କଥାରୁ ଯାହା ଜଣାପଡିଲା ତା'ର

ସାରମର୍ମ ଏହି - ସେ ଓ ତା'ର ଚକ୍ରଭାଇ ଦୁହେଁ କେତେ ଗାଁ ଲୋକଙ୍କ ସହିତ ବାରୁଣୀ ଦେଖିବାକୁ ଆସିଥିଲେ । ଚକ୍ରଭାଇ ତା'ର ମାମୁଁପୁଅ ଭାଇ । ସେ ତା' ମାମୁଁ ଘରଠାରେ ଆଜିକୁ କେତେଦିନ ହେବ ଆସିଅଛି । ମାମୁଁଘର କୁଆଡ଼େ ସେ ଜାଣେନାହିଁ । ଆଜି ସନ୍ଧ୍ୟାବେଳେ ସେମାନେ ଆସି ସେଇ ଗଛମୂଳେ ଜଳଖିଆ ଖାଇକରି ଶୋଇଥିଲେ । ଗାଁରୁ ଯେଉଁ ୨ଖଣ୍ଡ ଗାଡ଼ି ଆସିଥିଲା ସେହି ଗାଡ଼ିରେ ସେ ବସି କରି ଆସିଥିଲା ।

ଚକଭାଇକୁ ନିତିଆ ପାଣ୍ଡି ଗାଡ଼ିରେ ବସାଇ ଦେଇ ନଥିଲା । ନିତିଆ ତା' ମାମୁଁଘର ମୂଲିଆ । ସେ ଚିଲମ ଟାଣେ । ନିତିଆ ମୁଣ୍ଡରେ ତା'ଠାରୁ ଢେର ବଡ଼ ବଡ଼ ବାଳ ଅଛି - ପେଣ୍ଡା ବାନ୍ଧିଛି ଇତ୍ୟାଦି । ଯୋଗବେଳେ ସମସ୍ତେ ସ୍ନାନ କରିବାକୁ ବାହାରିଲେ - ଘାଟରେ ଭାରି ଭିଡ଼ । ସେ ଯୋଗେ ଝିଅଟିକୁ ସେମାନେ ନେଉ ନଥିଲେ ପାଣି ପାଖକୁ - ସେ କନ୍ଦାକଟା କରିବାରୁ ହାତକୁ ହାତ ଧରି ଗହଳିରେ ପଶିଲେ - ଝିଅଟିର ଗୋଟେ ହାତ ନିତିଆ ଧରିଥିଲା । ଆରହାତ ଚକଭାଇ ଧରିଥିଲା । ହଠାତ୍ ଅତିବେଶି ଗହଳି ହେବାରୁ କେମିତି ଚକଭାଇ ହାତ ତା' ହାତରୁ ଖସିଗଲା । ସେ ଫେରିକରି ଚାହିଁ ବି ପାରିଲା ନାହିଁ ଚକଭାଇ କୁଆଡ଼େ ଗଲା । ଅଳ୍ପକ୍ଷଣ ପରେ ଚକଭାଇ ଯଉଁଠୁ ନ ଆସିଲା ସେ ଜୋର୍‌କରି ନିତିଆ ହାତରୁ ତା' ହାତ ଛଡ଼ାଇ ପଛକୁ ଫେରିଲା ଓ ସେଇଠୁ ''ଚକଭାଇ ଚକଭାଇ'' ବୋଲି ଡାକି ଡାକି କୁଆଡ଼େ କୁଆଡ଼େ ଖୋଜି ଖୋଜି ଶେଷରେ ଦଇବେ ଆସି ଯେଉଁ ଗଛମୂଳରେ ଗାଡ଼ିଥିଲା ସେଇଠି ଏକାରେ ପହଞ୍ଚିଗଲା । ପହଞ୍ଚି ଦେଖିଲା ଗାଡ଼ି ଚାଲିଗଲାଣି, କେହି କୁଆଡ଼େ ନାହିଁ । ରାତି ଆସି ପାହିବା ଉପରେ । ଆଉ ସେଠି ସେ ପିଲାମାନେ ଶୋଇଛନ୍ତି । ସେଥିରେ ଚକଭାଇ ଥିବ ଭାବି ଗୋଟି ଗୋଟି କରି ସମସ୍ତିଙ୍କ ମୁହଁ ଦେଖିଲା । ଫଳ କିଛି ହେଲା ନାହିଁ । କେବଳ ମତେ ସେ ଚକଭାଇ ଭାବି ଦୁଇ ତିନିଥର ଓଲଟ ପାଲଟ କରି ଦେଖିଥିଲା । ଝିଅଟିର ନାମ ରମା ।

ଆମେ ସମସ୍ତେ ଉଠି ଝିଅଟିକୁ ଘେରି ଛିଡ଼ା ହେଇପଡିଲୁ । ଏଣେ ମଧୁ ବଇଁଶୀଟିକୁ ହାତରେ ଭଲ ଭାବରେ ଧରି ଘୋର ନିଦରେ ପଡ଼ିଛି । ତେଣେ ରାତି ଆସି ପାହିଲାଣି । ମଧୁକୁ ସେହିଠାରେ ଛାଡ଼ିଯିବାର ସ୍ଥିର କରି ଜଣେ ଜଣେ ଗୋଟାଏ ଗୋଟାଏ ଆଡ଼େ ଚକ୍ରଧରଙ୍କୁ ଖୋଜିବା ପାଇଁ ବାହାରିଗଲେ । ଏକା ମୁଁ କହିଲି ଯାଏଁ ଦେଖେ ଆମ ଗାଡ଼ି ଗଲାଣି କି ନା । ଯିବା ପୂର୍ବରୁ ବାପାଙ୍କ ସାଙ୍ଗରେ ଦେଖାହବାର କଥା । ଆମ ଗାଁ ଯାଜପୁରକୁ ୫ କୋଶ ଛଡ଼ା । ଯାଙ୍କୁ ସବୁ ଠିକଣା କହିଦେଇ ମୁଁ ବାହାରୁଛି ରମା ଧୀରେ ଧୀରେ ଉଠି ମୋରି ପଛେ ପଛେ ଚାଲିଲା । ମୁଁ କହିଲି— ''ଆ'' ।

ମୁଁ ଯାଇ ଦେଖିଲି ଭାଗ୍ୟକୁ ଗାଡ଼ି ବାହାରି ଯାଇନାହିଁ । କୁଣୀଅପା ପାଖରେ ରମାକୁ ବସାଇ ଦେଇ ମୁଁ ମୋ ପ୍ରାଣପଣେ ଚାରିଆଡ଼େ ପରସ୍ତେ ଖୋଜିଆସିଲି । କୋଉଠି ଚକଭାଇଙ୍କର ସନ୍ଧାନ ମିଳିଲା ନାହିଁ । ଫେରିଲାବେଳକୁ ପ୍ରାୟ ଦିନ ୯ଟା । ବାପା ଓ ଯେତେ ଇସ୍କୁଲ ପିଲା ଆମେ ବାହାରିଥିଲୁ ସମସ୍ତେ ମତେ ଅନେଇ ବସିଛନ୍ତି । ରମା ଇତିମଧ୍ୟରେ କୁଣୀଅପାକୁ ଆଦରି ଗଲାଣି । ଚକଭାଇର କୌଣସି ଖବର ନାହିଁ । ମୁଁ ଯାଇ ପହଞ୍ଚିଲାରୁ ବାପା କହିଲେ, ‘‘ଆରେ ବିଷ୍ଟୁ, ନାଇଁ ସେ ଗଧଟା ବି କୁଆଡ଼େ ଚାଲିଗଲାଣି ନିଶ୍ଚୟ - ହେଲେ ମରଦ ପୁଅ । ତା’ କଥା ଆଉ ଯା କଥା । ତେବେ ମୁଁ ଥାନାରେ ଗୋଟାଏ ଏତଲାଦେଇ ରମାକୁ ନେଇଯାଉଛି ଗାଁକୁ - ଆଉ କ’ଣ କରିବା- କୁଣୀଅପାତ ତାକୁ ଛାଡ଼ିବାକୁ ନାରାଜ - ହେଁ ହେଁ । ଗାଡ଼ି ଭିତରୁ କୁଣୀଅପା କହିଲା, ‘‘ହଁ ହଁ ତାକୁ ମୁଁ ନେଇଯିବି । ଆହା ଏତେ ସୁନ୍ଦର ପିଲାଟି - ପୁଣି ଛେଉଣ୍ଡ - ମାମୁଁ ଘରେ ଥାଏ । ନାହିଁ ନାହିଁ - ଆଉ କିଛି କହନାହିଁ - ଥାନା ଫାନାରୁ ଆମର କି ହବ । ଚାଲ ଚୁପ୍‌କରି ବାହାରି ଯିବା । ବାପା ଆମ ଆଡ଼କୁ ଚାହିଁ ଟିକିଏ ହସିଲେ ମାତ୍ର । କୁଣୀଅପା ଠାରୁ ବିଦାୟ ନେବା ପାଇଁ ମୁଁ ଗାଡ଼ି ଭିତରକୁ ଗଲି । ମୁଣ୍ଡିଆ ମାରି ଫେରିଲା ବେଳକୁ ରମା ସେହିଠାରେ ଗୋଟାଏ ପଟେ ଶୋଇଯାଇଥାଏ । ଧଡ଼ପଡ଼ ହୋଇ ଉଠି ବସି ମୋ ଆଡ଼କୁ ଚାହିଁ କହିଲା, ‘‘ଚକଭାଇ !’’ ମୁଁ କହିଲି, ‘‘କ’ଣ କିଲୋ ? ଶୋଇ ପଡ଼ ତୁ ।’’ ଅପା ମୋର ସଙ୍ଗେ ସଙ୍ଗେ ତାକୁ ପୁଣି ଶୁଆଇ ପକାଇ କହିଲା, ‘‘ହଉ ବିଷ୍ଟୁ ବାପା, ଏବେ ଯା - !’’

ବାରୁଣୀରୁ ମିଳିଥିଲା ବୋଲି ତାକୁ ସମସ୍ତେ ବାରୁଣୀ ବୋଲି ଡାକିଲେ, ଅର୍ଥାତ୍ ‘‘ବାରିଣୀ’’ ।



# ମାଷ୍ଟରାଣୀ

(ସରସ୍ୱତୀ କହୁଛି)

ମୋ କଥା ଶୁଣି ଭଲଘର ଝିଅ ବୋହୂଏ ହସିବେ। ହସନ୍ତୁ - କିନ୍ତୁ ମୁଁ ଲେଖିବାକୁ ବସିଚି, ଲେଖିବି, ଯିଏ ସିନା କେତେବେଳେ କେମିତି ଯାକୁ ପଢ଼ିବ, ଟିକିଏ ହସିବ କି ପଦେ କହିବ, ନ ହେଲେ ମତେ ଜାଣେ କିଏ ନା ଚିହ୍ନେ କିଏ - ମୋର ସେଥିରେ କି ଲାଜ ? ଆଉ ଯେତେବେଳେ ଲାଜ ହବାର କଥା ସେତେବେଳେ ତ କି ମନ୍ତ୍ର ବଳରେ ମୋର ସବୁ ଲାଜସରମ କୁଆଡ଼େ ଉଭେଇ ଗଲା, ଆଉ ଆଜିକି ଲାଜ। ଯାହାପାଇଁ ଏତେ କରିଥିଲି, ତାକୁ ପାଇଲି, ଆଉ ଏବେ ସଂସାରଯାକ ଜାଣିଲେ ଜାଣନ୍ତୁ ଏହି ତୁଣ୍ଡରେ ସବୁ କହିବି।...

ତମେମାନେ ଯାହା କହ, ସେତେବେଳେ ଏକାମରେ ଏତେ ଆଡ଼କୁ ନଜର ଖିଆଲ ନଥିଲା। ମୁଁ ସିନା ଏହିଲାଗେ ବୁଝିପାରୁଚି କେଡ଼େ ରାଇଜଛଡ଼ା କଥାଟାଏ କରିଚି ବୋଲି। ସେତେବେଳେ ସେହି ମୋର ଏକଚିନ୍ତା - ଜୀବନର ସବୁଆଶା, ଆଶଙ୍କା, ସୁଖସରାଗ - ସବୁ ସେଇଥିରେ। ଲୋକ ନିନ୍ଦାକୁ ଅନେଇ ବସିଥିଲେ ସବୁ ଯାଇଥାନ୍ତା ସିନା। ଥରେ ମାତ୍ର ଦେଖି ଯାହାକୁ ମୁଁ ମୋର ପ୍ରାଣ କରି ପକାଇଥିଲି ସାମାନ୍ୟ ନିନ୍ଦା ବା ଲଜ୍ଜାପାଇଁ ତାହାରିଠାରୁ ନିଜକୁ ଚିରବିଚ୍ଛିନ୍ନ ହବାକୁ ଦେଇଥିଲେ ତମେମାନେ କ'ଣ ଖୁସି ହେଇଥାଆନ୍ତ ?

ମୁଁ ମୂଳରୁ କୁହେଁ - ମୋ ବୁଦ୍ଧି ସରୁ କି ମୋଟା ମୁଁ ଜାଣେ ନାହିଁ କିନ୍ତୁ ପାଠଶାଳାରେ ମୋ ମନ ଲାଗେ ନାହିଁ - ପିଲାଦିନେ ବାପା ଢେର ଚେଷ୍ଟା, ଯତ୍ନ କରି ମାରଧର କରି ଯାହା ଶିଖାଇଥିଲେ ସେତିକିରେ ମୋର ବିଦ୍ୟା ଇତି ହବାର କଥା - ସେଇଆ ବି ହେଲା। ସେ କଥା ମୁଁ ପରେ କହିବି, ଆଗେ ଆଉ ଗୋଟିଏ କଥା କହିସାରେ। ବାପାଙ୍କର ଭାରି ଇଚ୍ଛା ଯେ ଆମେ ଦୁଇ ଭଉଣୀଯାକ ଲେଖି ପଢ଼ି ଜାଣୁ, ଇସ୍କୁଲରେ ପାଠ ପଢ଼ି ପାଶକରୁଁ। ବୋଉର କିନ୍ତୁ ଏଥିପାଇଁ ବାପାଙ୍କ ଉପରେ ସବୁଦିନେ ଭାରି ଚିଡ଼ା। ବୋଉ ନିଜେ ଲେଖିପଢ଼ି ଜାଣେନାହିଁ। ତା' ବାପଘର ମଫସଲରେ। ଗୋଷ୍ଠୀକରଣ ଗ୍ରାମରେ ସେ ବଢ଼ିଚି। ବାପାଙ୍କର ଢଙ୍ଗଢ଼ାଙ୍ଗ ତାକୁ କେବେ ଭଲଲାଗେ ନାହିଁ।

ଆମର୍ ପାଠପଢ଼ା ବିଷୟରେ ବାପାଙ୍କର ବୋଉର ଭାରି ମନାନ୍ତର । ବୀଣା ବୋଉକୁ ମାନେ ନାହିଁ । ସବୁବେଳେ ବାପାଙ୍କର 'ପୁଅ' ବୋଲି କହୁଥାଏ । ବାପାବି ତାକୁ ପୁଅ ପରି କରିଥାଆନ୍ତି । ମୁଁ ସବୁଦିନେ ବାପାଙ୍କର, ବୋଉଙ୍କର ଅନୁଗତ ।

ମାଷ୍ଟରେ ଆସିଗଲେ । ଅଥଚ୍ ଘରେ କେହି ଜାଣନ୍ତି ନାହିଁ । ବାପାବୋଉକୁ ଲୁଚାଇ ତାଙ୍କୁ ଏକାବେଳକେ ଆଣି ଘରେ ଥୋଇଲେ ତେବେ ଛାଡ଼ିଲେ - ମୁଁ ଯାଇଁ ବୋଉକୁ ଖବର ଦେଲି - କହିଲି ମତେ ଲାଜ ମାଡୁଚି । ମୁଁ କିପରି ପଢ଼ିବି । ବୋଉ ତ ଭାରି ରାଗିଲା - ମତେ ଦାଣ୍ଡଆଡ଼କୁ ଯିବାକୁ ମନା କରିଦେଲା, ପଢ଼ାଘରୁ ମୋ ବହିପତ୍ର ସିଲଟ, ପେନ୍‌ସିଲ୍ ନେଇ ଆସିବାକୁ ସାଙ୍ଗେ ସାଙ୍ଗେ ନବାକୁ ପଠାଇଦେଲା । ମାଷ୍ଟରଙ୍କୁ ମୁଁ ସେଇ ଯା ଦେଖିଥିଲି । ସେଇ ଯେଉଁ ଦିନ ସେ ପ୍ରଥମେ ଆସିଲେ କିନ୍ତୁ ସେଇ ଥରକରେ - ଅଧିକ କ'ଣ କହିବି - ସେହିଦିନଠୁ ତାଙ୍କୁ ଆଉ ନଦେଖିଲେ ମଧ ତାଙ୍କ ମୁହଁଟି, ତାଙ୍କ ଛବିଟି ସବୁବେଳେ ମୋ ଆଖି ଆଗରେ ନାଚିଲା । ତାଙ୍କ ଆଗରେ ହେବାକୁ, ତାଙ୍କଠାରୁ ପଢ଼ିବାକୁ ମୋର ଏତେ ଲାଜ କାହିଁକି କି ଆଉ ! ସେଇଥି ଯୋଗେ ।

ମାଷ୍ଟରେ ଆସିବାର ୮/୧୦ ଦିନ ପରର କଥା । ସେଦିନ ରବିବାର ହୋଇଥାଏ । ବାପା ଖାଇସାରି ଖଟ ଉପରେ ଶୋଇ ଖବରକାଗଜ ଦେଖୁଥାନ୍ତି । ମୁଁ କ'ଣ ଗୋଟାଏ କାମରେ ସେ ଘରକୁ ଆସିବାରୁ ବାପା ମତେ କହିଲେ, ''ସର ! ଶୁଣିଯା !'' ମାସେ ଦୁଇମାସ ହେଲା ମୁଁ ବାପାଙ୍କ ଆଗରେ ହେଇପାରୁନି । ବୋଉର କଡ଼ା ହୁକୁମ । ବାପା କିନ୍ତୁ ଯେତେବେଳେ ପାରି ସେତେବେଳେ ଜୋର କରି ପାଖକୁ ଡାକନ୍ତି - କେତେକଥା ପଚାରନ୍ତି । ମୁଁ କୌଣସି ମତେ ତାଙ୍କୁ ଏଡ଼ିଦେଇ ପାରେନାହିଁ । ଆଜିମଧ ତାଙ୍କ ଡାକରେ କତିକି ଆସି ଖଟବାଡା ଧରି ଗୋଡ଼ପାଖରେ ଛିଡା ହୋଇ ରହିଲି । ବାପା କହିଲେ, ''ହଇଲୋ ମାଁ ! ତୁ ତ ମାଷ୍ଟରଙ୍କ ପାଖେ ପଢ଼ିଲୁ ନାହିଁ, ଫେର କ'ଣ ହବ ? ଯାହା ବି ଟିକିଏ ପଢ଼ାପଢ଼ି କରୁଥିଲୁ, ଲେଖୁଥିଲୁ ତାହାବି ଛାଡ଼ିଲୁ - ମୋ ଆଗରେ ହେବୁ ନାହିଁ - ହାତ ଲେଖାଟା ଭଲା ଠିକ୍ ହୋଇଥାନ୍ତା - ଆଉ କିଛି ନହେଲେ ନାହିଁ - ଆଜିଠାରୁ କାଗଜରେ ହସ୍ତାକ୍ଷର ଲେଖି ମତେ ପ୍ରତିଦିନ ଦେଖାଇବୁ, ବୁଝାଇବୁ ?'' ମୁଁ ଭଲ ପଢ଼ିପାରିଥିଲି - ହାତଲେଖାବି ପଢ଼ିଯିବି - କିନ୍ତୁ ନିଜେ ଦି ଅକ୍ଷର ଲେଖିବା ମୋ ଦେହି ହେଲା ନାହିଁ । ମୁଁ ବୋଉକୁ ଭାଗବତ, ରାମାୟଣ ପଢ଼ି ଶୁଣାଏଁ । କିନ୍ତୁ ଗୋଟାଏ ହିସାବ ଲେଖିବାକୁ ହେଲେ ବୋଉକୁ ବୀଣାକୁ ଖୋସାମତି କରିବାକୁ ପଡ଼େ । ମୁଁ ଖୁସିହୋଇ 'ବୋଉ' ବୋଲି କହି ବାହାରି ଯାଉଥିଲି - ଏତିକିବେଳେ ବୋଉ ସେ ଘରୁ ଆସି କହିଲା ''କି ହୋ, ମୋ ଝିଅକୁ ତମେ କାହିଁକି

କ'ଣ କହୁଛ କି ?'' ବାପା କହିଲେ, ''ତମ ଝିଅ ମୁଣ୍ଡ ତମେ ଖାଇଲେ ଖା, ମୋ ଝିଅପାଇଁ ମୋ ମୁଣ୍ଡ ଘୂରାଉଛି। ତମେ ତ ମାଇପି ଲୋକ, ସେ କଥା କୁଆଡୁ ଜାଣିବ'' ! ବୋଉ କହିଲା, ''ଓଃ ପାଠ ନପଢ଼ିଲେ ମୋ ଝିଅ କ'ଣ ବାଡୁଅ ରହିବ ? ଯା ତମେ ମତେ କୋଉ ମୁହଁରେ କହମ !'' ଯା କହି ବୋଉ ମୋ ଆଡ଼କୁ ସଗର୍ବରେ ଚାହିଁଲା। ମୁଁ କାତରେ ବାହାରିଯିବାକୁ ବସିଲି। ବାପାବୋଉଙ୍କର ସବୁଦିନେ ଏହିପରି ବଡ଼ାବଡ଼ି ହୁଏ। ବୋଉ କଥାରେ ବାପା ପ୍ରଥମେ ଚିଡ଼ନ୍ତି। ପୁଣି ବିହସହା ହୋଇଯାଏ। ସେହିପରି ବାପାଙ୍କର ଜିଦ୍ ଯେଉଁଥିରେ, ସେ ତାହା କରିଯାଆନ୍ତି; ବୋଉ ପାଟିତୁଣ୍ଡ କଲେ କାନ୍ଦିଲେ କାଟିଲେ ବି ଶୁଣନ୍ତି ନାହିଁ - ବୋଉ କାନ୍ଦିକାଟି ରହେ, ଫେର୍ ଦେହସହା ହେଇଗଲେ ଯାଏ। ମୁଁ ଆଜି ବେଶ୍ ବୁଝିପାରୁଚି ବାପାବୋଉ ଦୁଇଜଣଙ୍କର ଭିତରେ ଭିତରେ ବେଶ୍ ଭଲ ପଡ଼େ।

ମୁଁ ସେ ଘରୁ ବାହାରି ଯାଉଁ ଯାଉଁ ଶୁଣିଲି - ବୋଉ କହୁଚି ''ହଇ ହେ, ଝିଅଟା ମୋର ଦିମାସ ହେଲା ବଢ଼ିଲାଣି, ତମେ ତା ପାଇଁ ବିଭାଘର ଖୋଜନ୍ତ, ଗହଣା ଅଳଙ୍କାର ଗଢ଼ାନ୍ତକି, ଆଉ ଆଉ ସବୁକଥା କରନ୍ତ। କ'ଣ ତେମେ ଗୋଟାଏ ମାଷ୍ଟର ଆଣି ନିଶ୍ଚିନ୍ତ ହେଇଗଲ - !'' ମୁଁ ତରବର ହୋଇ ପଳାଇଗଲି। ବାପାବୋଉଙ୍କର ଆଉ କଣ କଥା ହେଲା ମୁଁ ଆଉ ଶୁଣିପାରିଲି ନାହିଁ। ଯାହା ଶୁଣିଲି ସେଥିରୁ ଅବଶ୍ୟ ଜାଣିଲି ଯେ ମୋ ପାଇଁ ବିଭାଘର ଖୋଜାପଡ଼ିଲାଣି - ମୁଁ ମନେମନେ ଭାବିଲି - ଏତେ ଖୋଜାଲୋଡ଼ା କାହିଁକି - ବାପା ତ ବର ଆଣି ସାରିଲେଣି - ସେ ସିନା ବୀଣାର ମାଷ୍ଟର - ମୋର ତ ମାଷ୍ଟର ନୁହନ୍ତି !!

ବୀଣା ସବୁଦିନେ ମୋ ପାଖରେ ଭାରି ଫୁରିଫାରି ହୁଏ - ଆଜି ଯା ପଢ଼ିଲି - କାଲି ତା' ପଢ଼ିଲି - ମାଷ୍ଟର ଯା କହିଲେ ତା' କହିଲେ - ମୁଁ ଚୁପ୍ ହେଇ ସବୁ ଶୁଣେ, ଆଗ୍ରହରେ ଶୁଣେ। ପ୍ରତିଦିନ ତା'ର ମୋର ମାଷ୍ଟରଙ୍କ କଥାହୁଏ। ମୋ ମନକଥା ମନରେ ଥାଏ। ଦିନେ ବୀଣାକୁ ପଚାରିଲି ମାଷ୍ଟର ମୋ କଥା ପଚାରନ୍ତି କି ନାହିଁ - ବୀଣା କହିଲା ହଁ ସେ ନିତି ପଚାରନ୍ତି। ଆଜି ସଖାଳେ କହିଛନ୍ତି ମୋ ପାଇଁ କ'ଣ ବହି ଆଣିଦେବେ। ମୁଁ ପଢ଼ିବି। ତା ଆରଦିନ ବୀଣା ଦିଖଣ୍ଡ ବହି ଆଣି ମୋତେ ଦେଲା - କହିଲା ମାଷ୍ଟରେ ଦେଇଚନ୍ତି। ଖଣ୍ଡେ ''ଉତ୍କଳ କାହାଣୀ'' ଆଉ ଖଣ୍ଡେ ''ଲଛମା''। ମୁଁ ଦୁଇଦିନରେ ତାକୁ ଶେଷ କରିଦେଲି। ବୀଣା କହିଥାଏ ପଢ଼ିସାରିଲେ କେମିତିକା ଲାଗିଲା କହିବାକୁ ହେବ - ମାଷ୍ଟର କହିଛନ୍ତି। ବହିଯାହା ଲାଗୁ କି ନଲାଗୁ ମାଷ୍ଟରେ

ଦେଇଚ୍ଛନ୍ତି ବୋଲି ମୋତେ ତ ଭାରି ଭଲ ଲାଗିଲା - ଭଲଛଡ଼ା ମନ୍ଦ ଲାଗନ୍ତା କିପରି । ତଥାପି ମୁଁ ବୀଣାକୁ କହିଲି - "ହଁ ଲାଗିଲା ଏକରକମ" ।

ଆଉ ଦିନେ ବୀଣା ଗୋଟିଏ ବନ୍ଧାଖାତା ହାତରେ ନେଇ ଆସି ପହଞ୍ଚିଲା । ସେଥିରେ ସୁନ୍ଦର ହାତ ଅକ୍ଷରରେ ବହୁତ ଗୀତ ଲେଖା ହେଇଥାଏ । ମୋତେ କହିଲା ପଢ଼ ? ମୁଁ ପଢ଼ିଲି ଭାରି ଭଲଲାଗିଲା । ବୀଣା ଗର୍ବରେ ଫୁଲି ଉଠି କହିଲା, "ମାଷ୍ଟରେ ନିଜେ ଯାକୁ ଲେଖିଚ୍ଛନ୍ତି - ତୁ ଭାବୁଚୁ ପରା ଦେଇ, ଆଉ କୋଉଠୁ ଉତାରି ପକାଇଛନ୍ତି । ବଡ଼ ମାଷ୍ଟରଙ୍କର କେତେ ଖାତା ଏଇମିତି - ଅଛି । ସେ କେତେ ଗପ, ଗଦ୍ୟ, ଗୀତସବୁ ଲେଖନ୍ତି ଜାଣୁ ? ମାଷ୍ଟରେ ଜଣେ କବି । କାଗଜରେ ତାଙ୍କର ସବୁ ଲେଖା ଛପା ହୁଏଚି !" ମୁଁ ଟିକିଏ ଥଟା ସ୍ୱରରେ କହିଲି "ସତେ ? ମାଷ୍ଟରେ ତାହେଲେ ବହି ଲେଖନ୍ତି" । ବୋଉ ସିଆଡ଼େ କ'ଣ କରୁକରୁ ଛିଡ଼ା ହୋଇ ଆମ କଥାବାର୍ତ୍ତା ଶୁଣୁଥିଲା । ଆମକୁ ଜଣାନାହିଁ । ବୀଣା ଯେମିତି ଅତି ଆଗ୍ରହରେ କହିଛି "ଆଉ କ'ଣ ମାଷ୍ଟରଙ୍କ ପରି ଆଉ କିଏ ଅଛି ?" ସେମିତି ବୋଉ କହିଲା "କିଲୋ ବୀଣା, ମାଷ୍ଟରଙ୍କୁ ସରଗରେ ନେଇତ ଥୋଇଲୁଣି ଲୋ ! ତାକୁଇ ତୁ ବାହା ହବୁ କିଲୋ ?" ବୋଉ ବୀଣାକୁ ବାହାହବା କଥା କହି ସବୁବେଳେ ଚିଡ଼ାଏ କାରଣ ବୀଣା ସବୁବେଳେ ଜଣାଇହୁଏ ଯେ ସେ ପୁଅଟେ, ଝିଅ ନୁହଁ, ପୁଣି ବାପାଙ୍କ ପୁଅ ! ବୀଣା ବୋଉ କଥାରେ ଭାରି ଖପା ହେଇ କହିଲା - କି "ମୁଁ କାହିଁକି ବାହାହେବି - ତୋରି ଝିଅ ବାହାହବ ମାଷ୍ଟରଙ୍କୁ" (ଅର୍ଥାତ୍ ମୁଁ) ।

ସେଥର ସରସ୍ୱତୀ ପୂଜାକୁ ବୀଣାର ଠାକୁର ପୂଜା ହେଲେ ଦାଣ୍ଡରେ, କାରଣ ବୀଣା ପୁଅଟେ - ମୋର ପୂଜା ହେଲା ଭିତରେ ମୁଁ ତ ଝିଅଟେ । ମୁଁ ନିଜେ ମୋ ଠାକୁର ପାଇଁ ଭୋଗରାଗ ଠିକ୍ କରି ଅନେକ ରକମ ଜଳଖିଆ ତିଆରି କରି ବାପାଙ୍କୁ, ବୀଣାକୁ, ମାଷ୍ଟରଙ୍କୁ ସମସ୍ତଙ୍କୁ ନିମନ୍ତ୍ରଣ କଲି । ଲୋକଙ୍କୁ ଖୁଆଇବା ମୋର ଗୋଟିଏ ଝୁଙ୍କ୍ ସବୁଦିନେ । ବାପାଙ୍କର ଆଉ କୋଉଠି ନିମନ୍ତ୍ରଣ ଥାଏ ବୋଲି ସେ ଚଞ୍ଚଳ ଖାଇ ଚାଲିଗଲେ । ମୁଁ ମାଷ୍ଟରଙ୍କୁ ଅନାଇ ବସିଥାଏ - ସେ ତାଙ୍କ କଲେଜରୁ ଏତେବେଳଯାଏ ଫେରିନାହାନ୍ତି । ଠିକ୍ ସନ୍ଧ୍ୟାବେଳେ ବୀଣା ଆସି କହିଲା, "ମାଷ୍ଟରେ ଆସିଲେଣି, ପୁଣି ଏହିଲାଗେ ବାହାରି ଯିବେ ଷ୍ଟେସନ୍କୁ, ୯ଟା ଗାଡ଼ିରେ ମହାପ୍ରସାଦ ଆସିବ ପୁରୀରୁ ଆଣିବାକୁ ।" ମୁଁ କହିଲି, "ତୁ ଯା ଚଞ୍ଚଳ ତାଙ୍କୁ ଡାକିଆଣେ !" ବୀଣା ଡାକିବାକୁ ଗଲା, ମୁଁ ଜାଗା କରି ପାଣି ଥୋଇଦେଇ ଥାଳି ସଜାଇବାକୁ ଲାଗିଲି । କିଛିକ୍ଷଣ ପରେ ବୀଣା ଆସି କହିଲା, "ମାଷ୍ଟରେ ଆସିଲେ ନାହିଁ ଦେଇ ! ସେ କହିଲେ, "ଯା

ଦେଇକୁ କହିବୁ, ମୁଁ ଜୀଅନ୍ତା ସରସ୍ୱତୀଙ୍କୁ ପୂଜା କରେ, ମାଟି ସରସ୍ୱତୀଙ୍କ ଭୋଗ ପାଇବିନାହିଁ''। ଯା କହି ବୀଣା ହସିଲା। ମୋର ଏଡ଼େ ଆଶା ବ୍ୟର୍ଥ ହୋଇଗଲା ବୋଲି ମନ ଚୂନା ହୋଇଗଲା। ମୁଁ ଗୁମ୍ ହେଇ ବସିଗଲି - ଆଉ କିଛି କହିଲି ନାହିଁ। ବୀଣା ପୁଣି ହସି ହସି କହିଲା, ''କ'ଣ କହୁଚୁ କହ, ମୁଁ ପୁଣି ମାଷ୍ଟରଙ୍କୁ ଯାଇଁ କହିବି ଯେ।'' ମୁଁ ହଠାତ୍ କହି ପକାଇଲି, ''କହିବୁ ଯା ଜୀଅନ୍ତା ସରସ୍ୱତୀ ଏଇଠି ଅଛନ୍ତି''। ବୀଣା ହସି ହସି ଚାଲିଗଲା। କିଛିକ୍ଷଣ ପରେ ମାଷ୍ଟରଙ୍କୁ ସାଙ୍ଗରେ ନେଇ ଆସି ପହଞ୍ଚିଲା। ମୁଁ ସେ କଥାଟି କହି ପକାଇ ମନେମନେ ବଡ଼ ଲଜ୍ଜିତ ହୋଇପଡ଼ିଥିଲି। ସେମାନଙ୍କୁ ଆସିବାର ଦେଖି ଚଞ୍ଚଳ ଘର ଭିତରେ ପଶିଯାଇ ଦୁଆର ଆଉଜାଇ ତଥାପି ଦୁଆର ଫାଙ୍କରେ ମାଷ୍ଟରଙ୍କୁ ଦେଖିବାକୁ ଲାଗିଲି। ଆହା କି ଦିବ୍ୟ ସୁନ୍ଦର ଚେହେରା। ପୁଣି ଭାରି ଗୋଟାଏ ଖୁସି ହେଲା ପରି ତାଙ୍କ ସୁନ୍ଦର ମୁହଁଟି ଉଜ୍ଜ୍ୱଳ ଦିଶୁଥାଏ। ବୀଣା ଦୁଆରଟାକୁ ଠିଆମେଲା କରିଦେଇ ମୋ ଆଗରେ ଛିଡ଼ା ହେଲା। ମୁଁ କହିଲି, ''କିଲୋ, ତାଙ୍କୁ ବସା, ହାତ ଧୋଇବାକୁ ପାଣି ଦେ - ମୁଁ ସବୁ ଠିକ୍ କରି ଦେଉଚି।'' ବୀଣା ଯାଇ ତାଙ୍କୁ ବସାଇଲା।

ସେ ବସି ବୀଣା ହାତ ଧରି ତାକୁ ପାଖରେ ବସାଇଲେ, ମୁଁ ଯାଡ଼େ ଥାଳି ସଜାଇ ସାରି ବସିଥାଏଁ। ବୀଣାକୁ ମନେ ମନେ ଢେର ଗାଳି ଦେଲି - ଦୁଆର ଫାଙ୍କରୁ ତାକୁ ଠାରିବାରୁ ସେ ଉଠିଲା ବେଳେ ମାଷ୍ଟରେ ତାକୁ ଧରି ପୁଣି ବସାଇଲେ, କହିଲେ, ''ଯିଏ ନିମନ୍ତ୍ରଣ କରିଚି ସିଏ ଖାଇବାକୁ ଦବ କି ପରଶିବ ନା ! ତୁଁ କାହିଁକି ଉଠୁଚୁ ?'' ମୁଁ ଏବେ ମହାଅଡୁଆରେ ପଡ଼ିଲି। ତଥାପି କି ଗୋଟାଏ ସୁଖର ବଳରେ ନିଜେ ନେଇ ଥାଳି ଥୋଇ ଆସିବାକୁ ମନସ୍ଥ କଲି। ଦିହମୁଣ୍ଡ ବେଶ୍ ଭଲ କରି ଲୁଗାରେ ଢାଙ୍କି ହୋଇ ଧୀରେ ଧୀରେ ଯାଇଁ ଥାଳିଟା ସତକୁ ସତ ମାଷ୍ଟରଙ୍କ ଆଗରେ ଥୋଇ ଦେଇ ଚଞ୍ଚଳ ଛିଡ଼ା ହୋଇପଡ଼ିଲି। ଏତିକିବେଳେ ମାଷ୍ଟରେ ବୀଣା ଆଡକୁ ଚାହିଁ ପଚାରିଲେ, ''ଜୀଅନ୍ତା ସରସ୍ୱତୀ କାହାନ୍ତି କିଲୋ ବୀଣା ?'' ବୀଣା ହସି ହସି ମୋରି ଆଡକୁ ଆଙ୍ଗୁଳି ଦେଖାଇ କହିଲା, ''ଏହିପରା !''

ମାଷ୍ଟରେ ମୋ ଆଡ଼କୁ ଥରେ ମାତ୍ର ଆଖି ଟେକି ଅନାଇଲେ। ସାଙ୍ଗେ ସାଙ୍ଗେ ପୁଣି ତଳକୁ ଚାହିଁ ଦେଲେ। ମୁଁ ବି ଗୋଡ଼ଠାରୁ ମୁଣ୍ଡଯାଏଁ ଥରୁ ଥରୁ ତାଙ୍କ ଲଜ୍ଜାପାଟଳ ମୁହଁଟି ପ୍ରତି ଥରେମାତ୍ର ଅନାଇ ତାଙ୍କରି ପାଦଆଡ଼କୁ ଚାହିଁ ସେହିଠାରେ ସେହିପରି ଛିଡ଼ା ହୋଇ ରହିଲି। ମୋର ଯେପରି ଚେତା ବୁଡ଼ିଗଲା, ହଠାତ୍ ସ୍ୟାଟୁ ବୋଉ ପାଟି ଶୁଣି ମୋର ଚେତା ପଶିଲାରୁ ମୁଁ ଧଡ଼ପଡ଼ ହୋଇ ସେଠାରୁ ପଳାଇ ଆସି କବାଟ

କୋଣରେ ପଶିଗଲି । ମାଷ୍ଟରଙ୍କ ମଧ୍ୟ ଜ୍ଞାନ ହେଲା କ'ଣ, ସେ ଯାଙ୍ଗେ ଯାଙ୍ଗେ ଖାଇବା ଆରମ୍ଭ କରିଦେଲେ ।

ସେହିଦିନଠାରୁ ମାଷ୍ଟ୍ରେ ଦିନରାତି ମୋର ଧ୍ୟାନ ହେଲେ ଲୁଚାଚୋରାରେ ଫଳ କ'ଣ - ପ୍ରକୃତରେ ସେହିଦିନୁ ମୁଁ ମଜ୍ଜିଗଲି । ତା' ଦୁଇତିନିଦିନ ପରେ ବୀଣା ଦିନେ ଖଣ୍ଡେ ନୂଆ ବହି ଆଣି ମତେ ଦେଲା ଓ କହିଲା, "ମାଷ୍ଟରେ କହିଚ଼ନ୍ତି, ତାଙ୍କର କେତେ କଥା ଏ ବହି ବିଷୟରେ ତତେ ପଚ଼ାରିବାର ଅଛି, ତୁ ପଢ଼ିପାରେ ? ସେ ପ୍ରଶ୍ନ ଲେଖିକରି ଦେବେ ତୁ ତା'ର ଉତ୍ତର ଦେବୁ । ମୁଁ କିଛି କହିଲି ନାହିଁ । ଭାବିଲି - ବହି ବିଷୟରେ କି ପ୍ରଶ୍ନ ? ନାଃ ଆଉ କିଛି - ବୀଣା କହିଲା, "ମାଷ୍ଟରଙ୍କୁ କ'ଣ କହିବି କହୁନାହୁଁ ?" ମୁଁ ଆନମନରେ କହିଲି, "କହିବୁ - ଦେବେ" ।

ତହିଁ ଆରଦିନ ବୀଣା ଖଣ୍ଡେ ଲଫାପା ତା' ଲୁଗା ଭିତରୁ କାଢ଼ି ମୋ ହାତରେ ଦେଲା । ମୁଁ ବି ତାକୁ ଚଟ୍‌କିନା କାହିଁକି କେଜାଣି ଲୁଗାଭିତରେ ଲୁଚାଇ ଦେଇ ଅନ୍ୟଆଡ଼କୁ ଚାଲିଗଲି । କମ୍ପିତ ହସ୍ତରେ ଲାଫାପାଟିକୁ ଚିରି ଦେଖିଲି ଯାହା ଆଶା କରିଥିଲି, ଯାହା ଭୟ କରିଥିଲି ଇଏ ସେୟା ।

ସେ ଦିନସାରା ମତେ ସପନ ପରି ଲାଗିଲା । ହଜାରେ ଥର ଖଣ୍ଡେ ସେ ଚିଠି ଖଣ୍ଡି ପଢ଼ିଲି । ହଜାରେ ରକମରେ ତାକୁ ରଖିଲି, ଦେଖିଲି, ଥୋଇଲି । ହଠାତ୍ ବୀଣା ଆସି କହିଲା, "ଦେଇ ଉତ୍ତର ଦେ ?" ମୁଁ ମହାବିପଦରେ ପଡ଼ିଲି - କି ଉତ୍ତର ଦେବି ? ମୋ ଉତ୍ତର ଭଗବାନ ଜାଣନ୍ତି ଦେବି ବା କିପରି । ମୁଁ ତ ଲେଖି ଜାଣେ ନାହିଁ । କହିଲି - "କାଲି ଦେବି ଯା" । କାଲି ଆସିଲା ପୁଣି ଯିବାକୁ ବସିଲା, କିନ୍ତୁ ମତେ ଆଉ ଉପାୟ ମିଳିଲା ନାହିଁ । ବୀଣା କହିଲା, "ଦେଇ ମତେ ବତେଇ ଦେ ମୁଁ ଲେଖିଦେବି" । ଏଥିରେ ମତେ ଭାରି ଅଡୁଆ ଲାଗିଲା । ମୁଁ ଗୋଟେ ବତାଇବି, ଆଉ ଜଣେ ଲେଖିବ । ପୁଣି ବୀଣା କହିଲା, "ଦେଇ ନହେଲେ ମତେ ସେ ପ୍ରଶ୍ନ ଦେଖା, ଉତ୍ତର ମୁଁ ଲେଖିଦେଉଚ଼ି । ତୁ ପଢ଼ିକରି ହେଲା ନହେଲା କହିଲେ ଯାଇଁ ଦେବା ।" ବୀଣାର ଗମ୍ଭୀର, ସଦୟଭାବ ଲକ୍ଷ୍ୟ କରିବାର ଅବସ୍ଥା ମୋର ସେତେବେଳେ ନଥାଏ । ତଥାପି ତା' ପ୍ରତି ଗୋଟାଏ ନିର୍ଭରତା ମୋ ମନରେ ଆସିବାରୁ ମୁଁ ଆଖିବୁଜି ଚିଠିଖଣ୍ଡେ ତା' ପାଖକୁ ଫୋପାଡ଼ି ଦେଲି । ସେ ତାକୁ ଥରେ - ଦୁଇଥର - ତିନିଥର ଏକମନରେ ପଢ଼ିଲା । ପଢ଼ିସାରି କହିଲା ଏଇ କଥା ତ ! ହଉ ମୁଁ ଲେଖିଦେଉଚ଼ି - ତୋ ମନକୁ ନ ଆସିଲେ ପଛକେ ଚିରି ପକାଇବୁ ।

ବୀଣା ଯେପରି ଭାବରେ ଯାହା ଲେଖିଗଲା ତାକୁ ପଢ଼ି ମୁଁ ମର୍ମେ ମର୍ମେ ଅନୁଭବ କରିପାରିଲି ଯେ ସବୁଠିକ୍ ଲେଖିଛି । ଆଉ ମୁଁ କେବେଁ ଏପରି ଭାବରେ ମନକଥା ବନେଇ ଲେଖିପାରି ନଥାନ୍ତି । ବୀଣା ସେ ଚିଠିଖଣ୍ଡ ନେଇ ବାହାରିଗଲା ।

ତା'ପରେ କ୍ରମେ ମାସେ କଟିଗଲା । ତାଙ୍କର ଚିଠି ଆସେ ବୀଣା ଆଣେ - ଦୁହେଁ ପଢୁଁ । ବୀଣା ପୁଣି ତା'ର ଉତ୍ତର ଲେଖେ - ମୁଁ କୋଉଠି କେତେବେଳେ ଟିକିଏ ବଦଳାଇବାକୁ କହେଁ ବା ଅଧିକ ଲେଖିବାକୁ ବତାଏଁ । ନହେଲେ ବୀଣା ଯାହା ଲେଖେ ସେଇୟା ମୋର ଉତ୍ତର ସ୍ୱରୂପ ମାଷ୍ଟରଙ୍କ ପାଖକୁ ଯାଏ ।

ମୁଁ ମୋ ହୃଦୟଟିକୁ ସଂପୂର୍ଣ୍ଣ ଦେଇ ପକାଇ ସ୍ୱଚ୍ଛନ୍ଦରେ ବୀଣା ଦ୍ୱାରା ଚାଳିତ ହେଉଥାଏ । କିନ୍ତୁ ପ୍ରକୃତ "ପୁରୁଷତ୍ୱ" ଦେଖାଇ ମୋତେ ଯେତେ ବିପଦଆପଦ ଅଡୁଆଅନଟନରୁ ରକ୍ଷା କରି ଯାଉଥାଏ - ସେଇ ବୀଣା ।

ଏହିପରି ସମୟରେ ମାଷ୍ଟରଙ୍କର ପଡ଼ିଲା ଗ୍ରୀଷ୍ମଛୁଟି । ଆଗରୁ କଥା ଥିଲା ଗ୍ରୀଷ୍ମ ଛୁଟିରେ ମାଷ୍ଟ୍ରେ ଗ୍ରାମକୁ ଯିବେ ନାହିଁ । ଦିନେ ବୀଣା ଆସି ହସି ହସି ମୋତେ କହିଲା ଦେଇ ! ମାଷ୍ଟରେ ଗାଁକୁ ବାହାରିଲେଣି ଲୋ । ମୁଁ ଆଶ୍ଚର୍ଯ୍ୟ ହେଇ କହିଲି - "କି" - ସେହିପରି ହସି ହସି ବୀଣା କହିଲା "ତାଙ୍କର ପରା ବାହାଘର" ।

ମୁଁ ମୋ ମନର ଚଞ୍ଚଳତା ଲୁଚାଇ କଥା ଛଳରେ ପଚାରିଲି - "କୋଉଠି" ? "ଏଇଠି - ଆଉ କୋଉଠି" ? ଏହା କହି ବୀଣା ମୋ ପ୍ରାଣର ଭଉଣୀ ଆଖିଯୋଡ଼ିକ ତା'ର ଛଳ ଛଳ କରି ଧାଇଁ ଆସି ମୋ ବେକରେ ତା'ର ବଳିଷ୍ଠ ବାହୁଯୋଡ଼ିକ ପକାଇ ଦେଇ ହସି କାନ୍ଦି ମତେ ଅସ୍ଥିର କରିପକାଇଲା ।

ମୁଁ ଜାଣେ ସବୁ ବନ୍ଦୋବସ୍ତ ସେଇ ବୀଣା କରିଛି । ବାପାଙ୍କୁ କହିବାଠାରୁ ବୋଉକୁ ମଙ୍ଗାଇବା ପର୍ଯ୍ୟନ୍ତ ସବୁ ବୀଣାର କାମ । ତା' ଋଣ ଆଉ ଏ ଜୀବନରେ ସୁଝିପାରିବି ନାହିଁ ।

ଝିଅ ହୋଇ ସିନା ଜନ୍ମ ହେଇଥିଲା । ନହେଲେ ତାଠେଇଁ ତିନିଟା ପୁରୁଷର ବୁଦ୍ଧି - ସେ ପ୍ରକୃତରେ ବାପାଙ୍କ ପୁଅ - ସେଇ ମୋ ପ୍ରାଣର ଭଉଣୀ ବୀଣା ।

ସେହିଦିନଠୁ ବୀଣା ମତେ ମାଷ୍ଟରାଣୀ ବୋଲି ଡାକେ ।



# ମାଷ୍ଟରେ

## (ବୀଣା କହୁଛି)

ମୋ କଥା ଶୁଣି ଭଲଘର ଝିଅବହୂଏ ହସିବେ । ହସନ୍ତୁ - କିନ୍ତୁ ମୁଁ ଲେଖିବାକୁ ବସିଚି ଲେଖିବି । ଯିଏ ସିନା କେତେବେଳେ କେମିତି ଥରେ ଯାକୁ ପଢ଼ିବ - ଟିକିଏ ହସିବ - ନୋହିଲେ ମୋତେ ଜାଣେ କିଏ - ଚିହ୍ନେ କିଏ - ମୋର ସେଥିରେ କି ଲାଜ ? ଯେତେବେଳେ ଲାଜ ହବାର କଥା - ସେତେବେଳେ ତ ଲାଜ ସରମ ଛାଡ଼ିଲି । ସେତେବେଳେ ଭାବିଲି ନାହିଁ ତ ଘରେ ବାହାରେ ଦାଣ୍ଡରେ ହାଟରେ ଲୋକେ ଛି-ଛି କରିବେ ବୋଲି । ଆଉ ଆଜି କି ଲାଜ ? ଯାହା ପାଇଁ ଏତେ କରିଥିଲି - ତାହା ଆଜି ପାଇଲି - ଆଉ ଏବେ ସଂସାରଯାକ ଜାଣିଲେ ଜାଣନ୍ତୁ - ଏହି ତୁଣ୍ଡରେ ସବୁ କହିବି ।

ତମେମାନେ ଯାହା କହ ସେତେବେଳେ ଏକା ମୋର ଏତେ ଆଡ଼କୁ ନଜର ଥିଆଇ ନଥିଲା । ମୁଁ ସିନା ଏହିଲାଗେ ବୁଝିପାରୁଚି କେଡ଼େ ରାଇଜଛଡ଼ା କଥାଟାଏ ମୁଁ କରିଚି ବୋଲି । ସେତେବେଳେ ମୋର ଖାଲି ସେଇ ଏକ ଚିନ୍ତା - ଜୀବନରେ ସବୁ ଆଶାଭରସା ସୁଖସରାଗ ସବୁ ସେହିଥିରେ - ଲୋକନିନ୍ଦାକୁ ଅନାଇ ବସିଥିଲେ ସବୁ ଯାଇଥାଆନ୍ତା । ଖାଲି ମୋରି ନଗଲା ଜୀବନ କଥା ମୁଁ କହୁଛି ବୋଲି ଭାବିବ ନାହିଁ - ଏ ପୋଡ଼ା ଜୀବନ ଥିଲେ କେତେ ନ ଥିଲେ କେତେ ! ମୁଁ ଯେ ବାଲୁତ କାଳରୁ ଆଉ ଗୋଟିଏ ପ୍ରିୟ ଜୀବନର ଦୁଃଖସୁଖକୁ ମୋ ଜୀବନରେ ମନେମନେ ଗୁନ୍ଥି ସାରିଥିଲି । ତାହାରି ଦୁଃଖରେ ଭାଗୀ ହବାକୁ ଯଦି ଜୀବନର ଚରମ ଲକ୍ଷ୍ୟ କଲି ତେବେ କ'ଣ ସାମାନ୍ୟ ନିନ୍ଦା ଓ ଲଜ୍ଜା ପାଇଁ ତାହାଠାରୁ ନିଜକୁ ଚିର ବିଚ୍ଛିନ୍ନ କରିବାକୁ ଦେଇଥିଲେ ତମେମାନେ କ'ଣ ଖୁସି ହୋଇଥାଆନ୍ତ ?

କିନ୍ତୁ ମୁଁ ମୂଳରୁ କହେଁ -

ସେଦିନ ଭାରି ଝଡ଼ ବରଷା । ସଞ୍ଜ ନହେଉଣୁ ଅନ୍ଧାର ଏମିତି ଯେ ମୁହଁକୁ ମୁହଁ ଦିଶୁ ନଥାଏ । ତୁହାକୁ ତୁହା ଅସରା ଅସରା ବର୍ଷା ହଉଥାଏ - ଘଡ଼ିଏ ଘଡ଼ିଏ ମଝିରେ

ଟପ୍ ଟପ୍ କରୁଥାଏ । ବାପା କଚେରୀରୁ ଏତେବେଳଯାକ ଆସି ନଥାଆନ୍ତି ବୋଲି ମୁଁ ଓ ଦେଇ ଦୁହେଁ ଦାଣ୍ଡଘରେ ବସିଥାଉ । ମୁଁ ଟିକିଏ ବାରଣ୍ଡାକୁ ଆସି ବାଟ ଶୂନ୍‌ଶାନ୍ ଦେଖି ପୁଣି ଯାଇ ଦେଇ ମୁହାଁମୁହିଁ ବସୁଥାଏ । ଏପରି କେତେଥର କଲିଣି ଠିକଣା ନାହିଁ । ଏପରି ସମୟରେ ଫାଟକ ଖୋଲାହେବା ଶବ୍ଦ ଶୁଣି ମୁଁ ବାରଣ୍ଡାକୁ ଧାଇଁ ଆସିଲି । ଗୋଟିଏ ଲୋକ ଛତାଟିଏ ଧରି ଲୁଗାପଟା ଅତି କଷ୍ଟରେ ଦେହ ଉପରେ ସମଟାଇ ଧୀରେ ଧୀରେ ପାବଛ ପର୍ଯ୍ୟନ୍ତ ଆସି ସେହିଠାରେ ସମ୍ଭବତଃ ମୋତେ ଦେଖି ଚମକି ଛିଡ଼ା ହେଲା । କିଛି କହିଲା ନାହିଁ । ମୁଁ ବି କ'ଣ କହିବି ? ତଥାପି କାହିଁକି ସାଙ୍ଗେ ସାଙ୍ଗେ ଭିତରକୁ ବି ପଳାଇଗଲି ନାହିଁ । ଲୋକଟି ମତେ କିଛି ପଚାରିବ କ'ଣ ମୋତେ ଦେଖି ଆହୁରି ଘର ଆଡ଼କୁ ପଛକରି ଫାଟକ ଆଡ଼କୁ ଅନାଇ ବୁଲି ଠିଆ ହୋଇ ରହିଲା । ଓଳାପାଣି ତା' ଛତାଟିକୁ ଫଟାଇବା ପାଇଁ ବ୍ୟସ୍ତ ହୋଇ ସଶବ୍ଦ ହୁଙ୍କାର ଛାଡ଼ିଥାଏ । ମୋର ଲୋକଟିକୁ ଦେଖିଲାବେଳୁ ମନରେ କିପରି ଗୋଟିଏ ଦୟା ହେଲାଣି - ତା' ପିଠିପଟଟା ଯେତେ ପାରିଲି ନରିଖି କରି ଦେଖି ଦେଖି ତା'ର କଷ୍ଟ ହଉଥିବ ଭାବି ହଠାତ୍ ଘର ଭିତରକୁ ଯାଇ ଦେଇକୁ କହିଲି । ଦେଇ କହିଲା ନବାକୁ ଡାକେ । 'ନବା, ନବା' ବୋଲି ଡକା ପକାଇବାରୁ ନବା ଆସି ଲଣ୍ଠନଟାଏ ସେ ଘରେ ଥୋଇ ଦେଇ ଆଉ ଗୋଟିଏ ଲଣ୍ଠନ ଧରି ବାହାରି ଆସିଲା । ଲୋକଟି ସେତିକି ବେଳେ ଥରେ ଦୁଇଥର ଚେଷ୍ଟା କରି କାଶି କାଶି କହିଲା, ''କିଏ ସେ ?'' ଯାଢେ ଟିକେ ଶୁଣି ଯା !'' ଏହା କହି ଲୋକଟି କାଦୁଅ ପାଣିରେ ଭରା ଢୋତା ଦୁଇ ପଟ ପାବଛ ଉପରେ ଢୋରେ ଢୋରେ କଚାଡ଼ି ବାରଣ୍ଡା ଉପରକୁ ଆସିଲା - ଆମେ ଦୁଇ ଭଉଣୀ ଝରକା ପାଖରୁ ଅନେଇ ଥାଉଁ ।

ନବା ଲଣ୍ଠନ ନେଇ ତାଙ୍କ ପାଖକୁ ଆସିବାରୁ ଲୋକଟି କହିଲା ''ନନ୍ଦବାବୁ ଅଛନ୍ତି ?'' (ନନ୍ଦବାବୁ ବାପାଙ୍କ ନାଁ) ନବା କହିଲା ''ନାଇଁ ବାବୁ -ବାବୁତ କାହିଁ ଆଜି ଏତେବେଳଯାଏ କଚେରୀରୁ ଫେରିନାହାନ୍ତି । କ'ଣ କିଛି କାମ ଥିଲା ?'' ''ହଁ ମତେ ସଞ୍ଜବେଳେ ଆସି ଦେଖା କରିବାକୁ କହିଥିଲେ - ସେ ଯୋଗେ ଏଇ ଯୋଉ ବରଷା ପାଣିରେ ଆସିଛି । ମୁଁ ଆଜି ଯାଉଛି, କାଲି ପୁଣି ଆସିବି । କହିଦବୁ ବିଶ୍ୱନାଥ ଦାସ ବୋଲି ଜଣେ କଲେଜ ପିଲା ଦେଖା ହବାକୁ ଆସିଥିଲା ।'' ମୁଁ ଇତି ମଧ୍ୟରେ ଲଣ୍ଠନ ଆଲୁଅରେ ତାଙ୍କୁ ଦେଖୁଥିଲି । ଟୋକାଟି ବେଶ୍ ଆଛା ସୁନ୍ଦର । ଫେରି ଯାଉଛନ୍ତି ଶୁଣି ନବାକୁ ଡାକି କହିଲି ''ବସା, ବାପା ଏଇନାଗେ ଆସୁନାହାନ୍ତି କି'' ବିଶ୍ୱନାଥ ବାବୁ

ମୁଣ୍ଡଠାରୁ ଗୋଡ଼ ପର୍ଯ୍ୟନ୍ତ ତିନ୍ତି ଯାଇଥିବାରୁ ବସିପାରିଲେ ନାହିଁ । ସେହିପରି ଛିଡା ହୋଇ ରହିଲେ ଯୋଗକୁ ସେକ୍ଷଣି ବାପାଙ୍କ ଗାଡ଼ି ଆସି ପହଞ୍ଚିଲା । ବାପା ବିଶ୍ଵନାଥ ବାବୁଙ୍କୁ ଦେଖି ବଡ଼ ବିନୟ ହୋଇ କହିଲେ "ଆହା ତୁମକୁ କେତେଗୁରାଏ କଷ୍ଟଦେଲି - ଆସ ଆସ ଭିତରକୁ ଆସ, ହଇରେ ନବା ଯା ଦିଖଣ୍ଡ ଲୁଗା ଗାମୁଛା ନେଇ ଆ ! ଆଉ ଜଳଖିଆ ଦେଖ କ'ଣ ହେଲା, ଆଗ ଲୁଗା ଆଣିବୁଟି ଖଣ୍ଡେ - ବିଶୁବାବୁ ତିନ୍ତି ସରପଟ ହେଇଯାଇଚନ୍ତି ।" ମଲା ମଲା, ଜରଫର ହେଇଯିବ ଯେ । ମୁଁ ଧାଇଁ ଯାଇ ଖଣ୍ଡେ ଲୁଗା ଗାମୁଛା ଆଣି ସାରିଥଲି । ଖାଲି ଭରସି ସେମାନଙ୍କ ଆଗକୁ ଆସିପାରୁ ନଥିଲି । ଏହି ସମୟରେ ବାପା ବିଶୁବାବୁଙ୍କୁ ଡୋର୍ କରି ବାହାର ଘର ଭିତରକୁ ନେଇ ଆସିବାରୁ ଆମେ ଦି ଭଉଣୀ ଧରାପଡ଼ିବାରୁ ଆମକୁ ଲାଜ କରି ଲୁଚିବାକୁ ଚେଷ୍ଟା କରୁଥିବାର ଦେଖି ବାପା କହିଲେ ହଇରେ ବିଶୁ, ଆଲୋ ମା' ସର - ଇଏ ପରା ତମ ମାଷ୍ଟର ବିଶୁବାବୁ - ୟାଙ୍କୁ ଲାଜ କାହିଁକି କରୁଛ ମ । ଆସ ଜୁହାର ହୁଅ । ଆମେ ଦୁହେଁ ଲାଜ କଲୁ ନାହିଁ ସତ ମାଷ୍ଟରଙ୍କୁ ଏକା ଜୁହାର ହେଇପାରିଲୁ ନାହିଁ । ମୁଁତ ଧାଇଁଯାଇ ଲୁଗା ଗାମୁଛା ମାଷ୍ଟରଙ୍କୁ ଦେଲି । ଦେଈ ଏକା ସେଇ ଝରକା ସନ୍ଧିରେ ପଶିଥାଏ ।

ମୋର ମାଷ୍ଟରଙ୍କ ସାଙ୍ଗରେ ସାଙ୍ଗେ ସାଙ୍ଗେ ଚିହ୍ନା ପରିଚ ହେଇଗଲା । ମାଷ୍ଟରେ ପ୍ରଥମେ ପ୍ରଥମେ କୁଣ୍ଠିତ ହୋଇ ଶେଷରେ ଲୁଗପଟା ପିନ୍ଧି ଜଳଖିଆ କଲେ - ମୁଁ ତାଙ୍କ ପାଖେ ପାଖେ ଥାଏଁ । ଦେଈ ଏକା କେତେବେଳେ ପଢ଼ାଘରକୁ ଚାଲିଗଲାଣି କେହି ଜାଣିପାରିଲେ ନାହିଁ । ମାଷ୍ଟରେ ଜଳଖିଆ କରୁ କରୁ ସେ ଯୋଉଡ଼ି ଛିଡ଼ା ହେଇଥିଲା ସେଠିକି ଓ ପରେ ୟାଡ଼େ ସିଆଡ଼େ ଅନେଇବାରୁ ମୁଁ ଜାଣିଲି ଯେ ସେ ନାହିଁ ।

ଜଳଖିଆ ଖାଇସାରି ବାପା ଗାଡ଼ି ପଠେଇ ଦେଲେ ମାଷ୍ଟରଙ୍କ ଜିନିଷପତ୍ର ତାଙ୍କ ସାମନ୍ତ ହଷ୍ଟେଲ୍ ମେସ୍‌ରୁ ନେଇ ଆସିବାକୁ ।

ମାଷ୍ଟରଙ୍କୁ ଆସି ପଢ଼ାଘର ଦେଖାଇ ଦେଇଗଲେ । ସେଦିନ ପଢ଼ାପଢ଼ି ହେଲା ନାହିଁ । ଏକା ଦେଈର ମୋର ମାଷ୍ଟରଙ୍କ କଥା ନେଇ କଥାଭାଷା -

❑ ❑ ❑

# ପଦ୍ମାବତୀ

## ପ୍ରଥମ ଅଙ୍କ

ସ୍ଥାନ— ପୁରୀ ବଡ଼ ଦେଉଳ ସମ୍ମୁଖ - ସିଂହଦ୍ୱାର ଖୋଲା ଥିଲା - ଠିକ୍ ମଝିରେ 'ବୈଷ୍ଣବୀ' ହଠାତ୍ ଦେଖାଦେଲେ ଓ ସେଇଠି ଦଣ୍ଡେ ରହି ଗୀତ ଆରମ୍ଭ କଲେ—

"କିଏ ନେବ ଏ ପଦ୍ମକଢ଼ି
ଆସରେ ଚିହ୍ନରା ଗ୍ରାହକେ ଚଳି
ସୁନାଫୁଲ କଢ଼ି ବୁଲାଇ ବିକୁଛି
ଅମୂଲ ମୂଲ କେ ପାରିବ କଳି ।"

ଏତକ ଗାଇ ବୈଷ୍ଣବୀ ଦାଣକୁ ଯିବା । ଅରୁଣ ସ୍ତମ୍ଭ ନିକଟରେ ଯାତ୍ରୀମାନେ ଯାତାୟାତ କରୁଥିଲେ । ପରେ ପଦ୍ମାବତୀ ଓ ସତ୍ୟବତୀଙ୍କର (ତୈଲଙ୍ଗବେଶରେ) ଦେଉଳ ଭିତରୁ ଧୀର ସନ୍ତର୍ପଣରେ ପ୍ରବେଶ । ସତ୍ୟବତୀଙ୍କ ମୁଖରେ ପରିସ୍ଫୁଟ । ପଦ୍ମାବତୀଙ୍କ ମୁଖରେ ଆନନ୍ଦ ଓ ଚଞ୍ଚଳତା ପରିସ୍ଫୁଟ ।

ପଦ୍ମାବତୀ— (ସ୍ୱଗତ) ଆଜି ଏ କ'ଣ ହେଲା ? ଯେଉଁ ଦିଗକୁ ଚକ୍ଷୁ ଫେରାଇଲି ସେହି ଦିଗରେ କେବଳ ସେହି ଦିବ୍ୟ ମୂର୍ତ୍ତିଟି ଦେଖାଯାଉଛନ୍ତି । ଜଗନ୍ନାଥ ମହାପ୍ରଭୁଙ୍କ ଆଡ଼କୁ ଅନାଇଲି, କିନ୍ତୁ ସେହି ସୌମ୍ୟ ପ୍ରଶାନ୍ତ ମୂର୍ତ୍ତି ରାଜକୁମାର, ହସ୍ତରେ ପହଁରା ଧରି ଦେଉଳ ଭିତରେ ମଧ ସେହିପରି ଅକାତର ଗାମ୍ଭୀର୍ଯ୍ୟରେ ବାଟ ଓଳାଉଛନ୍ତି । ହାୟ ପ୍ରଭୁ ଜଗନ୍ନାଥ ! ମୋର ଇୟେ କ'ଣ ହେଲା ? ପ୍ରଭୁ ତୁମ୍ଭ ଶ୍ରୀଚରଣ ଦର୍ଶନକୁ ଆସି ମୁଁ କ'ଣ ତୁମ୍ଭଙ୍କୁ ହିଁ ହରାଇ ବସିଲି ନାଥ ! (ଶିହରଣ)

ସତ୍ୟବତୀ— ପଦ୍ମ - କିସ୍ ଭାବୁଛ ଏତେ ?

ପଦ୍ମାବତୀ— (ସତ୍ୟବତୀଙ୍କ ଆଡ଼କୁ ଚାହିଁ) ମା', କାହିଁ ବାବା ତ ଏଠାରେ ନାହାନ୍ତି । ଆଜି ଏଡ଼େ ସୁନ୍ଦର ଦର୍ଶନ ହେଲା ? ଛାମୁରୁ କାହିଁକି ଦେଉଳ ଭିତରକୁ ଗଲେ ନାହିଁ ମା' । କାଲି ଫେରିଯିବା ପରା ।

ସତ୍ୟବତୀ— ମଣିମାଙ୍କ କଥା ତମେ କହନା ପଦ୍ମ । ଦିନକୁ ଦିନ ତାଙ୍କର ବୁଦ୍ଧି ଭ୍ରମ ହେଉଛି । ବୁଢ଼ାଟାର କ'ଣ ଜଗନ୍ନାଥଙ୍କଠାରେ ଟିକେ ଭକ୍ତି ଅଛି ।

(ଦୀର୍ଘ ନିଃଶ୍ୱାସ ପକାଇବା)-

ପଦ୍ମାବତୀ— (ହସି ହସି) ତମେ କାହିଁକି ମୋ ବାବାଙ୍କୁ ବୁଢ଼ା ବୁଢ଼ା ଏତେ କହୁଛ ମା ! ଜଗନ୍ନାଥଙ୍କୁ ଏତେ ଡାକି ପୂଜି ପୂଜି ତାଙ୍କୁ ତମେ ପାଇଥିଲ ପରା ?

ସତ୍ୟବତୀ— (ପଦ୍ମାକୁ ଆଦରରେ କୋଳକୁ ଆଉଜାଇ ଆଣି) ମା, ତୁ ମୋ ଅନ୍ତରର ବେଦନା କାହୁଁ ବୁଝିବୁ ? ଏହି ଜଗନ୍ନାଥ ସବୁ ଦେଖୁଛନ୍ତି, ସବୁ ଜାଣୁଛନ୍ତି । ପିତା ତୋର ଧର୍ମ - ଜ୍ଞାନ ହୀନ, ଭକ୍ତି-ହୀନ, ସନ୍ଦେହୀ-ସଂଶୟୀ ! ଜଗନ୍ନାଥ ମହାପ୍ରଭୁଙ୍କଠାରେ ପୁଣି ତାଙ୍କର ବିଦ୍ୱେଷ ଅଧିକ - କାରଣ ସେ ମୋର ଇଷ୍ଟ ଦେବତା ! ସେ ମୋର ଦେଶର ଠାକୁର । ଓଡ଼ିଆର ଜଗନ୍ନାଥ ।

ପଦ୍ମାବତୀ— ନାହିଁମା, ତୁମେ ଭୁଲ ବୁଝୁଛ । ବାପାଙ୍କର ଯଦି ଜଗନ୍ନାଥଙ୍କଠାରେ ଭକ୍ତି ନଥାନ୍ତା, ସେ କାହିଁକି ନିଜ ରାଜ୍ୟ ଛାଡ଼ି, ପର ରାଜ୍ୟରେ ଏତେ ଦିନ ପଡ଼ିରହିଥା'ନ୍ତେ ?

ସତ୍ୟବତୀ— ନାହିଁରେ ପାଗଳୀ, ତୁ ଏତେକଥା ବୁଝିବୁ କାହୁଁ ? କାଞ୍ଚିରାଜାଙ୍କର କୂଟନୀତି ତୋ କ୍ଷୁଦ୍ର ମସ୍ତକ ମଧ୍ୟରେ ପ୍ରବେଶି ପାରିବ କାହୁଁ ? ଜଗନ୍ନାଥଙ୍କ ଯୋଗେ, ବା ମୋ ଜନ୍ମଭୂମି ବୋଲି ଯେ - ପିତା ତୋର ଏଠାକୁ ବିଜେ କରିଛନ୍ତି - ଏହା ଭାବିବୁ ନାହିଁ । ତାଙ୍କର ନିଶ୍ଚୟ ଆଉ କିଛି ଅଭିପ୍ରାୟ ଅଛି । ତା ନୋହିଲେ-

ପଦ୍ମାବତୀ— ଛି ମା ! ତମର ସବୁବେଳେ ସେଇକଥା । ପିତାଙ୍କର ପ୍ରତି କଥାରେ ତମର ଖାଲି ସନ୍ଦେହ ।

ସତ୍ୟବତୀ— ଖାଲି ଖାଲି ସନ୍ଦେହ ନୁହେଁ ମା', ଖାଲି ଖାଲି ସନ୍ଦେହ ନୁହେଁ । ତାଙ୍କର ସ୍ୱଭାବ ବୁଝିବାକୁ ମୋର ଆଉ ବାକୀ ନାହିଁ । ଛାମୁରୁ ସେ ଦିନ କ'ଣ କହୁଥିଲେ ଶୁଣିନାହୁଁ ? ବାହୁଡ଼ା ଦିନ ଯେତେବେଳେ ନୂଆ ଠାକୁରରାଜା

ପୁରୁଷୋତ୍ତମ ଦେବ ଦିଅଁଙ୍କ ଆଗରେ ଛେରାପହଁରା କରୁଥିଲେ ? -କଅଣ ନା - ଏ ଚଣ୍ଡାଳ ବୃତ୍ତି, ଓଡ଼ିଆଙ୍କୁ ଶୋଭା ପାଏ । ମା', ମା', ଓଡ଼ିଆଙ୍କର ଟେକମଥା କେଡ଼େ ଉପରକୁ । ଏହି ଚଣ୍ଡାଳ ବୃତ୍ତିଧାରୀ, ଉତ୍କଳ ମଉଡ଼ମଣି ଗଜପତି ଠାକୁର ରାଜାଙ୍କର ଉଚ୍ଚଶିର ଯେ କେତେ ଉଚ୍ଚରେ ତାହା ବୁଝିବାର ଶକ୍ତି କାଞ୍ଚିରାଜାଙ୍କ ପରି ନାସ୍ତିକର ନାହିଁ କି କେଉଁ କାଳେ ହେବ ନାହିଁ । କିନ୍ତୁ ମା' ବଡ଼ ଦୁଃଖ ହୁଏ । ମୋର ଏ ବକ୍ଷରେ ଯେପରି କିଏ ଶେଳ ବିଦ୍ଧ କରିଦିଏ ମା' । ଯେତେବେଳେ ତୋ ପିତା ଜନ୍ମଭୂମିର—ମୋ ଓଡ଼ିଆ ଭାଇର ନିନ୍ଦା କରି ମୋତେ ଇଙ୍ଗିତ କରନ୍ତି, ଏ ବିଦ୍ରୂପ ମତେ ସବୁଠାରୁ ବେଶି ବାଧେ । ଯେତେବେଳେ ସେ ମୋର ଜଗନ୍ନାଥ ମହାପ୍ରଭୁଙ୍କ ପ୍ରତି ଶ୍ଳେଷୋକ୍ତି କରନ୍ତି, ସେତେବେଳେ ମୋତେ ଭାରି ବାଧେ ମା' । ଭାରି ବାଧେ !

(ଅଞ୍ଚଳରେ ମୁଖ ଗୋପନ କରିବା)

ପଦ୍ମାବତୀ— (ସତ୍ୟବତୀଙ୍କ ଅଞ୍ଚଳ ଧରି) ଛି ମା' କାନ୍ଦୁଛ । ଏଥର ମୁଁ ନିଶ୍ଚେ ବାପାଙ୍କୁ କହିବି, ସେ ନ ମାନିଲେ ବୋଲି କ'ଣ ଆମେ ମାନିବୁ ନାହିଁ । ତୁନି ହୁଅ ମା'- ଆଜି ଦିନଯାକ ଖାଲି କାନ୍ଦୁଛ ଯେ—

ସତ୍ୟବତୀ— ନାହିଁ ମା, ଆଉ କାନ୍ଦିବି ନାହିଁ, ତାଙ୍କର ଅମଙ୍ଗଳ ହେବ । ଆଜି ମୋର କେଡ଼େ ଆନନ୍ଦର ଦିନ । ତୁ ମୋ ଠାକୁରଙ୍କୁ ପାଇଛୁ ।

(ପଦ୍ମାକୁ କୋଳକୁ ଆଉଜାଇ) - ମୋ ପଦ୍ମା ଆଜି ମୋ ଇଷ୍ଟଦେବତାଙ୍କୁ ଚିହ୍ନିଛି -

ପଦ୍ମାବତୀ— ତୁମେ କିପରି ଜାଣିଲ ମା' ?

ସତ୍ୟବତୀ— ଆରତି ବେଳେ ମୁଁ ତୋତେ କୁଣ୍ଢାଇ ଧରିଥିଲି - କେତେବେଳେ ମନେ ଅଛି ? ସେତେବେଳେ ମୁଁ ବୁଝିପାରିଥିଲି । ଜଗନ୍ନାଥଙ୍କର ତୋ ପ୍ରତି ଦୟା ହୋଇଛି । ମା' - ମୁଁ - ଦେଖିଛି ମା' - ମୁଁ ଦେଖିଛି !

ପଦ୍ମାବତୀ— ଆଜି ଦେଉଳ ଭିତରେ ମୋର କ'ଣ ହୋଇଗଲା କେଜାଣି ? ଆଉ କୌଣସି ଦିନ ଏପରିତ ହୁଏ ନାହିଁ ମା' । ଆଜି ଏପରି ହେଲା କାହିଁକି ?

ସତ୍ୟବତୀ— ଆଜି ଯେ ଆମେ ଯାତ୍ରୀମାନଙ୍କ ସହିତ ଏକହୋଇ ସାହାଣମେଲାବେଳେ ଯାଇଥିଲେଗଁ ମା' । ଦେଉଳ ଶୋଧ କରି - ରାଜ ନଅରର କାରଖାନା କରାଗଲେ ଦେବ ଦର୍ଶନରେ ଏଭାବ କାହୁଁ ଆସିବ ? ଦେଖୁଛୁ ତ ମା', କେତେ ଏକାନ୍ତ ଆଗ୍ରହରେ ଦୀନହୀନ ବେଶରେ - ଭକ୍ତମାନେ କେତେ କେତେ କଷ୍ଟ ସହି - ଢାଉଁଳିବେତ ପାହାରକୁ ତୁଚ୍ଛ କରି - ତେବେ ଯାଇଁ ମହାପ୍ରଭୁଙ୍କ ଦର୍ଶନ ପାଆନ୍ତି । ଆଜି ତୋ ବାବା କାହିଁକି ନ ଅଇଲେ ତା'ର କାରଣ ଜାଣିଛୁଟି ?

ପଦ୍ମାବତୀ— ନାହିଁତ — କ'ଣ ମା' ?

ସତ୍ୟବତୀ— ଆଜି ନିଜେ ପୁରୁଷୋତ୍ତମ ଦେବ ଦେଉଳକୁ ବିଜେ କରିବେ - ସେଥିଯୋଗେ ଆମ ପାଇଁ ଦେଉଳ ଶୋଧ ହୋଇପାରିଲା ନାହିଁ । ତୋ ବାପାଙ୍କର ସେଥିଯୋଗେ ଏତେ ରାଗ - ବୁଝିଲୁ ?

ପଦ୍ମାବତୀ— ପୁରୁଷୋତ୍ତମ ଦେବ ? ଏଇ ପୁରୀର ରାଜାଟି ? ସେ ଦେଉଳକୁ ଆସିବେ ? (ଅସ୍ଥିର ଆଗ୍ରହରେ ଚତୁର୍ଦ୍ଦିଗକୁ ଚାହିଁ) ମା', ଚାଲ ଆମର ଯିବା ବାହାରି ! (ଉତ୍କଣ୍ଠା)

ସତ୍ୟବତୀ— ହଁ ମା' - ଯିବାଯେ, ପୁରୁଷୋତ୍ତମଙ୍କୁ ଦେଖିଛୁଟି ? ସେ ଦିନ ବାହୁଡ଼ାରେ - ସେ ତ ଏଇ ଅଳ୍ପଦିନ ହେଲା ରାଜା ହେଲେ । ତାଙ୍କୁ ରଜା କୁଆଡ଼େ ସମସ୍ତ ରାଜ୍ୟଭାର ଦେଇ ଦେଇଛନ୍ତି । ଅନ୍ୟ ଭାଇମାନେ ତାଙ୍କର, ତାଙ୍କୁ ରାଜା ବୋଲି ନ ମାନି ତାଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଛନ୍ତି । ଗୋଟାଏ ଯୁଦ୍ଧ କୁଆଡ଼େ ହୋଇଗଲାଣି । ସେଥିରେ ପୁରୁଷୋତ୍ତମ ଦେବ ହାରି ପଳାଇ ଆସିଛନ୍ତି । ଏଇ - ସେ ଦିନ ତ । ବାହୁଡ଼ା, ବାସି କି ତିଆସି ହେବ । କାଲି ପୁଣି ତାଙ୍କର ଯୁଦ୍ଧକୁ ବିଜେ କରିବାର କଥା । ସେଥିପାଇଁ ଆଜି ମହାପ୍ରଭୁଙ୍କୁ ଦର୍ଶନ କରି ତାଙ୍କର ଆଜ୍ଞାମାଳ ନେବାକୁ ଅସିବେ । ବିକ୍ରମ ଦେବ ହେରିକା କେତେଗୁଡ଼ିଏ ରାଜ୍ୟ ଅଧିକାର କରି ସାରିଲେଣି । ହେଇଟି - ମହାରାଜ ଆସିଲେ ପରା । ତୁ ଦାନ ଆରମ୍ଭ କରିଦେବୁଟି - ନୋହିଲେ ଗାଳି ଦେବେ ଏବେ ।-

(ପଦ୍ମାବତୀ ଭିକ୍ଷୁକମାନଙ୍କୁ କଉଡ଼ି ବିତରଣ କରୁ କରୁ ଭିକ୍ଷୁକମାନଙ୍କର "ଜୟ ଜଗନ୍ନାଥ" ରବ ଶୁଣାଗଲା । ବୈଷ୍ଣବୀର ଗୁଣୁଗୁଣୁ ହୋଇ ଗୀତ ଗାଉଁ ଗାଉଁ ପ୍ରବେଶ "କିଏ ନେବ ଏ ପଦ୍ମକଢ଼ି")

-ଗୀତ-

କିଏ ନେବ ଏ ପଦ୍ମକଢ଼ି
ଆସରେ ଚିହ୍ନରା ଗ୍ରାହକେ ଚଳି
ଏ କୁସୁମ ଯେହୁ ଲୋଡ଼ିବ
ଏ କୁସୁମ ସେହୁ ପାଇବ
'ସୁନାଫୁଲ କଢ଼ି ବୁଲାଇ ବିକୁଛି
ଅମୂଲ ମୂଲ କେ ପାରିବ କଳି ।୦।
ଏ ଫୁଲକୁ ଯେହୁ ଛୁଇଁବ
ସେ ମୋ ପଛେ ପଛେ ଧାଇଁବ ।୧।
ଦୂରକୁ ଚାହିଁଲେ ଦୂରେ ଚାହିଁଥିବ
ପାଖ ତା' ପାଖରେ ଥିବଟି ପଡ଼ି ।୨।
କୁସୁମ ଭିତରେ କୀଟ ପରାଏ
ବୁକୁ ଚିରି ଆଜି ଫୁଲକୁ ଚାହେଁ
ସେ ଫଟା ରସିକ ରାଜ୍ୟଧନ ଦେଲେ
ତାକୁ ନ ମିଳିବ ରସିକା କଢ଼ି ।

ପଦ୍ମାବତୀ— (ବୈଷ୍ଣବୀକୁ ଚାହିଁ) କାହିଁ ଗୋ ମାତା - ତେମେ ତ କଉଡ଼ି ନେଲ ନାହିଁ ।

ବୈଷ୍ଣବୀ— ମତେ ଭିକ୍ଷା ଦବୁ ମା । ଦେ, ଦେ - ଦେଇଥା । (ଭିକ୍ଷା ନେବା ସ୍ୱଅଞ୍ଚଳରେ) ମୋତେ ଦେଲେ ମୁଁ ବେଳେ ଫେରାଇ ଦେବି ଯେ - (ଭିକ୍ଷା ଗ୍ରହଣ କରି) ରାଜରାଣୀ ହୋଇଥା ମା ! ମନ କାମନା ପୂର୍ଣ୍ଣ ହେଉ ! ଏ ହାତରୁ କେତେ ଭିକ୍ଷା ନେବି ଗୋ ମା - ଆଜି ସିନା ପହିଲୁ ଦେଖା - ଆଜି ସିନା ଚିହ୍ନିଲି, ଜାଣିଲି - ଆଜିତ ମୂଳରୁ

ଆରମ୍ଭ ହେଲା । ଏଇଠେଇଁ - ଏଇଠେଇଁ ମା ତୁ କେତେ ଦବୁ - ମୁଁ କେତେ ନେବି !

ସତ୍ୟବତୀ— (ସ୍ୱଗତ) ଆହା । କେଡ଼େ ସୁନ୍ଦର ମାତାଟିଏ । ହେଲେ ମଥା ବିଗିଡ଼ି ଯାଇଛି । (ପ୍ରକାଶ୍ୟେ) ହଇଗୋ ମାତା, ତୁମେ କେଉଁ ମଠରେ ଥାଅ କି ?

ପଦ୍ମାବତୀ— ମା, ଯାଙ୍କୁ ଦେଖି ମୋତେ ଭାରି ସୁଖ ଲାଗୁଛି । କହିବି ଆଉ ଗୋଟିଏ ଗୀତ ବୋଲିବେ ?

ବୈଷ୍ଣବୀ— ନାହିଁ ଗୋ - ଜେମାମଣି ! ମୁଁ ଯାଏ - ଆଜି ଏତିକି ଥାଉ - ଆଉ ଦିନେ ଆସିଲେ ଗାଇବି । (ନେପଥ୍ୟ ଆଡ଼କୁ ଚାହିଁ) ଆମ ନୟନ ମଣି ଆସିଲେ ପରା । ନା-ନା-ନା ତମ ନୟନମଣି ! ନାଇଁ ? (ହସି ହସି) ହିଁ-ହଁ, ଦେଖ ! ଦେଖ । ଦେଖିଲେ ଦେଖିବୁ - ଶୁଭକଥା - ମଙ୍ଗଳକଥା (ଯାଉଁ ଯାଉଁ) ଆହା - ଯାହାକୁ ଯିଏ ସିନା ଲୋ ମା- (ଫେରିପଡ଼ି) (ସତ୍ୟବତୀଙ୍କୁ) ବୁଝିଲୁ ଟିକି ମା - ଇଯେ ପୂର୍ଣ୍ଣସ୍ଥାନ - ଏଠି ଯାହା ମନାସିବୁ ତାହା ଫଳିବ - ସେହି ଫଳ ସୁନାଫଳ ମା । ସୁନାଫଳ (ସତ୍ୟବତୀଙ୍କୁ ଚାହିଁ) ଆଉ ଜେମାମଣି ! ବଡ଼ ଠାକୁର କଲେ କେତେ ଗୀତ ଗାଇବି - ଫେର୍ ଶୁଣିବୁ ଯେ - କେତେ ହସିବୁ - କେତେ କାନ୍ଦିବୁ - ମୁଁବି ତୋ ସାଥିରେ ହସିବି । କାନ୍ଦିବି ଯେ । ହଁ, ହଁ ଆଜିକ ଖାଲି ଦେଖ୍ - ଆଖି ପୁରାଇ ଦେଖ୍ - ମନପ୍ରାଣ ଢ଼ାଳିଦେଇ ଦେଖ - ମୁଁ ବି ଦେଖେ - ଯାଏ (ପ୍ରସ୍ଥାନ)

(କାଞ୍ଚିରାଜା ଓ ପଣ୍ଡିତଙ୍କ ପ୍ରବେଶ)

କାଞ୍ଚିରାଜା— ପଣ୍ଡିତେ କହୁନାହଁ କାହିଁକି ? ଏ ଓଡ଼ିଆ ଜାତିଟା ନିପଟ ଓଲୁ ଜାତି - ନୁହେ ?

ପଣ୍ଡିତେ— ଆଜ୍ଞା - ମଣିମା - ଏଥିରେ ଆଉ ସନ୍ଦେହ ଅଛି ? ଛାମୁରୁ ଯାହା ଆଜ୍ଞା ହେଲା କି ନାହିଁ - ଓଲୁ ନୋହିଥିଲେ ଅବଧାନ । ଦୁନିଆ ଯାକର ଲୋକ, ଅଣ୍ଡାବଚ୍ଚା, ସ୍ତ୍ରୀ ପରିବାର ଆଣି - ଆପଣା ଘରେ ସବୁଦିନେ ଏ ନୃତ୍ୟ, କରାଉଥାନ୍ତେ । ଏଇ ଦେଖିବାକୁ ଆଜ୍ଞାହେଉ । ଏକେତ

ବାଲିର ପର୍ବତ - ତା' ଉପରେ ପୁଣି ମେଘାସନିଆ ଦେଉଳ - ତା' ଚାରି ପାଖରେ ପୁଣି ମେଘନାଦ ପାଚେରୀ । ଓଲୁ ନୁହନ୍ତି ତ— ଆଉ ଓଲୁ କ'ଣ ମହାପ୍ରଭୁ ଗଛରୁ ଫଳନ୍ତି ?

କାଞ୍ଚିରାଜା— ଆଉ ଏଣେ ଦେଖ ଓଡ଼ିଆଙ୍କ ରାଜା - ପୁଣି ଗଜପତି ବୋଲନ୍ତି-ତାଙ୍କ ନଅରର ଶିରୀ ଦେଖିଛଟିକି ?

ପଣ୍ଡିତେ— ଆଜ୍ଞା ମଣିମା - ଗଜପତି ଏକା ! ତାଙ୍କର ପୁଣି ନଅର ! ଓଡ଼ିଆ ରଜା ପୁଣି କେଉଁ ରାଜାରେ ଲେଖା ? ତାଙ୍କ ନଅର ପୁଣି କେଉଁ ନଅରରେ ଯାଏ ? ଛାମୁରୁ ଯାହା ଆଜ୍ଞା ହୋଇଥିଲା - ଆଜ୍ଞା - ଇଯେ ସେଇତା-ଜଗନ୍ନାଥ ସେବକମାନଙ୍କ ଭିତରେ ଜଣେ ବଡ଼ିଆ ସେବକ ଇଯେ !

କାଞ୍ଚିରାଜା— କ୍ଷତ୍ରିୟ ହୋଇ ବୁଝିବା ହେଲେ ପଣ୍ଡିତେ । ଯେଉଁ ରାଜା ଲକ୍ଷ ଲକ୍ଷ ପ୍ରଜାଙ୍କ ସମ୍ମୁଖରେ ସ୍ୱହସ୍ତରେ ପହଁରା ଧରି ବାଟ ଓଳାଇ ଓଳାଇ ଯାଇପାରେ ସେ ପୁଣି ଗୋଟାଏ ରାଜା ! ସେ ପୁଣି ଗୋଟିଏ କ୍ଷତ୍ରିୟ ! ଦେଖିଲଟି ସେଦିନ-ବାହୁଡ଼ା ଦିନ - ନୂଆରାଜା କିପରି ଛେରା ପହଁରା କଲାବେଳେ - ତା'ମୁଣ୍ଡ କିପରି ଲଜ୍ଜାରେ ତଳକୁ ହୋଇଯାଇଥାଏ । ଏ ପୁଣି ରାଜା - ହସିଲ ଯେ ପଣ୍ଡିତେ ।

ପଣ୍ଡିତେ— (କରଯୋଡ଼ି) ଆଜ୍ଞା - ଛାମୁରୁ ଯଦି ଦୋଷ ଘେନା ନହୁଏ । —ତାହେଲେ କହିବି - ଏ ରାଜ୍ୟରେ ଅବଧାନ ! ଚଣ୍ଡାଲୁଣୀକୁ ମହାରାଣୀ ବୋଲାନ୍ତି - ମଣିମା —ଏ ସେହି ପରିକା ମହାରାଜା ।

କାଞ୍ଚିରାଜା— ହୋଃ - ହୋଃ (ଉଚ୍ଚ ହାସ୍ୟକରି) ଠିକ୍ କହିଚ ପଣ୍ଡିତେ ! ବେଶ୍ କହିଛ ! ଇଯେ ସେହି ପରିକା ମହାରାଜା, ନାଇଁ ? ପଣ୍ଡିତେ ନୋହିଲେ କି ହୁଏ ? ବାସ୍ତବିକ୍ - ଯେ ଠାକୁର ରାଜା, ରାଜାତ ନୁହେଁ- ଚଣ୍ଡାଳଠାରୁ ବି ଅଧମ - କିନ୍ତୁ ଏ ରାଜାଟି ଭାରି ସୁନ୍ଦର; ବଡ଼ ମନୋହର - ଆଉ ଏଇ ପୁରୁଷୋତ୍ତମ—ଏହି ନୀଳାଚଳଧାମ - କି ଶକ୍ତିମୟ - କି ରମଣୀୟ । (ନେପଥ୍ୟେ—ଯାତ୍ରୀ ଓ ଭିକାରୀଙ୍କ କୋଳାହଳ ସଙ୍ଗେ ମନ୍ଦିର ମଧ୍ୟରୁ ଶୁଭୁଥିଲା ବୈଷ୍ଣବୀର ଗୀତ— 'ଆହେ ସୁନ୍ଦର, ମନୋହର !) ଏକ ଦିଗରେ ଦିଗନ୍ତ ବିସ୍ତୃତ ବେଳାଭୂମିରେ, ସାଗର

ତା'ର ଅନନ୍ତ ସଙ୍ଗୀତ ଢ଼ାଳି ଦେଉଛି - ଯେପରିକି ଏକ ଚିରନ୍ତନ ଜୟଧ୍ୱନି । ରାଜଧାନୀର ଉପଯୁକ୍ତ ସ୍ଥାନ ଯେ - ଦୁର୍ଗ ପାଇଁ ଏହାଠାରୁ ବଳି ସ୍ଥାନ ଆଉକାହିଁ ? ଆଉ ରାଜ୍ୟ ଦେଖିଲ - ଗଙ୍ଗାଠାରୁ ଗୋଦାବରୀ - ଏବଂ ମଧ୍ୟପ୍ରଦେଶରୁ ଆସମୁଦ୍ର ବିସ୍ତୃତ । ପ୍ରଜାଗୁଡ଼ିକ ଯେପରି ବୀର, - ସେହିପରି ସତ୍, ମହତ୍, ରାଜଭକ୍ତ । ଏଭଳି ରାଜ୍ୟର ରାଜା ହୋଇ ଗୋଟାଏ ନିର୍ଜୀବ କାଷ୍ଠ ପୁତଳିକାର ଦାସ୍ୟବୃତ୍ତି ଅବଲମ୍ବନ କରିବାଠାରୁ ଲଜ୍ଜା ଆଉ କି ଥାଇ ପାରେ । ଏପରି ସୌଭାଗ୍ୟ ସଂପଦ ଯାହାର ଲଲାଟ ଲିଖନ - ସେ ପୁଣି ଯିବ ଗୋଟାଏ ପ୍ରାଣହୀନ ପ୍ରବଞ୍ଚନାର ପଥ ପରିଷ୍କାର କରିବାକୁ ସ୍ୱହସ୍ତରେ ସମାର୍ଜନୀ ଧରି - ଗୋଟାଏ ନିର୍ଜୀବ କାଷ୍ଠ ପୁତଳିକାର ଛେରାପହଁରା କରିବାକୁ । ଧିକ୍, ଧିକ୍-ଧିକ୍ ତୁମର ରାଜକୁଳରେ ଜନ୍ମ ? ଧିକ୍-ଶତଧିକ୍ ତୁମର ରାଜପଣ ! ପୁରୁଷୋତ୍ତମ ଦେବ ! ପୁରୁଷୋତ୍ତମ ଦେବ ! ପୁରୁଷୋତ୍ତମ ଦେବ ? ମୁଁ ଜାଣିନଥିଲି ତୁମର ଏଇ ଉତ୍କଳ ରାଜ୍ୟ ଏଡ଼େ ସୁନ୍ଦର ! ଏଡ଼େ ଲୋଭନୀୟ ନହେଲେ-ଥରେ ଦେଖିଥାନ୍ତି-କିପରି ତୁମେ ଆଜି ଏ ସିଂହାସନରେ ବସିଥା'ନ୍ତ । ବିକ୍ରମ ଦେବଙ୍କୁ ମୁଁ ଫେରାଇ ଦେଇଛି । ସେ ମୋ ସାହାଯ୍ୟ ଭିକ୍ଷା କରି କେତେ ମୋର ଅନୁସରଣ ନ କରିଛି । ଅଥଚ ମୁଁ ନିର୍ବିକାର ଚିତ୍ତରେ ତାକୁ ପ୍ରତ୍ୟାଖ୍ୟାନ କରିଛି । ହାୟ, ଯଦି ଜାଣିଥା'ନ୍ତି, ଏ ରାଜ୍ୟରେ ଏହିପରି ଅମରାବତୀ ତୁଲ୍ୟ ନଗରୀ - (ରହି) ନାଃ-ଯାହା ହୋଇଛି ଭଲ ହୋଇଛି । ବିକ୍ରମକୁ ବର୍ତ୍ତମାନ ସୁଦ୍ଧା ସାହାଯ୍ୟ କଲେ ସେ ଅକ୍ଲେଶରେ ତା'ର ଭ୍ରାତା ଏଇ ପୁରୁଷୋତ୍ତମକୁ ରାଜ୍ୟଚ୍ୟୁତ କରିପାରେ ନିଶ୍ଚୟ । ରାଜ୍ୟଲୋଭ ତାକୁ ଭ୍ରାତୃବିନାଶରେ ବ୍ରତୀ କରିବ— ତାକୁ ତ ଡକାଇଅଛି-ଦେଖାଯାଉ-କିନ୍ତୁ ସେ ରାଜା ହବ, ରାଜା ଆଚ୍ଛା ଆଚ୍ଛା - ସେ ବେଳକୁ ଅଛି । (ହାସ୍ୟଭାବ) । ଏଇଲାଗେ ଥରେ ଭାଇ ଭାଇ ମଧ୍ୟରେ ଭଲକରି ଯୁଦ୍ଧଟାଏ ଲଗାଇ ଦିଏତ । ତା'ପରେ ଦେଖାଯିବ - ହଁ ଠିକ୍ ହେବ-ଥରେ ଖାଲି ଏ ସିଂହାସନରେ ବସିଲେ—

ପଣ୍ଡିତେ— ମହାରାଜ, ଦେଖିବା ହେଉ ଦେଖିବା ହେଉ । ଅଙ୍ଗୁଳି ପ୍ରବେଶାତ୍ ବାହୁ ପ୍ରବେଶଃ ।

(ଦେଉଳ ସିଂହଦ୍ୱାର ବନ୍ଦ ହୋଇଯିବା ସମୟରେ ଜଣେ ଯାତ୍ରୀ ଗୋଡ଼ଟାଏ ଭିତରକୁ ପୁରାଇ ଦେଇ "ଗୋଡ଼ ଗଲା, ଗୋଡ଼ ଗଲା" ବୋଲି ଚିତ୍କାର କରିବା ଏବଂ ଦ୍ୱାର ଅଳ୍ପ ମୁକ୍ତ ହେବାର ଧକ୍କା ଖାଉ ଖାଉ ଭିତରକୁ ଗୋଟାସୁଦ୍ଧା ପ୍ରବେଶ କରିବା)

କାଞ୍ଚୀରାଜା— ହାଃ ହାଃ ହାଃ - ଚମତ୍କାର । ଚମତ୍କାର । କି ସୁନ୍ଦର କୌଶଳ । କିନ୍ତୁ ଦେଉଳ ଦ୍ୱାର କାହିଁକି ପଡ଼ିଲା ?

ପଣ୍ଡିତେ— ମହାରାଜା ବିଜେ କରିବେ ପରା ! ନାଇଁ ମଣିମା - ଗଜପତି ଓଡ଼ିଆ ରାଜା ମଣିମା (ହାତ ଘଷିବା) !

କାଞ୍ଚୀରାଜା— ଗର୍ବ ଦେଖ । ଦେଉଳ ଶୋଧ ହେଉଛି ପରା, ନାହିଁ ? ଆମ ବେଳକୁ ଦେଉଳ ଶୋଧ ହୋଇ ପାରିଲା ନାହିଁ । ଫେର - ହେଉ - ହେଉ ଦେଖାଯାଉ - ଥରେ ମୁଁ ବାହୁ ପ୍ରବେଶ କରିସାରେ ଦେଖିବି ।

(ଏତିକିବେଳେ ଶିଙ୍ଗା, କାହାଳୀ, ରଣଶିଙ୍ଗା, ତୂରୀ ଇତ୍ୟାଦି ଆଗେ ଆଗେ ଆସିବା ଓ ଦେଉଳ ଭିତରକୁ ଯିବା । ପଛେ ପଛେ କେତେଗୁଡ଼ିଏ ପାଇକ ନାଲି କୁରୁତା ପିନ୍ଧି ନାଲି ପଗଡ଼ି ମୁଣ୍ଡରେ ବାନ୍ଧି "ହୁସିଆର' ପାଖିଆ ପାଖିଆ କହି ଯାତ୍ରୀମାନଙ୍କୁ ଧକ୍କା ମାରି ଏବଂ କାଞ୍ଚୀରାଜା ଓ ପଣ୍ଡିତଙ୍କୁ ପାଖେଇ ଦେବା - ପଣ୍ଡିତେ - "ବୋପାଲୋ ମାଇଲାରେ' ବୋଲି ରାଜାଙ୍କ ପଛପଟେ କନ କନ ହେବା - କାଞ୍ଚୀରାଜା କ୍ରୋଧାନ୍ଧ ହୋଇ ଏକ ପାର୍ଶ୍ୱରେ ଅବସ୍ଥାନ - ଆଗକୁ ଚାହିଁ ରହିଥିବା ପାଇକମାନଙ୍କ ପଛେ ପଛେ ପୁରୁଷୋତ୍ତମ ଦେବ ଓ ଉତ୍କଳମଣିଙ୍କର ପ୍ରବେଶ ଓ ସିଂହଦ୍ୱାର ବାଟେ ଦେଉଳ ଭିତରକୁ ଗମନ - ଅନ୍ୟପଟେ ପଦ୍ମାବତୀ ପାତ୍ରହସ୍ତେ ସମସ୍ତ ଘଟଣା ଦେଖୁଥିଲେ - ପଦ୍ମାବତୀ ଓ ପୁରୁଷୋତ୍ତମଙ୍କର ଚାରିଚକ୍ଷୁର ମିଳନ-କିଛିକ୍ଷଣ ଉଭୟେ ଉଭୟଙ୍କୁ ଚାହିଁ ରହିବା -ପରେ ଚାହୁଁଥିବା-)

କାଞ୍ଚୀରାଜା— (ଅଗ୍ରସର) ହଁ ଏତେ ଦୂର ଗର୍ବ - ଏତେ ଅପମାନ । ଆଚ୍ଛା ହେଉ - ଦେଖାଯିବ । (ପରେ ପରେ ପଦ୍ମା ଓ ସତ୍ୟବତୀଙ୍କୁ ଦେଖି) ପଦ୍ମା, ରାଣୀ । ତୁମେମାନେ ଏତେବେଳଯାଏ ଫେରିଯାଇନାହଁ ? ଲଜ୍ଜାନାହିଁ,

ପୁଣିଦାନ କରୁଛ ! ଏ କୁତ୍ସିତ ଦେଶର କୁତ୍ସିତ ଲୋକଗୁଡ଼ାଙ୍କୁ ଦାନ କଲେ କି ଫଳ ପାଇବ ? ଏଇ ଶୁଣ ! ତୁମ ଓଡ଼ିଆଙ୍କ ସଭ୍ୟତା ଦେଖ (ଯାତ୍ରୀ ଓ ଭିକ୍ଷୁକମାନଙ୍କର ଜୟ ଜଗନ୍ନାଥ, ଜୟ ଜଗନ୍ନାଥ ଧ୍ୱନି କରିବା) ଦାନ କଲ ତୁମେ, ତୁମର ଜୟ ଭଲା କେହି ପଦେ କହୁଛି । (ଜୟ ଜଗନ୍ନାଥ ଧ୍ୱନି) ନାଃ- ଏ ଅସହ୍ୟ, ଅସହ୍ୟ । ପଣ୍ଡିତେ ଶୀଘ୍ର ରାଣୀ ଓ ଜେମାଙ୍କୁ ଏଠାରୁ ଘେନି ଯାଅ—

ପଣ୍ଡିତେ— ଯେ ଆଜ୍ଞା ! (କହି ରାଣୀ ଓ ପଦ୍ମାଙ୍କୁ ନେଇ ତରତର ହୋଇ ପ୍ରସ୍ଥାନ)

କାଞ୍ଚିରାଜା— ନାଃ, ଯାର ବ୍ୟବସ୍ଥା କରିବି - ଆଜି ବିକ୍ରମ ଦେବଠାରୁ ଲୋକ ଫେରିଲା ମାତ୍ରକେ । ହୁଁ - ଏଠାରୁ ଫେରିଯାଇ ଏହାର ଯଥା ବିହିତ ବ୍ୟବସ୍ଥା କରିବାକୁ ପଡ଼ିବ । ଓଡ଼ିଆଗୁଡ଼ାକ ଭାରି ଯୋଦ୍ଧା । ଭାରି ବୀର । ସମ୍ଭବତଃ ଏହା ତାଙ୍କର ହୁଣ୍ଡାମିର କାରଣ — ହୁଣ୍ଡା—ରାଜାଙ୍କୁ ହରାଇବା ଟିକେ କଷ୍ଟକର ହେବ - ସନ୍ଦେହ ନାହିଁ । ତେବେ ନିଜେ ଯୁଦ୍ଧ ନକଲେ ଗଲା । ତା' ଅପେକ୍ଷା ବିକ୍ରମ ଦ୍ୱାରା କରାଇ ନେବା । ଥରେ ଯୁଦ୍ଧ ଭଲ ରୂପେ ଲାଗିଗଲେ - ରାଜ୍ୟ ଲଣ୍ଡଭଣ୍ଡ ହୋଇଯିବ । ଓଡ଼ିଆ, ଓଡ଼ିଆଙ୍କ ଭିତରେ ହଣାହଣି, କଟାକଟି ଲାଗିଯିବ । ତା'ପରେ ବିକ୍ରମ ଜିତିଲେ - ତା' ସଙ୍ଗରେ-ଯଦି ହାରେ -? ହାରିବ ବା କାହିଁକି ? ନିଶ୍ଚୟ ଜିତିବ - ନିଶ୍ଚୟ, ନିଶ୍ଚୟ । ହଁ ସେ ପୁଣି ଜେମାର କର ପ୍ରୟାସୀ । ଧୃଷ୍ଟତା ତ କମ ନୁହଁ ? ଓଡ଼ିଆ ରାଜାର ଗୋଟାଏ ଗୃହତାଡ଼ିତ ବାସହୀନ ଭ୍ରାତା - ସେ ପୁଣି କାଞ୍ଚିରାଜକୁମାରୀଙ୍କର କରପ୍ରାର୍ଥୀ । ସାହସ ତ କମ ନୁହେଁ ? ହାଃ-ହାଃ । ତେବେ ପ୍ରତ୍ୟାଶା ଦେବାରେ ତ୍ରୁଟି କରିବି ନାହିଁ । (ଚିନ୍ତିତ) ଓଡ଼ିଆ, ଓଡ଼ିଆ - ମୂର୍ଖ ଓଡ଼ିଆ । ନିର୍ବୋଧ ଓଡ଼ିଆ । କି ସୁନ୍ଦର ଏଇ ଉତ୍କଳ ଦେଶଟି ତୋର - ତାହା ବୁଝିବା ତୋ କ୍ଷୁଦ୍ର ଶକ୍ତିର - ଅତୀତ - ।

ଅଯୋଗ୍ୟ ଓଡ଼ିଆ-ମୁଁ ତୋତେ ଚାହେଁନା-ମୁଁ ତୋ ଉପରେ ରାଜତ୍ୱ କରିବାକୁ ମଧ ଘୃଣାକରେ । କିନ୍ତୁ ଏ ସୁନ୍ଦର ରାଜ୍ୟ, ସୁନ୍ଦର ରାଜଧାନୀ - ଏହି ମର୍ତ୍ତ୍ୟର ଅମରାବତୀ - ଏହି ସ୍ୱପ୍ନମୟ-ଚିର ବସନ୍ତ ଲୀଳାୟିତ—ନୀଳାଚଳ - ମୋତେ ଅଧିକାର କରିବାକୁ ହେବ,

ପାଇବାକୁ ହେବ, ନିଶ୍ଚୟ ପାଇବାକୁ ହେବ - ନିଶ୍ଚୟ ନିଶ୍ଚୟ - ନିଶ୍ଚୟ ।

ଜୟନ୍ତ— (ପ୍ରବେଶକରି) କିଛି ବୁଝାଗଲା ନାହିଁ । ମହାରାଜାଙ୍କର ଭିତରେ ଭିତରେ ଗୋଟାଏ କି କୂଟଚକ୍ର ଚାଲିଛି । କୃଷ୍ଣା ନଦୀ ତୀରରେ କାହିଁକି ସୈନ୍ୟସାମନ୍ତ ସାମାବେଶ କରିବାକୁ ଆଜ୍ଞା ହେଲା କିଛି ଜଣାଗଲା ନାହିଁ । ଯା ହେଉ - ଆଦେଶ ପାଳନ କରି ଏଠାକୁତ ଆସିଛି ! (କିଛିକ୍ଷଣ ଚାହିଁ)—

ଇଯେବି ଏକପ୍ରକାର ଦେଶ ! ମନ୍ଦ ନୁହେଁ । ଯେ ଜନ ସ୍ରୋତରେ ମୁଁ ହଜିଯିବି କି କ'ଣ ବୁଝି ପାରୁନାହିଁ । କାଞ୍ଚି ସେନାପତି ବିକ୍ରମୀ ଜୟନ୍ତ ରାଓ - ଏ ଓଡ଼ିଆ ଦେଶ ରାଜଧାନୀରେ ହଜିଗଲେ ଗଲା ହାଃ ହାଃ- ବାସ୍ତବିକ୍ -ଏ କ୍ଷେତ୍ରରେ ମାହାତ୍ମ୍ୟ ଅଛି । ମୁଁ ଯେ ଗୋଟିଏ ମନୁଷ୍ୟ - ଏଇ ଯେପରି ଏ ଯାତ୍ରୀମାନେ - ସେଇ ଭିକ୍ଷୁଗଣ ସେଇ କୋଢ଼ିଆଟା ଯେପରି ମନୁଷ୍ୟ ସେହିପରି । ଏ ସତ୍ୟଟିକ ଦିନେ ମୋ ମନରେ ଜାଗ୍ରତ ହୋଇନାହିଁ ଇତି ପୂର୍ବରୁ । ମୁଁ ଜୟନ୍ତ ରାଓ - କାଞ୍ଚି ମହାରାଜାଙ୍କ ସ୍ନେହପାଳିତ ପୁତ୍ର ଓ ଭାବୀ ଜାମାତା ଓ ପ୍ରତାପଶାଳୀ ସେନାପତି । ଯା ଛଡ଼ା ମୋର ତ ଅନ୍ୟ କୌଣସି ପରିଚୟ ବା ସଂଜ୍ଞା ନଥିଲା । ହୁଁ ଭାବିବାର କଥା ଏକା ! ମୁଁ ବି ତ ଜଣେ ମନୁଷ୍ୟ - ସତେ ଠିକ୍ ତ - ନା ନାହିଁ ? (ରହି) କିନ୍ତୁ ମହାରାଣୀ ଓ ପଦ୍ମା କେଉଁଦିଗକୁ ଗଲେ - ଦେଖେ - (ପ୍ରସ୍ଥାନ)

(ଦ୍ରୁତ ବେଗରେ ବିକ୍ରମର ପ୍ରବେଶ)

ବିକ୍ରମ— ନରସିଂହ ରାଓର ମୋତେ ପୁଣି କିସ ପାଇଁ ଲୋଡ଼ା ? ମହାଚକ୍ରୀ ଏଇ କାଞ୍ଚିରାଜା - କିନ୍ତୁ କାହିଁ ତାଙ୍କ ରାଣୀ ଓ ଜେମା - କାହିଁ ପଦ୍ମାବତୀ-

(ମନ୍ଦିର ଦ୍ୱାର ଖୋଲିଯିବା ଓ ଯାତ୍ରୀଗଣ ଭିତରକୁ ଯିବା)

ବିକ୍ରମ— (ଚାରିଆଡ଼କୁ ଚାହିଁ) କାହିଁ, କାହିଁ, ସେ ସୁନ୍ଦରୀ ? ତ୍ରିଲୋକ ଦୁର୍ଲଭା ପଦ୍ମାବତୀ -ଶୁଣିଅଛି ଶ୍ରୁତି - ନାହିଁ ଅନୁଭୂତି - ଯେଣୁ ଦେଖିନାହିଁ କେବେ- କରିନାହିଁ ଏ ନୟନ ତା' ରୂପ ସୁଧା ପାନ । କରିଣ କଳ୍ପନା

ନପାରଇ ମନ - ସେ ରାମା ଲଳନା - ଯା'ର ବହୁଳ ପ୍ରଶସ୍ତି - ନିତି ନିତି ଶୁଣେ ଜନମୁଖେ । କିନ୍ତୁ ବିକିଛି ଏ ପ୍ରାଣ ତା' ଚରଣେ - କ୍ଷଣେ କ୍ଷଣେ ସ୍ଥିର ଆକର୍ଷଣେ ଆହୁରି ଲୋଭାଏ ଚିତ୍ତ- ପ୍ରାଣ ଉନ୍ମତ୍ତ-ଏ ଅତୀବ ଅଦ୍ଭୁତ । ନାଗରୀ ସମାଜେ, ଅନ୍ଧ ବୋଲି ଯା'ର ଖ୍ୟାତି - ରୂପ - ରସ- ଗନ୍ଧେ ସମାନ ଉଦାସୀ ପ୍ରାଣ ଯା'ର - ସେ ବିକ୍ରମ ମୁଗ୍ଧବି ସେ ଆଜି - ହିତାହିତ ଜ୍ଞାନ ତ୍ୟଜି ଧାଇଁଛି ଏ କାହା ପଛେ - ମୃଗତୃଷ୍ଣାସମ କି ମୋହିନୀ ମାୟା (ଚିନ୍ତାକରି) ଏକଦିଗେ ଦେଶ - ମୋର ଏଇ ସୁବର୍ଣ୍ଣ ଉତ୍କଳ-ମୋର-ମୋର-ମୋର ସ୍ଥିର ଏହା ଅତି - ତାକୁ କି ହରାଇପାରେ ? ନା- ନା- ଦାସୀ ପୁତ୍ର ପୁରୁପୁତ୍ର ହସ୍ତୁଁ - ଜନ୍ମଭୂମି ମୋର- ଛଡ଼ାଇ ଆଣିବି ନିଶ୍ଚେ- ଏହିକି ସେ ପଥ ? ପଦ୍ମାବତୀ ପିତା ପଦଛାୟାରେ ଲଭିଣ ଆଶ୍ରୟ - ପାଇବି ଫେରାଇ ରାଜ୍ୟ ସଙ୍ଗେ ରାଜରାଣୀ - ଅଥବା ।

ବିକ୍ରମ— (କଉଡ଼ି ଦେଇ) ଆଚ୍ଛା ବାୟାଣୀ -ହଃ- ରଜାପୁଅ-ରଜାପୁଅ କଅଣ କହୁଛି ମ - ମତେ ଚିହ୍ନିଲା କି ଆଉ ! ଯାଃ ଡେରି କରିଦେଲା - ଆଉ ପଦ୍ମାବତୀର ଦେଖାମିଳିବ ନାହିଁ ?

ବୈଷ୍ଣବୀ— ନାହିଁ ମିଳିବ କାହିଁ - ଯାହାକୁ ଯାହା ଯୋଗଥାଏ ଜାଗିଁଲ ରଜା - ମନ ଘେନି ସିନା ଫଳ - ମୁଁତ ବାଇ - ତେମେ ବି ବାୟା - ପଦ୍ମଫୁଲର ଭଲା କେବେ ଫଳ ହୁଏ ? ହାଃ ହାଃ ହାଃ - ଥାଉ ଥାଉ ଫୁଲ କଅଣ ହେବ ତମର ? ତମକୁ ତ ଫଳ ଲୋଡ଼ା ତୁମେ ରଜାହେବ - ହଁ ରଜା ହେବ ଯେ - ରଜା ହେବ - ହେଲେ ମୁଁ କଅଣ ଭଣା ବଧେଇ ମାଗିବି ? (କଟାକ୍ଷ କରି) ନା- ନା ଯାଉଛି ତେବେ ତମ କଉଡ଼ି ଫେରାଇ ନବ - ନିଅ - ନିଅ !

ବିକ୍ରମ— ଯା - ଯାଃ - (କହି ବେଗେ ପ୍ରସ୍ଥାନ)

ବୈଷ୍ଣବୀ— ହାଃ - ହାଃ - ହାଃ - ୟାଙ୍କର ରାଗକୁ ଦେଖ ! ଏ ପୁଣି ରଜା ହେବେ ବୋଲି ଆଣ୍ଟ କରି ବସିଛନ୍ତି । ଯାଏଁ ତେବେ - ରଜାଙ୍କ ଉଆସରେ ଏ ଫୁଲ ଦେଇ ଆସେ-

-ଗୀତ-

କିଏ ନେବ ଏ ପଦ୍ମକଢ଼ି
ଆସରେ ଚିହ୍ନରା ଗ୍ରାହକେ ଚଳି
ଏ କୁସୁମ ଯେହୁ ଲୋଡ଼ିବ
ଏ କୁସୁମ ସେହୁ ପାଇବ
ସୁନାଫୁଲ କଢ଼ି ବୁଲାଇ ବିକୁଛି
ଅମୂଲ ମୂଲ କେ ପାରିବ କଳି ।୧।
ଏ ଫୁଲକୁ ଯେହୁ ଛୁଇଁବ
ସେ ମୋ ପଛେ ପଛେ ଧାଇଁବ
ଦୂରକୁ ଚାହିଁଲେ ଦୂରେ ଚାହିଁଥିବ
ପାଖ ତା' ପାଖରେ ଥିବଟି ପଡ଼ି ।୨।

ବିକ୍ରମ— ନିୟତି ନିଏ ଟାଣି ମାୟା ପାଶେ—ଗ୍ରହାଗମେ ଏହିତ ନିର୍ଦ୍ଦେଶ - ଉଚ୍ଚ ବୃହସ୍ପତି, କେନ୍ଦ୍ରୀ ବଳବାନ୍ ଅତି - ଦଶା, ମହାଦଶା - ଉଭୟେ ଉତ୍ତମ ତେବେ, ତେବେ (ଚାହିଁ) କାହିଁ ପଦ୍ମ - କାହିଁ ପଦ୍ମ - କାହିଁ ପଦ୍ମାବତୀ - ଦେଖେ ଖୋଜି - ଥରେ ଯଦି ଦେଖାପାଏ (ଚମକି ନେପଥ୍ୟେ ଚାହିଁ) ଏ କିଏ ଗୋଟାଏ ଆସୁଛି ? ଚିହ୍ନି ପକାଇବ କି ? ମୁଁ ପଳାଏଁ - (ମୁଖ ଆବୃତ କରି ପ୍ରସ୍ଥାନ ଉଦ୍ୟତ)

(ବୈଷ୍ଣବୀର ପ୍ରବେଶ)

ବୈଷ୍ଣବୀ— ଟିକିଏ ରହମ ନନା । ମଲା ଏତେ ବାଟ ଅଇଲି - ମଲା - ଟିକିଏ ରହହେ ମାଲିକେ - ଏମିତି ଚୋରଙ୍କ ପରି କନ କନ ହେଉଚ କିଆଁ ? ମାତାକୁ କିଛି ମିଳୁ !

ବିକ୍ରମ— (ଫେରି) ଓଃ- ମାତାଟାଏ - ହଇହେ ମାତା କଅଣ ବୋଲୁଛ ବୋଲ-

ବୈଷ୍ଣବୀ— ନାହିଁ କିଛି ନାହିଁ - ସେଥିରେ ମୋର ବା କ'ଣ ଥାଏ ? ଫୁଲ ଫୁଟିଲେ ଫୁଟୁ - ଭଅଁର ଥିଲେ ଆସୁ - ଫଳ ବେଳକୁ ସିନା ସବୁ ଆକଟ - ହେଲେ ଭଲ ଫୁଲଟିଏ - ବୋଇଲି କାହାକୁ ଦେବି ?

ବିକ୍ରମ— (ପାଖକୁ ଆସି ଓ ଫୁଲକୁ ଦେଖି) ମଲା - ଏଟାତ ପଦ୍ମଫୁଲଟାଏ - ୟାର ପୁଣି କି ଫଳହେବ ମଁ - ଏ ପୁଣି ଆକଟ କରିବ ? ବାୟାଣୀଟାଏ ନା କଅଣ ?

ବୈଷ୍ଣବୀ— ଢେମାମଣି କଉଡ଼ି ଦେଇଥିଲେ ଯେ ସେଥିରେ ଏ ପଦ୍ମଫୁଲଟି କିଣିଛି - ତୁମେ ରଜାପୁଅ ରାଜା-ତୁମେ କଉଡ଼ି ଦେଲେ ତୁମକୁ ଏକା ଏ ଫୁଲ ଦେବି। ଦେବିଯେ - ପୁଣି ସେଇଥିରୁ ଫଳ ବାହାରିଲା ବେଳକୁ ଦେଖିବ। (କଟାକ୍ଷ)

ପାତ୍ରଗଣ— ମହାରାଜ ଏଠି ! (ଘେରି ଠିଆ ହେବା)

ପୁରୁ— ବୈଷ୍ଣବୀର ମଧ ଢ଼େର କାମ। କର୍ମକ୍ଷେତ୍ରେ ଆସ ଚାଲି ପୁରୁଷୋତ୍ତମ। ଯୁଦ୍ଧ ହେବ ଯୁଦ୍ଧ। ମିଳିଅଛି ମହାପ୍ରଭୁ ଆଜ୍ଞା। (ଭାବି) ଭାଇ ସଙ୍ଗେ ଭାଇର ଯୁଦ୍ଧ - ଭାବିଥିଲି ଅବା ମହାପ୍ରଭୁଙ୍କର ଆଜ୍ଞା ମିଳିବ ନାହିଁ। କିନ୍ତୁ କି ସ୍ବଷ୍ଟଭାବରେ ଆଜି ସେ ଭାଗ୍ୟ ମିଳିଲା - ଏହି ସେହି ଶ୍ୟାମସୁନ୍ଦର ଯିଏ ଦିନେ ଅର୍ଜୁନଙ୍କୁ ଭ୍ରାତୃବଧରେ ପ୍ରରୋଚିତ କରିଥିଲେ। ତେବେ ହେଉ ଯୁଦ୍ଧ - ଜୟ ମହାପ୍ରଭୁ ଜଗନ୍ନାଥଙ୍କର ଜୟ (ସମସ୍ତେ ଜୟଧ୍ୱନି କରି ଅଗ୍ରସର)

(ରଙ୍ଗରାଓର ବହିର୍ଦ୍ଦେଶରୁ ପ୍ରବେଶ) କିଏ ସଖା ତୁମେ ଦେଉଳକୁ ଆସିଛ ?

ରଙ୍ଗରାଓ— ରାମଚନ୍ଦ୍ର ! ମହାରାଜ ! -ମୁଁ ଦେଉଳକୁ ଆସିନାହିଁ ଯେ - ଦେଉଳ ମୋ ପାଖକୁ ଆସିଅଛି।

ପୁରୁ— ସଖା - ଫେର୍ ମହାରାଜ ବୋଲି କହିଲ—

ରଙ୍ଗରାଓ— ଭୁଲ ଭୁଲ- ମହାରାଜ ନୁହେ ସଖା - ଯେହେତୁ ଦେଉଳ ମୋ ପାଖକୁ ଆସିଚି।

ପୁରୁ— ଦେଉଳ କିପରି ତୁମ ପାଖକୁ ଆସିଲା ସଖା ?

ରଙ୍ଗରାଓ— ବୁଝିପାରୁ ନାହଁ ସଖା। ଦେଉଳଟା କ'ଣ ଶିଳ୍ପ, ଚାରୁକଳା - ସ୍ଥାପତ୍ୟର ସମାବେଶ, ଏଇତ ? ଏ ସମସ୍ତ ତୁମେ ମୋଠାରେ ବି ଦେଖିବାକୁ ପାଇବ (ସଳଖି ଠିଆ ହେବା)

ପୁରୁ— ଆଉ ଦେବତା ? ଇଯେତ ହେଲା କଙ୍କାଳ ସାର ବାହାରଟା ? ଭିତରର ପ୍ରାଣଟି କାହିଁ ?

ରଙ୍ଗରାଓ— ମୁଁ କ'ଣ ମୃତ ? ଏତେ ଶାସ୍ତ୍ରାଭ୍ୟାସ କରି ତଥାପି ମୁଁ ମୃତ କି ଜୀବିତ ଜାଣି ପାରିଲ ନାହିଁ ?

ପୁରୁ— ଯାଃ- ମୁଁ ମନ୍ଦିରର ଦେବତା କଥା କହୁଥିଲି - ମହାପ୍ରଭୁ ଜଗନ୍ନାଥଙ୍କ କଥା କହୁଥିଲି - ଜଗତର ନାଥଙ୍କ କଥା କହୁଥିଲି -

ରଙ୍ଗରାଓ— ପୁଣି ସେହି କଥା ସଖା - ସେଇଥି ଯୋଗେ ତ ସବୁଥର ମୋତେ ଏ ମନ୍ଦିର ଦ୍ୱାରରୁ ହିଁ ଫେରିବାକୁ ପଡ଼େ । ଜଗନ୍ନାଥ କିଏ ମ ? ସ୍ମୃତି କହେ -

ପୁରୁ— ଚୁପ୍ ସଖା । ସେପରି କହନା - ଆଜି ମୁଁ ତାଙ୍କୁ ପାଇଛି ଏ ମନ୍ଦିରକୁ ଚିହ୍ନିଛି, ମହାପ୍ରଭୁଙ୍କୁ ପାଇଛି - ସଖା ସଖା - ଏଥର ମୋର ଏ ଯୁଦ୍ଧରେ ଆପତ୍ତି ନାହିଁ ମହାପ୍ରଭୁଙ୍କ ଆଜ୍ଞା ମିଳିଛି ।

ରଙ୍ଗରାଓ— ଫେର ସେହି ପାଗଳାମି କଥା - ଶିରୋନାସ୍ତି ଶିରୋପୀଡ଼ା ନ୍ୟାୟରେ କାକତାଳୀୟ ବୋଲି ଗୋଟିଏ କଥା ଅଛି ।

ପୁରୁ— ନାଇଁ ଭାଇ - ଠିକ୍ ତମରି ପରି ମୁଁ ମୋ ଇଷ୍ଟ ଦେବତାଙ୍କୁ ପାଇଛି । ଅରୂପକୁ ରୂପର ସ୍ପଷ୍ଟ ରେଖାରେ ଦେଖିପାରିଛି । ଗୋଟିଏ ରୂପସୀର ସ୍ଥିର ନୟନର ବିଦ୍ୟୁତ କଟାକ୍ଷ ଦେଇ । (ଏକ ପଟକୁ ଟାଣି ଆଣି ଧୀରେ) ଜଣେ ଯେପରି ତମ କନକମାଳିଙ୍କ ରୂପ ସାଗରରେ ରତ୍ନ ଅନ୍ୱେଷଣ ପାଇଁ ଆସିଗଲି ଦେବ ପାଶେ - ଅରୂପର ଯହିଁ ଭେଟ ରୂପ - ସାଥେ ପୂର୍ଣ୍ଣ ହେଲା କାମ - ସେ ସୁନ୍ଦରୀ - ମନୋହାରୀ ରୂପେ - ବିଛାଇ ସୋପାନ ଉଠାଇଲା ମୋତେ ଆଜି ସପ୍ତସ୍ୱର୍ଗ ଧାମେ-

ବୈଷ୍ଣବୀ— ମହାରାଜାଙ୍କ ପୂର୍ବ ତପସ୍ୟା ଫଳ ଇୟେ - ଆମ୍ଭେମାନେ ତ ଘୋର ପାପୀ- ଜନ୍ମ ଜନ୍ମ ଭୋଗ ଭୋଗୀ ଆମର ସିଦ୍ଧି ନାହିଁ -ମହାରାଜାଙ୍କର ଏକାଦିନେ ସିଦ୍ଧି - ମନର ମୂଳେ ଏ ଜଗତ, ମହାରାଜ !

ପୁରୁ— କିନ୍ତୁ କାହିଁ ସେ ପଦ୍ମିନୀ - ନବରାଜ୍ୟ ନବ ରାଜଧାନୀ - ଦେଖାଇଲା ମୋତେ କ୍ଷଣିକ ଦର୍ଶନେ - କଲା ମୋତେ ଅଧିକାରୀ ଏ ନବଶକ୍ତିର । ଶୁଭଦିନ ଆଜି ମୋର- ଇଷ୍ଟ ଦେବ ପ୍ରଭୁ ଜଗନ୍ନାଥ - ବହୁ ଅପରାଧୀ ଏ ଦାସ ଶ୍ରୀପଦେ - ଦେଇ ଆଜି ଦରଶନ ବଳେ - କିବା କରୁଣାରେ । (ପ୍ରଣିପାତ)

ବୈଷ୍ଣବୀ— ମହାରାଜ ! ଏହି ସେହି ସୋପାନର କିଅବ୍ଧୁତ ଇଙ୍ଗିତ (ପଦ୍ମକଡ଼ି ଦେବା)

ପୁରୁ— (ଉଠି) ଏ କମଳ କଳି ଥିଲା ପରା ସେ ପଦ୍ମିନୀ ହସ୍ତେ- ଦେଖୁଛି ମୁଁ ସତେ - ବିମଳା - ରଙ୍ଗ ଚରଣ - ବୋଳା ସିନ୍ଦୂରରେ - କର୍ପୂର ଆମୋଦେ ଭ୍ରମର ଗୁଞ୍ଜନେ - ଶୀତଳ ସମୀରେ ଥରେ ମୋର ହିୟା - ଅନୁଭବ ଯାଏ ହଜି (ପଦ୍ମକଡ଼ି ଛାତିରେ ଲଗାଇ) - ମନେ ହୁଏ ସତେ ଅବା ଏହି ମୋର ପୂର୍ଣ୍ଣ ସିଦ୍ଧି ।

(ପାତ୍ରଗଣ ପ୍ରବେଶ)

ବୈଷ୍ଣବୀ— ମହାରାଜ - ! ଏହି କିଏ ସବୁ ଅଇଲେଣି - ମୁଁ ଯାଏଁ - ମୋର ଢ଼େର କାମ - କୁସୁମ ଭିତରେ କୀଟ ପରାୟେ ବୁକୁଚିରି ଆଖୁ ଫଳକୁ ଚାହେଁ

ସେ ଫଟା ରସିକ ରାଜ୍ୟ ଦାନଦେଲେ
ତାକୁ ନ ମିଳିବ ରସିକା କଡ଼ି ।
କିଏ ନେବ ଏ ପଦ୍ମ କଡ଼ି ଆସରେ ଚିହ୍ନରା ଗ୍ରାହକ ଚଳି ।

(ଗୀତାନ୍ତେ ତ୍ୱରିତ ଗତିରେ ପୁରୁଷୋତ୍ତମ ଦେବଙ୍କର ମନ୍ଦିର ମଧ୍ୟରୁ ପ୍ରବେଶ)

ପୁରୁ— (ବ୍ୟସ୍ତ ହୋଇ) ହଇହେ ମାତା - ଏଠି ଗୋଟିଏ ସୁନ୍ଦରୀ ଦକ୍ଷିଣୀ କନ୍ୟାଟିଏ ଦେଖିଲ କି ? ସମ୍ଭବତଃ ତାଙ୍କ ମାତା କି କେହି ଜଣେ ପ୍ରବୀଣା ମଧ ସଙ୍ଗରେ ଥିଲେ ।

ବୈଷ୍ଣବୀ— କି ନାମ, କି ଲକ୍ଷଣ କି ପରିଚୟ ତାଙ୍କର ପ୍ରଭୁ ? କେତେ ଆସୁଚନ୍ତି - କେତେ ଯାଉଛନ୍ତି - ମୁଁ ବୈଷ୍ଣବୀ ଲୋକ ।

ପୁରୁ— କେତେ ଆସୁଚନ୍ତି, କେତେ ଯାଉଛନ୍ତି ? କାହିଁ - କେବେହେଲେ ତ ଏପରି ସୁନ୍ଦରୀ ଦେଖିନାହିଁ ଦିନେ - ଯେ ରୂପ ଦର୍ଶନେ ଏକାଦିନେ

ଅରୂପ ସୁଆଦ ମିଳିଅଛି ମତେ । ମନେକର ସାଧନ ଗୌରବା ବୈଷ୍ଣବୀ ତୁମେ - ଅରୂପ ସନ୍ଧାନେ ଧାଁଅ - ସୋପାନକୁ ତ୍ୟଜି ଅନ୍ଧଭାବେ ସଂସାର ଧରମୁ ଅବସର ଘେନି କର ଇଷ୍ଟ ଆରାଧନା - ଭାଳିଛି କି ରୂପ ଆଶ୍ରାବିନେ ପାଇବ ଦର୍ଶନ ଅରୂପର - ବୃଥା ବୃଥା ଏ ବୈରାଗ୍ୟ - ବୃଥା ସିନା ଏ ସାଧନା ? ଗର୍ବକର ବୃଥା - ଦେଖ ଶୁଭ ଦିନ ମୋର ଆଜି - ଶୁଭ କ୍ଷଣେ ଆଜ୍ଞାମାଜ ଆଶେ ଆସିଲି ମନ୍ଦିରେ - ଏହି ସ୍ଥଳେ ମନ୍ଦିର ଦୁଆରେ - ନୟନ ପଥରେ ପଡ଼ିଗଲେ - ସେହିଦିବ୍ୟ ମୂରତିଟି - ଆତ୍ମହରା ହୋଇ କ୍ଷଣେ - ଦେଖିଲି - ଅନ୍ତରେ ଅରୂପର ଲୀଳା ।

ରଙ୍ଗରାଓ— ଏଁ - ସତେକି ସଖା - ତା' ହେଲେ ଠିକ୍ ପାଇଛ । ମୁଁ ସେଇୟା ମୂଳରୁ କହୁଛିଟି ଏତେ ଉପରକୁ ଯାଅ ନାହିଁ - ଟିକିଏ ଏଇ ମାଆ ବସୁନ୍ଧରା, ଏହି ଧରଣୀ ଯାହା ଉପରେ ପାଦଦେଇ ଚାଲୁଛି - ତାହା ସହିତ ଏକ - ଯୋଗ କରି ଚଳ - ମୋଅର କ'ଣ ସାଧନା ନାହିଁ ? ମୁଁ ଫେର ସିଦ୍ଧ ହେଲି କିପରି ? ମରେ ହୁସଭ ରଖି ଚନ୍ଦ୍ର କି ନା ଖାଲି ବିନ୍ଦୁଟି ଅଭାବ - ବିନ୍ଦୁଟି କନକ ହାତରେ ସେତକ ପାଇଲେ ମୋଟ ରାଜଟୀକା ହେଲା - ମୋର ସ୍ୱର୍ଗଲାଭ ହେଲା - ମୋର କ'ଣ ସେଦିନ କେବେ ଆସିବ ? କିନ୍ତୁ କିଏ ସେ ରୂପସୀ ସଖା ?

ପୁରୁ— (କାନପାଖେ ତୁନି ତୁନି କରି କହିବା)

ରଙ୍ଗରାଓ— ଓହୋ । କିନ୍ତୁ ଏତେ ଦୂର - ଆଚ୍ଛା ମୁଁ ଅଗଲାରୁ ଜାଣିଛି ସଖା ଏହିପରି ତମର ଦିନେ ଘଟିବ - ଘଟିଲା କି ନାହିଁ ଦେଖିଲ ସଖା । କିନ୍ତୁ ସେ ମାନସୀ ପ୍ରତିମା ଗଲେ କୁଆଡ଼େ ? ମୁଁ ତାଙ୍କୁ ଖୋଜି ବାହାର କରିବି - ଯୁଆଡ଼େ ଥିବେ ସେଠୁ ଓଟାରି ଆଣିବି - ଏପରିକି ଯଦି ଏ ଦେଉଳ ଭିତରେ ଥା'ନ୍ତି ତାହେଲେ ତାଙ୍କ ପାଇଁ ଆଜି ପ୍ରଥମ ରଙ୍ଗରାଓର ଏ ମନ୍ଦିର ଭିତରେ ପାଦ ପଡ଼ିବ - ଯଦି ସଖା (ଗମନୋଦ୍ୟତ)

ପୁରୁ— ସଖା - ବାୟା ହେଲ ନା କ'ଣ ? ଯାଡ଼େ ଯୁବ (ଧରି ରଖିବା)

ରଙ୍ଗରାଓ— ରଖ ତମ ଯୁଦ୍ଧ - ଛାଡ଼ ମତେ ମୁଁ ଯାଏ । ସଖା ତମେ ବଡ଼ ଅରସିକ । ସାହିତ୍ୟ ଆଉ ଯୁଦ୍ଧ ଏକ କରିଦେଲ ! ସାହିତ୍ୟ ଆଗ ନା ଯୁଦ୍ଧ ଆଗ ? ଛି - ଛି -

(ଉତ୍କଳ ସେନାପତି ଅର୍ଜୁନ ସିଂହଙ୍କ ପ୍ରବେଶ)

ସେନାପତି— ଜୟ ମହାରାଜାଙ୍କର ଜୟ ! (ଅଭିବାଦନ କରିବା)

ରଙ୍ଗରାଓ— ଆସିଲେ ଯୁଦ୍ଧର ଲୁଚ ଶକୁନି । ଏଥର ଏକାବେଳେକେ ରସଭଙ୍ଗ ହେଲା ମହାରାଜା ! (ଦେଉଳ ଆଡ଼କୁ ପ୍ରସ୍ଥାନ) !

ପୁରୁ— (ହସି) କି ସମ୍ବାଦ ସେନାପତି ?

ସେନାପତି— ଜଗନ୍ନାଥଙ୍କର ଅପାର କରୁଣା ମହାରାଜ ! ସୈନ୍ୟ ସମାବେଶ ସଂପୂର୍ଣ୍ଣ । କିନ୍ତୁ -

ପୁରୁ— ତୁନି ହେଲେ ଯେ ସେନାପତି !

ସେନାପତି— ଛାମୁରୁ ଉତ୍ସାହ ବାଣୀ ନ ଶୁଣି ସମସ୍ତ ଶିବିର ନିଶ୍ଚେଷ୍ଟ ହୋଇ ରହିଛି ।

ପୁରୁ— ସେନାପତି - ମୋର କ୍ଷଣିକ ଦୌର୍ବଲ୍ୟ ତାହାର କାରଣ-ଚାଲ ସେନାପତି - ମୋର ଦିଗ୍‌ବିଜୟୀ ଓଡ଼ିଆ ସେନାଙ୍କୁ ଟିକିଏ ଉତ୍ସାହିତ କରିବା - ଏହି ଧରି ମହାପ୍ରଭୁଙ୍କ ଆଜ୍ଞାମାଳି—

ସେନାପତି— ଜୟ ଜଗନ୍ନାଥଙ୍କ ଜୟ, ଜୟ ଜଗନ୍ନାଥଙ୍କ ଜୟ ।

ପୁରୁ— ଆସ ଯୁଦ୍ଧ, ଆସ ମୃତ୍ୟୁ - ମୁଁ ପ୍ରସ୍ତୁତ । ମୋର ଜୀବନର ଶ୍ରେଷ୍ଠ ଅନୁଭୂତି - ସାଧନାର ଶେଷସିଦ୍ଧି ଆଜି ମିଳିଯାଇଛି - ଆଉ ଚିନ୍ତା ନାହିଁ - ଏଥର କର୍ମ ଜୀବନରେ ଆତ୍ମାହୂତି ଦେବି । ସମୁଜ୍ଜ୍ୱଳ ଆଜି ଦିନର ସ୍ମୃତିଟି - ତେବେ - ଜାଳ ଜାଳ ଦିଗନ୍ତର ସମୀକୃଷ୍ଣ ରେଖା । ସେ ଅଗ୍ନିର ଲୋହିତ ଶିଖାରେ ଥରେ ରକ୍ତରାଗରେ ରଞ୍ଜିତ ହୋଇଉଠୁ । ଭଗ୍ନ ଓଡ଼ିଆର ହୃଦୟ କନ୍ଦରର ଜଡ଼ୀଭୂତ ଅନ୍ଧକାର ତଡ଼ିତ୍ ଗତିରେ ଥରେ ଚମକି ଉଠୁ । ଏ ଆଳସ୍ୟ, ଏ ଜଡ଼ତା ଶତବେଷ୍ଟିତ ଓଡ଼ିଆର ଶୋଭା ପାଏନା । ମା' ଭକ୍ତଙ୍କ ଜନନୀ - ଅଧମ ସନ୍ତାନର ଦୋଷ

ନେବୁ ନାହିଁ ମା । ମୁଁ ଏହି ଅଗ୍ନି ଜାଳିଛି । ସ୍ୱାର୍ଥର ସ୍ଫୁଲିଙ୍ଗଟିକୁ ଅନବରତ ଫୁତ୍କାରରେ ଦେଶମୟ ପ୍ରଧାବିତ କରିଛି ସତ୍ୟ - କିନ୍ତୁ ମା' ମୋର ସ୍ୱାର୍ଥ ତୁଚ୍ଛ ସିଂହାସନ ନୁହେଁ ଶତ୍ରୁର ଲୁବ୍ଧ ଦୃଷ୍ଟିରୁ ତୋତେ ରକ୍ଷା କରିବାକୁ ହେବ ମା- ତୋର ଚାରିଆଡ଼େ ଯେ ଶତ୍ରୁ ଆଉ ତୋ ଦିଗ୍‌ବିଜୟୀ ସନ୍ତାନମାନେ ଅନ୍ତର୍ବିବାଦରେ ଲିପ୍ତ - କିଏ ବା ଅଳସ ଶେଯରେ ସୁଖ - ସୁପ୍ତ - କି ବିଡ଼ମ୍ବନା । ମୁଁ ଜାଣି ଶୁଣି କ'ଣ ମୋର ଏହି ସ୍ୱର୍ଗାଦପି ଗରୀୟସୀ ଜନ୍ମଭୂମି ଉତ୍କଳ ଜନନୀଙ୍କୁ ପରାଧୀନତାର ଶୃଙ୍ଖଳ ପିନ୍ଧାଇ ଦେବି ? କିଏ ତୋତେ ରକ୍ଷା କରିବ ମା' ? ପିତା ମୋର (ମୁଣ୍ଡରେ ହାତ ଲଗାଇ) - ଦିଗ୍‌ବିଜୟୀ କପିଳେନ୍ଦ୍ରଦେବ । ଏହି ଅକ୍ଷମ ମସ୍ତକରେ ଏ ଗୁରୁଭାରଦେଇ ଯାଇଅଛନ୍ତି - ମା- ମୋତେ ହିଁ ତୋର ଶାନ୍ତି ବିଧାନ କରିବାକୁ ହେବ - ମୋତେ ହିଁ ତୋତେ ଶତ୍ରୁ କବଳରୁ ରକ୍ଷା କରିବାକୁ ହେବ । ମୋତେ ହିଁ ତୋର ଉଚ୍ଚ ମଥାର ଟେକ ରଖିବାକୁ ହେବ । ଆସୁ ବାହାମନୀ ସୁଲତାନ ! ଆସୁ ବଙ୍ଗଳାର ମୁସଲମାନ ! ଆସୁ ଗୋଦାବରୀର ଦସ୍ୟୁ ! ଆସୁ କର୍ଣ୍ଣାଟର ତସ୍କର ! ପୁରୁଷୋତ୍ତମ ଦେବ ଦେହରେ ଯଦି ସୂର୍ଯ୍ୟବଂଶର ରକ୍ତବିନ୍ଦୁଏ ମାତ୍ର ପ୍ରବାହିତ ହେଉଥାଏ, ତା' ହେଲେ ସେ ତା'ର ମାତୃଭୂମିର ସ୍ୱାଧୀନତ ଓ ଉତ୍କଳ ସିଂହାସନର ଗୌରବ ରକ୍ଷା କରିବ । ମହାପ୍ରଭୁ, ସହାୟ ହୁଅ ! (ପ୍ରଣାମ କରି) ଜାଗ ଜାଗ ଓଡ଼ିଆ ତୁମର ଏ ହେଳାର୍ଜିତ ଅବସର ବାସରର ଅବସାନ ହେଲାଣି । ହେଇ ଦେଖ - କର୍ମର ବିସ୍ତୃତ ରଙ୍ଗଭୂମି ତୁମର ଚତୁର୍ଦ୍ଦିଗରେ ନବାଲୋକରେ ସୁସ୍ପଷ୍ଟ ହୋଇ ନିଶିଲାଣି - ଉଠ - ଜାଗ - ଜନନୀ - ଜନ୍ମଭୂମିର ପ୍ରିୟ ସ୍ୱାଧୀନତାଟିକ ମନପ୍ରାଣ ଦେଇ ରକ୍ଷା କରିବାକୁ ହେବ । ଥରେ ତୁମର ଦିଗ୍‌ବିଜୟୀ ଉନ୍ମତ୍ତ ନୃତ୍ୟରେ ଜନନୀର କ୍ଷୁବ୍ଧ ବକ୍ଷର ଚାଞ୍ଚଲ୍ୟ ପ୍ରଶମିତ କରିଦିଅ । ଦିଗନ୍ତଭେଦୀ ଜୟଗାନରେ ମାତୃଭୂମିର ହୃଦ୍‌ସ୍ପନ୍ଦନ ଥରେ ଜଗତକୁ ଶୁଣାଇ ଦିଅ । ସ୍ତବ୍ଧ ବିସ୍ମୟରେ ଜଗତ୍ ଚାହିଁ ଦେଖୁ - ଭାରତ ଥରେ ନିଷ୍ଠିତରେ ଜାଣୁ - ବୀର, ସ୍ୱାଧୀନ ଓଡ଼ିଆର ପରାଜୟ ଅସମ୍ଭବ - ଉଠ ଜାଗ - ଏକତ୍ର ହୁଅ - ଏକ ହୁଅ - ଉଠ ଜାଗ - (ସମସ୍ତେ ପ୍ରସ୍ଥାନ)

\+ + + + +

# ଦ୍ୱିତୀୟ ଅଙ୍କ

## ପ୍ରେମାଙ୍କୁର

### ପ୍ରଥମ ଦୃଶ୍ୟ

ସ୍ଥାନ— କର୍ଣ୍ଣାଟ ଦେଶର ବନପ୍ରାନ୍ତ ପଶ୍ଚାତ୍‌ଭାଗରେ ପର୍ବତ ଓ ଜଙ୍ଗଲ -

କାଳ - ଅପରାହ୍ନ

ଅନ୍ଧକାରାଚ୍ଛନ୍ନ ବନରେ ମଧ୍ୟେ ମଧ୍ୟେ ପତ୍ର ଫାଙ୍କରେ ସୂର୍ଯ୍ୟ କିରଣ ପଡ଼ି ଟିକିଏ ଟିକିଏ ଆଲୋକ ଦେଖାଯାଉଛି ।

ବୈଷ୍ଣବୀର ପାଦ ଚିପି ଚିପି ପ୍ରବେଶ - ଏକ ହାତରେ ମଦନ ଓ ରତି ଫୁଲ ଶର ସହ - ମଦନ ଓ ରତିଙ୍କୁ ଅନ୍ୟ ପଟେ ଲୁଚାଇ ଦେବା ପରେ ବୈଷ୍ଣବୀର ଗୀତ -

ମୁଁ ପାଦ ନୂପୁର ବାଜା ମା
ସେ - (ନାଟୁଆ) ନଟବରର—
ଅତୁଆ ସୂତା ଖିଅ ମୁଁ ପୁରୁଣା କାରିଗରର ।
ନାଚି ନାଚି (ସେ) ଯାଏ ଖେଳି
ଭବ ରଙ୍ଗଭୂମି ପରେ
ବାଜି ବାଜି ଯାଏ ମୁହିଁ ତାଳେ ତାଳେ ଫରପର
(ସେ) ବୁଣି ବୁଣି ଯାଏ ଜାଲେ
(ମୁଁ) ଖୋଲି ଖୋଲି ଚାଲେ
(ପୁଣି) ଗଣ୍ଠି ଗଣ୍ଠିକେ ମୁଁ ଥାଏ
ମହାଜାଲେ (ସେ) ଧୀବରର ।୧।

ଗୀତାନ୍ତେ ନେପଥ୍ୟସ୍ଥିତ ମଦନ ଓ ରତିଙ୍କ ଆଡ଼କୁ ହାତ ଠାରୁ ଠାରୁ ଚୁପ୍ ଚୁପ୍ ପ୍ରସ୍ଥାନ-

ପରେ ବିପରୀତ ଦିଗରୁ ଛଦ୍ମବେଶରେ ବିକ୍ରମ ଦେବଙ୍କର ପ୍ରବେଶ । ସଙ୍ଗରେ ତାଙ୍କର ଭାଇ ନରସିଂହ ଦେବ ମଧ୍ୟ । ବିକ୍ରମଙ୍କ ମୁହଁରେ ଭୟ ଓ ଉତ୍ତେଜନା ପରିସ୍ଫୁଟ - ନରସିଂହ ଦେବ ମଧ୍ୟ । ନରସିଂହଙ୍କ ମୁହଁରେ ବିସ୍ମୟ ଓ ସନ୍ଦେହ -

ବିକ୍ରମ— ଦେଖ ନରସିଂହ ସାମନ୍ତ - ମୁଁ ଆଉ ତମ ସାଙ୍ଗରେ ତର୍କ କରି ପାରିବି ନାହିଁ । ରାଜନୀତି ବୁଝନା - ରଣନୀତି ଜାଣନା - ଖାଲି କଥାଗୁଡ଼ାଏ କହି ଜାଣ - ତୁମର ଯୋଗେ ମୋର ଏ ହାସ୍ୟକର ପରାଜୟ-

ନରସିଂହ— କିନ୍ତୁ ରାଜା, ମୁଁ ଯଦି ତୁମ ନୀତି ବୁଝି ନ ପାରିଲି - ମୁଁ କିପରି ତୁମର ନିର୍ଦ୍ଦିଷ୍ଟ କାର୍ଯ୍ୟ ସଂପାଦନ କରି ପାରିବି କହ - ? ମୁଁ ତ ଯନ୍ତ୍ର ନୁହେଁ - ବୁଦ୍ଧିଶକ୍ତିସଂପନ୍ନ ମନୁଷ୍ୟ ତ- ମାନୁଛି ମୁଁ କାଲି ଠିକ୍ ସମୟରେ ପଶ୍ଚାତ୍‌ଭାଗ ରକ୍ଷାରେ ନିଯୁକ୍ତ ହୋଇଥିଲେ ଆମର ଜୟ ହୋଇଥାନ୍ତା । କିନ୍ତୁ ତୁମେତ ମତେ ଅବିଶ୍ୱାସ କରି ସବୁକଥା ବଝାଇ କହିନଥିଲ - ମୋର ଭୁଲ ହେଲା - ସେଟା କ'ଣ ମୋର ଦୋଷ ?

ବିକ୍ରମ— ଦୋଷାଦୋଷ କଥା ଛାଡ଼ିଦିଅ ଭାଇ ! ଏଥର କ'ଣ ଅବରୁଦ୍ଧ ହୋଇ ସ୍ୱବିବରରେ ବନ୍ଦୀ ଶୃଗାଳ ପରି ଛଟପଟ ହୋଇ ମରିବା ?

ନରସିଂହ— ଆମ୍ଭେମାନେ ଆତ୍ମସମର୍ପଣ କଲେ ଏ ଦଶା କାହିଁକି ହେବ ? ମହାଦେଈ ତ ସମ୍ବାଦ ଦେଇଛନ୍ତି - ସେ ପ୍ରତ୍ୟେକ ଭାଇଙ୍କୁ ଗୋଟିଏ ଗୋଟିଏ ଗଡ଼ ଦେଇ ସାମନ୍ତ ରାଜ୍ୟର ରାଜା କରିଦେବେ - ମୁଁ ତ ଭାବୁଛି ସେହି ଯଥେଷ୍ଟ ହେବ-

ବିକ୍ରମ— ଯଥେଷ୍ଟ ହେବ ? ଧିକ୍ ତୁମର ବୀରତ୍ୱ - ଧିକ୍ ତୁମର ଯୁଦ୍ଧ ବ୍ୟବସାୟ - ଶତ ଧିକ୍ ତୁମର ରାଜକୁଳେ ଜନମ - (ରହି) ଭାଇ ଆମେ କ'ଣ ଭିକ୍ଷୁକ ? ଆଉ - କାହାଠାରୁ ଭିକ୍ଷା ନେବାକୁ ହେବ ତାହା ଟିକିଏ ବୁଝୁନାହଁ - ସେହିଯେ ମହାଦେଈ -ପିତାଙ୍କର ଦାସୀ - ପୁରୁଷୋତ୍ତମଙ୍କର ମା' - ତାହାରିଠାରୁ ଲଜ୍ଜାନାହିଁ ସାମନ୍ତ - ସେ ପ୍ରସ୍ତାବ ପୁଣି ଉଠାଉଛ ?

ନରସିଂହ— ତମେ ଯେତେ ଯାହା କୁହ ଭାଇ - ବୃଥା ଯୁଦ୍ଧରେ ମୋର ଆଉ ଇଚ୍ଛାନାହିଁ । ଆଉ ବଳ ମଧ୍ୟ ନାହିଁ - ସୈନ୍ୟ ମଧ୍ୟ ନାହାନ୍ତି ।

ବିକ୍ରମ— ହାଃ ହାଃ ଏତିକିରେ ଥକି ପଡ଼ିଲ ଭାଇ ? ଆଉ ବୃଥା ଯୁଦ୍ଧ କାହାକୁ କହୁଛ ? ଗଡ଼ର ରାଜତ୍ୱ ତୁମର କେତେଦିନ ସ୍ଥାୟୀ ହେବ ଭଲା କହିଲ ? ଜାଣନା - ଆମର ଏହି ଉତ୍କଳ ଦେଶ ଉପରେ କେତେ ରାଜ୍ୟର ଲୁବ୍ଧ ଦୃଷ୍ଟି - ଭିନ୍ନ ଭିନ୍ନ ରାଜ୍ୟ ହୋଇଗଲେ କିଏ କାହାକୁ ରଖିବ । ଫଳରେ ବିଦେଶୀ ଅଧିକାର ଅବଶ୍ୟମ୍ଭାବୀ । ସେଥିପାଇଁ ମୁଁ କହେଁ - ନିଜର ବଳ ଥରେ ନିଜେ କଷିନେବା ଦରକାର । ତୁମେ କ'ଣ ଜାଣନା ଅଚିରେ ତୁମକୁ ବିରାଟ ଯୁଦ୍ଧରେ ବ୍ରତୀ ହେବାକୁ ପଡ଼ିବ । ଜାଣନା -ନରସିଂହ - ସର୍ବପ୍ରଥମେ ଓଡ଼ିଆର କର୍ଣ୍ଣାଟ ସହିତ ସଂଘର୍ଷ ହେବ ଏବଂ ତାହା ମଧ୍ୟ ଅଦୂର ଭବିଷ୍ୟତରେ -

ନରସିଂହ— କର୍ଣ୍ଣାଟ ? କାଞ୍ଚିରାଜା ଯେ ଆମର ସହାୟତା କରୁଛନ୍ତି ।

ବିକ୍ରମ— ଏଇ ବୁଦ୍ଧି ନେଇ ତୁମେ ମନୁଷ୍ୟ ବୋଲି ଗର୍ବ କର - ନା ? ତୁମେ ଜାଣିନାହଁ - ବିଜୟନଗର ହିଁ ତୁମର ପ୍ରଥମ ଓ ପ୍ରଧାନ ଶତ୍ରୁ - ନରସିଂହରାଓର ଲୁବ୍ଧଦୃଷ୍ଟି ଉତ୍କଳ ଉପରେ କେତେ ତାହା ମୁଁ ଜାଣେ ? ତାଙ୍କଠାରୁ ସୈନ୍ୟ ସାହାଯ୍ୟ ଆଣିଛି ବୋଲି ତୁମକୁ ଆଶ୍ଚର୍ଯ୍ୟ ଲାଗୁଛି ତ ?

ନରସିଂହ— ଆଶ୍ଚର୍ଯ୍ୟ ହେଉନାହିଁ ଭାଇ । ଯଦି କାଞ୍ଚିରାଜାର ଏପରି ଅଭିସନ୍ଧି ଥାଏ - ତାହାହେଲେ ସେନା ସାହାଯ୍ୟର ଅଭିପ୍ରାୟ ସହଜରେ ଅନୁମେୟ ! ସେ ଉତ୍କଳ ସହିତ ଯୁଦ୍ଧର ଉପଲକ୍ଷ ଖୋଜୁଛି ନିଶ୍ଚୟ -

ବିକ୍ରମ— ଠିକ୍ ବୁଝିଚ - ଆଉ ଏ ଯୁଦ୍ଧ କରିବାରେ ମୋର ଉଦ୍ଦେଶ୍ୟ କ'ଣ ବୁଝିପାରୁ ନାହଁ ? ତୁମର କ'ଣ ସନ୍ଦେହ ହେଉଚି ? ମୁଁ ଖାଲି ଚାହେଁ ଭାଇ, ଥରେ ବିଧିମତେ ଯୁଦ୍ଧହେଉ - ଓଡ଼ିଆର ବଳ ଜଣାପଡୁ - ତାପରେ ଆମର ଯାହା ହେବାର ହେବ ! ତୁମେ କ'ଣ କିଛି ବୁଝ ! ଏ ଯୁଦ୍ଧ ବ୍ୟବସାୟୀ ଓଡ଼ିଆ ଜାତିଟା ବର୍ତ୍ତମାନ କ'ଣ ହେଲାଣି ଦେଖୁଛ ? ଯଥାସମ୍ଭବ ଅଳ୍ପ ଆୟାସରେ ଅଧିକ ଅର୍ଥୋପାର୍ଜନ ହେଲାଣି ତାହାର ଜୀବନର ଆଦର୍ଶ । ଏଣେ ସନାତନ ଧର୍ମର ପ୍ରବଞ୍ଚନା - ପ୍ରତିମା ପୂଜା ଓ ଜାତିଭେଦର ଆବର୍ଜନାରେ ଦେଶ ଏକାବେଳକେ ବିକଳାଙ୍ଗ ହୋଇପଡ଼ିଲାଣି । ଉତ୍କଳର ଦିଗ୍‌ବିଜୟୀ ସେନା ବଣିକ ବୃତ୍ତିରେ ତା'ର

ବୀରତ୍ୱ ଜଳାଞ୍ଜଳି - ଆଉ ତା'ର ଅନ୍ଧରାଜା - ସେ ମଧ୍ୟ ତରବାରୀ ପରିବର୍ତ୍ତରେ ଭିକ୍ଷୁଦଣ୍ଡ - ରାଜ୍ୟଦଣ୍ଡ ପରିବର୍ତ୍ତରେ ଅଶ୍ରୁଭାଣ୍ଡ ଆଶ୍ରୟ କରି ରାଜୋଚିତ ସଦା ସତର୍କ ଦୃଷ୍ଟି ପରିବର୍ତ୍ତେ ଶିବନେତ୍ର ହୋଇ ବସିଛି । ବ୍ୟବସାୟ, ବାଣିଜ୍ୟ, କଳାର ଉତ୍କର୍ଷ— ଏ ସମସ୍ତ ଜାତୀୟ ଜୀବନର ଐଶ୍ୱର୍ଯ୍ୟ ଠିକ୍ କଥା । କିନ୍ତୁ ଜାତୀୟ ଜୀବନର ବର୍ମ ଯେ କ୍ରମେ କ୍ରମେ ଜାତିର ଦେହରୁ ଜୀର୍ଣ୍ଣବସ୍ତ୍ର ପ୍ରାୟ ଖସି ପଡ଼ୁଛି ! ଏକନିଷ୍ଠ ଭାଗ୍ୟବାଦିତାରୁ ଉପୁନ୍ନ ଏହି ଜଡ଼ତା ଥରେ ନ ଭାଙ୍ଗିଲେ ଓଡ଼ିଆ କେଉଁ ଦିନଯେ ପରାଧୀନ ହୋଇପଡ଼ିବ, ତା'ର ଠିକଣା ନାହିଁ । ଆଉ ତେମେ କହୁଚ କଣନା ଭଲପିଲାଙ୍କ ପରି ପୁରୁଷୋତ୍ତମ ଦେବଙ୍କଠାରେ ଶରଣ ପଶିବା - ଏବଂ ନିଜର ଖଣ୍ଡିଏ ଖଣ୍ଡିଏ ଗଡ଼ ନେଇ ସ୍ୱଚ୍ଛନ୍ଦ ଆରାମରେ ରହିବା ! ଛି, ଛି, ଭାଇ - ଆମ୍ଭେମାନେ ଯଦି ଦେଶର ପରିବର୍ତ୍ତନର ଚେଷ୍ଟା ନ କରିବା - ଆଉ କରିବ କିଏ ?

ନରସିଂହ— ଯଥାର୍ଥ ରାଜା । ମୋର ଭୁଲ ହୋଇଛି ଭାଇ । ମୋତେ କ୍ଷମାକର । ମୋତେ ତୁମେ ଯେପରି କହିବ, ମୁଁ ଏଣିକି ସେହିପରି ଚଳିବି ।

ବିକ୍ରମ— ଏହିତ ଠିକ୍ ମୋ ଭାଇ ପରି କଥା ! ଦେଖ - ନରସିଂହ ! ମୁଁ ଯାଉଛି - କାଞ୍ଚିରାଜାଠାରୁ ଆହୁରି କିଛି ସାହାଯ୍ୟ ଭିକ୍ଷା କରିବାକୁ । ତୁମେ ଏଇଠୁ ଫେରିଯା - ମୁଁ ସନ୍ଧ୍ୟାସୁଦ୍ଧା ଫେରିବି - ତୁମେ ନଦୀ ଏପଟେ ଲୋକବାକ ଓ ନୌକା ନେଇ ଠିକ୍ ଥିବ - କ'ଣ ନେଇ ଫେରିବି କିଛି ଜାଣେନା -

ନରସିଂହ— ଅବଶ୍ୟ ଦୁର୍ଗର ଖାଦ୍ୟକଥା ଭୁଲିବ ନାହିଁ । ଜୟ ଜୟ । (ନତହେବା)

ବିକ୍ରମ— ଜୟ ମା' ଜନ୍ମଭୂମି - ଆସ ଭାଇ ! (ନରସିଂହଙ୍କ ପ୍ରସ୍ଥାନ)

ସମସ୍ତଙ୍କ ଚକ୍ଷୁରେ ଧୂଳି ଦେଇଛି । ଏହି ଧର କାଞ୍ଚିରାଜ ସଙ୍ଗେ ମିଳିତ ହୋଇ ପାରିଲେ ଶେଷ ମୀମାଂସା ହୋଇଯିବ । (ଭାବି) ଉଃ ଧୂର୍ତ୍ତ କାଞ୍ଚିରାଜ । ଏତେ ନିକଟରେ ରହି ଖାଲି ମଜା ଦେଖୁଛି । ଛି, ଛି କେଉଁ ମୁହଁରେ ପୁଣି ତା'ର ସାହାଯ୍ୟଭିକ୍ଷା କରିବି ? ତା'ର ଦଶହଜାର ସୈନ୍ୟ ଯେ ମୁଁ ନଷ୍ଟ କରୁଛି । କିନ୍ତୁ - କିନ୍ତୁ - ମୁଁ ଯେ ବହୁ କଷ୍ଟରେ

ଖେମଣ୍ଡି ଗଡ଼ ରକ୍ଷାକରି ଆସିଲି - ଆଉ ସାମାନ୍ୟ କେତେ ହଜାର ସୈନ୍ୟ ସାହାଯ୍ୟ ପାଇଁ କ'ଣ ମୋର ସବୁଚେଷ୍ଟା—ସବୁଶ୍ରମ ବ୍ୟର୍ଥ ହୋଇଯିବ ? ନା-ନା-ଏହି ଶେଷ ପରୀକ୍ଷା - ଶେଷ ଉଦ୍ୟମ ମୋର - ଏଥର କାଞ୍ଚିରାଜାର ଚରଣଧରି ଭିକ୍ଷା କରିବି । ଦେଖେ, ସେ ଲୁବ୍ଧ ଶ୍ୱେନର କି ଇଚ୍ଛା ! (ଭାବି) ଯଦି ବ୍ୟର୍ଥହୁଏ - ଯଦି ନିଷ୍ଫଳ ହୁଏ - ତା' ହେଲେ - ତାହେଲେ (ନୈରାଶ୍ୟ ଭାବାଭିନୟ ପରେ ହଠାତ୍ ଉଦ୍ଦୀପ୍ତ ହୋଇ) - ଉଃ - ବିକ୍ରମ ଆଜି ପରାଜିତ ବିଜୟୀ ପୁରୁଷୋତ୍ତମ ହସ୍ତରେ ସ୍ୱଦୁର୍ଗରେ ଅବରୁଦ୍ଧ— ପୁଣି ଶତ୍ରୁଭୟରେ ସାମାନ୍ୟ ତସ୍କର ପରି - ନା ଏ ଅସହ୍ୟ - ଅସହ୍ୟ-ଅସହ୍ୟ - ଆଉ ପଦ୍ମାବତୀ । ତାକୁ ମୋତେ ଯେକୌଣସି ମତେ ପାଇବାକୁ ହେବ । ବିବାହରେ ଯଦି କାଞ୍ଚିରାଜା ଅସମ୍ମତ ହୁଏ - ତାହେଲେ - ଉଃ (ରହି) ପୁଣି ଶୁଣୁଛି ପୁରୁଷୋତ୍ତମର ବୁଦ୍ଧିମତୀ ମାତା କାଞ୍ଚିରାଜକନ୍ୟା ସହିତ ପୁତ୍ରର ବିବାହ ପ୍ରସ୍ତାବ କରି ଲୋକ ପଠାଇ ସାରିଛି । ମୋର ମୁଖର ଗ୍ରାସ କ'ଣ - ନା-ନା-ମୁଁ ଏହା କଦାପି ହେବାକୁ ଦେବିନାହିଁ - କଦାପି ନୁହେଁ । (ବିପରୀତ ଦିଗରେ ନିଷ୍କ୍ରାନ୍ତ)

(ସେହି ଦିଗରୁ ବୈଷ୍ଣବୀର ପୁନଃ ଶରସନ୍ଧାନ କରୁଥିବା ନୃତ୍ୟରତ ମଦନ ଓ ରତି ସହ ପ୍ରବେଶ ଓ ବିପରୀତ ଦିଗରେ ଦୁହିଁଙ୍କୁ ଅନ୍ତରାଳରେ ସ୍ଥାପନ ଓ ଗୀତ)

''କିଏ ନେବ ଏ ପଦ୍ମ କଢ଼ି -
ଆସରେ ଚିହ୍ନରା ଗ୍ରାହକେ ଚଳି
ସୁନାପଦ୍ମକଢ଼ି ବୁଲାଇ ବିକୁଛି
ଅମୂଲ ମୂଲ କେ ପାରିବ କଳି-
ଏ ଫୁଲକୁ ଯେହୁଁ ଛୁଇଁବ
ସେ ମୋ ପଛେ ପଛେ ଧାଇଁବ
ଦୂରକୁ ଚାହିଁଲେ ଦୂରେ ଚାହିଁଥିବ-
ପାଖତା ପାଖରେ ଥିବଟି ପଡ଼ି'' ।

(ପରେ ପ୍ରସ୍ଥାନ । ଶିକାରୀ ବେଶରେ ରଙ୍ଗରାଓ ଓ ପୁରୁଷୋତ୍ତମ ଦେବଙ୍କର ବନ ମଧ୍ୟରୁ ପ୍ରବେଶ)

ପୁରୁ— ଅଧିକ କହନା ଭାଇ - ସେ ସ୍ମୃତି ଜଗାଅ ନାହିଁ, ବୃଥା ଭାଳି ହେବା ସିନା ! ମୁଁ ତ ତାଙ୍କୁ ଚିହ୍ନେନା କି ଜାଣେନା - ତଥାପି ଏ ହୃଦୟରେ ସେ ଛବି (ମୌନ)

ରଙ୍ଗରାଓ— ଛାଡ଼ ସଖା ( ଦୀର୍ଘ ନିଶ୍ୱାସ) ଜାଣିଲେ ଚିହ୍ନିଲେ କ'ଣ କରିଥା'ନ୍ତେ - ନ ଜାଣିଛ ଭଲ ହୋଇଛି - ରକ୍ଷା ପାଇଛ - ନ ହେଲେ ତୁମେ କିଏ ନା ଯୁଦ୍ଧ କିଏ - ସେ ଯାହା ହେଉ ଭାଇ - କାଲି ଯେଉଁ ଅସୀମ ସାହସର ପରିଚୟ ଦେଲ ତାହା ମୋର ଚିରଦିନ ପାଇଁ ସ୍ମରଣ ଥିବ -

ପୁରୁ— ରଙ୍ଗ- ଭାଇ ମୋର - ତୁମେ କାଲି କ'ଣ କମ ଯୁଦ୍ଧ କରିଛ - ସଖା, ତମର ଏ କ୍ଷୀଣ ଦେହରେ ଏତେ ଶକ୍ତି ଧାରଣ କର ! - କାଲିର ଯୁଦ୍ଧ ନ ଦେଖିଥିଲେ - ମୁଁ ଆଦୌ ବିଶ୍ୱାସ କରିନଥା'ନ୍ତି । କିନ୍ତୁ ମୋର ମାତାଙ୍କ ପ୍ରେରିତ ବାହାମନୀ ସେନା ନ ପହଞ୍ଚିଥିଲେ କାଲି ଯୁଦ୍ଧରେ ଆମ୍ଭମାନଙ୍କର ନିଶ୍ଚୟ ବିନାଶ ହୋଇଥା'ନ୍ତା - ସେମାନେ ଯେପରି ମହାଭାରତର ନାରାୟଣୀ ସେନା - ଦେବ ପ୍ରେରିତ ! ମାଲୋ - ତୋ ଚରଣରେ ମୋର କୋଟି କୋଟି ନମସ୍କାର ।

ରଙ୍ଗରାଓ— ଠିକ୍ କଥା ସଖା - କାଞ୍ଚି ସେନାଙ୍କୁ ଏତେ ଅକ୍ଲେଶରେ ପରାଜିତ କରିବା ଆମର ଅପ୍ରସ୍ତୁତ ଅବସ୍ଥାରେ ମୋତେ ଆଜି ବିସ୍ମୃତ ଲାଗୁଛି । କିନ୍ତୁ ବାହମନୀ ସେନା ଆମ୍ଭ ପକ୍ଷରେ ଯୁଦ୍ଧ କରିବା ଅର୍ଥ ?

ପୁରୁ— ସଖା, ଜାଣିନା - ବାହାମନୀର ଲୁବ୍ଧ ଦୃଷ୍ଟି ଉତ୍କଳ ଉପରେ ଯେତେ ପଡ଼ିଛି - ବିଜୟନଗର ଉପରେ ତାହାର ଶତଗୁଣ - । ବିଶେଷତଃ କାଞ୍ଚି ରାଜକୁମାରୀ ପଦ୍ମାବତୀଙ୍କ ରୂପଖ୍ୟାତି ଭାରତର ସମୁଦାୟ ରାଜନ୍ୟମଣ୍ଡଳୀରେ ବିଜୟନଗରର ଆସନକୁ ବହୁ ଉଚ୍ଚକୁ ଉଠାଇ ଦେଇଛି - ବିଶେଷତଃ ମୁସଲମାନ ସୁଲତାନର ସୌନ୍ଦର୍ଯ୍ୟ ଉପାସନା କଥାତ ତୁମକୁ ଅବିଦିତ ନାହିଁ ସଖା ।

ରଙ୍ଗରାଓ— ହଁ ମୁଁ ଜାଣେ - କିନ୍ତୁ ଗୋଟିଏ ଶତ୍ରୁ ସଙ୍ଗରେ ଯୁଦ୍ଧରେ ବ୍ୟାପୃତ ହେବାର ଅଭିସନ୍ଧି କ'ଣ ?

ପୁରୁ— ହାଁ, ହାଁ ବାହାମନୀ ସୁଲତାନ କାଞ୍ଚୀ ସହିତ ଯୁଦ୍ଧ କରିବାର ଗୋଟିଏ ଉପଲକ୍ଷ ଖୋଜୁଛନ୍ତି ବୋଧହୁଏ - ଏ ଯୁଦ୍ଧରେ କାଞ୍ଚୀର ସେନା ଯୋଗ ଦେଇଥିବାରୁ ସୁଲତାନ କାଞ୍ଚୀଠାରୁ କ୍ଷତିପୂରଣ ଦାବୀ କରିପାରେ - ଆମେ ମଧ୍ୟ ପାରୁ -

ରଙ୍ଗରାଓ— ହଁ, ତା' ତ ଅବଶ୍ୟ - ଯା' ହେଉ ଭାଇ - ବାହାମନୀ ସେନା ଆମର ବଡ଼ ଅସମୟରେ ସାହାଯ୍ୟ ହୋଇଛି । କାଲି ଯାହାସବୁ ସମ୍ମୁଖରେ ଘଟିଗଲା ଆଜି ତାହା ବିଚିତ୍ର ମନେ ହେଉଛି - କିନ୍ତୁ ସଖା - ବିକ୍ରମ ଦେବ ଦୁର୍ଗରକ୍ଷା କରିବ - ଆମେ, ଅବରୋଧ କରିବା ଏହିପରି କଥା ହେଲା । ସେମାନେ ଆକ୍ରମଣ କରିବେ ମୋର ଏ ଧାରଣା ପର୍ଯ୍ୟନ୍ତ ନଥିଲା ।

ପୁରୁ— ଯାହା ହେଉ, ତମ କୃପାରୁ ସେମାନେ ଲାଞ୍ଛିତ, ପରାଭୂତ ହୋଇ ପୃଷ୍ଠ ପ୍ରଦର୍ଶନ କରିଛନ୍ତି - ଆଉ ଚିନ୍ତା କ'ଣ ? ଖେମଣ୍ଡି ଦୁର୍ଗ ଅଧିକାର କରିବାକୁ ଟିକିଏ ସମୟ ଲାଗିପାରେ । କାରଣ ବୃଥା ନରହତ୍ୟା ମୋତେ ଆଉ ଭଲ ଲାଗୁନାହିଁ । ମୁଁ ସେମାନଙ୍କୁ କେବଳ ଅବରୋଧ ରଖିଛାଡ଼ିବି । ଖାଦ୍ୟାଭାବ ଘଟିଲେ ସେମାନେ ସ୍ୱତଃ ଆତ୍ମସମର୍ପଣ କରିବେ ।

ରଙ୍ଗରାଓ— ତେବେ କାଞ୍ଚୀକୁ ଯାହା ଟିକିଏ ଭୟ ନରସିଂହ ରାଓ ଯଦି ପୁଣି ସେନା ଯୋଗାନ୍ତି, ତାହାହେଲେ ପୁଣି ଯୁଦ୍ଧହେବ ।

ପୁରୁ— ତା' ହେଲେ କିନ୍ତୁ ତତ୍‌ପୂର୍ବରୁ ଖେମଣ୍ଡି ଗଡ଼ ଆକ୍ରମଣ କରି ଅଧିକାର କରି ବସିବାକୁ ହେବ । (ଚମକି) ସଖା ଆମ୍ଭେମାନେତ ଅନେକ ଦୂର ଆସିଲେଣି । ଚାଲ ଦୁହେଁ ଦୁଇଆଡ଼େ ଯାଇ ଶିକାର ଚେଷ୍ଟା କରିବା - ଏଟା କାହା ରାଜ୍ୟ ସଖା ?

ରଙ୍ଗରାଓ— ମୁଁ ତ ଠିକ୍ କରିପାରୁନାହିଁ । କୃଷ୍ଣାର ଦକ୍ଷିଣାଞ୍ଚଳ କାଞ୍ଚୀରାଜ୍ୟର ସୀମା - ଆମେ ଭୁଲକ୍ରମେ ଶତ୍ରୁରାଜ୍ୟରେ ପଶିନାହୁଁତ ?

ପୁରୁ— କେଜାଣି ଭାଇ ତୁମେ ଜାଣ !

ରଙ୍ଗରାଓ— ଆଉ ଟିକିଏ ଆଗେଇ ଚାଲ - ଏ ସ୍ଥାନଟା ଠିକ୍ ମୋର ଅପରିଚିତ ପରିତ ଲାଗୁନାହିଁ । ହଁ, ହଁ, ଠିକ୍ - ଆଉ ଅଳ୍ପ ଦୂରରେ ହରିଣମାରୀ ଝର - ଯାହା କଥା ମୁଁ କହୁଥିଲି । ସେହି ସ୍ଥାନ ମୋର ଓ କାଞ୍ଚୀରାଜାର ସୀମା । ଆଉ ଚିନ୍ତା ନାହିଁ ସଖା - ଏହି ଗଛ ମୂଳରେ ଟିକିଏ ବସ । ପରେ ଦୁହେଁ ଝର ଦିଗକୁ ଯିବା । (ବସିବା) ଉଃ । ଏ ପ୍ରଜାପତିଟା ବଡ଼ ହଟହଟା କଲା (ମୁହଁ ତୁଣ୍ଡରେ ହାତମାରି ତଡ଼ିଦେବା)

ପୁରୁ— (ହସି) ସଖା ଏଥର ତୁମର ନିଶ୍ଚୟ ସ୍ତ୍ରୀ ଲାଭ ଲେଖୁଛି ।

ରଙ୍ଗରାଓ— ଛି, ସଖା - ଫେର୍, ସ୍ତ୍ରୀ ନାମ ପୁଣି ମୋ ଆଗରେ ଧରିଲ ?

ପୁରୁ— କନକ ଗୌରୀ, ବିଧାମ୍ବରୀ, କମଳନେତ୍ରୀ ଏପରି କାହାରି ନାମତ ଧରିନାହିଁ । ଖାଲି ସ୍ତ୍ରୀ ନାମରେ ଏତେ ବିଚଳିତ କିଁପାଁ ? ଜଗନ୍ନାଥଙ୍କ କୃପାରୁ ଯେଉଁଦିନ ପ୍ରଜାପତିଙ୍କର କୃପାହେବ-

ରଙ୍ଗରାଓ— ରକ୍ଷାକର ସଖା - ସ୍ତ୍ରୀ ନାମ ଧରିଲ - ପୁଣି ଜଗନ୍ନାଥ ନାମ - ନା- ମୋ ସହ୍ୟ ଗୁଣର ସୀମା -

ପୁରୁ— କାହିଁକି ସଖା - ଜଗନ୍ନାଥ ନାମରେ ବିଚଳିତ ହେବାର କାରଣ - ଓହୋଃ, ତୁମେ ପରା ମାନନାହିଁ । ମୁଁ କିନ୍ତୁ ସର୍ବତ୍ରହିଁ ତାଙ୍କୁ ଦେଖେ - ଏହି ଗଛପତ୍ର, ଶ୍ୟାମା ଧରଣୀ, ନିର୍ମଳ ଆକାଶ ସର୍ବତ୍ର -

ରଙ୍ଗରାଓ— ମୁଁ ସେଇତା କହୁଥିଲି ପରା । ହାୟ ସଖା, ତୁମେ ଯଦି ମୋ ପରି ହୋଇଥା'ନ୍ତ-

ପୁରୁ— ଅର୍ଥାତ୍ ?

ରଙ୍ଗରାଓ— ଅର୍ଥାତ୍, ପ୍ରକୃତିର ସମୁଦାୟ ପଦାର୍ଥରେ ଯଦି ଗୋଟିଏ ଗୋଟିଏ ଦେବତା ଦେଖୁ ନଥା'ନ୍ତ । ଜଗନ୍ନାଥ ମନ୍ଦିରକୁ ବଡ଼ ଗୋଟିଏ ଶିଳ୍ପକାର୍ଯ୍ୟ ବୋଲି ମୁଁ ଯେପରି ଦେଖେ । ଜଗନ୍ନାଥକୁ ମୁଁ ଯେପରି କାହାର ପ୍ରତିମା ବୋଲି ନ ଭାବେ -

ପୁରୁ— ବୁଝାଗଲା ନାହିଁ ସଖା !

ରଙ୍ଗରାଓ— ଆହା, ବୁଝାଯିବ କିପରି - ଜଗନ୍ନାଥ କାହାର ପ୍ରତିମା ଭଲା କହିଲ ?

ପୁରୁ— କାହାର ପ୍ରତିମା ? ପ୍ରତିମା ?

ରଙ୍ଗରାଓ— ହାଃ, ହାଃ, ସଖା, ସେଇଠିତ ଗୋଳମାଳ । କାହାର ପ୍ରତିମା, ଯଦି କାହାର ପ୍ରତିମା ନୁହେଁ ତା' ହେଲେ ଜଡ଼କାଷ୍ଠ ମୂର୍ତ୍ତିମାତ୍ର - ମାନ-

ପୁରୁ— ଏଁ - କାଷ୍ଠମୂର୍ତ୍ତି ମାତ୍ର - ଏଗୁଡ଼ା କ'ଣ କହୁଛ ସଖା - ପରିହାସ ରଖ -

ରଙ୍ଗରାଓ— ପରିହାସ ନୁହେଁ ସଖା -ପରିହାସ ନୁହେଁ । ଜଗନ୍ନାଥ ବିଗ୍ରହ ଯଦି କାହାରି ପ୍ରତିମା କିମ୍ବା କାହାରି ବିଗ୍ରହ ନୁହେଁ - ତା'ହେଲେ ସେ କିଛି ନୁହେଁ । ମୁଁ ଜାଣେନା- କାହାର ପ୍ରତିମା-ତେଣୁ ସେ ଯାହାର ପ୍ରତିମା ସେ ଯେତେଦିନଯାଏ ଅପ୍ରକାଶ ବା ଅପ୍ରକଟ ରହୁଛି - ମୁଁ ସେତେଦିନଯାଏ ଖାଲି ବିଗ୍ରହକୁ ମାନିବାକୁ ପ୍ରସ୍ତୁତ ନୁହେଁ ।

ପୁରୁ— ତେବେ ତୁମେ କାହାକୁ ମାନ -କ'ଣ ମାନ ? ତୁମ୍ଭେ ପରା ସଂସ୍କୃତ ଶାସ୍ତ୍ର ଅନେକ ପଢ଼ିଛ - ନୁହେଁ ।

ରଙ୍ଗରାଓ— ମୁଁ ମାନେଁ କେବଳ ମୋର ଚକ୍ଷୁ, କର୍ଣ୍ଣ, ନାସିକା, ରସନାଦି ଇନ୍ଦ୍ରିୟ - ଆଉ ଯଦି କିଛି ମନେ ନ କରିବ - କହିବି ମୋତେ - ଆଉ ତୁମକୁ ?

ପୁରୁ— ହାଃ, ହାଃ, ସଖା ? ତମ ରହସ୍ୟ ଶୁଣିଲେ ପୁରର ନାରୀମାନେ ତୁମକୁ ଭଲ ପୁରସ୍କାର ଦିଅନ୍ତେ ଏକା ?

ରଙ୍ଗରାଓ— ନାରୀମାନେ ? ମୋର ଦଣ୍ଡ ପୁରସ୍କାର କ'ଣ ତମେ ଭାବିଛ - ନାରୀମାନଙ୍କ ହାତରେ ଅଛି - ସେ ସୌଭାଗ୍ୟରୁ ସଖା ମୁଁ ବି ତମପରି ବଞ୍ଚିତ । ନାରୀ ଜାତିଟା କେବଳ ମୋର ନିୟମରୁ ବାହାର - ମୁଁ ଦେଖୁଛି - ହଁ ସଖା - ନାରୀର ବାହାର ସହିତ ଭିତରର ଆଦୌ ମେଳ ନାହିଁ - ସଖା ଆଦୌ ନାହିଁ - ଭିତରେ ଏକ, ବାହାରେ ଏକାବେଳକେ ଅନ୍ୟ ପ୍ରକାର - ଅତଏବ ସେମାନେ - ସେମାନେ ମୋ ସଂସାରର ବାହାରେ ।

ପୁରୁ— ଅର୍ଥାତ୍ - ତମ ଘରେ ସେମାନଙ୍କର ସ୍ଥାନ ନାହିଁ । ଏଇଆତ ? ବାହାରେ ସେମାନେ ଯେଉଁଠି ସେହିଠାରେ ତମର ସ୍ଥାନ, ନୁହେଁ ?

ରଙ୍ଗରାଓ— (ହସି) ଛି ସଖା ପରିହାସ କରନା । ସତ୍ୟ, ସତ୍ୟ ମୁଁ ଏଥର ନାରୀମାନଙ୍କୁ ଦୂରୁ ଜୁହାର କରି ରହିଲିଣି ।

ପୁରୁ— କେତେ ଦିନୁ ସଖା - କାହିଁକି - ତମର ସେ କନକାଞ୍ଚି କୁଆଡ଼େ ଗଲେ କି ?

ରଙ୍ଗରାଓ— ସଖା, କଟା ଘା'ରେ ଲୁଣ ଦିଅନାହିଁ, କହି ଦେଉଛି, ନହେଲେ ଘୋର ଅନିଷ୍ଟ ହେବ - ହଁ କୁରୁକ୍ଷେତ୍ର ହେବ - ଲଙ୍କାକାଣ୍ଡ ହେବ - ହୁଁଃ -

ପୁରୁ— ସଖା ! ସ୍ଥିର ହୁଅ, ସ୍ଥିର ହୁଅ - ଆଜି ସଖାଙ୍କେ ତେମେ ମତେ ଉପଦେଶ ଦେଉଥିଲଟି - ଛି -

ରଙ୍ଗରାଓ— ସଖା, ପୁଣି ସେ ବିଶ୍ୱାସଘାତିନୀ ପ୍ରସଙ୍ଗ - ତା' ନାମ ପର୍ଯ୍ୟନ୍ତ ବୁଝିଲ - ଯେପରି ମୋ ଆଗେ ନ ଉଠେ - ସେ ଯାଇଁ ମୋର - ଆଜନ୍ମ ଶତ୍ରୁ । କାଞ୍ଚିରାଜ ନଅରରେ ପୁଣି ଆଶ୍ରୟ ନେଇଅଛି । ନାରୀ ଜାତିଟା - ନିହାତି, ନିହାତି ଇଃ -

ପୁରୁ— (ହସି) ନିହାତି କ'ଣ କହୁନ ସଖା ?

ରଙ୍ଗରାଓ— କ'ଣ କହିବି ସଖା - ଭାଷାର ଅଭାବ, ମୋର ସମସ୍ତ ହୃଦୟ ଯଦି ଗୋଟାଏ ଶବ୍ଦରେ ପରିଣତ ହୋଇ ବାହାରି ଆସନ୍ତା ତା'ହେଲେ ଯାଇଁ ନାରୀ ଜାତିର ଯୋଗ୍ୟ ଆଖ୍ୟା ହେଲେ ହୁଅନ୍ତା - କିନ୍ତୁ ସାବଧାନ - ସଖା, ତୁମେ ଯେଉଁ ମାନସୀ ପ୍ରତିମା କଥା କହୁଥିଲ ତାଙ୍କୁ ସେହିପରି ତାମସୀ ରଖିଥାଅ - ନହେଲେ ଜୀବନ୍ତ ରାକ୍ଷସୀ ହୋଇ -

ପୁରୁ— ଛି, ସଖା, ଏ ଅଯଥା ଆକ୍ରୋଶ । (ସ୍ୱଗତ) ଆହାକି ଲାବଣ୍ୟମୟୀ ମୂର୍ତ୍ତି - କି ଲଳିତ ଭଙ୍ଗୀ । କି ଉନ୍ମାଦିନୀ ଦୃଷ୍ଟି - ଆଉ କି କେବେ ଦେଖା ପାଇବି ନାହିଁ ?

ରଙ୍ଗରାଓ— ସାବଧାନ, ସାବଧାନ — ନ ହେଲେ ଅବଧାନ ।

(ନମସ୍କାର କରୁ କରୁ ପ୍ରସ୍ଥାନୋଦ୍ୟତ)

ପୁରୁ— (ଧରି) ଏଁ, ଏଁ, ସଖା, ପାଗଳ ତୁମେ ?

ରଙ୍ଗରାଓ— ନାହିଁ ସଖା, ମୋ ଉପଦେଶ ମନେରଖି କାର୍ଯ୍ୟକର ।

ପୁରୁ— ଯଥା -

ରଙ୍ଗରାଓ— ମନୁଷ୍ୟକୁ କେବେ ବିଶ୍ୱାସ କରିବ ନାହିଁ - ବିଶେଷତଃ ମନୁଷ୍ୟମାନଙ୍କ ମଧ୍ୟରୁ - ଯେଉଁମାନେ ନାରୀ ନାମରେ ଅଭିହିତ । ଭଗବାନଙ୍କୁ ନ ମାନି କୌଣସି ଗୋଟିଏ ଅଜ୍ଞାତ ଶକ୍ତିକୁ ମାନିବ ବରଂ ପୁଣ୍ୟର ପାଖ ପଶିବ ନାହିଁ, କାରଣ ତା' ରଙ୍ଗଟା ଧଳା - ଏତେ ସଫାରେ ମଳି ଲାଗିବାର ସମ୍ଭାବନା ଖୁବ୍ ବେଶି । ଯଦି ପ୍ରେମରେ ପଡ଼ ତା'ହେଲେ ଆନନ୍ଦ ପାଇବାର ଆଶା ବୃଥା ଯଦି ଘୃଣାକର - ତା' ହେଲେ ଶାନ୍ତି ପାଇବାର ଆଶା ନାସ୍ତି - ଅତଏବ ତାକୁ ଦୂରୁ ଜୁହାର । ସଖା - ଏସବୁ ପକ୍କା କଥା - ନିଜେ ଅଙ୍ଗେ ନିଭେଇ ଏ ତଥ୍ୟ ପାଇଛି ।

ପୁରୁ— ସଖା ପାଗଳ ତୁମେ - ତୁମେ ପ୍ରେମରେ ପଡ଼ି ଆନନ୍ଦ ପାଉଁ ପାଉଁ ହଠାତ୍ କିଛି ପ୍ରତିବନ୍ଧକ ଘଟିଛି ନିଶ୍ଚୟ । ତା' ନହେଲେ ମୋର ରଙ୍ଗରାଓ ପରା ପ୍ରେମିକ ସଖାକି କେବେ ଏତେ ଦୂର ନାରୀ-ଦ୍ୱେଷୀ ହୋଇପଡ଼ିଥା'ନ୍ତା । ମୋର ଗୋଟିଏ ଛୋଟ କଥା ଶୁଣିବ ସଖା ? ପ୍ରେମରେ ବ୍ୟର୍ଥତା ନ ଆସିବାଯାଏ ପରିପୂର୍ଣ୍ଣ ରସର ଆସ୍ୱାଦ ମିଳେନାହିଁ। ଜଗନ୍ନାଥ ଯଦି ବିଚ୍ଛେଦ ଘଟାଇଥା'ନ୍ତି - ସେ ତୁମରି ମଙ୍ଗଳ ପାଇଁ ଜାଣିଥାଅ । ବର୍ତ୍ତମାନ ତୁମେ ବ୍ୟର୍ଥତାର ଜ୍ୱାଳାରେ ବାହାର ଇନ୍ଦ୍ରିୟ ଦେଇ କନକଙ୍କୁ ଗ୍ରହଣ କରିବାକୁ ଅନିଚ୍ଛୁକ—କିନ୍ତୁ ଭିତରେ ଟିକିଏ ଭଲକରି ଦେଖିଲ - ତାଙ୍କରି ଛବିଟି ଏକ ଦଣ୍ଡ ପାଇଁ ତୁମ ମନରୁ ଅନ୍ତର ହୋଇ ପାରିଛି ? ମୋ କଥା ଶୁଣ - ଶୀଘ୍ର କନକାଙ୍ଗୀଙ୍କୁ ଆଣି ବିବାହ କରିପକାଅ -

ରଙ୍ଗରାଓ— (କାନରେ ହାତଦେଇ) ରକ୍ଷାକର - ସଖା - ରକ୍ଷାକର ମୁଁ ଆଉ ତମ କଥା ଶୁଣିବି ନାହିଁ ।

(ପାର୍ଶ୍ୱରୁ ମଦନଙ୍କର ଶର ସନ୍ଧାନ)

ପୁରୁ— (ଅର୍ଦ୍ଧ ସ୍ୱଗତ) ସଖାଙ୍କ ହୃଦୟ ପ୍ରେମରେ ଢ଼ଳ ଢ଼ଳ ହେଉଛି । ଉଦାର ଯୁବକ - ବୀର ଯୁବକ - ଏ ତୁମ୍ଭର ସ୍ୱରୂପ ନୁହେଁ । କାହିଁକି ବୃଥାରେ ଅନୁଭବୀ ବନ୍ଧୁଙ୍କୁ ତୁମର ପ୍ରତାରଣା କରୁଛ । ତାହା ନିଜ ଅବସ୍ଥା ଯଦି ଥରେ ବୁଝି ଦେଖନ୍ତ - ହାୟ - ସେ ଛବିକି କେବେ ଏ ହୃଦୟ ପଟରୁ ଲିଭି ପାରିବି - କିଏ ସେ ମୋହିନୀ - ସେହି ଅଗୁଣ ସ୍ତମ୍ଭ ନିକଟରେ ଥରେ ମାତ୍ର ଯାହାର ଚକିତ ଚାହାଣୀ ଗୋଟିକରେ - ଏ ହୃଦୟଟାକୁ ତା'ରି ଚରଣତଳେ ଉପହାର ଦେଇ ବସିଲି - ଏ ଜୀବନରେ କ'ଣ ଥରେ ପରିଚୟ ପର୍ଯ୍ୟନ୍ତ ମିଳିବ ନାହିଁ(ମଦନ ଶରସନ୍ଧାନ କରିବା ଓ ପୁନଶ୍ଚ ପ୍ରଜାପତି ଦିହିଁଙ୍କ ଉପରେ ବସିବା)

ରଙ୍ଗରାଓ— ସଖା - ସଖା - ହେଇଟି ଗୋଟାଏ ଜନ୍ତୁ ଖସ୍ ଖସ୍ ହୋଇ ବାହାରି ଗଲାନା ? ଶୁଭିଲା ନାହିଁ ତୁମକୁ ? ତମେ ସେପଟେ ଯାଅ !

ପୁରୁ— ଆଚ୍ଛା - ସନ୍ଧ୍ୟା ପୂର୍ବରୁ ଏହିଠାରେ ଦେଖାହେବ ।

(ଶିଙ୍ଗା ଦେଖାଇବା) (ଅନ୍ୟଦିଗରେ ପ୍ରସ୍ଥାନ)

(ବ୍ୟସ୍ତ ହୋଇ ଜୟନ୍ତ ରାଓର ପ୍ରବେଶ ବିକ୍ରମ ଯାଇଥିବା ଦିଗରୁ)

ଜୟନ୍ତ— (ଚାରିଆଡ଼କୁ ଚାହିଁ)

କାହିଁ ଏଠାରେବିତ କିଛି ସ୍ୱର ଶବ୍ଦ ନାହିଁ ।ହରିଣମାରୀ ଝର ବା କେଉଁଆଡ଼େ ? ମୁଁ କ'ଣ ବଣା ହେଲି ନା କ'ଣ ? ଉଃ- କି ଦୁର୍ଗମ ବନ - ଏଥିରେ ମୋର ଦିଗ୍‌ଭ୍ରମ ଘଟୁଛି - ଆଉ ପଦ୍ମାର ସାହସ ଦେଖ - ସେ ଖେମଣ୍ଡି ଜେମାଙ୍କ ସାଙ୍ଗରେ ଏକାରେ ଏହି ଘୋର ଅରଣ୍ୟ ମଧ୍ୟରେ ବିଚରଣ କରୁଛି । ମହାରାଜଙ୍କ ପାଷାଣ ହୃଦୟରେ ମଧ୍ୟ ଏ'କି କୋମଳତା - ବିନା ପ୍ରହରୀରେ ଏ ଜଙ୍ଗଲକୁ ବାଳିକାଗୁଡ଼ିକୁ ଛାଡ଼ି ଦେଲେ । ପଦ୍ମାଙ୍କୁ ସେ ଏତେ ଭଲ ପାଆନ୍ତି - (ଭାବି) ସେ ଯେତେ ଭଲ ପାଆନ୍ତୁ - ମୋ ପରି କେବେ ନୁହେଁ । ହାୟ । ଆଜି ଯଦି ପଦ୍ମା ମୋର ହୋଇଥା'ନ୍ତା - ମୁଁ କି ତାକୁ କେବେ ଏଡ଼ାଇ ଅସହାୟ ଅବସ୍ଥାରେ ଛାଡ଼ି ଦେଇଥାନ୍ତି ! (ଭାବି) ଆଜି କାହିଁକି ମୋ

ମନ ଏତେ ବ୍ୟାକୁଳ ହେଉଛି ? ଏପରି ଅମଙ୍ଗଳର ଆଶଙ୍କା କାହିଁକି ଜାଗି ଉଠୁଛି - ଯାଏଁ ଦେଖେ । ପଦ୍ମାର କିଛି ବିପଦ ହୋଇ ନାହିଁ ତ ? (ପ୍ରସ୍ଥାନୋଦ୍ୟତ - ନିୟତି ବୈଷ୍ଣବୀର ପ୍ରବେଶ) (ଦେଖି)

ଏଁ କିଏ ? ରାଜପ୍ରାସାଦର ପରିବାରୀ ହେବପରା । ଯାକୁ ପଚାରିଲେ ଜଣାପଡ଼ିବ ଜେମା କେଉଁଠି ? ହେ - ହେ - ଜେମା ଦେଇ କେଉଁଠି ? ମୋତେ ଟିକିଏ ବାଟ ବତାଇଦେ - ମୁଁ ଏ ଜଙ୍ଗଲରେ ବାଟବଣା ହୋଇ ବୁଲୁଛି ।

ବୈଷ୍ଣବୀ— ବଣା ହୋଇ ବୁଲୁଛ ? ମୁଁ ବି ବଣା ହୋଇ ବୁଲୁଛି ଆଜ୍ଞା । ମୁଁ ଜେମା ଦେଈଙ୍କ ପାଖରୁ ଆସୁଛି - ଲୋକବାକଙ୍କୁ ଖୋଜୁଛି - କାହିଁ ପାଉନାହିଁ ।

ଜୟନ୍ତ— ଜେମା ଦେଈଙ୍କ ପାଖରୁ ଆସୁଛ ? ତା'ହେଲେ ତୁ ଯେଉଁବାଟେ ଆସିଲୁ ସେହିବାଟେ ଗଲେ ମୁଁ ତାଙ୍କୁ ପାଇବି ? ଯାଏଁ ତେବେ - ଏହି ବାଟେ ତ ?

ବୈଷ୍ଣବୀ— ହଇ ଆଜ୍ଞା । (ରଙ୍ଗମଞ୍ଚର ବିପରୀତ ଦିଗ ଦେଖାଇ)

ଏଇବାଟେ ଯାଆନ୍ତୁ ।

ଜୟନ୍ତ— ହଉ, ମୁଁ ଯାଉଛି - ତୁ ଏଇବାଟେ ଯା -

(ବେଗେ ପ୍ରସ୍ଥାନ)

ବୈଷ୍ଣବୀ— ଇଯେ ବାଟବଣା ହୋଇ ବୁଲୁଛି । ମୁଁ କ'ଣ ବାଟବଣା ନୁହେଁ ? ବାଟବଣା କିଏ ନୁହେଁ, ସମସ୍ତେ । ବାଟବଣା ହେବା ଯେ ସମସ୍ତିଙ୍କର ଗତି - ଅବାଟରେ ଯିବାଟାହିଁ ଯେ ବାଟ । ମୁଁ କ'ଣ ବାଟ ଅବାଟ ମାନୁଛି ? କାହାପାଇଁ ଏତେ ସବୁ । ସବୁ ତାଆରି ପାଇଁ ଗୋ ତାଆରି ପାଇଁ - ସେ ଯେଉଁ ବାଟରେ ନେବ ମୁଁ ସିନା ସେହିବାଟରେ ଯିବି । ମୋର ଫେର୍ ବାଟ ଅବାଟ କ'ଣ - ବାଟବଣା ଫେର୍ କି କଥା । ମୁଁ କିଏ କି ? କେହି ନୁହେଁ ଗୋ - କେହି ନୁହେଁ ।

## -ଗୀତ-

ବୈଷ୍ଣବୀ— ଆହେ ସୁନ୍ଦର ମନୋହର

ସୁନ୍ଦର ତୁମେ ଅତି ମନୋହର - ମନୋହର ବିଶ୍ୱ ଚରାଚର
କିବା ମନୋହର ନଭେ ରବିଶଶୀ କିବା ହାସ୍ୟମୟୀ ଧରା ।
ଆକାଶ ଅବନୀ କୀରତି ପୀରତି ସୁନ୍ଦର ଏ ବିଶ୍ୱସାରା
ଆଶିଷ ତୁମର ଆନନ୍ଦ ଆଧାର ହେ ଚିର ନୂତନ ହେ ସୁନ୍ଦର
ହେ ଚିର ବାଞ୍ଛିତ ଚିର ଅପେକ୍ଷିତ ସନାତନ ଚିର ଅସୁନ୍ଦର
ମଧୁରେ ସୁନ୍ଦରେ ମିଳନ ପୂର୍ଣ୍ଣିମା ସଂସାର ମଧୁର ସୁନ୍ଦର ।

(ହଠାତ୍ ଗୀତ ବନ୍ଦକରି ପଛକୁ ଚାହିଁ ଚାହିଁ ପ୍ରସ୍ଥାନ)
(ଛଦ୍ମବେଶୀ ବିକ୍ରମର ବିପରୀତ ଦିଗରୁ ବେଗେ ପ୍ରତ୍ୟାବର୍ତ୍ତନ)

ବିକ୍ରମ— ଏଠାରେ ମନୁଷ୍ୟ କଣ୍ଠ ଶୁଭିଲା ନା ? ନା- ସେ ମୋର ଭ୍ରାନ୍ତି - କାହିଁ କେହି କୁଆଡ଼େ ନାହିଁ କିନ୍ତୁ ସେମାନେତ ଠିକ୍ ଏହିଆଡ଼େ ଆସିଛନ୍ତି ହରିଣମାରୀଝରେ ଦେଖିଯିବାର କଥା ନା- ଏ ସୁଯୋଗ ଛାଡ଼ିବାର କଥାନୁହେଁ - ସଙ୍ଗରେ ଗୋଟିଏ ମାତ୍ର ସହଚରୀ - ନାରୀମାତ୍ର - କିଏ ଆଜି ପଦ୍ମାବତୀକୁ ମୋ କବଳରୁ ରକ୍ଷା କରିବ ଦେଖିବି ? ଥରେ ଖାଲି ନଦୀ ପାର ହୋଇ ଗଡ଼ରେ ପହଞ୍ଚିଲେ ହେଲା । ତା'ପରେ- କାଞ୍ଚିରାଜ ବିବାହ ଦେବେ ନାହିଁ ? ଏ ଚଣ୍ଡାଳ ରାଜାର ନିର୍ଭୂମ ଭ୍ରାତା ସହିତ ତୁମ ଆଦରିଣୀ ଝିଅର ବିବାହ ଦେବନାହିଁ । ନୁହେଁ ? ଓଃ କି ଅହଂକାର । ଆଉ ପାଞ୍ଚ ସହସ୍ର ସୈନ୍ୟ ପାଇଥିଲେ ମୁଁ ଉତ୍କଳ ଗଜପତି ପୁରୁଷୋତ୍ତମ ଦେବଙ୍କୁ ଫୁହାରରେ ଉଡ଼ାଇ ଦେଇଥାଆନ୍ତି । ଏତେ ମିନତି କଲି - ପାଦ ପର୍ଯ୍ୟନ୍ତ ଧରିଲି - କିନ୍ତୁ ଉଦ୍ଧତ କାଞ୍ଚିରାଜ କହିଲା - 'ମୁଁ ଅପଦାର୍ଥ- ମୁଁ ଅକର୍ମଣ୍ୟ । କାଞ୍ଚିରାଜ ନରସିଂହ ରାଓ, ସାବଧାନ, ଉତ୍କଳ ରାଜପୁତ୍ରକୁ ହେୟଜ୍ଞାନ କରିବାର ପ୍ରତିଫଳ ନିଶ୍ଚୟ ଦେବି । ଆଜି - ଆଜି ଏଇ ''ମୁହୂର୍ତ୍ତରେ ! (ଭାବି) ଥରେ ପଦ୍ମାବତୀ ହରଣ ସମ୍ପୂର୍ଣ୍ଣ ହେଲେ ନରସିଂହ ରାଓ, ଏହି ପଦାଘାତ ଜର୍ଜରିତ ମସ୍ତକରେ ତୁମରି ରାଜମୁକୁଟ ତୁମେହିଁ ନିଜେ ପିନ୍ଧାଇଦବ । ଏହି ଭିକ୍ଷାବଦ୍ଧ

କରପୁଟରେ ତୁମରି ଆଦରିଣୀ କନ୍ୟାର କରପଲ୍ଲବ - ନିଜେ ତୋଳି ଦେବ । କାଞ୍ଚିରାଜ - ହାଃ, ହାଃ, ହାଃ, ଗ୍ରହମାନେ ଥରେ ପ୍ରସନ୍ନ ହୁଅ ! (ବେଗେ ପ୍ରସ୍ଥାନ ଓ ପଛେ ପଛେ) ଯୋଖାଧନୁଶର ଧରି ହସ୍ତେ ମଦନ ଗୋଡ଼ାଇ ଯିବା ଓ ଅନ୍ୟପଟୁ ରତି ଆସି ତାଙ୍କୁ ଧରିବା ବେଳେ ପଟ ପରିବର୍ତ୍ତନ)

ଗର୍ଭାଙ୍କ (ଦୃଶ୍ୟାନ୍ତର) ଜଙ୍ଗଲ

ସ୍ଥାନ— ହରିଣମାରୀ ଝରେ । ପାହାଡ଼ ଦେହରେ ଝରଣା ବୋହିଯାଉଛି - ଚାରିଆଡ଼େ ଗହଳ ବନଲତା - ନାନା ପୁଷ୍ପ ପରିଶୋଭିତ । ତଳେ ପଥରଖଣ୍ଡ ପଡ଼ିରହିଛି - କେତେ ଫୁଲ ମଧ ବିଛୁହୋଇ ପଡ଼ିଛି । ଟାଙ୍ଗୀ ଉପରୁ ତଳକୁ ଆସିବାକୁ ପାବଚ୍ଛମାଳା - ଦୁଇପାର୍ଶ୍ଵରେ ଧାଡ଼ି ଧାଡ଼ି ଗଛ ।

କାଳ - ଅପରାହ୍ନ

ପାହାଡ଼ ଉପରେ କନକ ଦକ୍ଷିଣୀ ବେଶରେ ବସି ଏକମନରେ ଫୁଲ ଗୁନ୍ଥୁଥିଲା - ମୁଖରେ ତା'ର ଅସ୍ତଗାମୀ ସୂର୍ଯ୍ୟର ଲୋହିତ କିରଣ ପଡ଼ି ବଡ଼ ଉଜ୍ଜ୍ୱଳ ଦେଖାଯାଉଥିଲା । ତଳେ ମଦନ ଓ ରତି ମୂକନୃତ୍ୟ ପରେ ଶର ସଂଧାନ କଲେ (ଅଦୃଶ୍ୟ ଭାବରେ) ଓ ପଦ୍ମାବତୀ ପ୍ରବେଶ କଲାମାତ୍ରେ ତାଙ୍କ ଉପରେ ଶର ନିକ୍ଷେପ କରିସାରି ପ୍ରସ୍ଥାନ କଲେ । ପରେ ପଦ୍ମାବତୀ ଓ ଶଶୀ ଫୁଲ ଚାଙ୍ଗୁଡ଼ି ଧରି ପାବଚ୍ଛ ଉପର ଦେଇ ଉପରକୁ ଉଠିଗଲେ । କନକ ଏମାନଙ୍କର ଆଗମନ ଲକ୍ଷ୍ୟକରି ଆଖିକୋଣରେ ଥରେ ଅନାଇଦେଇ ଅଧିକତର ମନୋନିବେଶ କରି ମାଳାଗୁନ୍ଥିବାକୁ ଲାଗିଲା । ମଧେ ମଧେ ଗୁଣୁ ଗୁଣୁ ଗୀତ ଗାଉଥିଲା । ପଦ୍ମାବତୀ କନକର ପିଠି ଉପରେ ଆଉଜିପଡ଼ି ମୁହଁ ପାଖକୁ ମୁହଁ ନେଇ କହିଲେ - (ପଦ୍ମାବତୀଙ୍କ ମୁହଁରେ ହସ, ମୁଣ୍ଡରେ ଲୁଗାନଥିଲା - ଓଡ଼ିଆ ବେଶ - ଶରୀର କର୍ଣ୍ଣାଟୀ ବେଶ)

ପଦ୍ମାବତୀ— ତୁ ଏଠି ସହୀ, ମଲା ଶୁଭୁନାଇଁକି ? ଓଃ, ଏକ ଧ୍ୟାନରେ ମାଳାଗୁନ୍ଥା ହେଉଛି - ପୁଣି ଆଖିରେ ଲୁହନା କ'ଣମ - ସଇଲା - କଥା ସରିଲା - (କରତାଳି)

କନକ— କ'ଣ ସହୀ - ସଇଲା କ'ଣ ? ସେ ଯେ ସରିବାର ନୁହେଁ -

ପଦ୍ମାବତୀ— ଓହୋ ! ବିନ୍ଧକରି ସୁକୁମାରୀ ଫୁଲକଢ଼ି ବୁକୁ —
କହଲୋ ନାଗରୀ !
ରସିକ ସେ କାହାବକ୍ଷ ମଣ୍ଡଣି ଏ ମାଳା
ସୂଚୀ ମୁଖେ ପ୍ରାଣମନ ଫୁଲେ ଫୁଲେ ଭରି
ଗୁନ୍ଥୁଅଛୁ ମାଳା

କନକ— ମର୍ମ ବିନ୍ଧି ଦେଉଅଛି ଜ୍ୱାଳା
ଉତ୍ତମ ପୁରୁଷେ -
ଅଧମା ମୁଁ ଆସିଛି ପଳାଇ ଦୂରେ ।
ପାଇଛି ଗତି ମୋ ନେତ୍ର ଡୁବି ସେ ପୀୟୁଷେ -
ସହୀ ତୋହ ପୁରେ ।

ପଦ୍ମାବତୀ— (ଲଜ୍ଜାରେ ମୁହଁ ଫେରାଇ) ଯାଃ, ତୁ ବଡ଼ ଢଣେ !

କନକ— ରହ ସହି କ୍ଷଣେ - ଦେଖେ ଭଲକରି -
(ଘୂରାଇ ଫେରାଇ ଚାରିପଟ ଦେଖି ଚିବୁକରେ ହାତଦେଇ)
ଆଉ ଏ କି ବେଶ କାଞ୍ଚିଛେମା ?

ପଦ୍ମାବତୀ— (ଫେରିପଡ଼ି ଆନନ୍ଦରେ ଲୁଗାକାନି ଧରି) କିପରି ହୋଇଛି ସହୀ - ମୁଁ ଆଜିଠାରୁ ଓଡ଼ିଆ ଲୁଗା ପିନ୍ଧୁଚି - କହ ଠିକ୍ ହୋଇଛି ତ ?

କନକ— ଉତ୍ତମ ଏ ଦେଶ ସହୀ ବୁଝୁଛି ଉତ୍ତମ !
ମଜ୍ଜିଲୁ ଅନ୍ତରେ -
(ଏବେ)ବେଶ ବାସ ତେଜି ଲୋଡୁ ମରଣୁ ନିଷ୍କୃତି ।
ଏ ଉତ୍ତମ ଛଇଳି !
କିଏ ଶିଖାଇଲା ପ୍ରେମ, କିଏ ସେହି ପୁରୁଷ ଉତ୍ତମ ?

ପଦ୍ମାବତୀ— ସହୀ, ସତେ ପୁରୁଷ ଉତ୍ତମେ
ନିଜ ବେଶ ତେଜିଛି ମୁଁ
ମଜ୍ଜିନି ମୁଁ ସତେ ?

କନକ— ଏତ ବିଚିତ୍ର ସଜନୀ
ଅତୀବ ବିଚିତ୍ର ବ୍ୟବହାର ତୋର
ପୁରସ୍ତମୁଁ ଫେରି,
ପଦ୍ମ ପଲାଶ ନୟନୁ ଆପେ ଆପେ ବହେ ନୀର
କହୁଁ କହୁଁ କଥା -
ଶୂନ୍ୟେ ଚାହୁଁ ଚାହୁଁ - ଦେଖୁଅଛି ସହୀ
ତେଜୁ ଦୀର୍ଘ ଶ୍ୱାସ -
ବେଶ ବାସେ ନାହିଁ ସଜ - ନାହିଁ ସଙ୍ଗମେଳେ ମନ
ଅଶନ - ଆସନେ - ଅନାଗ୍ରହ ଅଟି
ଜାଣେ ମୁହିଁ କି ରୋଗର ଚିହ୍ନ ଏ ଯୁବତୀ !

ପଦ୍ମାବତୀ— (ପଦ୍ମା କନକର ଚିବୁକ ଧରି କହିବା) ଜାଣୁ ? କି ରୋଗ ସହୀ.-
କହିଦେଏ ଭଲା -

କନକ— (ପଦ୍ମାବତୀଙ୍କ ବାମହସ୍ତକୁ ବାମହସ୍ତରେ ଧରି ଗମ୍ଭୀର ଭାବରେ)

ରୋଗ ନାମ ପ୍ରେମ
ଅତି କଠିନ ଏ ରୋଗ
ଜାଣେ ଭଲ କରି ଏକା
ଯେ ଭୋଗିଛି ଥରେ ।

ପଦ୍ମାବତୀ— (କୁଣ୍ଢାଇ ପକାଇ ଅତିଆଗ୍ରହରେ କନକ ମୁହଁକୁ ଚାହିଁ)
ତୁ କାହୁଁ ଜାଣିଲୁ ସହୀ, କହ - କହ - ଭୋଗିଛୁ କି ?
ଭୋଗିଛୁକି ସେ ମହାବ୍ୟାଧି ?

କନକ— କହିଥିଲି ଥରେ (ଆଖି ଛଳ ଛଳ ହୋଇଯିବା)

ପଦ୍ମାବତୀ— କିଏ ସେ ନାଗର ?

କନକ ଆଗେ କହ ତୋହ କଥା -

ଶଶୀ— ମାଆଲୋ - କି ପେରେମ - କି ସୁଆଗ, ଦିହିଁକି ଦିହେଁ ମଜ୍ଜିଛନ୍ତି !

ପଦ୍ମାବତୀ— କିଲୋ ଶଶୀ ? କ'ଣ ଚବର ଚବର ହଉଅଛୁ କି ?

ଶଶୀ— ନାହିଁ ହେମାମଣି ! ସ୍ୟାଡେ ସବୁ ଠିକ୍ ଠାକ୍ ହେଲାଣି - ଏବେ ଚାଲ, ମଣିମା ସ୍ୟାଡ଼େ ଚାହିଁ ବସିଛନ୍ତି ଯେ -

ପଦ୍ମାବତୀ— ହଇଲୋ ଶଶୀ - ତୁ ପୁଣି ମତେ ହେମାମଣି ବୋଲି ଡାକିଲୁ ? ହଉ ହଉ ରହିଥା, ରହିଥା !

ଶଶୀ— ନାହିଁ ଗୋ ନାହିଁ । କହିବାକୁ ହେଲାକୁ କହିଲି ଏକା । ନୂଆ ନୂଆ ଦିନାକେତେ - ନୂଆଠଉଁ ଯହୁଁ ପୁରୁଣା ହୋଇଲା !

ପଦ୍ମାବତୀ— (ମୁଖ ଭଙ୍ଗୀକରି) ଚୁପ୍ ଶଶୀ ଚୁପ୍ - କନକ ଆସିଛି ବୋଲି ପରା ରାଗ ହୋଇଛି - ନାଇଁ ଆ - ଆ - ତମ ଦିହିଙ୍କି ମିଳାଇ ଦିଏ (ଦୁହିଁଙ୍କ କାନ୍ଧରେ ହାତଦେଇ) ସହୀ, ଏହି ମୋର ପ୍ରାଣର ଶଶୀ ।

ଶଶୀ— ନାହିଁ ଗୋ ନାହିଁ - ମୁଁ ହେଲିଣି ବାସି ।

(ଦୂରକୁ ଘୁଞ୍ଚିଯିବାର ଉପକ୍ରମ)

କନକ— ଆସ ଶଶୀ ମେଘୁଁ ଖସି

(ତିନିଜଣ ଯାକ କୁଣ୍ଢାକୁଣ୍ଢି ହେବା)

ପଦ୍ମାବତୀ— ସହୀମ ! ଚାଲ ଏବେ ଯିବା - ସଞ୍ଜ ହେଲାଣି ନା କ'ଣ ? ଶଶୀ ଗଲୁ ଲୋକବାକ ଡାକିଆଣିଲୁ ।

(ଶଶୀ ମୁହଁ ଝାଡ଼ିଦେଇ ପ୍ରସ୍ଥାନ)

କନକ— ନାଇଁମ ଏଡ଼େ ଚଞ୍ଚଳ କ'ଣ ସଞ୍ଜ ହେଲାଣି ? ବଣ ଭିତର ବୋଲି ଅନ୍ଧାରୁଆ ଲାଗୁଛି ନା ? ଲୋକମାନେ ଆସିଯାନ୍ତୁ - ଆହା ଏ ସୁପରିଚିତ

ସ୍ଥାନଟିର ମୋହିନୀମାୟା କଟାଇବା ଭଳି ଶକ୍ତି ମୋର ନାହିଁ। ହାୟ ଭାଇ - ହାୟ ରଙ୍ଗରାଓ, କିନ୍ତୁ ସଖୀ ଯେ ସାଙ୍ଗରେ ଅଛି।

ପଦ୍ମାବତୀ— ମତେ କାହିଁକି ଡର ମାଡୁଛି।

କନକ— ସହୀ - ସତେ ଯେମିତିକା ମାଡ଼ିମାଡ଼ି ପଡୁଛି ତ - ଖାଲି ମନେହେଉଛି - ସ୍ଥିରହୋଇ ବସି ଏହି ଗଭୀର ନୀରବତାର ଭାଷା ପ୍ରତି ଇନ୍ଦ୍ରିୟରେ ଅନୁଭବ କରିବି। ଯେତେ ମନେକରୁଛି - କୌଣସି ମତେ ବଡ଼ ପାଟିରେ ଗୀତ ଗାଇ ହେଉନାହିଁ। ଏ ସ୍ଥାନଟି ଯେ ମୋର କେତେ ପ୍ରିୟ - ଏହି ଟାଙ୍ଗିର ପ୍ରତି ପ୍ରସ୍ତର ଖଣ୍ଡରେ ଯେ ମୋର କେତେ ମଧୁର ସ୍ମୃତି ଜଡ଼ିତ - ତୁ କାହୁଁ ଜାଣିବୁ ସହୀ। ହାୟ ଭାଇ ରଙ୍ଗରାଓ ! ସହୀ। ସହୀ। ଆଉ ଟିକିଏ ରହ - ଏ ପ୍ରିୟ ସ୍ଥାନଟି ମୋର ଟିକିଏ ଭଲକରି ଦେଖିନିଏଁ - ଏଠୁ ଚାଲିଯିବା କାଲି କାଞ୍ଚିକୁ ପରା !

(କଥା ଶେଷ ନୋହୁଁଣୁ ବିକ୍ରମ ଦେବ ଲୁକ୍କାୟିତ ଭାବରେ ପ୍ରବେଶ କରିବା ଓ ଏକ ପାର୍ଶ୍ୱରେ ଦଣ୍ଡାୟମାନ ହୋଇ ମୁଗ୍ଧ ନେତ୍ରରେ ଚାହିଁ ରହିବା)

କନକ— ସହୀ ! ଚାଲ, ତଳକୁ ଓହ୍ଲାଇ ଟିକିଏ ଆଗେଇ ଦେଖିବା।

ପଦ୍ମାବତୀ— ହଁ, ଚାଲ ସହୀ !

(ଦୁହେଁ ଓହ୍ଲାଇବା ଓ କାନ୍ଧରେ ପରସ୍ପର ହାତ ପକାପକି ହୋଇ)

ବିକ୍ରମ— (ସ୍ୱଗତ) ଏ ଦୁହିଁଙ୍କୁ ବିହେଁ ତ ରାଜକନ୍ୟା ପରି ଦେଖାଯାଉଛନ୍ତି। ଏହା ଭିତରେ ସହଚରୀ କିଏ ଆଉ ପ୍ରକୃତ ରାଜକନ୍ୟା କିଏ ? କେଉଁଟି ଏବେ ପଦ୍ମାବତୀ - ଏ ଓଡ଼ିଆ ଲୁଗା ପିନ୍ଧା ନିଶ୍ଚୟ ନୁହେଁ।

(ଉଭୟେ ତଳକୁ ଓହ୍ଲାଇ ଆସି ଫୁଲ ତୋଳିବା - ପଦ୍ମାବତୀ ଫୁଲତୋଳି କନକ ମୁଣ୍ଡରେ ଫୁଲ ବାନ୍ଧି ଦେଉଥିବା ବେଳେ ହଠାତ୍ ବିକ୍ରମ ଦୌଡ଼ିଆସି କନକଙ୍କୁ ଭିଡ଼ି ଧରିବା - ପଦ୍ମାବତୀଙ୍କର ଆର୍ତ୍ତନାଦ)

କନକ— କିଏରେ ଦୁର୍ବୃତ୍ତ - ଛାଡ଼ ଛାଡ଼ ମୋତେ ବର୍ବର।

ବିକ୍ରମ— ମତେ ଚିହ୍ନି ପାରିବ ନାହିଁ କାଞ୍ଚି ରାଜକନ୍ୟା । ଆବଶ୍ୟକ ମଧ ନାହିଁ । ତେବେ ମୋ ସାଙ୍ଗରେ ଯଦି ନିରବରେ ଆସ ତା'ହେଲେ ମୁଁ ମଧ ବଳପ୍ରୟୋଗ କରିବି ନାହିଁ । (ନତଜାନୁ ହୋଇ) ସୁନ୍ଦରୀ, ଏ ଦାସ ପଦ୍ମାବତୀଙ୍କର ଚିର କିଙ୍କର ବୋଲି ଜାଣିବ !

ପଦ୍ମାବତୀ— ତେବେ ମୋ ସହୀ ଉପରେ ଏତେ ଅତ୍ୟାଚାର କାହିଁକି ? ଛାଡ଼ିଦେ ପାଷାଣ୍ଡ ! ତୁ ଯେ ହୁଅ - ଛାଡ଼ିଦେ - ନଚେତ୍ - (ଛୁରି କାଢ଼ି) ଏହି ଦେଖ୍ - (ଛୁରି ଦେଖାଇ ଧୀରେ ଧୀରେ ଅଗ୍ରସର ହେବା)

ବିକ୍ରମ— (କନକକୁ ଛାଡ଼ିଦେଇ) ନା ସୁନ୍ଦରୀ, କୋମଳ ହସ୍ତରେ ହିଂସ୍ର ଛୁରିକା ଧରି ଏ ହୃଦୟରେ ଆଘାତ ଦିଅନା ଆଉ ! ରାଜକନ୍ୟା ପଦ୍ମାବତୀ ଆସ । ମୋ ସଙ୍ଗରେ ଆସ । ନହେଲେ କେବଳ ବଳ ନୁହେଁ - ଅସ୍ତ୍ର ପ୍ରୟୋଗରେ ମଧ କୁଣ୍ଠିତ ହେବି ନାହିଁ । ସ୍ୱଇଚ୍ଛାରେ ମୋ ସହିତ ଚାଲିଆସ - ତା'ନହେଲେ (ଅସି ଝନ୍ ଝନ୍ କରିବା)

କନକ— (ସ୍ଥିର ଭାବରେ) ଦୂର୍ ମୂର୍ଖ ! ରାଜପୁତ୍ରୀ କ୍ଷତ୍ରିୟ କନ୍ୟାକି କେବେ ପ୍ରାଣର ଭୟ କରେ ? ତେବେ ମୁଁ ତୁମ୍ଭ ସଙ୍ଗରେ ଯିବାକୁ ପ୍ରସ୍ତୁତ । କେବଳ ତୁମ୍ଭେ କିଏ ନ ଜାଣିଲେ ଯାଇ ନପାରେ ।

ପଦ୍ମାବତୀ— ସହୀ ଏ କ'ଣ କରୁଛ ମ ? ତୁ ଏ ବର୍ବରଟା ସଙ୍ଗରେ କୁଆଡ଼େ ଯିବୁ ? ମୁଁ ଚିହାର କରି ଲୋକମାନଙ୍କୁ ଡାକୁଛି । ଆରେ କିଏ ଅଛ - ଦୌଡ଼ି ଆସରେ ! (ବୋଲି ଚିହାର କରିବା)

କନକ— ନାହିଁ କନକ ଦେଖୁନାହୁଁ - ମୁଁ ଏ ବୀରପୁରୁଷଙ୍କ ବୀରତ୍ୱରେ ଏକାବେଳେକେ ମୁଗ୍ଧ । ସହୀ, ମୁଁ ୟାଙ୍କରି ସାଙ୍ଗରେ ଯିବି - ତୁ ଚାଲିଯା - ଫେରି ଆସି ପିତାମାତାଙ୍କୁ ସମ୍ବାଦ ଦେବୁ ।

ପଦ୍ମାବତୀ— ଛି ସହୀ - ତୁ ପରା କନ—

କନକ— (ବାଧାଦେଇ କାନରେ କହିବା) ଚୁପ୍ ଚୁପ୍ -

ପଦ୍ମାବତୀ— ନା ନା ସହୀ ! ମୁଁ ଏହା କେତେବେଳେ କରାଇ ଦେବିନାହିଁ । ମୁଁ ପଦ୍ମାବତୀ - କାଞ୍ଚିରାଜକନ୍ୟା - ପାଷାଣ, ବର୍ବର, ଦସ୍ୟୁ - ଚାଲ ଯେଉଁଆଡେ ଇଚ୍ଛା ମୁଁ ତୋ ସଙ୍ଗରେ ଯିବାକୁ ପ୍ରସ୍ତୁତ ।

କନକ— ଛି ! କନକ, କାହାକୁ କ'ଣ କହୁଛୁ ? ଏଁ ନିଶ୍ଚୟ ଜଣେ ଛଦ୍ମବେଶୀ ରାଜପୁତ୍ର - ତା' ନହେଲେ ଠିକ୍ କାହାଣୀର ବୀର ପରି ଆସି ଏ ବନସ୍ତ ଭିତରେ କୁଆଡୁ ପହଞ୍ଚନ୍ତେ - ନିଶ୍ଚୟ ତାଙ୍କ ପକ୍ଷୀରାଜ ଅଦୂରରେ କେଉଁଠି ପବନ ଖାଉଛି - ନା ସହୀ - ମୋର ଭାରି ମନହେଉଛି - ମୁଁ ଯାଙ୍କ ସଙ୍ଗେ ଯିବି - (ବିକ୍ରମଙ୍କ ମୁହଁକୁ ଚାହିଁ) ରାଜପୁତ୍ର, ତୁମେ ଠିକ୍ ଚିହ୍ନିଛ - ମୁଁ କାଞ୍ଚିଜେମା ପଦ୍ମାବତୀ - ମୋତେ ସଙ୍ଗରେ ନେଇଚାଲ । ସଖୀ ମୋ ସୌଭାଗ୍ୟ ସହିନପାରି ମିଥ୍ୟା ପରିଚୟ ଦେଉଚି - ତା'କଥା ଶୁଣନାହିଁ । ହଁ ସତେ - ତୁମେ କେଉଁ ଦେଶ ରାଜପୁତ୍ର ? (ଅନ୍ଧକାର ମାଡ଼ିଆସିବା)

ବିକ୍ରମ— ଏ ବ୍ୟଙ୍ଗ ନା ରହସ୍ୟ ? କ'ଣ ଏବେ କରୁଛି - ଏ ନିଶ୍ଚୟ ପଦ୍ମାବତୀ - ମୋର ଅନୁମାନ ହିଁ ଠିକ୍ । ଆସ ସୁନ୍ଦରୀ - ଅନ୍ଧକାର ମାଡ଼ିଆସୁଛି - ବିଳମ୍ବ କରନାହିଁ - ଦୁହେଁଯାକ ନହେଲେ ଆସ ! (ଅସି ନିଷ୍କାସନ)

କନକ— ଧୀରେ ଯୁବରାଜ ଧୀରେ ! ଏପରିତ କାହିଁ କୌଣସି କାହାଣୀରେ ନାହିଁ (ଓଠ ଉପରେ ତର୍ଜନୀ ଦେଇ) । ଏକ ଛଡ଼ା ଦୁଇକୁ ତ କେବେ ହରଣ କରିବାର କାହିଁ ଶୁଣାନାହିଁ । ତାହା ଛଡ଼ା ଅସି ଭୟ ଦେଖାଇ କୌଣସି ରାଜପୁତ୍ର ରାଜକନ୍ୟା ହରଣ କରିବା କଥାବି କୌଣସି କାହାଣୀରେ ତ ନାହିଁ ?

ବିକ୍ରମ— ରହସ୍ୟ ରଖ ସୁନ୍ଦରୀ - ମୁଁ ଏତେ ବଡ଼ ମୂର୍ଖ ନୁହେଁଗୋ - ଆସ - ଏ ନୂତନ କାହାଣୀ - ଆସ ଶୀଘ୍ର । (ଉନ୍ମୁକ୍ତ କୃପାଣ ହସ୍ତେ ଗୋଡାଇବା)

କନକ— ଛି, ଛି, ଅଭଦ୍ର, ଅସଭ୍ୟ ଯୁବରାଜ । ଏକଣ ମୋର ଉପଯୁକ୍ତ ବ୍ୟବହାର - ମୁଁ କାଞ୍ଚି ରାଜକନ୍ୟା - ତୁମେ ଖାଲି ତୁମର ପରିଚୟ କହିଦିଅ - ଅନ୍ତତଃପକ୍ଷେ ତୁମର ଚନ୍ଦ୍ରମୁଖ ଟିକିଏ ଦେଖାଇ ଦିଅ - ମୁଁ ନିଜେ ସ୍ୱଇଚ୍ଛାରେ ତୁମ୍ଭ ବଳିଷ୍ଠ ସ୍କନ୍ଧରେ ଦୁଇବାହୁ ରଖି ଆକାଶରେ ଉଡ଼ିବାକୁ ମଧ୍ୟ ପ୍ରସ୍ତୁତ ହେବି ।

ବିକ୍ରମ— (ଦୁଇବାହୁ ଉପରକୁ ଟେକି) ଏଇ ଦେଖ !

ପଦ୍ମାବତୀ— ମାଆଲୋ (ପଛେଇ ଯିବା)

କନକ— ଆହା କି ସୁନ୍ଦର, ଏ କି ସେ ସ୍ୱର୍ଗୀୟ ଶୋଭା ତୁମ୍ଭ ମୁଖପଦ୍ମରେ ଯୁବରାଜ ! ଆହା ! ମର୍ତ୍ତ୍ୟଲୋକରେ ଏ ଶୋଭାସମ୍ପଦ ସମ୍ଭବ ନୁହେଁ - ନୁହେଁ ସହୀ ? ତୁମ୍ଭେ ନିଶ୍ଚୟ କୌଣସି ଦେବତା ହେବ ?

ବିକ୍ରମ— ବ୍ୟଙ୍ଗ କରନା ନାରୀ - ମୁଁ ଦେବତା ନୁହେଁ, ମୁଁ ଦାନବ । ମୁଁ ମନୁଷ୍ୟ ନୁହେଁ, ମୁଁ ପିଶାଚ଼ । ଆଉ ଜାଣିରଖ ସୁନ୍ଦରୀ ମୁଁ ଯିଏ ହୁଏ - ତୁମ୍ଭମାନଙ୍କୁ ଆଜି ମୋ ସାଙ୍ଗରେ ଯିବାକୁ ହିଁ ହେବ - ଆଜି — ଏଇ ମୁହୂର୍ତ୍ତରେ -

କନକ— ବୋପାଲୋ - କି ବୀରତ୍ୱ - ଆଉ ମୁଁ ଧୈର୍ଯ୍ୟ ଧରି ପାରୁନାହିଁ ସହୀ । ମୁଁ ଯାଉଛି - ତୁ ଯାଆ ସହୀ - ବାପାମାଙ୍କୁ କହିଦେବୁ ସହୀ ମୋ ପାଇଁ ପଦେ କାନ୍ଦିବେ ନାହିଁ (ଅଞ୍ଚଳ ପ୍ରାନ୍ତରେ ଲୁହ ପୋଛିବା)

ବିକ୍ରମ— (କନକର ହାତଧରି) ଆସ ତେବେ ! (ପଦ୍ମାଙ୍କର ଚିତ୍କାର)

ପଦ୍ମାବତୀ— କିଏ ଅଛ, ରକ୍ଷାକର ରକ୍ଷାକର ।

ରଙ୍ଗରାଓ— (ପ୍ରବେଶ କରି) କିଏରେ ଦୁର୍ବୃତ୍ତ - ଏହି ନିର୍ଜନ ଅରଣ୍ୟ ମଧ୍ୟରେ ଅସହାୟା ରମଣୀ ଉପରେ ଅତ୍ୟାଚ଼ାର କରୁଛି (ସବଳେ ବିକ୍ରମକୁ ଧକ୍କା ଦେବା ଓ କନକ ଚମକି ପଡ଼ି ଚାହିଁବା - ବିକ୍ରମ ନିଜ ଅସି ଦ୍ୱାରା ରଙ୍ଗରାଓଙ୍କୁ ଆଘାତ କରିବା - ରଙ୍ଗରାଓ ସ୍ୱଅସି ନିଷ୍କାସନ କରି ବାଧାଦେବା)

ରଙ୍ଗରାଓ— ଯାଅ ସୁନ୍ଦରୀଗଣ - ବେଗେ ପଳାଅ - ଏ ଦେହରେ ବିନ୍ଦୁମାତ୍ର ରକ୍ତ ଥିବାଯାଏଁ - ଏ ନରାଧମକୁ ମୁଁ ତିଳେମାତ୍ର ଏଠାରୁ ଘୁଞ୍ଚିବାକୁ ଦେବି ନାହିଁ - ପଳାଅ ପଳାଅ ! (ସ୍ୱଗତ) ଓଃ ! ଖାଲି ଏତିକି ଦୁଃଖ ରହିଗଲା ଯେ ତୁମ୍ଭମାନଙ୍କ ଚନ୍ଦ୍ରାନନ ଥରେ ଭଲକରି ଦେଖିପାରିଲି ନାହିଁ - କନକ ତୁଣ୍ଡପରି କାହା ତୁଣ୍ଡ ଶୁଭିଲା - ଯାଅ ସୁନ୍ଦରୀଗଣ । (ବିକ୍ରମକୁ ଚାହିଁ) ରହ ଦୁର୍ବୃତ୍ତ । ତୋତେ ଉଚିତ ଶାସ୍ତି ଦେଉଚ଼ି । (ଯୁଦ୍ଧ)

କନକ— ବୀର, ଉଦାର, ମହତ୍ ଯୁବକ - କ୍ଷାନ୍ତହୁଅ, କ୍ଷାନ୍ତହୁଅ - ଆଉ ଯୁଦ୍ଧରେ ପ୍ରୟୋଜନ ନାହିଁ । ମୁଁ କାଞ୍ଚି ରାଜକନ୍ୟା ପଦ୍ମାବତୀ - ମୋର ଆଦେଶ -

ରଙ୍ଗରାଓ— (ଅସ୍ତ୍ରତ୍ୟାଗ କରି) ଏଁ ପଦ୍ମାବତୀ - କାହାର କଣ୍ଠସ୍ୱର ମୁଁ ଶୁଣୁଛି - ଏ ଯେ ମୋର କନକ - (ଆଶ୍ଚର୍ଯ୍ୟ ହୋଇ କନକ ଆଡ଼କୁ ଚାହିଁବା ବେଳେ ବିକ୍ରମ ଦ୍ୱାରା ଆହତ ହୋଇ ଭୂତଳେ ପତନ, ପଦ୍ମାବତୀ ଧାଇଁଆସି ରଙ୍ଗରାଓଙ୍କ ମସ୍ତକ ଟେକି ଧରିବା) - ରଙ୍ଗରାଓଙ୍କ ଶିଙ୍ଗାବାଦନ - କନକ ଧାଇଁ ଯାଇଁ ରଙ୍ଗରାଓଙ୍କ ନିକଟରେ ବସିପଡ଼ି ରଙ୍ଗରାଓଙ୍କ ଆହତ ହସ୍ତ ଚାପିଧରି ଗଦ୍ ଗଦ୍ କଣ୍ଠରେ କହିଲେ —

କନକ— "ନାହିଁ ନାହିଁ ରଙ୍ଗରାଓ - ପ୍ରାଣର ଭାଇମୋର ମୁଁ ପଦ୍ମାବତୀ - ମୁଁ କାଞ୍ଚିଜେମା ପଦ୍ମାବତୀ (ଉପରକୁ ଚାହିଁ) ରଙ୍ଗରାଓ ଯଦି ମୋ ଲାଗି ପ୍ରାଣ ହରାଇଲା - ତା ହେଲେ ମୁଁ ପଦ୍ମାବତୀ ହେଲେ କେତେ (ବିକ୍ରମକୁ ଚାହିଁ) ନେ - ନେରେ ପାଷାଣ୍ଡ - ନେ - ମୋତେ - ଏହିକ୍ଷଣି ମୋତେ ନେଇ ପଳା - ନହେଲେ ଫେର୍ -

ବିକ୍ରମ— ଏଟା ରଙ୍ଗରାଓ ଠିକ୍ ତ - ତାହେଲେ ଠିକ୍ ହୋଇଛି - କାଲି ଯେଉଁ ଭୟଙ୍କର ଯୁଦ୍ଧ କରିଥିଲା - ପାଷାଣ୍ଡ (କନକର ହାତଧରି ଟାଣିନେଲେ) ନା ତୁମେ ପଦ୍ମାବତୀ ନୁହଁ - ଏତେବେଳ ଯାଏ ତୁମ୍ଭେ ମୋ ସହିତ ରଙ୍ଗ କରୁଥିଲ ନୁହେଁ ଛଦ୍ମବେଶୀ - ପଦ୍ମାବତୀ ! ଆସ ଶୀଘ୍ର । (ପଦ୍ମାକୁ ବିକ୍ରମ ଟାଣିବା ଦେଖି ରଙ୍ଗରାଓ କଟିରୁ ଶିଙ୍ଗା କାଢ଼ି ପୁନଃ ପୁନଃ ଫୁଙ୍କିବା)

ବିକ୍ରମ— ଆଃ - କି ବିପଦ - ଏ ଦେଖୁଛି ଶିକାର ବେଶରେ । ସଙ୍ଗରେ ନିଶ୍ଚୟ ଅନ୍ୟ ଲୋକ ଅଛନ୍ତି । କ'ଣ ଏବେ କରୁଛି - ନାଃ ପଦ୍ମାବତୀଙ୍କୁ କେଭେ ଛାଡ଼ିବି ନାହିଁ - ଯାହାଥାଉ କପାଳେ -

(ସବଳେ ପଦ୍ମାବତୀଙ୍କୁ ଭିଡ଼ିଧରି ଟାଣି ଟାଣି ନେବା ସମୟରେ

କନକ— (ଚିତ୍କାର କରି କହିଲେ) -କିଏ ଅଛ ରକ୍ଷାକର, ରକ୍ଷାକର, ବିପନ୍ନ ନାରୀକୁ ଦୁର୍ବୃତ୍ତ ହସ୍ତରୁ ରକ୍ଷାକର !

ପୁରୁ— (ବେଗେ ପ୍ରବେଶ କରି) କିଏରେ ଡାକୁଛି - କାହିଁ ସଖା - କିଏ ସେ - ଏ ଦୁର୍ବୃତ୍ତଟା ନାରୀ ଉପରେ ଅତ୍ୟାଚାର କରୁଛି ।

ବିକ୍ରମ— ଏଁ - ଏଯେ ପୁରୁ (ପଦ୍ମାବତୀଙ୍କୁ ଛାଡ଼ିଦେବା ଓ ପଦ୍ମ ରଙ୍ଗରାଓଙ୍କ ନିକଟକୁ ଦୌଡ଼ିଯିବା)

ପୁରୁ— (ବିକ୍ରମର ପଥରୋଧ କରୁଁ କରୁଁ ଚମକି ଛାଡ଼ିଦେଇ) କିଏ ବିକ୍ରମ ? ଲଜ୍ଜା ନାହିଁ, ଉତ୍କଳ ରାଜପୁତ୍ର । ଧିକ୍ ଧିକ୍ - ଦସ୍ୟୁବୃତ୍ତି ଯାହାର ବ୍ୟବସାୟ - ସେ ପୁଣି ଉତ୍କଳ ସିଂହାସନ ଲାଭ କରିବାକୁ ଚାହେଁ - ଯାଅ - ଯାଅ ପଳାଅ ଏଠାରୁ - ଆଜି ତୁମ୍ଭଙ୍କୁ ଛାଡ଼ିଦେଲି - ତୁମ୍ଭର ଘୃଣିତ ଅଙ୍ଗରେ ଅସ୍ତ୍ରଚାଳନା କରି ମୋର ପବିତ୍ର ହସ୍ତକୁ କଳଙ୍କିତ କରିବି ନାହିଁ । ଉତ୍କଳର କଳଙ୍କ, କାପୁରୁଷ, ନରକର କୀଟ - ଦୂର ହୁଅ !

(ପଦାଘାତ ଓ ବିକ୍ରମର ପଳାୟନ)

ରଙ୍ଗରାଓ— ଏଁ - ସଖା ମତେ ବଞ୍ଚାଇଲ - ମୋର ପ୍ରାଣ ସଖୀ କନକକୁ ବଞ୍ଚାଇଲ - ସଖା, କାଞ୍ଚିଦେମା ପଦ୍ମାବତୀ -

କନକ— ଚୁପ୍ କର, ଚୁପ୍ କର -

ପୁରୁ— (ଧାଇଁ ଆସି) କାହିଁ ସଖା ? ଏ କ'ଣ, ତୁମେ ଆହତ ? ସେହି ଦୁର୍ବୃତ୍ତଟା ତୁମ୍ଭର ଏ ଦଶାକରି ଚାଲିଗଲା, ମୁଁ ତ ଏହା ଜାଣେନା, ଯାଏଁ ଦେଖେ - ନରାଧମ କୁଆଡ଼େ ଗଲା -

ରଙ୍ଗରାଓ— (ହାତଟେକି) ନା ନା - ସଖା ସେ ଯାଉ । କାଞ୍ଚିଦେମାଙ୍କୁ ତାଙ୍କ ନଅରରେ ପହଞ୍ଚାଇବାକୁ ହେବ । ସଖା, ମୋ କନକ - (ମୂର୍ଚ୍ଛା)

ପୁରୁ— କାଞ୍ଚିଦେମା, ପଦ୍ମାବତୀ ? ଏ କ'ଣ ସ୍ୱପ୍ନ ନା ସତ୍ୟ ! (ଆଶ୍ଚର୍ଯ୍ୟ ଦୃଷ୍ଟି)

ମସାଲ ହସ୍ତେ ଧରି ଶଶୀ ସହିତ ଦୁଇଜଣ ପଦାତିକର ପ୍ରବେଶ)

ପଦାତିକ— କାହାନ୍ତି ଦେମାମଣି ? ଏଇଆଡ଼େ ପାଟି ଶୁଭିଲା ନା ? (ଆଗେଇ ଆସିଲେ)

କନକ— ବୀର, ଉଦାର, ମହତ୍ ଯୁବକ - କ୍ଷାନ୍ତହୁଅ, କ୍ଷାନ୍ତହୁଅ - ଆଉ ଯୁଦ୍ଧରେ ପ୍ରୟୋଜନ ନାହିଁ । ମୁଁ କାଞ୍ଚି ରାଜକନ୍ୟା ପଦ୍ମାବତୀ - ମୋର ଆଦେଶ -

ରଙ୍ଗରାଓ— (ଅସ୍ତ୍ରତ୍ୟାଗ କରି) ଏଁ ପଦ୍ମାବତୀ - କାହାର କଣ୍ଠସ୍ୱର ମୁଁ ଶୁଣୁଛି - ଏ ଯେ ମୋର କନକ - (ଆଶ୍ଚର୍ଯ୍ୟ ହୋଇ କନକ ଆଡ଼କୁ ଚାହିଁବା ବେଳେ ବିକ୍ରମ ଦ୍ୱାରା ଆହତ ହୋଇ ଭୂତଳେ ପତନ, ପଦ୍ମାବତୀ ଧାଇଁଆସି ରଙ୍ଗରାଓଙ୍କ ମସ୍ତକ ଟେକି ଧରିବା) - ରଙ୍ଗରାଓଙ୍କ ଶିଙ୍ଗାବାଦନ - କନକ ଧାଇଁ ଯାଇଁ ରଙ୍ଗରାଓଙ୍କ ନିକଟରେ ବସିପଡ଼ି ରଙ୍ଗରାଓଙ୍କ ଆହତ ହସ୍ତ ଚାପିଧରି ଗଦ୍ ଗଦ୍ କଣ୍ଠରେ କହିଲେ —

କନକ— "ନାହିଁ ନାହିଁ ରଙ୍ଗରାଓ - ପ୍ରାଣର ଭାଇମୋର ମୁଁ ପଦ୍ମାବତୀ - ମୁଁ କାଞ୍ଚିଜେମା ପଦ୍ମାବତୀ (ଉପରକୁ ଚାହିଁ) ରଙ୍ଗରାଓ ଯଦି ମୋ ଲାଗି ପ୍ରାଣ ହରାଇଲା - ତା ହେଲେ ମୁଁ ପଦ୍ମାବତୀ ହେଲେ କେତେ (ବିକ୍ରମକୁ ଚାହିଁ) ନେ - ନେରେ ପାଷାଣ୍ଡ - ନେ - ମୋତେ - ଏହିକ୍ଷଣି ମୋତେ ନେଇ ପଳା - ନହେଲେ ଫେର୍ -

ବିକ୍ରମ— ଏଟା ରଙ୍ଗରାଓ ଠିକ୍ ତ - ତାହେଲେ ଠିକ୍ ହୋଇଛି - କାଲି ଯେଉଁ ଭୟଙ୍କର ଯୁଦ୍ଧ କରିଥିଲା - ପାଷାଣ୍ଡ (କନକର ହାତଧରି ଟାଣିନେଲେ) ନା ତୁମେ ପଦ୍ମାବତୀ ନୁହଁ - ଏତେବେଳ ଯାଏ ତୁମ୍ଭେ ମୋ ସହିତ ରଙ୍ଗ କରୁଥିଲ ନୁହେଁ ଛଦ୍ମବେଶୀ - ପଦ୍ମାବତୀ ! ଆସ ଶୀଘ୍ର । (ପଦ୍ମାକୁ ବିକ୍ରମ ଟାଣିବା ଦେଖି ରଙ୍ଗରାଓ କଟିରୁ ଶିଙ୍ଗା କାଢ଼ି ପୁନଃ ପୁନଃ ଫୁଙ୍କିବା)

ବିକ୍ରମ— ଆଃ - କି ବିପଦ - ଏ ଦେଖୁଛି ଶିକାର ବେଶରେ । ସଙ୍ଗରେ ନିଶ୍ଚୟ ଅନ୍ୟ ଲୋକ ଅଛନ୍ତି । କ'ଣ ଏବେ କରୁଛି - ନାଃ ପଦ୍ମାବତୀକୁ କେଭେ ଛାଡ଼ିବି ନାହିଁ - ଯାହାଥାଉ କପାଳେ -

(ସବଳେ ପଦ୍ମାବତୀଙ୍କୁ ଭିଡ଼ିଧରି ଟାଣି ଟାଣି ନେବା ସମୟରେ

କନକ— (ଚିତ୍କାର କରି କହିଲେ) -କିଏ ଅଛ ରକ୍ଷାକର, ରକ୍ଷାକର, ବିପନ୍ନ ନାରୀକୁ ଦୁର୍ବୃତ୍ତ ହସ୍ତରୁ ରକ୍ଷାକର !

ପୁରୁ— (ବେଗେ ପ୍ରବେଶ କରି) କିଏରେ ଡାକୁଛି - କାହିଁ ସଖା - କିଏ ସେ - ଏ ଦୁର୍ବୃତ୍ତା ନାରୀ ଉପରେ ଅତ୍ୟାଚାର କରୁଛି ।

ବିକ୍ରମ— ଏଁ - ଏଯେ ପୁରୁ (ପଦ୍ମାବତୀଙ୍କୁ ଛାଡ଼ିଦେବା ଓ ପଦ୍ମା ରଙ୍ଗରାଓଙ୍କ ନିକଟକୁ ଦୌଡ଼ିଯିବା)

ପୁରୁ— (ବିକ୍ରମର ପଥରୋଧ କରୁଁ କରୁଁ ଚମକି ଛାଡ଼ିଦେଇ) କିଏ ବିକ୍ରମ ? ଲଜ୍ଜା ନାହିଁ, ଉତ୍କଳ ରାଜପୁତ୍ର । ଧିକ୍ ଧିକ୍ - ଦସ୍ୟୁବୃତ୍ତି ଯାହାର ବ୍ୟବସାୟ - ସେ ପୁଣି ଉତ୍କଳ ସିଂହାସନ ଲାଭ କରିବାକୁ ଚାହେଁ - ଯାଅ - ଯାଅ ପଳାଅ ଏଠାରୁ - ଆଜି ତୁମ୍ଭଙ୍କୁ ଛାଡ଼ିଦେଲି - ତୁମ୍ଭର ଘୃଣିତ ଅଙ୍ଗରେ ଅସ୍ତ୍ରଚାଳନା କରି ମୋର ପବିତ୍ର ହସ୍ତକୁ କଳଙ୍କିତ କରିବି ନାହିଁ । ଉତ୍କଳର କଳଙ୍କ, କାପୁରୁଷ, ନରକର କୀଟ - ଦୂର ହୁଅ !

(ପଦାଘାତ ଓ ବିକ୍ରମର ପଳାୟନ)

ରଙ୍ଗରାଓ— ଏଁ - ସଖା ମତେ ବଞ୍ଚାଇଲ - ମୋର ପ୍ରାଣ ସଖୀ କନକକୁ ବଞ୍ଚାଇଲ - ସଖା, କାଞ୍ଚିଜେମା ପଦ୍ମାବତୀ -

କନକ— ଚୁପ୍ କର, ଚୁପ୍ କର -

ପୁରୁ— (ଧାଇଁ ଆସି) କାହିଁ ସଖା ? ଏ କ'ଣ, ତୁମେ ଆହତ ? ସେହି ଦୁର୍ବୃତ୍ତା ତୁମ୍ଭର ଏ ଦଶାକରି ଚାଲିଗଲା, ମୁଁ ତ ଏହା ଜାଣେନା, ଯାଏଁ ଦେଖେ - ନରାଧମ କୁଆଡ଼େ ଗଲା -

ରଙ୍ଗରାଓ— (ହାତଟେକି) ନା ନା - ସଖା ସେ ଯାଉ । କାଞ୍ଚିଜେମାଙ୍କୁ ତାଙ୍କ ନଅରରେ ପହଞ୍ଚାଇବାକୁ ହେବ । ସଖା, ମୋ କନକ - (ମୂର୍ଚ୍ଛା)

ପୁରୁ— କାଞ୍ଚିଜେମା, ପଦ୍ମାବତୀ ? ଏ କ'ଣ ସ୍ୱପ୍ନ ନା ସତ୍ୟ ! (ଆଶ୍ଚର୍ଯ୍ୟ ଦୃଷ୍ଟି)

ମସାଲ ହସ୍ତେ ଧରି ଶଶୀ ସହିତ ଦୁଇଜଣ ପଦାତିକର ପ୍ରବେଶ)

ପଦାତିକ— କାହାନ୍ତି ଜେମାମଣି ? ଏଇଆଡ଼େ ପାଟି ଶୁଭିଲା ନା ? (ଆଗେଇ ଆସିଲେ)

ପୁରୁ— (ପଦ୍ମାଙ୍କୁ ଚାହିଁ) ମୁଁ କ'ଣ ସ୍ୱପ୍ନ ଦେଖୁଛି ? - ଇଯେ - ସେହି ମୋର ମାନସୀ ପ୍ରତିମା ତ ! ଏ ସ୍ୱପ୍ନ ନା ସତ୍ୟ ? ଯଦି ସ୍ୱପ୍ନ ହୁଏ ପ୍ରଭୁ - ଏ ସ୍ୱପ୍ନ ଜୀବନରେ ଆଉ ଯେପରି ନତୁଟୁ ।

(ପୂର୍ବରୁ ପଦ୍ମାବତୀ ଆଖିକୋଣରେ ପୁରୁଷୋତ୍ତମଙ୍କୁ ଚାହିଁଥିଲେ ମାତ୍ର ପୁରୁଷୋତ୍ତମ ତାଙ୍କ ଆଡ଼କୁ ଚାହିଁବାରୁ ସେ ଦୃଷ୍ଟି ଫେରାଇଲେ । କନକ ମଧ୍ୟ ଏ ରହସ୍ୟ ଦେଖି ସ୍ମିତହାସ୍ୟରେ ପଦ୍ମାଙ୍କୁ ଚାହୁଁଥିଲେ)

ଶଶୀ— ଏଇତ ଜେମାମଣି - କନକ ଜେମା - ଇଯେ କ'ଣ ?

(ପଦାତିକଗଣ ପଦ୍ମାଙ୍କୁ ଅଭିବାଦନ କରିବା)

ପଦ୍ମାବତୀ— ଡୋଲି ସବୁ କାହିଁ ? ଆହୁରି ପାଖକୁ ଆଣ । (ପଦାତିକଦ୍ୱୟ ଯିବା ଓ ଶଶୀ ରଙ୍ଗରାଓଙ୍କୁ ଧରିବା)

ପୁରୁ— ଏହି ପଦ୍ମାବତୀ - ଏହି ଯେ ମୋର ମାନସୀ ପ୍ରତିମା - ଯାହାକୁ ଦେଉଳ ସମ୍ମୁଖରେ ଥରେମାତ୍ର ଦେଖି - ମନଃପ୍ରାଣ ସମର୍ପି ଦେଇଛି - ମୋର ଆରାଧ୍ୟ ଦେବୀ କ'ଣ - ତେବେ ମୋର ଶତ୍ରୁକନ୍ୟା କାଞ୍ଚିରାଜକୁମାରୀ ?

କନକ— ମହାଶୟ - ଆପଣଙ୍କ ଯୋଗୁଁ ଆମ୍ଭମାନଙ୍କର ପ୍ରାଣ ବଞ୍ଚିଲା । କାଞ୍ଚିରାଜ ନିଜ ନୟନପିତୁଳି ପଦ୍ମାବତୀର ପ୍ରାଣରକ୍ଷାକାରୀଙ୍କ ପରିଚୟ ପଚାରିଲେ କ'ଣ କହିବୁ ?

ପଦ୍ମାବତୀ— (ଇଙ୍ଗିତଭାବେ ଆଖିଠାରି କନକ କାନ୍ଧରେ ହାତମାରି) ସହୀ, ବୀରବରଙ୍କୁ ନିମନ୍ତ୍ରଣ କରି ନଅରକୁ ଘେନିଆସ - ମୁଁ ଆଗରେ ଯାଉଛି । (ଯିବା)

କନକ— (ଆଶ୍ଚର୍ଯ୍ୟ ହୋଇ) ଭଦ୍ର ! ନିରୁତ୍ତର ରହିଲେ କାହିଁକି ? ଆପଣଙ୍କ ବନ୍ଧୁଙ୍କୁ ଆମ୍ଭେମାନେ ଚିକିତ୍ସା ପାଇଁ ନଅରକୁ ଘେନିଯାଉଛୁ । ଆପଣଙ୍କୁ ମଧ୍ୟ ଆମ୍ଭ ସଙ୍ଗେ ଯିବାକୁ ହେବ, ଯଦି କିଛି ଆପତ୍ତି ନଥାଏ -

ପୁରୁ— ନା ଦେବୀ ଆପଣଙ୍କ କାଞ୍ଚିଜେମାଙ୍କ ସୌଜନ୍ୟକୁ ଧନ୍ୟବାଦ - କିନ୍ତୁ ମୋର ବର୍ତ୍ତମାନ ଏ ନିମନ୍ତ୍ରଣ ରକ୍ଷା କରିବାର ଉପାୟ ନାହିଁ ଜାଣିବେ -

ଆଉ ମୋର ପରିଚୟ ? (ପଦ୍ମା ଫେରିଆସି କନକ ପଛରେ ଛିଡ଼ାହେବା) ମୋର ମନେ ହେଉଛି ଆପଣମାନେ ମୋତେ ଚିହ୍ନନ୍ତି - ଆଉ ମୋର ବନ୍ଧୁଙ୍କୁ ତ ଆପଣମାନେ ଦୟାକରି ସାଙ୍ଗରେ ନେଇଯାଉଛନ୍ତି - ତାଙ୍କଠାରୁ ସବୁ ଶୁଣିବେ ଯେ -

ପଦ୍ମାବତୀ— ଚାଲ ସହୀ ଯିବା ତେବେ - ଖାଲି ମହାରାଜାଙ୍କୁ ଆମ କୃତଜ୍ଞତା ଥରେ ଜଣାଇ ଦେ -

କନକ— ମହାରାଜା ! (ପଦ୍ମାଙ୍କୁ ଚାହିଁ) ଓଃ-କି-ସହୀ ତୁ ନିଜେ ଜଣାଉ ନାହୁଁ ? ମୋର କିଏ ପାରେ - ଧରରେ ଯାଙ୍କୁ ତୋଳିକି ନେଇଯାଅ - ଧର (ପ୍ରବେଶ କରି ପଦାତିକଦ୍ୱୟ ଓ ଶଶୀ ରଙ୍ଗରାଓଙ୍କୁ ଉଠାଇ ନେଇ ପ୍ରସ୍ଥାନ ଓ କନକ ସାଙ୍ଗେ ସାଙ୍ଗେ ଯିବାକୁ ଉଦ୍ୟତ)

ପଦ୍ମାବତୀ— ଯାଅ ନାହିଁ ସହୀ - ମତେ ସାଙ୍ଗରେ ନେଇଚାଲ - ଏକାମତେ ଛାଡ଼ି ଯା'ନା ।

କନକ— ଏକା କାହିଁକି ? ଉପଯୁକ୍ତ ସଙ୍ଗି ତ ଅଛନ୍ତି । ଉତ୍ତମ ପୁରୁଷ ସହୀ, ପୁଣି ତୋର ପ୍ରାଣରକ୍ଷାକାରୀ - ତାଙ୍କୁ ପୁଣି ଡରୁଛୁ ? ଏଠାରେ ଅଧମ ଜନର ସ୍ଥାନନାହିଁ - ମୁଁ ଯାଏଁ (ନେପଥ୍ୟେ ଶଶୀ - ଚାଲରେ ଯାଙ୍କୁ ଆଗ ନେଇ ଚାଲ - ସବାରି ପୁଣି ଆସିବ ଯେ) (ପରେ ବେହେରାଙ୍କ ସବାରି ଡାକ)

ପୁରୁ— ଉତ୍ତମେ । ମଧମେ । ଚିହ୍ନିଅଛି ଅଧମ । ରଙ୍ଗମୟୀ । ପଦ୍ମା ଅନ୍ତଃପୁରୁ ନିରାମୟ - ଅନ୍ତରଙ୍ଗ - ସମ୍ବାଦ - ଚତୁରେ । ଦେବେକି ଆତୁରେ ?

କନକ— ଆ - ଆ - ତୁରେ ସହୀ ।

ଏକାନ୍ତରେ ଅନ୍ତର ସମ୍ବାଦ ଦେଇଯାଅ ନିଜେ । ଶୁଭୁଚିତ ପଦ୍ମା ଅନ୍ତଃପୁରୁ (ପଦ୍ମାଙ୍କୁ ମଝିକୁ ଟାଣି ଆଣିବା)

ପଦ୍ମାବତୀ— ଯା - ଯା - ଥାଉ (ଭିଡ଼ିହେବା)

ନୋହିବି ମଧସ୍ଥା ଆଉ !

କନକ— ହଉ ବୁଝାଗଲା । ଯାଏଁ ମୁହିଁ - ତୋ କାମନା ପୁରୁ । (ଖୁନ୍ଦାଟିଏ ଦେଇ ଯିବାକୁ ଉଦ୍ୟତ)

ପୁରୁ— ଦେବୀ ! ମୁହିଁ ତେବେ ବିଦାୟ ହୁଏ (କିଛି ଦୂର ଅଗ୍ରସର ହୋଇ ଫେରି ପଡ଼ି) - ଏ ଅଧମର ଭିକ୍ଷା ମନେଥିବ ଟି ? ସଖୀ - ସମ୍ବାଦ ପାଇବିତ ?

କନକ— ଅବଶ୍ୟ ମହାରାଜ ! କି ସଖୀ ! ଚାହିଁଥିବୁ କି ?
(ମୁହଁ ପାଖକୁ ମୁହଁ ନେଇ)

ପଦ୍ମାବତୀ— (ଚମକି ପୁରୁଷୋତ୍ତମ ଦିଗରୁ ମୁହଁ ଫେରାଇ) ମୁଁ କାହିଁକି କାହାକୁ ଚାହିଁବି ମ ? (ଯିବାକୁ ଉଦ୍ୟତ)

ପୁରୁ— (ପୁନରାୟ ଫେରି) ହଁ ଗୋଟିଏ କଥା ଅଛି ସତେ । (ଗଳାର ହାରକାଢ଼ି) ଏହି କଣ୍ଠହାର ଗୋଟି ନେବେ କି- ସୁହୃଦେ । ଯାଇଥିଲି ଭୁଲି ।

କନକ— (ସସ୍ମିତେ) ସହୀ, ହାରଟି ନେଲୁ ।

ପଦ୍ମାବତୀ— ମୁଁ ନେଇ ପାରେନା - ତୋ ହାର ତୁ ନେ -

କନକ— ଓଃ । ମୁଁ ପରା - ଏଠି ମଧ୍ୟମା - ନା ମଧ୍ୟସ୍ଥା ହଉ (ହାର ନେଇ) ଏତ ମୋ ହାର ନୁହେଁ ସହୀ, ତୋହରି ହାର (ପଦ୍ମାଙ୍କ ଗଳାରେ ହାର ପିନ୍ଧାଇ ଦେବା)

ପଦ୍ମାବତୀ— (ଲଜ୍ଜିତ ହୋଇ କନକ ହାତ ଧରି) ଆରେ ଏ କ'ଣ କଲୁମ ସହୀ । ତୁ ଭାରି ଦୁଷ୍ଟ । ଯାଃ - (ଠେଲିଦେବା)

(ଏକପାର୍ଶ୍ୱରେ କାଞ୍ଚି ପାଇକଗଣ ଦେଖାଗଲେ)

କନକ— (ଧରି) ଅଧମା ମୁଁ ସଖୀ । (କନକ ଓ ପଦ୍ମା ହାତ ଧରାଧରି ହୋଇ ଚାଲିଯିବା ଓ ପାଇକମାନେ ତାଙ୍କ ପଛେ ପଛେ ଯିବା)

ପୁରୁ— (ଏକ ଦୃଷ୍ଟିରେ ଚାହିଁ ରହି ପରେ କହିଲେ) - ଏହି ମୋର ମାନସୀ ପ୍ରତିମା । ପଦ୍ମାବତୀ । ଆହା କି ମଧୁର ନାମ । ମୋ ଗଳାର ହାର

ସେ ପଦ୍ମିନୀ ହୃଦୟରେ ପଡ଼ି କି ଶୋଭା ପାଉଛି । ଏ ହୃଦୟ କଥା କ'ଣ ପଦେ ହେଲେ ସେ ହୃଦୟରେ ଜଣାଇବ ନାହିଁ । (ନେପଥ୍ୟରେ ମୃଦୁ ଯନ୍ତ୍ରାଳାପ, କିଏ ନେବ ଏ ପଦ୍ମକଢ଼ି ସ୍ୱର)

(ପୁରୁଷୋତ୍ତମ ଦେବ ମୁଗ୍ଧ ନେତ୍ରରେ ପଦ୍ମାବତୀଙ୍କ ପଥକୁ ଚାହିଁଥିବା ବେଳେ ଦୂର କୋଣରେ ବିକ୍ରମ ଅଶକ୍ତ ଚରଣେ ପ୍ରବେଶ)

ବିକ୍ରମ— ନା - ବଞ୍ଚିବି, ବଞ୍ଚିବି ! ଥରେ ମାତ୍ର ପ୍ରତିଶୋଧ ନେବା ପାଇଁ ବଞ୍ଚିବି । କିନ୍ତୁ ଉପାୟ ? (ଭାବି) ପୁରୁଷୋତ୍ତମଙ୍କ ଠାରେ ଆତ୍ମସମର୍ପଣ ? ହଁ ଠିକ୍ ଠିକ୍ । ଏହି ଯେ - (ପୁରୁଷୋତ୍ତମଙ୍କୁ ଦେଖି) ମଜା । ବିଭୋର ହୋଇ କାହାକୁ ଚାହିଁଛି । ଏହି ତ ସୁଯୋଗ । ଦେବି - ଏକାଥରେ ଶେଷକରି (ତରବାରୀ ହାତରେ ଧରି) ନା, ନା, ତା'ହେଲେ କିଛି ହେବନାହିଁ । ପ୍ରତିଶୋଧ - ପ୍ରତିଶୋଧ । କାଞ୍ଚିରାଜା ଉପରେ ପ୍ରତିଶୋଧ । (ଧରି) ଭୟେ କ'ଣ ? ପଦ୍ମାବତୀକୁ ଦେଖି ଏପରି ଭୋଳ ହୋଇଗଲାନା କ'ଣ ? ଦେଖେଁ -

ପୁରୁ— ନୁହେଁ ମୁହିଁ ସନ୍ତରଣପଟୁ - ତଥାପି ଲୋଭାଏ ମନ - ସେନେହେ ପରଶିବାକୁ ଏ ଫୁଲ ନଳିନୀଟି । ମନେହୁଏ କେଉଁ ଅବା ଅଜଣା ରାଇଜେ - ଆସିଛି ମୁଁ ସ୍ୱପନେ - ସ୍ୱପନେ ଭାସି - ସାରା ଜୀବନର ସ୍ୱପ୍ନ ଏହି ନୀଳ ସରୋବରେ ଭେଟିଛି ପଦ୍ମିନୀ - କିନ୍ତୁ ଦୂରେ ବହୁଦୂରେ (ଭାବି) ଝାସିବାକୁ ହୁଏ ମନ - ଏ ଦେହ ଏ ନୀରେ - ଯଦି ଦଇବେ ମୁଁ ପାରେ ତାକୁ ଧରି - କିନ୍ତୁ ଦରଶନ ସୁଖ ଯିବହରି - ଯଦି ବୁଡ଼େଁ । ନାହିଁତ ସ୍ଥିରତା ତାକୁ ପାଇଁବଇଁ ବୋଲି, ଯଦି ହାରେ ଏ ଜୀବନ - ଏହି କଜ୍ଜଳ ସଲିଳେ । ସ୍ଥାନ-କାଳ-ପାତ୍ର ଜ୍ଞାନ ଯାଉ ହଜି କ୍ଷତ୍ରଧର୍ମେ, ରାଜଧର୍ମେ-କଳଙ୍କ ଲାଗିଲେ ଲାଗୁ - ଦେଖୁଥିବି ଏହି ଛବି ବସିଥିବି ପାରେ - ତଦଗତ୍ ହୃଦୟେ - ନାହିଁ ମୋର ଆନ ଅଭିଳାଷ - ଖାଉଥିବି ବସି ଏହି ସ୍ୱରଗ ସୁଷମା । ଜାଗରଣେ ଯଦି ଯାଏ ହରି - ଏହି ମୋହିନୀ ପ୍ରତିମା - ନାହିଁ ଫଳ ଜାଗି - । ତେବେ ସ୍ୱପନେ - ସ୍ୱପନେ ଥାଏଁ ଦୂରେ (ରହି) ପ୍ରସାରିବି କରଖାଲି ଶୁଭ ଅବସରେ,

ଯେବେ ବହିବ ପୂରବୀ ବାଆ - ଦୋହଲାଇ ତା'ରେ - ଆଣିବ ମୋ ହସ୍ତଗତେ - ଛୁଇଁକି ପାରିବି ଥରେ - ଥରେ ମାତ୍ର ହେଉ ଅନୁଗ୍ରହ - ମହାପ୍ରଭୁ ଜଗନ୍ନାଥ -

ବିକ୍ରମ— (ହଠାତ୍ ଆଗକୁ ଆସି) ଜାନୁପାତ ପୂର୍ବକ

ଭାଇ ମତେ କ୍ଷମାକର !

ପୁରୁ— କିଏ ବିକ୍ରମ - ଦୂରହୁଅ ଏଠାରୁ - ନୀଚାଶୟ - ଓଡ଼ିଆ ନାମର କଳଙ୍କ !

ବିକ୍ରମ— ଇଯେ ଛଳନା ନୁହେଁ ଭାଇ । ଇଯେ ମୋର ହୃଦୟର କଥା । (ଉଠି) ତୁମେ ଯଦି ବିକ୍ରମକୁ ଆଜି ତା'ର ଦୁର୍ବୃତ୍ତ କାର୍ଯ୍ୟର ଶାସ୍ତି ଦେଇଥାନ୍ତ - ବନ୍ଦୀକରି ଥାନ୍ତ - ବା ହତ୍ୟାକରିଥାନ୍ତ - ତାହେଲେ ହୁଏତ ବିକ୍ରମ ଯେଉଁ ପିଶାଚକୁ ସେହି ପିଶାଚ ହିଁ ରହିଯାଇଥାନ୍ତା । ତା ନକରି ତୁମେ ଓଡ଼ିଆର ମାନ ରକ୍ଷାର୍ଥେ ଜନ୍ମଭୂମିର ମର୍ଯ୍ୟାଦା ପାଇଁ - ତମର ଏ ପରାଜିତ - ପଳାୟିତ ଶତ୍ରୁ ଦେଶର ବୈରି ବିକ୍ରମକୁ - ତାର ହୀନ ପ୍ରାଣଟାକୁ ନେଇ ପଳାଇ ବଞ୍ଚିବାର ସୁବିଧା ଦେଲ - ଭାଇ ବୋଲି ନହେଲେ ମଧ ଜାଣେ ସେ କେବଳ ମୁଁ ଓଡ଼ିଆ ବୋଲି । ଭ୍ରାନ୍ତ ମୋହାନ୍ଧ ହେଉପଛକେ ସେହି ଏକ ଉତ୍କଳ ଜନନୀର ସନ୍ତାନ ବୋଲି ଏ ଅଧମକୁ କି ଥରେ କୋଳ ଦେବ ନାହିଁ, ଭାଇ, ଭାଇ - ଏଇ ଆଜି ମୁଁ ତମ ଚରଣ ତଳେ - ଚିର ଦାସ ବୋଲି ଶରଣ ପାଇଲି । କିପରି ତୁମେ ଏ ନୂତନ ବିକ୍ରମକୁ ତ୍ୟାଗ କରିବ - ଦେଖିବି ।

(ନତହେବା ବେଳେ)

ପୁରୁ— ଆସ ଭାଇ - (କୋଳ କରିବା)

ପଟକ୍ଷେପ

+ + + + +

# ତୃତୀୟ ଅଙ୍କ

## ସ୍ୱୀକୃତି

### ପ୍ରଥମ ଦୃଶ୍ୟ

କକ୍ଷ

ସ୍ଥାନ— କାଞ୍ଚିରାଜପ୍ରାସାଦରେ ପଦ୍ମାବତୀଙ୍କର କକ୍ଷର ବାତାୟନ ଖୋଲାଥିଲା। ପଦ୍ମାବତୀ ଏକାକିନୀ ବାତାୟନ ଧରି ଉଭା ହୋଇଥିଲେ। ବାତାୟନ ସମ୍ମୁଖରୁ ଉଦ୍ୟାନ ମଧ୍ୟରୁ କେତେକ ଲତାମଣ୍ଡିତ ବୃକ୍ଷ ଦେଖାଯାଉଥିଲା। ଦୂରରେ ନଦୀ ବୋହିଯିବାର ଦିଶୁଥିଲା। ପଦ୍ମାବତୀଙ୍କ ମୁଖରେ ଶାରଦ ଜ୍ୟୋତ୍ସ୍ନା ପଡ଼ି ସୁନ୍ଦର ଦେଖାଯାଉଥିଲା। ଗୃହ ମଧ୍ୟରେ ନାନାବିଧ ସାଜସଜ୍ଜା ଓ ବାସଭୂଷଣ ଥିଲା। ଗୃହର ଏକ କୋଣରେ ବାଦ୍ୟଯନ୍ତ୍ର - ଏକ ପାର୍ଶ୍ୱରେ ପୋଥିପତ୍ର ଓ ଅନ୍ୟ ପାର୍ଶ୍ୱରେ ଧୂପଦାନୀରୁ ଧୂଆଁ ବାହାରୁଥିଲା। ପଦ୍ମାବତୀ ଗୀତ ଗାଉଥିଲେ। ଚକ୍ଷୁ ଲୋତକପୂର୍ଣ୍ଣ

କାଳ - ଶାରଦୀୟ ଚନ୍ଦ୍ରପକ୍ଷର ସନ୍ଧ୍ୟାକାଳ

ଗୀତ

କି ଅଭାବେ ଏଭାବେ ମୁଁ ରହିଛି ସରଣୀ ଚାହିଁ।
କିଏ ସେ ପରବାସୀ ସେ ଆସିବ ତରଣୀ ବାହି।୦।

ବସିବାର ଏଇ ସଇକତେ ସଫଳ ହେବକି ଏଥର ସତେ
ସାର୍ଥକ ହେବି ଚାହିଁ ସେ ମାୟାତରୀ-ବାହୀ।୧।

ଆସ ଆସ ଥରେ ଦୂର ଅତିଥି ପାରିଜାତଦେହୀ କନକକେଶୀ
ଧରି ରଖିବି ନାହିଁ (ଫେରି) ଯିବ ତରଣୀ ବାହି।୨।

ପଦ୍ମାବତୀ— (ଗୀତ ପରେ ପୁନରାବୃତ୍ତି ବେଳେ ହଠାତ୍ ଛାଡ଼ିଦେଇ) - ନା, ଆଜି ଆଉ କିଛି ହେବନାହିଁ। ମନଟା କାହିଁକି ଯେ ଏମିତି ହେଉଛି କିଛି ବୁଝିପାରୁ ନାହିଁ। ପୋଥିଧରି ବସିଲେ, ଅକ୍ଷର ସବୁ ମିଳାଇ ଗଲା।

ଫୁଲ ଗଛରେ ପାଣିଦେବାକୁ ଗଲି - ଜଳସ୍ଥଳ ସବୁ ସମାନ ଦିଶିଲା । ଶୁଆଟାକୁ ପଢ଼ାଇଲି - ସେ ଆଙ୍ଗୁଠିରୁ ପୁଳାଏ ନେଇ - କ'ଣ ଭୟେ ମ ସତେ ? ଗୀତ ଗାଇବାକୁ ବସିଛି ଯେ କେଉଁଠୁ ପୋଡ଼ା ଗୀତ ଏକ ମନେ ପଡ଼ିଲା - କଥା ତଣ୍ଟିରେ ଲାଗୁଛି । ଭଲକଥା ଭୟେ । ସହୀ ତା'ର ତ ମୋତେ ଛାଡ଼ି ଚାଲିଯାଉଛି - ସେ ଶଶୀ ଚୋକି ହେଲେ ଆସୁଛି - ନାଃ - ସେହି କଥା ସାରେ - ତା'ରି ତା'ରି ମୁଣ୍ଡରେ ଥାଳି ଛିଣ୍ଡାଇବି ଟାଳ -

ଶଶୀ— (ପ୍ରବେଶ କରି) ନୃତ୍ୟଭଙ୍ଗୀରେ (ମୁଣ୍ଡ ଦେଖାଇବା)

ପଦ୍ମାବତୀ— (ଶଶୀ ମୁହଁକୁ ଚେକି ଖୁନ୍ଦାମାରି) ଛି' ତୋ ମୁହଁ ଆହୁରି ଦେଖାଉଛୁ ? ହଁ, ତୁ ପରା ଏଇଠି ମୋ କଥା ଶୁଣୁଥିଲୁ ?

ଶଶୀ— (ସହାସ୍ୟେ) ଅଳ୍ପ ଟିକିଏ ଶୁଣଚ଼ି । ଆଚ୍ଛା ସେ କଥା ଛାଡ଼ । ଶୁଣାଶୁଣିରେ ତମ ମନଟା କୁଆଡ଼େ ଆଜି କ'ଣ ହଉଚି - ନୁହେଁ ? କ'ଣ ହେଉଚି ଭଲା ? ଛି ସହୀ (କୋଳକରି) ତେମେ ରାଜଜେମା - କାଞ୍ଚିରାଜାଙ୍କ ଦୁଲଣୀ - ତମର ଏତେ ଭାବନା କେଉଁ କଥାକୁ ମ ?

ପଦ୍ମାବତୀ— (କପଟ କ୍ରୋଧରେ) ନା - ତୁ ବି ସେ ପଣ୍ଡିତକୁ ଜିଣିଲୁଣି ଶଶୀ (ମୁହଁ ଫେରାଇବା)

ଶଶୀ— ଛି ସହୀ ମୋ ଉପରେ ଖପା ହେଉଛ ? ଆସ ଆଜି କ'ଣ ଖେଳିବା କହିଲ ? କଉଡ଼ି - ନା - ଚଉସାର - ଗଞ୍ଜପା ?

ପଦ୍ମାବତୀ— ଫେର୍ - କଉଡ଼ି, ଗଞ୍ଜପା ନାଁ ତୁ ମୋ ଆଗେ ଧରିଲୁ ଶଶୀ - ହଉ ହଉ ।

ଶଶୀ— ନାହିଁ, ନାହିଁ ଚଉସାର ପାଲି ଖେଳିବା - ହେଲା - ମୁଁ ବୋଝ ନେବି -

ପଦ୍ମାବତୀ— ତୁ ମତେ ଯେଉଁ ଜଳା ଜଳଉଛୁ ଶଶୀ - ମୁଁ ତୋ ସାଥିରେ ଖେଳନ୍ତି ନାହିଁ - କେଭେଁ ଖେଳନ୍ତି ନାହିଁ - ଖାଲି ଏଇକଥା - ତୋ ସାଥିରେ ନଖେଳିଲେ ଆଉ କାହା ସାଥିରେ ଖେଳିବି ? (ଅଧୋବଦନ)

ଶଶୀ— (ଧାଇଁ ଯାଇଁ କୁଣ୍ଢାଇ) ସତେ ସହୀ ତମ ମନ ଏମିତି କ'ଣ ହଉଚି ଆଜି ?

ପଦ୍ମାବତୀ— (କାନ୍ଦ କାନ୍ଦ ହୋଇ) ନା, ନା - ତୁ ମତେ ଛାଡ଼ି ଦେ ଶଶୀ । ମୁଁ ମୋର ଏକୁଟିଆ ରହିବି - ପଣ୍ଡିତ ନିଆଁଲଗା ପୋଥି ଦେଇଛି - ତାକୁ ଆଉ ଛୁଇଁବି ନାହିଁ । ଶୁଆଟାତ ମତେ କାମୁଡିଛି - ତା ପାଖକୁ ଆଉ ସାତ ଦିନ ଯିବି ନାହିଁ । ଫୁଲଗଛଗୁଡ଼ାକ ତ କାଲି ସକାଳୁ ମରି ଖେଣ୍ଡା ହୋଇ ଠିଆହୋଇଥିବ - ନା ମୁଁ ମୋର ଯାଉଛି - ଛାଡ଼ି ଦେ ମୋତେ ।

ଶଶୀ— ସହୀ, ବାଇୟାଣୀ ହେଲ ନା କ'ଣ ମ ? ମୁଁ ତମକୁ କେଉଁ ଛାଡ଼ିବି ନାହିଁ - ଏଇ ଧଇଲି ଦେଖିବି କେମିତି କୁଆଡ଼େ ଯିବ ।

କନକ— (ପ୍ରବେଶ କରି ଭଙ୍ଗୀସହ ଗୀତ ବୋଲିବା)

ଗୀତ

କାହାକୁ ସଜନୀ ରଖିବୁ ଧରି,
ତୋ ପାଇଁ ବସନ୍ତ ଯିବଟିକି ଫେରି
ପରାଣ ସଙ୍ଗିନୀ ନିଜର ତୁ ମଣୁଁ,
ଯଉବନ ନୁହେଁ କାହାର ନ ଜାଣୁଁ ।।
ଆସିଲାଣି ମଧୁ ମାସରେ ଫୁଲ ହସେରେ
ଲତା ହେଲେ ବି ବତାସରେ
ସାଜି ବସିଲାଣି ତା'ର ସଜ ବୁକୁ ପାରି ।୧।

ଶଶୀ— (ହୋଃ) ଆସିବ ପରା ସେ ନାଗର ରସ ସାଗର ।
ବାନ୍ଧିନେବ ଫୁଲ ଫାଶର

କନକ— ଉଡ଼ିବେଟି ଦୁହେଁ କେ ପାରିବ ଧରି ।

ଶଶୀ— (ଓହୋ) ''ଆସିବ ପରା ସେ ନାଗର
ରସ ସାଗର ବାନ୍ଧିନବ ଫୁଲ ଫାଶର ।''
ସହୀ, ମୁଁ ଟିକିଏ ନାଚ଼ନ୍ତି । ମୋର ଭାରି ମନ ହଉଚି ସହୀ !

କନକ— ସତେ ନାଚିବୁ ଶଶୀ ? ନାଚ ନାଚ । ମୁଁ ବଜାଉଚି - (କନକ ବୀଣା ଆଣି ବଜାଇବା ଓ ଶଶୀର କର୍ଣ୍ଣାଟୀ ନୃତ୍ୟ କରିବା)

ପଦ୍ମାବତୀ— ହଉ ମୁଁ ମୋର ଯାଉଛି (ଉଦ୍ୟତ)

(ଶଶୀ ନୃତ୍ୟଭଙ୍ଗୀରେ ପଦ୍ମାଙ୍କୁ ଅଟକାଇବା ଓ ପଦ୍ମା ଏକପାର୍ଶ୍ୱରେ ସ୍ଥିର ହୋଇ ରହିବା)

(ଶଶୀକୁ) ଯା, ମୋ ସାଙ୍ଗରେ ଆଉ କଥା କହିବୁ ନାହିଁ ଯା (କନକକୁ ଠେଲିଦବା) ମୁଁ ଜାଣେ ପରା, କନକ ବଡ଼ ଜଣେ !

ଶଶୀ— ଏ କଥା ଆଉ ପଚାରୁଛ କେମା - କନକ ଜଣେ ବୋଲି ଜଣେ -

ପଦ୍ମାବତୀ— ଥାଉ ଥାଉ ଶଶୀ - ପରଚ୍ଛେଇ ହୁଅନା - ଆଉ ନିଜେତ କିଛି ଜାଣନ୍ତି ନାହିଁ - ଆହା ଶଶୀ ? ଶଶୀ ପରା କୁଟୁଳୀ ଆଉ ସଂସାରରେ କିଏ ଅଛି ?

କନକ— ନାଇଁତ - ତା'ପରି କୁଟିଳୀ । ଏଁ, ମୁଁ ବି ତ ନୁହେଁ - ନା କ'ଣ ସହୀ ?

ପଦ୍ମାବତୀ— ସହୀ -ଢେର କଥା ଅଛି (ଆଖି ଛଳ ଛଳ କରି - କୋଳକୁ ଟାଣି ଆଣି)

କନକ— ମୋର ବି ଢେର କଥା ଅଛି । କହ !

ପଦ୍ମାବତୀ— ତୁ କହ !

କନକ— ତୁ କହ ଆଗେ - (ଶଶୀ ମୁହଁ ମୋଡ଼ି ଦେଇ ପ୍ରସ୍ଥାନ)

ପଦ୍ମାବତୀ— ଜୟନ୍ତଭାଇ କଥା - ବାପା ମୋତେ କହିଲେ ଆଜି । ବାହାମନୀ ସୁଲତାନକୁ ଜୟକରି ସେ ଫେରିଛନ୍ତି । ପିତା ବଡ଼ ପ୍ରୀତ ହୋଇ ମୋତେ ତାଙ୍କୁ ଉପହାର ସ୍ୱରୂପ ଦେବେ ବୋଲି କହିଲେ ।

କନକ— ତୁ କ'ଣ କହିଲୁ ?

ପଦ୍ମାବତୀ— ମନାକଲି । କହିଲି ମୁଁ ଆଗହୁଁ ସ୍ୱୟମ୍ବରା ।

କନକ— କହିଲୁ - ମୁଁ ହୋଇଥିଲେ କ'ଣ କରିଥାନ୍ତି ଜାଣୁ ?

ପଦ୍ମାବତୀ— କ'ଣ ?

କନକ— ମୁଁ ହଁ, ନାହିଁ, କିଛି ନକହି - ଆଗେ ଜୟନ୍ତଭାଇଙ୍କି କହି ତାଙ୍କରି ଉପରେ ସବୁଭାର ଛାଡ଼ି ଦେଇଥାନ୍ତି -

ପଦ୍ମାବତୀ— ମୁଁ କ'ଣ ଭୁଲକଲି ଏବେ ? ମୁଁ ଯାହା ସତକଥା ତାହା ତ କହିଲି ।

କନକ— ମଉସା କ'ଣ କହିଲେ । ଭାରି ରାଗିଥିବେ - ନୁହେଁ ?

ପଦ୍ମାବତୀ— ହଁ, ତାଙ୍କ ମୁହଁ ମୋର ମନେପଡ଼ି ଯାଉଛି ଖାଲି - ସହୀ, କ'ଣ ହେବ ? (କନକକୁ କୁଣ୍ଢାଇ ଧରି ମୁହଁ ଲୁଚାଇ, ପୁଣି କନକ ମୁହଁକୁ ଚାହିଁବା)

କନକ— ସହୀ । ତୁ ଏତେ ଅଧୀରା ହେଲେ କ'ଣ ଚଳିବ ? ସ୍ତ୍ରୀ ଲୋକର କଣ ଦୁଇଥର ବିବାହ ହୁଏ ସହୀ ? ତୁ ତ ଥରେ ବିବାହ କରିଛୁ ଆଉ ତୋର ଭୟ କ'ଣ ? ସେଥିରେ ପୁଣି ମୁଁ ମଧ୍ୟସ୍ଥା, ମୁଁ ତା'ର ବନ୍ଦୋବସ୍ତ କରିବି । କ'ଣ ଏବେ ପୁରୁଷୋତ୍ତମ ଦେବଙ୍କୁ ସମ୍ବାଦ ଦେଉଛି - ମୁଁ ଯେ ତାଙ୍କଠାରେ ପ୍ରତିଜ୍ଞାବଦ୍ଧ । (ମୌନ ହେବା)

ପଦ୍ମାବତୀ— ସହୀ, ତୋ କଥା କ'ଣ କହିଲୁ ନାହିଁ ? କହ, କହ ସହୀ - ରଙ୍ଗରାଓଙ୍କ ସଙ୍ଗରେ ତୋର ଭିତରେ ଭିତରେ କ'ଣ ଗୋଟାଏ ଚାଲିଛି - ଗୋଟାଏ ଯେମିତି ମନ ଭିତରେ ଟଣାଟଣି - ମୁଁ ଜାଣେ କନକ !

କନକ— ହଁ - ସେ ଆଜିକାଲି ଏଠାରୁ ଚାଲି ଯାଉଛନ୍ତି ।

ପଦ୍ମାବତୀ— ତୁ ତାଙ୍କୁ ବିଦାୟ କରି ଦେଉଛୁ, କହ ସହୀ, କିଏ ଖୋଜିଲେ ପାଉନାହିଁ - ତୁ ପାଇକରି ଫୋପାଡ଼ି ଦେଉଛୁ ।

କନକ— ସହୀ, ମୁଁ ଯେ ତାଙ୍କର ନିତାନ୍ତ ଅଯୋଗ୍ୟା, ମୋର ଧନ ନାହିଁ, ରାଜ୍ୟ ନାହିଁ - ରାଜକନ୍ୟାର ଉପଯୁକ୍ତ କିଛି ନାହିଁ - ମୁଁ ଯେ ତାଙ୍କ ନଅରରେ ସ୍ନେହପାଳିତ, ତାଙ୍କର ସମ୍ପର୍କୀୟ ମାତୁଳକନ୍ୟା ବୋଲି, ତାଙ୍କ ସ୍ନେହର ଋଣୀ - ତାଙ୍କ ମାତାଙ୍କ ବାତ୍ସଲ୍ୟର କ'ଣ ଏହି ପ୍ରତିଦାନ ଦେବି

ହାୟ - ଭାଇ ରଙ୍ଗରାଓ - ଜୀବନ ସ୍ୱାମୀ - ମୁଁ ଯେ କାହିଁକି ମୋର ହୃତପିଣ୍ଡଟିକୁ ଛିଣ୍ଡାଇ କ୍ଷତବିକ୍ଷତ କରି ତୁମ୍ଭକୁ ବାରମ୍ୱାର ପ୍ରତ୍ୟାଖ୍ୟାନ କରୁଛି, ତାହା କ'ଣ ତୁମ୍ଭେ ବୁଝୁନାହଁ ? ତୁମ୍ଭ କର ପାଇଁ ଶତଶତ ରାଜକନ୍ୟା ଚାହିଁ ବସିଛନ୍ତି - ଶତ ଶତ ଭାଗ୍ୟବତୀ ରାଜକନ୍ୟା, ମୋ ପରି ପିତୃମାତୃହୀନା, ନିର୍ଧନାର ଏତେବଡ଼ ଦୁରାଶା କରିବା କି ସାଜେ । ତୁମ୍ଭ ମାତାଙ୍କ ମନରେ ଦୁଃଖଦେଇ ମୁଁ ତୁମ୍ଭର ଗୃହିଣୀ ହୋଇ, ଅପରାଧିନୀ ହେବାକୁ ଚାହେଁନା - ଭାଇ, ତୁମେ ମୋର ଭାଇ, ମୁଁ ତମର ଭଉଣୀ - ମୋର ଏଇ ସୌଭାଗ୍ୟଟିକ ଅକ୍ଷୁଣ୍ଣ ରହୁ - ହେ ମୋର ଜୀବନସର୍ବସ୍ୱ, ତୁମ୍ଭେ ଅନ୍ୟ ଭାଗ୍ୟବତୀ ଗଳାରେ ମାଲ୍ୟ ଦିଅ - ମୁଁ ହସି ହସି ମୋର ଭ୍ରାତୃବଧୂ ବୋଲି, ଭଗିନୀ ବୋଲି ତାଙ୍କୁ କୋଳକୁ ଭିଡ଼ିନିଏଁ । କ'ଣ ହେଲା ! ମୋ ହୃଦୟନିଧିଙ୍କ ସୁଖର ପ୍ରତିବନ୍ଧକ ତାଙ୍କ ଜୀବନର ଅଶାନ୍ତିର କାରଣ । ହୃଦୟ ସ୍ଥିର ହୁଅ - ଚକ୍ଷୁ ଆର୍ଦ୍ର ହୁଅନା -

ପଦ୍ମାବତୀ— (କୋଳକରି) ସହୀ, ଛି ? ତୁ ଏଇଥି ପାଇଁ ନିଜକୁ ବଞ୍ଚିତ କରୁଛୁ ନା -

କନକ— (ହସି ଉଠି) ବଞ୍ଚିତ ? ମୁଁ ନିଜକୁ ବଞ୍ଚିତ କଲି ସହୀ ? ସହୀ ତୁ କି ଜାଣୁନା - ମୁଁ ତାଙ୍କୁ ପାଇଛି । ହୃଦୟ ମଧ୍ୟରେ ଏକକରି ନେଇଛି । ମୁଁ ବଞ୍ଚିତ ! ଭଗବାନ କରନ୍ତୁ ମୋରି ପରି ସଂସାରର ସମସ୍ତ ପ୍ରେମିକାଙ୍କର ପ୍ରେମ ସାର୍ଥକ ହେଉ, ମୋର ଭାବୀ ଭ୍ରାତୃବଧୂର ଯେପରି ଏହିପରି ପୂର୍ଣ୍ଣତା ହେଉ ମୋର ରଙ୍ଗଭାଇକୁ ପାଇ ! ନାହିଁ ସହୀ, ମୁଁ ବଞ୍ଚିତା ନୁହେଁ । ଏ ପ୍ରାଣ ଭିତରେ ଅନ୍ତରେ ଅନ୍ତରେ ମୁଁ ତାଙ୍କୁ ପାଇଛି ଯେ, ସେ ଯେଉଁଠି ଥାନ୍ତୁ, ଯେଉଁଆଡ଼େ ଯାଆନ୍ତୁ ସେ ଯେ ମୋର - ମୋର ସହୀ - ମୁଁ ତାଙ୍କୁ ପ୍ରାଣ ଦେଇଛି - ଆଉ ତାଙ୍କୁ ଏ ପ୍ରାଣ ଭିତରେ ପାଇଛି ।

ପଦ୍ମାବତୀ— ସହୀ - ତୁ ମୋ ପ୍ରେମ ଗୁରୁ - (କୋଳାଗ୍ରାତ ହେବା)

(ଶଶୀ ସହିତ ବୈଷ୍ଣବୀର ଗୀତ ଗାଇ ଗାଇ ପ୍ରବେଶ)

- ଗୀତ -

ପ୍ରିୟ ସହୀ, ସେ ବନ୍ଧା ଏ ମନକୋଣେ
ଯାକୁ ନ ପାଇବି ସାତ ସପନେ
ସେ ବନ୍ଧା ଏ ମନକୋଣେ ଗୋ
ଘେନି ମୁଁ ଆସିଛି ଅନ୍ତରେ ଅନ୍ତରେ
ରତନ ବେଦୀରେ ପ୍ରାଣେ ଗୋ ।୦।
ଚନ୍ଦ୍ରମଲ୍ଲୀ କଢ଼ି ଛାତିରେ ପହିଲା
ହରଷ ଜଗାଇ ଯେ ପରଶ ଦେଲା
ଚଳିଗଲା ଅଳି ରହିଛି ସେ କଳି
ଭୁଲିକି ପାରୁଛି କ୍ଷଣେ ଗୋ ।୧।
କ୍ଷଣେ ପାଇବାର କ୍ଷଣକେ ଅନ୍ତର
ସେତ ବାହାରର ଜଣେ ଗୋ
(ଯାକୁ)ରତନ ଆସନେ ଥାପିଛି ମୁଁ ପ୍ରାଣେ
ସେ ବନ୍ଧା ଏ ମନକୋଣେ ଗୋ ।୨।

କନକ— (ଗୀତାନ୍ତେ) ଆହା କି ସୁନ୍ଦର ମାତାଟି !

ପଦ୍ମାବତୀ— ହଇଗୋ ମାତା ! ଗଲାବର୍ଷ ତୁମକୁ ମୁଁ ପୁରୀରେ ଦେଖିଥିଲିଟି ?

ବୈଷ୍ଣବୀ— ହଇଗୋ ମଣି - ଦେଖିଥିଲ ! ମୁଁ ପରା ଆସିଛି - ସେଇ ପୁରୀରାଇଜରୁ ମଣି - ତୁମକୁ ନେବା ପାଇଁ - ଗଲେ ଯିବ - ନଗଲେ ନାଇଁ - ତମ ମନ - ମୁଁ ବୋଇଲି ଟିକିଏ ଦେଖି ଆସିଥାଇଁ - ହେଲେ - କହିଲି ଭୁଲିଗଲେ ଅବା -

ପଦ୍ମାବତୀ— ତୁମେ ଏକା ପୁରସ୍ତମ ଆସିଲ ? ମାତା - ଚାଲ ତମର ବଡ଼ କଷ୍ଟ ହୋଇଥିବଟି ।

ବୈଷ୍ଣବୀ— ନାହିଁ ଗୋ ମଣି ବ୍ୟସ୍ତ କିଆଁ - ମୁଁ କ'ଣ ଏକା ଆସିଛି - କେତେ ଲୋକ ଆସିଛନ୍ତି - ଜ୍ୟୋତିଷ, ପୁରୋହିତ - ଆହୁରି କେତେ ସବୁ - ଆହାଃ ଶୁଭ କଥା, ମଙ୍ଗଳ କଥା - ହଇଗୋ ମଣି (କନକକୁ) ଗୋଟାଏ ଶଙ୍ଖ ଫୁଙ୍କି ଦେବାକୁ ବି ହେଲା ନାହିଁ । ଆହା ମରି ଯାଉଥାଏ । (ହୁଳହୁଳି ଦେବା, .

କନକ— ଇଏ ବାୟାଣୀ ନା କଅଣ ? ଇଏ କେମିତି ଆସିଲା ଏଠିକି ?

ପଦ୍ମାବତୀ— ସେ ଏଇମିତିକା ସହୀ !

ବୈଷ୍ଣବୀ— ହଁ - ମୁଁ - ବାୟାଣୀ - ତୁମେ ବି ମଣି କ'ଣ ଭଣା ? ନୋହିଲେ - ଥାଉ ଆସ - ତମ ଦିହିଁଙ୍କି ବନ୍ଧେଇ ଦିଏଁ । ମୁଁ ପରୀ ରାଇଜରୁ ଏଇଥି ପାଇଁ ଆସିଛି । ଆହା - ନାହିଁ କର ନା ଗୋ ମଣି ! ପରିବାରିୟେ ଆସୁଛନ୍ତି ଅର୍ଘ୍ୟ ଥାଳି ନେଇ -

(ଓଡ଼ିଆଣୀ ନାରୀଗଣଙ୍କ ପ୍ରବେଶ ଓ ଦୁଇ ସଖୀଙ୍କୁ ମଝିରେ ଠିଆ କରାଇ ବନ୍ଦାଇ ଦେବା - ଗୀତାବୃତ୍ତି ଦ୍ୱାରା)

''ସେ ବନ୍ଧା ଏ ମନକୋଣେ'' (ଅନ୍ୟ ସ୍ୱରରେ)

- ପଟ ପରିବର୍ତ୍ତନ -

+ + + + +

## ୨ୟ ଦୃଶ୍ୟ

## ଦରବାର

ଦୃଶ୍ୟ - କାଞ୍ଚିରାଜାଙ୍କ ମନ୍ତ୍ରଣାକକ୍ଷ ଓ ସଭାଗୃହ

କାଳ - ପ୍ରଭାତ

କକ୍ଷର ଏକ କୋଣରେ କାଞ୍ଚିରାଜା ନରସିଂହ ରାଓ ଉଦ୍ଭ୍ରାନ୍ତ ମନରେ ବିଚ଼ରଣ କରୁଥିଲେ - ତାଙ୍କ ମୁଖରେ ବିରକ୍ତି ଓ ଚଞ୍ଚଳତା ଭାବ - ପଛରେ ପଣ୍ଡିତ ହାତ ମଳି ମଳି ମଧ ଚାଲିଥାନ୍ତି - ହଠାତ୍ ଫେରିପଡ଼ି -

କାଞ୍ଚିରାଜ— ପଣ୍ଡିତେ ! ବୁଝିବା ହେଲେ ପଣ୍ଡିତେ - ଯେଉଁ ପୁରୁଷୋତ୍ତମ ଦେବ ମୋର ଦଶହଜାର ସୈନ୍ୟ ନଷ୍ଟକରିଦେଲା - ସେ ପୁଣି କେଉଁ ସାହସରେ କାଞ୍ଚିଜେମା ପଦ୍ମାବତୀର କରପ୍ରାର୍ଥୀ (ପଦଚ଼ାଳନା କରୁଥିବା ଅବସ୍ଥାରେ)

ପଣ୍ଡିତେ— ଦୁଃସାହସ ମଣିମା - ଦୁଃସାହସ - ତା ନହେଲେ କି ବୋଲିଛି ଓଡ଼ିଆ !

କାଞ୍ଚିରାଜ— ତେମେ କ'ଣ କହୁଛ ପଣ୍ଡିତେ - ଉତ୍କଳ ଦୂତକୁ ଫେରାଇ ଦେବା ନା କ'ଣ ?

ପଣ୍ଡିତେ— ଫେରାଇ ଦେବେ ନାହିଁ, ଆଉ କ'ଣ ମଣିମା ? ଫେରେଇ ନଦେଇ ଆଉ କ'ଣ କରାଯାଇପାରେ ଭଲା । ଏକେତ ଓଡ଼ିଆ ତା' ଉପରେ ପୁଣି ଦୂତ ? (ସ୍ୱଗତ) ଶୁଣିଛି ସଙ୍ଗରେ ପୁଣି ଗୋଟାଏ ବାଚ୍‌ସ୍ପତି ରାଜଗୁରୁ ପଣ୍ଡିତ ଅଛନ୍ତି - ନାଃ, ନାଃ, (ଶିଖା ଚାଳନା)

କାଞ୍ଚିରାଜ— ଆଚ୍ଛା ଥରେ ତାଙ୍କର କଣ କହିବାର କଥାଟା ଶୁଣାଯାଉନା । କ'ଣ ବୋଲୁଛ ପଣ୍ଡିତେ ?

ପଣ୍ଡିତେ— (ଶୁଷ୍କ ମୁଖରେ ମୁଣ୍ଡହଲାଇ) ମଣିମା - ତା - ତା- ତାବି ଠିକ୍ । ପଥଶ୍ରମ କରି କାହିଁ ପୁରୀ ପ୍ରଦେଶରୁ ଆସିଛି ଯେତେବେଳେ - ହେଲା - ହେଁ ଓଡ଼ିଆ ହେଲେ କ'ଣ ହେଲା ! ମଣିମାଙ୍କର ଦୟାର ଶରୀର - ସେଥିପାଇଁ ସେ ଓଡ଼ିଆ ରାଜାଙ୍କୁ କ୍ଷତିପୂରଣ ଦେବାକୁ ହବ - ଏପରି କିଛି ତ କଥାନାହିଁ ।

କାଞ୍ଚିରାଜ— କ୍ଷତିପୂରଣ ? କି କ୍ଷତିପୂରଣ କଥା କହୁଛ ପଣ୍ଡିତେ ?

ପଣ୍ଡିତେ— ମୁଁ କ'ଣ ବିଚ଼ାରିଥିଲି କି ଅବଧାନେ ଓଡ଼ିଆ ରାଜାର ଦୂତ କାହିଁକି ଆସିଛି, ଅବା କ୍ଷତିପୂରଣ ଦାବି କରିବାକୁ ଆସିଥିବ - ଯେପରି ବାହମନୀ ଦୂତ ଆସିଥିଲା । ଖେମଣ୍ଡି ଯୁଦ୍ଧରେ ମଣିମାଙ୍କ ସେନା ଯୋଗଦେଇଥିଲେ କି ନା -

କାଞ୍ଚିରାଜ— କ'ଣ ହେଲା - ପୁଣି କ୍ଷତିପୂରଣ ? ହୁଁ (ଦୀର୍ଘ ସ୍ୱର) ଠିକ୍ କଥା - ଅହଙ୍କାର ତ କମ୍ ନୁହେଁ । ନାଃ - ତା' କଥାଟା କ'ଣ ଶୁଣାଯାଉ - ନା ଥରେ - କିଏ ଅଛିରେ (ଦ୍ୱାରୀ ପ୍ରବେଶ କରି ଅଭିବାଦନ), ଯାଅ ଉତ୍କଳ ଦୂତକୁ ଶୀଘ୍ର ପ୍ରବେଶ କରାଅ । (ଦ୍ୱାରୀର ପ୍ରସ୍ଥାନ)

ପଣ୍ଡିତେ— ଏଇରେ ଓଲଟା ଫଳଫଳିଲା । ମୋ କପାଳ କଥା କାହାକୁ କହିବି । ମହାରାଜ, ମୁଁ ତେବେ ବିଦାୟ ହୁଏଁ ।

କାଞ୍ଚିରାଜ— କିଁ ପଣ୍ଡିତେ - ତମେ ବିଦାୟ ହେବ କ'ଣ ? ତୁମକୁ ତ ଉତ୍କଳର ରାଜଗୁରୁ ସଙ୍ଗରେ ଆଳାପ କରିବାକୁ ହେବ - ତେମେ ଯିବ କୁଆଡ଼େ ?

ପଣ୍ଡିତେ— ସରିଲା - ସବୁ ସରିଲା - ମୋ କଥା ଆଜି ଶେଷ । ନାହିଁ ମଣିମା - ମୋର ଟିକିଏ ମଧ୍ୟଭାଗର ପୀଡ଼ା ( ଦୁଇ ହାତ ଅଣ୍ଟାରେ ଦେଇ) ହେଁ - ହେଁ - ଟିକିଏ ପୁଷ୍କରିଣୀ ଜଳର - ନାହିଁ - ନାହିଁ - ବ୍ରାହ୍ମଣୀ କହିଥିଲେ କିଛି ଗଙ୍ଗା ମୃତ୍ତିକା ଆବଶ୍ୟକ । (ଚଞ୍ଚଳ ହେବା)

କାଞ୍ଚିରାଜ— ଭୟରେ ମୂର୍ଚ୍ଛା ଯିବେନା କ'ଣ ପଣ୍ଡିତେ ?

ପଣ୍ଡିତେ— (ସଲଜ୍ଜ ହୋଇ) ଯେଁ - ଭୟ - ଭୟ କାହାକୁ ମଣିମା ? ମହାରାଜାଙ୍କ ଛଡ଼ା ଇନ୍ଦ୍ରଚନ୍ଦ୍ର ଆସିଲେ ମଧ ମୋର ଭୟତ ଭୟ ବେପଥୁ ମଧ ଜାତ ହୁଏ ନାହିଁ । ହେଁ - ଛାର ଓଡ଼ିଆ ଦୂତ - ଓଡ଼ିଆ ପଣ୍ଡିତ - ତାଙ୍କୁ ପୁଣି ଭୟ ! (ଥରିବା)

କାଞ୍ଚିରାଜ— କି ପଣ୍ଡିତେ - ଏହିପରି ଗାତ୍ରକମ୍ପକୁ ପରା ବେପଥୁ କହନ୍ତି ?

ପଣ୍ଡିତେ— ଯେଁ-ଏଁ-ଏଁ- ନାହିଁ ଅବଧାନ - ହେଁ ହେଁ - ବେପଥୁଟା ଏଇପରି ହୋଇଥାଏ ଏକା ! (ହସି ହସି, ଜୋର୍‌ରେ ଥରିବା)

କାଞ୍ଚିରାଜ— ବେଶ୍, ବେଶ୍ - ଏ ଉତ୍ତମ ଅଭିନୟ - ତେବେ ଶତ୍ରୁର ଉପଭୋଗ୍ୟ - ସାବଧାନ ପଣ୍ଡିତେ - ଏଇଠାରେ ବସ ! (ବସାଇ ଦେବା)

(ମନ୍ତ୍ରୀଙ୍କର ପ୍ରବେଶ)

ମନ୍ତ୍ରୀ— ଜୟ - ମହାରାଜାଙ୍କ ଜୟ - ଉତ୍କଳ ଦୂତ ଦ୍ୱାର ଦେଶରେ ଅପେକ୍ଷା କରୁଛନ୍ତି । ଏହି ଚିଟାଉ ଆଣିଛନ୍ତି (ତାଳପତ୍ର ଚିଟାଉ ଆଗରେ ଧରିବା)

କାଞ୍ଚିରାଜ— (ଚିଟାଉ ନେଇ) ଚିଟାଉ ପୁଣି କାହିଁକି (ବିସ୍ମୟ), ପଢ଼ିଇ ପଣ୍ଡିତେ !

ପଣ୍ଡିତେ— ଚିଟାଉ ପୁଣି କ'ଣରେ ବାପା - ବିବାହ ପ୍ରସଙ୍ଗ - ସତେତ - ତା'ହେଲେ ମୋ ପୋଥିଗୁରା ଯେ ଘରେ (ଚିଟାଉ ଖୋଲି) ଏଃ - ଏଇଟା କିପରି ଚିଟାଉ ବା ? କାହିଁ କିଛି ଅକ୍ଷରତ ଦେଖା ଯାଉନାହିଁ । (ମୁଣ୍ଡ ଆଉଁସିବା) ମୋ ପ୍ରଚ୍ଛଷୁଟା ! (ମନ୍ତ୍ରୀ ଆସି ଝୁଙ୍କି ପଡ଼ି ଦେଖିବା)

ଓହୋ - ଅଛି - ଅଛି - ଅକ୍ଷର ଅଛି ମଣିମା - ଆମ ଆଖିରେ ଅଛପା ରହିବ ? ହେଁ ଏଥିରେ ଅକ୍ଷର ଅଛି ହଁ - ତେବେ ନାହିଁ କହିଲେ ଚଳେ (ହସି) ଅବଧାନ - ଓଡ଼ିଆ ଦେଶ ଚିଟାଉ ଅକ୍ଷରଗୁଡ଼ା ଯେପରି ବାଇଗଣ ମଞ୍ଜି - ଆହେ - ଏ କେଉଁଦେଶ ଅକ୍ଷରମ - କାହିଁ - ଅକ୍ଷରଗୁଡ଼ା ଗୋଟିଏ ଗୋଟିଏ ଘିଅଖିଆ ଗିନାପରି ହେବନା - ଏକାବେଳକେ ପିମ୍ପୁଡ଼ି ଆଉ ଢନ୍ଦା ଗୋଡ଼ପରି । ହଃ -

କାଞ୍ଚିରାଜ— ଦିଅ ଦିଅ ପଣ୍ଡିତେ - ତୁମ ଦ୍ୱାରା ହେବନାହିଁ -

ପଣ୍ଡିତେ— (ଅତି ସତ୍ୱର ବଢ଼ାଇ ଦେଇ) ଆଜ୍ଞା ମୋ ପ୍ରଚକ୍ଷୁତା (ମୁଣ୍ଡ ଆଉଁସିବା)

କାଞ୍ଚିରାଜ— (ପଢ଼ିସାରି) ଦେଖ ମନ୍ତ୍ରୀ ! ଓଡ଼ିଆର ଧୃଷ୍ଟତା ଦେଖ ! ପୁରୁଷୋତ୍ତମ ଦେବ ପୁଣି କାଞ୍ଚିକୁମାର କରପ୍ରାର୍ଥୀ । ଓଡ଼ିଆ-ରାଜା - ରାଜା ନା ଚଣ୍ଡାଳ ହେ ! (ଘୃଣାରେ ମୁହଁ ଫେରାଇବା) ।

ପଣ୍ଡିତେ— ବିବାହ ପ୍ରସ୍ତାବ ନୁହେଁ ମଣିମା ? ମୁଁ ପରା କହୁଥିଲି । ପୋଥିଗୁଡ଼ା ଭଲା ଆଣିଥାନ୍ତି ହେଲେ । ଆଜି କାହାମୁହଁ ଚାହିଁ ବାହାରିଥିଲି କେଜାଣି - ଆଛା ମନ୍ତ୍ରୀ ମହାଶୟ - କ୍ଷତିପୂରଣ କଥା କିଛି ନାହିଁତ ସେଥିରେ ?

ମନ୍ତ୍ରୀ— କି, ଆଜ୍ଞା ଏବେ ମହାରାଜ - ସେମାନଙ୍କୁ ଶ୍ରୀଛାମୁରେ ପ୍ରବେଶ କରାଇ ବି କି ?

କାଞ୍ଚିରାଜ— ନା - ନା -ମନ୍ତ୍ରୀ - ସେମାନଙ୍କୁ ମୋର ଏହି ଆଦେଶ ଜଣାଇ ଦିଅ । ଏତେ ବଡ଼ ଘୃଣ୍ୟ ପ୍ରସ୍ତାବ ମୋ ନିକଟକୁ ଆଣିବାକୁ ସେମାନେ ଟିକିଏ ଦ୍ୱିଧାବୋଧ କଲେ ନାହିଁ କିପରି - କହିଦିଅ ସେମାନଙ୍କୁ - କାଞ୍ଚିରାଜ - ଉତ୍କଳର ଏ ପ୍ରସ୍ତାବ ଉପରେ ପଦାଘାତ କଲେ - ଚଣ୍ଡାଳ ସହିତ ପଦ୍ମାବତୀର ବିବାହ ! ଯାଅ ମନ୍ତ୍ରୀ କହିଦିଅ - (ମନ୍ତ୍ରୀ ପ୍ରସ୍ଥାନ) ବୁଝିଲ ପଣ୍ଡିତେ ! ସେମାନଙ୍କୁ ଚକ୍ଷୁ ସମ୍ମୁଖରେ କିଛି ଗୋଟାଏ ଅନିଷ୍ଟ କରିବସନ୍ତି !

ପଣ୍ଡିତେ— ମହାରାଜ - ବିବେକି ! (ସ୍ୱଗତ) ଅନିଷ୍ଟଟା ମୋରି ହୋଇଥାନ୍ତା । ଗୋଟାଏ ରିଷ୍ଟ ଖଣ୍ଡନ ହେଲା - ନହେଲେ ଆଜି ଏ ଗରିବ ବ୍ରାହ୍ମଣଟାର

କଥା ବାରଣ୍ଡା ଦିକଡ଼ା - ଆଉ କ'ଣ ? ଗଣପତି ରକ୍ଷା କରିଛନ୍ତି - ମହାରାଜା - ତାହେଲେ ଆଜ୍ଞା ହେଲେ ମୁଁ (ହାତ ଘଷିହେବା)

କାଞ୍ଚିରାଜ— (ହସି ହସି) ବାହ୍ୟ ଚିନ୍ତା ଏପର୍ଯ୍ୟନ୍ତ ଯାଇ ନାହିଁ - ନୁହେଁ ପଣ୍ଡିତେ ? -

ପଣ୍ଡିତେ— ରାମଃ (ଦୀର୍ଘ) ବାହ୍ୟଚିନ୍ତା (ବିଦ୍ରୁପ ଭାବ) ପୁଷ୍କରିଣୀ ଜଳ - ଆଜ୍ଞା ନାହିଁ ନାହିଁ - ମଧ୍ୟଦେଶରେ ଟିକିଏ ସାମାନ୍ୟ ପୀଡ଼ା ଥିଲା - (ପେଟଧରି ନଇଁ) ନହେଲେ ସ୍ନାନାହ୍ନିକ ପରେ ପୁଣି ପୁଷ୍କରିଣୀ ଜଳ - ହେବ -

କାଞ୍ଚିରାଜ— ସ୍ପର୍ଦ୍ଧା - ସ୍ପର୍ଦ୍ଧା - ଏହି ଓଡ଼ିଆ ନିର୍ଲଜ୍ଜ ଜାତିଟାର - ପଦ୍ମା ମଧ ଦେଖୁଛି ମା' ଠାରୁ ସେହି ଦୋଷ ପାଇଛି - ଅର୍ବାଚୀନ ବାଳିକା - ତା'ର ପୁଣି ସାହସ - ମୋ ମୁହଁରେ ସ୍ପଷ୍ଟ ଉତ୍ତର ଦିଏ - କହେଁ ମୁଁ ଜୟନ୍ତକୁ ବିବାହ କରିବି ନାହିଁ - ପୁଣି କ'ଣ ନା - ମୁଁ ଆଗହୁଁ ସ୍ୱୟମ୍ବରା ! (ଭାବି) ଜୟନ୍ତକୁ କିପରି ସନ୍ତୁଷ୍ଟ ଯେ କରୁଛି - ସେ ନହେଲେ ଏ ରାଜ୍ୟରକ୍ଷା ଅସମ୍ଭବ ହୋଇପଡ଼ିବ । ପଦ୍ମାର ସ୍ୱୟମ୍ବୃତ ପତି କିଏ ? ନଇଗୋଣ୍ଡାର ସେହି ଅଭଦ୍ରଟା ନାଃ - ଠିକ୍ ଠିକ୍ । ନିଶ୍ଚୟ ସେହି ପୁରୁଷୋତ୍ତମ ଦେବ, ତା'ର ପ୍ରାଣରକ୍ଷାକାରୀ - କିନ୍ତୁ ଛାର ଦାସୀପୁତ୍ରଟା ସେ - ଚଣ୍ଡାଳ - ହୁଁ - ପଦ୍ମା ଯେ ଜୟନ୍ତକୁ ଚାହେଁନା - ଏକଥା ଜୟନ୍ତକୁ କହିଲେ ଚଳିବ ନାହିଁ - କିଏ ?

ମନ୍ତ୍ରୀ— (ପ୍ରବେଶ କରି) ମହାରାଜ, ସେମାନେ ଥରେ ମାତ୍ର ଶ୍ରୀଛାମୁର ସାକ୍ଷାତ ପ୍ରାର୍ଥୀ । ଅନ୍ତତଃ ଚିଟାଉର ପ୍ରତ୍ୟୁତ୍ତର ଅଛି । ମୁଁ ମଧ ଏହି ପ୍ରତ୍ୟୁତ୍ତର ଲେଖାଇଛି ।

କାଞ୍ଚିରାଜ— କି ଲଜ୍ଜା କାହିଁ; ମନ୍ତ୍ରୀ କାଞ୍ଚିରାଜା ସମ୍ମୁଖରେ ତା'ର ଅବମାନନା - ତୁମ୍ଭେ ନିଜେ ଏହାର ଉତ୍ତର ଦେଇପାରିଲା ନାହିଁ ? ଅକର୍ମଣ୍ୟ, ଅପଦାର୍ଥ ।

ପଣ୍ଡିତେ— ଚାଲିବା ହେଉ ମନ୍ତ୍ରୀ ମହାଶୟ । ସେମାନଙ୍କୁ ମୁଁ ଗୋଟାଏ ଆଚ୍ଛା ଶୋଧନ ଦେଇ ଆସେ - କ'ଣ ହେଲା - କଥା ଉପରେ ପୁଣି କଥା । କାଞ୍ଚିରାଜାଙ୍କ କଥା ଉପରେ କଥା - ଇୟେ ଆମ ତମ କଥା ନୁହେଁ -

କାଞ୍ଚିରାଜ - ପ୍ରବଳ ପ୍ରତାପାନ୍ୱିତ ନରାଣାଂସିଂହ ନରସିଂହ ରାଓଙ୍କ କଥା ଉପରେ ପୁଣି କଥା -

କାଞ୍ଚିରାଜ— ଚୁପ୍, ଚୁପ୍ - ନା ସେ ତୁମ୍ଭମାନଙ୍କର କାର୍ଯ୍ୟ ନୁହେଁ - ଯାଅ ଡାକିଆଣ ସେମାନଙ୍କୁ (ମନ୍ତ୍ରୀ ପ୍ରସ୍ଥାନ)

ପଣ୍ଡିତେ— ହେଇରେ ମୋ କଥା ସଇଲା ! (ଉତ୍କଳ ଦୂତ, ମନ୍ତ୍ରୀ, ବାଚ୍‌ସ୍ପତି ପ୍ରବେଶ)

(ବାଚ୍‌ସ୍ପତି - ଆଶୀର୍ବାଦ କରିବା)

କାଞ୍ଚିରାଜ— ଆସ ଦୂତ - ଆସ ବାଚସ୍ପତି । ତୁମ୍ଭେମାନେ ଯେଉଁ ପ୍ରସ୍ତାବ ଆଣିଥିଲ - ତାହାର ଉପଯୁକ୍ତ ଉତ୍ତର ନେବାକୁ ତୁମ୍ଭମାନଙ୍କର ଇଚ୍ଛା ? ତେବେ ଶୁଣ - ଏହି ପ୍ରସ୍ତାବ ଉପରେ (ଚିଟାଉ ତଳେ ପକାଇ ଦେଇ ପଦାଘାତ କରିବା) ମୁଁ ବାରବାର ତିନିଥର ପଦାଘାତ କରେଁ । ଆହୁରି ମଧ ଯଦି ଶୁଣିବାକୁ ଇଚ୍ଛା ଶୁଣ । ଚଣ୍ଡାଳ ସହିତ କ୍ଷତ୍ରିୟ କନ୍ୟା କାଞ୍ଚିରାଜକୁମାରୀର ବିବାହ ପ୍ରସ୍ତାବ କରିବା ଭଳି ଧୃଷ୍ଟତା - ସେ କେବଳ ଓଡ଼ିଆଙ୍କୁ ହିଁ ଶୋଭାପାଏ । ଆଉ ମହାଦେଈ ଯେ ତମ ରାଣୀ ବୋଲାଉଛନ୍ତି - ଦାସୀ ମାତ୍ର ।

ବାଚ୍‌ସ୍ପତି— ସେ କିଏ ଚଣ୍ଡାଳ, ମହାରାଜ ? କାହା କଥା ବୋଲୁଛନ୍ତି ?

ଉତ୍କଳଦୂତ— ଚଣ୍ଡାଳ କିଏ ? ଦାସୀ କିଏ ?

କାଞ୍ଚିରାଜ— ଚଣ୍ଡାଳ ତୁମ୍ଭର ଗଜପତି । ଚଣ୍ଡାଳ ତୁମ୍ଭର ରାଜା ପୁରୁଷୋତ୍ତମ ଦେବ । ଯାହାର ବିବାହ ପ୍ରସଙ୍ଗ ନେଇ ତୁମ୍ଭେମାନେ ଆସିଅଛ । ସାମାନ୍ୟ ଦାସୀପୁତ୍ର ହୋଇ ଯେ ମହାରାଜା ବୋଲାଏଁ - ଯେଉଁ ନିର୍ଲଜ୍ଜ ସ୍ୱହସ୍ତରେ ଶତମୁଖୀ ଧରି ଜଡ଼କାଷ୍ଠ ପିଣ୍ଡଟାର ପଥ ପରିଷ୍କାର କରେ - ସେ କି ଚଣ୍ଡାଳଠାରୁ ଅଧମ ନୁହେଁ ? ଏବେ ଯାଅ (ଧମକାଇ) ଯାଅ ଶୀଘ୍ର ।

(ଉତ୍କଳୀମାନଙ୍କର କାନରେ ହାତଦେବା)

ଉତ୍କଳଦୂତ— କାଞ୍ଚିରାଜ - ମୋର ଦୌତ୍ୟ ଶେଷ ହୋଇଥିଲେ ମୁଁ ଏହି ଦଣ୍ଡରେ ଏ ରାଜସଭାରେ ମଧ ପଦାଘାତ କରି ଚାଲିଯାଇଥାନ୍ତି । (ମୁଣ୍ଡରେ

ହାତଦେଇ) ଯେଉଁ ବ୍ୟକ୍ତି ନୀଳାଚଳ ଠାକୁର ରାଜାଙ୍କୁ ଚଣ୍ଡାଳ ଆଖ୍ୟା ଦିଏ, ରାଜମାତା ମହାଦେଈଙ୍କୁ ଯିଏ ଦାସୀ କହେ - ସେ ବ୍ୟକ୍ତି ସହିତ ଆଳାପରେ ମୁଁ ମଧ୍ୟ ନିଜକୁ ଅପମାନିତ ମନେକରେ । କିନ୍ତୁ କାଞ୍ଚିରାଜ, ଆଦେଶ ଥିଲା ଯେ ଯଦି ପ୍ରସ୍ତାବରେ ଆପଣ ଅସ୍ୱୀକୃତ ହୁଅନ୍ତି - ତା'ହେଲେ ଗୋଟିଏ ମାତ୍ର କଥା ଆପଣଙ୍କୁ ଜଣାଇଁ ଦେବୁଁ । ତାହା ଏହି କାଞ୍ଚିସେନା ଉତ୍କଳର ବିଦ୍ରୋହୀମାନଙ୍କ ସଙ୍ଗରେ ଯାଇ ଖେମଣ୍ଡି ଯୁଦ୍ଧରେ ଯୋଗ ଦେଇ ଉତ୍କଳ ରାଜାଙ୍କର ଯେଉଁ ଅନିଷ୍ଟ କରିଛନ୍ତି, ତାହାର କ୍ଷତିପୂରଣ ସ୍ୱରୂପ ଗୋଦାବରୀର ଦକ୍ଷିଣସ୍ଥ ସମସ୍ତ ଜନପଦ ଉତ୍କଳ ଗଜପତି ପୁରୁଷୋତ୍ତମ ଦେବଙ୍କୁ ଛାଡ଼ିଦେବାକୁ ହେବ । ଏହାହିଁ ମହାଦେଈଙ୍କ ଆଦେଶ ।

କାଞ୍ଚିରାଜ— କ'ଣ ହେଲା ? ସ୍ତବ୍ଧରହ - ଚଣ୍ଡାଳର ଅଧମ, କୁକୁରଧାମ ଦୂତ - କିଏ ଅଛରେ - (ରକ୍ଷୀର ପ୍ରବେଶ ଓ ଅଭିବାଦନ) ବନ୍ଦୀକର ଏ ବର୍ବରଟାକୁ —

ବାଚ୍‌ସ୍ପତି— କାଞ୍ଚିରାଜ - ସେ ଯେ ଦୂତମାତ୍ର । ଆପଣଙ୍କର ଏ ବର୍ବର ଆଚ୍‌ରଣର ପ୍ରତିଫଳ ଗଜପତି ଅବଶ୍ୟ ଆପଣଙ୍କୁ ଦେବେ (ଦୂତର ଅସି ନିଷ୍କାସନ କରିବାର ଚେଷ୍ଟା ଓ ରକ୍ଷୀର ପଛଘୁଞ୍ଚା ଦେବା) ଛି ରାଉତ୍‌ରାୟ - ଏ ଓଡ଼ିଆର ଅଯୋଗ୍ୟ ଆଚ୍‌ରଣ ମୁଁ ତୁମ୍ଭଠାରୁ କଦାପି ପ୍ରତ୍ୟାଶା କରିନଥିଲି (ଦୂତର ଅର୍ଦ୍ଧମୁକ୍ତ ଅସି କୋଷବଦ୍ଧ କରିବା)

କାଞ୍ଚିରାଜ— ସ୍ତବ୍ଧରହ ବ୍ରାହ୍ମଣ - ନହେଲେ ତୁମ୍ଭକୁ ମଧ୍ୟ ବନ୍ଦୀ କରିବି । କି ସ୍ପର୍ଦ୍ଧା - ଦାସୀପୁତ୍ର ପୁରୁଷୋତ୍ତମ ସାମନ୍ତର ପୁଣି ସ୍ପର୍ଦ୍ଧା । ସେ ପୁଣି ମୋ ରାଜ୍ୟ ଉପରେ ଅଧିକାର ବିସ୍ତାର କରିବ - ନୁହେଁ !

ପଣ୍ଡିତେ— (ଥରିଥରି) ଶାନ୍ତ ଭବନ୍ତୁ ମହାରାଜ, ଶତ୍ରୁପକ୍ଷ ହସିବେ ।

କାଞ୍ଚିରାଜ— ଦୂର ହୁଅ ମୂର୍ଖ । (ଦ୍ୱାରୀର ପ୍ରବେଶ ଓ ଅଭିବାଦନ)

ଦ୍ୱାରୀ— ମହାରାଜ, ସେନାପତି ମହାଶୟ, ସାକ୍ଷାତପ୍ରାର୍ଥୀ ।

କାଞ୍ଚିରାଜ— କିଏ ! ଜୟନ୍ତ - ଶୀଘ୍ର ପଠାଅ ।

ଉତ୍କଳଦୂତ— କାଞ୍ଚିରାଜ । ଦୂତ ମାତ୍ର ମୁଁ - କିନ୍ତୁ ମୋର ମଧ ହାସ୍ୟ ଉଦ୍ବେଳିତ ହୋଇ ଉଠୁଛି । ଆପଣଙ୍କର ଏ ବୁଦ୍ଧିହୀନତାର ଅନ୍ଧତାଡ଼ନା ଦେଖି । କାଞ୍ଚିରାଜ - ସାବଧାନ - ହିତାହିତ ଜ୍ଞାନଶୂନ୍ୟ ହୋଇ କାର୍ଯ୍ୟ କରିବେ ନାହିଁ ।

କାଞ୍ଚିରାଜ— (ଚିତ୍କାର କରି) ବନ୍ଦୀକର - ବନ୍ଦୀକର ଏ ଦୁର୍ବୃତ୍ତଟାକୁ - ବାନ୍ଧି ଘେନିଯାଅ, ମୋ ସମ୍ମୁଖରୁ । (ପ୍ରହରୀ ବନ୍ଦୀ କରିବା)

ଉତ୍କଳଦୂତ— (ହାତ ଛଡ଼ାଇ) କାଞ୍ଚିରାଜ, ପୁଣି କହୁଛି ସାବଧାନ । ଜୟ ଜଗନ୍ନାଥଙ୍କର ଜୟ ! (ରକ୍ଷୀ ଟାଣୁଥିବା ଓ ଉତ୍କଳଦୂତ ନ ଘୁଞ୍ଚିବା)

(ଜୟନ୍ତ ରାଓର ପ୍ରବେଶ ଓ ଅଭିବାଦନ)

ଜୟନ୍ତ— ଜୟ ମହାରାଜଙ୍କର ଜୟ !

କାଞ୍ଚିରାଜ— (ଜୟନ୍ତକୁ କୋଳକରି ଉଠାଇ) ଆସ ଜୟନ୍ତ ବିଜୟୀ ପୁତ୍ର ମୋର । ବଡ଼ ଠିକ୍ ସମୟରେ ଆସିଛ । ବାହାମନୀ ସୁଲତାନକୁ ପରାସ୍ତ କରି ଆସିବା ପରେ ତୁମର ସାକ୍ଷାତ ପାଇନାହିଁ । କ୍ଷତ ବର୍ତ୍ତମାନ କିପରି ? ବର୍ତ୍ତମାନ ସମ୍ପୂର୍ଣ୍ଣ ସୁସ୍ଥ ହୋଇଛ ତ ଜୟନ୍ତ ?

ଜୟନ୍ତ— ଆଜ୍ଞା ହଁ ମହାରାଜ - ସଂପୂର୍ଣ୍ଣ ସୁସ୍ଥ ହୋଇଛି (ବିମର୍ଷଭାବେ)

କାଞ୍ଚିରାଜ— ଏପରି ଉଦାସ ବିମର୍ଷ କାହିଁକି ଦେଖୁଛି ? (ରହି) ଆଚ୍ଛା ବତ୍ସ - ଠିକ୍ ସମୟରେ ଆସିପହଞ୍ଚିଛ, ଜୟନ୍ତ । ଉତ୍କଳରାଜ ଗଜପତି ଚଣ୍ଡାଳ ବୃତ୍ତିଧାରୀ ପୁରୁଷୋତ୍ତମର ମାତା ପ୍ରସ୍ତାବ ପଠାଇଛନ୍ତି - ପଦ୍ମାବତୀ ସହିତ ପୁରୁଷୋତ୍ତମର ବିବାହ ଭିକ୍ଷାକରି । ତାଙ୍କ ପ୍ରସ୍ତାବରେ ଅମତ ହେଲେ - ଏହା ମଧ କହିପଠାଇଛନ୍ତି ଯେ ଖେମଣ୍ଡି ଯୁଦ୍ଧର କ୍ଷତିପୂରଣ ଦେବାକୁ ହେବ । ଏ ବିଷୟରେ ତୁମର ମତ କ'ଣ ଜୟନ୍ତ ? ଦୁଇଟାରୁ ଗୋଟାଏ ନହେଲେ ଯୁଦ୍ଧ ହେବ ?

ଜୟନ୍ତ— (ଉଠିଆସି ଅସି ଝନ୍‌ଝନ୍ କରି) ଅସହ୍ୟ ସେ ଲଜ୍ଜାକର ପ୍ରସ୍ତାବ ମହାରାଜ ! ମୋର ମତ ଯୁଦ୍ଧ ।

(ତରବାରୀ ନିଷ୍କାସନ କରି)

କାଞ୍ଚିରାଜ— ତେବେ ଯୁଦ୍ଧ । ଉତ୍ତମ । ଏ ଦୂତଟାକୁ କାରାଗାରରେ ନିକ୍ଷେପ କର । ଯେତେଦିନ ଯାଏଁ ଏ ବିଷୟରେ ନିଷ୍ପତ୍ତି ନ ହୋଇଛି - ସେତେଦିନ ପର୍ଯ୍ୟନ୍ତ ସେ ବନ୍ଦୀ । ଆଉ ଦେଶବିଦେଶକୁ ଖବର ଦିଅ ମନ୍ତ୍ରୀ - ଜେମାମଣିଙ୍କର ସ୍ୱୟମ୍ବର ହେବ - ସମସ୍ତ ଆୟୋଜନ କର । ସମସ୍ତ ରାଜନ୍ୟମଣ୍ଡଳୀଙ୍କୁ ନିମନ୍ତ୍ରଣ କର - କେବଳ ସେହି ଚଣ୍ଡାଳରାଜା, ଦାସୀପୁତ୍ର ପୁରୁଷୋତ୍ତମକୁ ଛାଡ଼ି - ବୁଝିଲ ?

ମନ୍ତ୍ରୀ— ଯେ ଆଜ୍ଞା ମହାରାଜ - ଆଉ ଏ ଉତ୍କଳର ବାଚ୍‌ସ୍ପତି ? ଚିଟାଉର ଉତ୍ତରଟା ? (ଦେବା)

କାଞ୍ଚିରାଜ— (ଭାବିବା ଓ ଉତ୍ତର ଚିଟାଉଟା ମନୋଯୋଗ ସହିତ ପଢ଼ିବା)

ଜୟନ୍ତ— ବ୍ୟର୍ଥ-ବ୍ୟର୍ଥ - ସବୁ ବ୍ୟର୍ଥ ହେଲା - ପଦ୍ମାବତୀର ସ୍ୱୟମ୍ବର ହେବ । ସ୍ୱୟମ୍ବର । ଶେଷରେ ପଦ୍ମାବତୀ ମଧ୍ୟ ବିମୁଖ ହେଲାପରା । ଏତେବଡ଼ ଯୁଦ୍ଧଟା ଜୟକରି ଆସିଲି - ବାହାମନୀ ସେନାକୁ କୁକୁର ପରି ରାଜ୍ୟର ସୀମାରୁ ବିତାଡ଼ିତ କରିଆସିଲି, ଅଥଚ୍ ପଦ୍ମା ପଦେ ହସିକରି କଥା କହିଲା ନାହିଁ ? ଯେଉଁ ପଦ୍ମା ସାମାନ୍ୟ ଜୟକୁ ମୋର ବିଜୟ ଅର୍ଘ୍ୟରେ ବନ୍ଦିତ କରୁଥିଲା - ନିଭୃତରେ ସ୍ୱହସ୍ତରେ ରଚିତ ଜୟମାଲ୍ୟ ଉପହାର ଦେଇ ଜୟର ମୂଲ୍ୟ ଶତଗୁଣ ବଢ଼ାଇ ଦେଉଥିଲା - ସେହି ପଦ୍ମାତ ଏ ! - କ'ଣ ହୋଇଛି ଏବେ ତା'ର ? ସେଦିନ କି ଦୁର୍ଦ୍ଦୈବ ବଳରୁ କେଜାଣି ସେହି ସ୍ତ୍ରୀଲୋକଟା ହାବୁଡ଼ରେ ପଡ଼ି ମୋର ପଥଭ୍ରାନ୍ତି ଓ କାଳବିଳମ୍ବ ହୋଇଯାଇଥିଲା । ନହେଲେ ହରିଣମାରୀଙ୍କର ଠାରେ ପଦ୍ମାର କାହିଁକି ଏ ବିପଦ ଘଟିଥାନ୍ତା ? ଆଉ କାହିଁକି ବା ବିଦେଶୀ ବର୍ବରଗୁଡ଼ାକ ତାକୁ ସେ ବିପଦରୁ ଉଦ୍ଧାର କରି ଏତେବଡ଼ କୃତିତ୍ୱ ଅର୍ଜନ କରିଥାନ୍ତେ ? ସେଥିପାଇଁ କ'ଣ ପଦ୍ମାବତୀ ରାଗ କରିଅଛି ? ହୋଇପାରେ - ହା ଦୈବ ! ଯେଉଁ ଜୟନ୍ତ ରାଓ ସବୁବେଳେ ପଦ୍ମାର ଅଦୃଶ୍ୟ ପ୍ରହରୀ ହୋଇଥାଏ, ତାକୁ ଏ ସୁଯୋଗରୁ ବଞ୍ଚିତ କରି ଅନ୍ୟକୁ ଦେଲୁ କାହିଁକି ? ଯେତେ ପଚାରିଲେ ହେଲେ କେହି ଏହାର ଉତ୍ତର ଦେଇପାରୁ ନାହିଁ । ଆଜି ନିଶ୍ଚୟ ପଦ୍ମାକୁ ପଚାରିବି । କିଏ ସେଦିନର ପ୍ରାଣରକ୍ଷା କର୍ତ୍ତା ? ନାହିଁ - ନିଶ୍ଚୟ -ନିଶ୍ଚୟ - ସେହି ଦିନରୁ ପଦ୍ମାର ମନୋଭାବର

ପରିବର୍ତ୍ତନ ଘଟିଛି । (ରହି ଚମକି) କ'ଣ ହେଲା ପଦ୍ମାବତୀ ମୋତେ ଚାହେଁନା ? ଚାହେଁନା - ନା, ନା ଏହା କଦାପି ହୋଇପାରେନା - ଜୟନ୍ତ ରାଓର ସମସ୍ତ ଶକ୍ତିର ଉତ୍ସ ଯେ ପଦ୍ମାବତୀ । ବିନା ପଦ୍ମାବତୀରେ ଯେ ଏ ଦେହରେ ତା'ର ପ୍ରାଣ ପର୍ଯ୍ୟନ୍ତ ରହି ନାହିଁ । କିଏ କହେ ପଦ୍ମାବତୀ ମୋତେ ଚାହେଁନା ? ପଦ୍ମାବତୀ ମୋତେ ଠିକ୍ ପୂର୍ବପରି ଚାହେଁ - ଖାଲି ଟିକିଏ ଅଭିମାନ କରିଛି । (ରହି) ଉଃ - ଯଦି ଏହା ସତ୍ୟ ହୁଏ ଯେ ପଦ୍ମାବତୀ ଅନ୍ୟଠାରେ ଆସକ୍ତ । ଉଃ - ତାହେଲେ ତାହେଲେ ହାଃ, ହାଃ, ଜୟନ୍ତ ରାଓ ଯେ ପ୍ରଳୟ ସୃଷ୍ଟି କରିବ । ନା, ନା ଥାଉ ସେ କଥା ପରେ - ଆଗେ ଏ ବିଷୟରେ ମୀମାଂସା ହୋଇଯାଉ । ଯାଏଁ ପଦ୍ମାକୁ ଥରେ ପଚାରେଁ - ଆଉ ଏ ଦୁର୍ମତି କାଞ୍ଚିରାଜ କେତେଦିନ ପର୍ଯ୍ୟନ୍ତ ମୋତେ କ୍ରୀଡ଼ା ପୁତ୍ତଳିକା ପରି ନଚାଇବ । ଆଉ କେତେକାଳ ମୋର ଏ ହୃଦୟ ଯୋଗେ ମୋତେ ଚୋର କୂଟ ଅଭିସନ୍ଧିରେ ସହାୟତା କରିବାକୁ ପଡ଼ିବ - ଉଃ, ପଦ୍ମାର ସ୍ୱୟମ୍ବର ହେବ - ଜୟନ୍ତ ଜୀଇଁ ଥାଉ ଥାଉ - ଏତେ ବିଶ୍ୱାସର - ଏତେ ପ୍ରାଣପାତ ପରିଶ୍ରମର ଏହି ପ୍ରତିଦାନ - ଆଚ୍ଛା - ଦେଖାଯାଉ ।

କାଞ୍ଚିରାଜ— ହୁଁ - ଏହି ବ୍ରାହ୍ମଣ - ତା'ର ଶିଖା ମୁଣ୍ଡନ କରି ତା'ର ଉପବୀତ ଛିନ୍ନକରି ଚଣ୍ଡାଳ ବେଶରେ ତା' ହସ୍ତରେ ଦୁଇଟି ସମାର୍ଜନୀ ବାନ୍ଧି ତାକୁ ଏହି ମୁହୂର୍ତ୍ତରେ ଏଠାରୁ ବିଦାୟ କରିଦିଅ । ଅନ୍ୟ ଉତ୍ତର ନାହିଁ । (ଦୁଇଟିଯାକ ଚିଟାଉ ଫିଙ୍ଗିଦେବା ଓ ମନ୍ତ୍ରୀ ଅଧୋମୁଖରେ ରହିବା) ।

ପଣ୍ଡିତେ— ମହାରାଜ ! ମହାରାଜ, ସେ ବ୍ରାହ୍ମଣ - ପୁଣି ଶ୍ରୀକ୍ଷେତ୍ରବାସୀ ।

କାଞ୍ଚିରାଜ— ଯାଅ - ସମସ୍ତେ ମୋ ସମ୍ମୁଖରୁ ଦୂର ହୁଅ - ଏହି ମୁହୂର୍ତ୍ତରେ ।

ବାଚ୍‌ସ୍ପତି— ଶାନ୍ତି ଶାନ୍ତି କାଞ୍ଚିରାଜ । ଶୁଣିଥିଲି ତମେ ନାସ୍ତିକ - ବର୍ତ୍ତମାନ ଦେଖୁଛି ତମେ ନାସ୍ତିକ ମଧ ନୁହେଁ - ତୁମ୍ଭେ ଜୀବନ୍ତ ଦାନବ - କିନ୍ତୁ ଯେଉଁ ଗୋବ୍ରାହ୍ମଣ ଦେବତା ଏ ଭାରତଭୂମିର ରକ୍ଷକ - ତାହାର ଅବମାନନା କଲେ କୌଣସି ଭାରତ ସନ୍ତାନର ପରିତ୍ରାଣ ନାହିଁ ଜାଣିଥାଅ ! ମନେରଖିଥାଅ ରାକ୍ଷସ ! ଶ୍ରୀ ମହାପ୍ରଭୁ ଜଗନ୍ନାଥଙ୍କର ଦୃଷ୍ଟି ଏ

ଭୂଭାରତରେ କୌଣସି ପ୍ରଦେଶରେ ପ୍ରତିହତ ହେବାର ନୁହେଁ - ମୁଁ ବୁଝିପାରୁଛି ଦର୍ପିତ ରାଜା - ତୁମ୍ଭର ଅଧଃପତନର ପଥ ତୁମେ ନିଜେ ହିଁ ଅନେକ ଦୂର ପର୍ଯ୍ୟନ୍ତ ପରିଷ୍କାର କରିସାରିଛ - ମୁଁ ଆଉ ତୁମ୍ଭଙ୍କୁ ଅଭିଶାପ ପର୍ଯ୍ୟନ୍ତ ଦେବିନାହିଁ - ଜାଣ । ତୁମ୍ଭେ ମୋର ଅଭିଶାପର ମଧ ଅଯୋଗ୍ୟ । ତେବେ ଏତିକି ମନେରଖ କାହାର ଦର୍ପ କାହାର ଅତ୍ୟାଚାର ଏ ବସୁନ୍ଧରା ବେଶିଦିନ ସହ୍ୟ କରେ ନାହିଁ - ବିଶେଷତଃ ତୁମପରି ଅଧର୍ମୀ ଯବନାଧମର ଦର୍ପ ନିଶ୍ଚୟ ଦିନେ ଚୂର୍ଣ୍ଣ ହେବ - ଚୂର୍ଣ୍ଣ ହେବ - ଚୂର୍ଣ୍ଣ ହେବ - ଆଉ ଯେତେବେଳେ ତୁମ୍ଭେ ଦୟାର ଭିଖାରି ହୋଇ ଦ୍ୱାରେ ଦ୍ୱାରେ ବୁଲିବ - ବିନ୍ଦୁମାତ୍ର କରୁଣାର କାଙ୍ଗାଳ କାଞ୍ଚିରାଜ ଯେତେବେଳେ ପ୍ରହୃତ କୁକୁର ପରି ସର୍ବଦ୍ୱାରରୁ ବିମୁଖ ହୋଇ ଫେରିବ ସେତେବେଳେ ମନେ ରଖ କାଞ୍ଚିରାଜ - ସେତେବେଳେ ନୀଳାଚଳର ସୁବର୍ଣ୍ଣ ତୋରଣ ତୁମପାଇଁ ଉନ୍ମୁକ୍ତ ରହିଥିବ - ସେତେବେଳେ ତୁମେ ଏ ଓଡ଼ିଆ ବକ୍ଷର କପାଟ ରୁଦ୍ଧ ପାଇବ ନାହିଁ । ଏହି ବ୍ରହ୍ମ ଗ୍ରନ୍ଥ ଧରି ମୁଁ ତୁମକୁ ଆଶୀର୍ବାଦ କରୁଛି କାଞ୍ଚିରାଜ । ଜଗନ୍ନାଥଙ୍କ କୃପାରୁ ସେଦିନ ତୁମ୍ଭର ଅତିଶୀଘ୍ର ଆସୁ । ମନ୍ତ୍ରୀ ମୁଁ ପ୍ରସ୍ତୁତ । ଜୟ ଜଗନ୍ନାଥଙ୍କର ଜୟ !

କାଞ୍ଚିରାଜ— ଦୂର ହୁଅ ପାଷାଣ୍ଡ, ଦୁର୍ମୁଖ ଓଡ଼ିଆ (ପଦାଘାତ ସମୟରେ ସତ୍ୟବତୀ ହଠାତ୍ ପ୍ରବେଶ କରି ଅନ୍ତରାୟ ହେବା ଓ ପଦାଘାତ ଗ୍ରହଣ କରିବା । ଉତ୍କଳଦୂତ ରକ୍ଷୀ ହସ୍ତରୁ ମୁକ୍ତ ହୋଇ ଅସି ନିଷ୍କାସନ ପରେ ରାଣୀଙ୍କୁ ଦେଖି ସ୍ଥିର ହେବା)

ସତ୍ୟବତୀ— ଏ ପୁରସ୍କାର ଯେ ମୋର ଏକା ପ୍ରାପ୍ୟ - ମୋର ଏକମାତ୍ର ସମ୍ବଳ ମହାରାଜ - ବ୍ରାହ୍ମଣ ! ଯାଅ ମୁଁ କାଞ୍ଚିର ମହାରାଣୀ - ଆଜ୍ଞାଦେଲି ନିର୍ବିଘ୍ନରେ ସ୍ୱଦେଶକୁ ଫେରିଯାଅ । ମହାରାଜ ! ତୁମ୍ଭର ପଦାଘାତ ପାଇଁ ଏ ଦାସୀ ସଦା ପ୍ରସ୍ତୁତ । ଚାଲନ୍ତୁ ଏବେ ଅନ୍ତଃପୁରକୁ ବିଜେ କରନ୍ତୁ ।

(ବାଚସ୍ପତିଙ୍କ ପ୍ରସ୍ଥାନ)

କାଞ୍ଚିରାଜ— ତୁମ୍ଭେ ଅନ୍ତଃପୁରକୁ ଯାଅ ରାଣୀ । ରାଜକାର୍ଯ୍ୟରେ ବାଧାଦେବାକୁ ତୁମ୍ଭଙ୍କୁ ଏକାଧିକବାର ବାରଣ କରିଛି - ଯାଅ । (ସତ୍ୟବତୀଙ୍କର ପ୍ରସ୍ଥାନ)

ସେନାପତି । ବନ୍ଦୀକର ଏ ଦୂତଟାକୁ - ଏ କୁକୁରଟାର ଧୃଷ୍ଟତା କ୍ରମେ ବଢ଼ି ଯାଉଚି, ଅବିଳମ୍ବେ ତାର ମୁଣ୍ଡପାତ କରାଅ ।

ଉତ୍କଳଦୂତ— (ହସି) କାଞ୍ଚିରାଜ ! କାହାକୁ କି ଭୟ ଦେଖାଉଛନ୍ତି ? ମୁଁ ଓଡ଼ିଆ ଖଣ୍ଡାୟତ - ଶ୍ରୀ ମହାପ୍ରଭୁ ଜଗନ୍ନାଥଙ୍କର ଦାସ । ଜୟ ଜଗନ୍ନାଥଙ୍କର ଜୟ - ଆସ ସେନାପତି ଶକ୍ତିଥିଲେ ତୁମ୍ଭର ରାଜଆଜ୍ଞା ପାଳନ କର । (ଅସି ନିଷ୍କାସନ) ଓଡ଼ିଆର ମୁଣ୍ଡପାତ ଏତେ ସହଜ ନୁହେଁ କାଞ୍ଚି ସେନାପତି) । (ଯୁଦ୍ଧ)

କାଞ୍ଚିରାଜ— କିଏ ଅଛରେ ! (ଦ୍ୱାରୀଗଣଙ୍କ ପ୍ରବେଶ ଓ ଅଭିବାଦନ) ବନ୍ଦୀକର ଏ ଦୁର୍ବୃତ୍ତଟାକୁ - ସେନାପତି ! ଯୁଦ୍ଧ ତ୍ୟାଗ କର । (ସେନାପତି ଆହତ ହେବା)

ଉତ୍କଳଦୂତ— (ହସି) କାଞ୍ଚି ସେନାପତି ! ରାଜଆଜ୍ଞା ପାଳନ କର - ଓଡ଼ିଆର ମୁଣ୍ଡପାତର ବ୍ୟବସ୍ଥା ପରେ ହେବ - ନିଜ ମୁଣ୍ଡ ବଞ୍ଚାଅ - ଯାଅ - ଆସରେ ଶୃଗାଳର ଦାସ - ବନ୍ଦୀକର ମୋତେ ଯଦି ସାଧଥାଏ । (ରକ୍ଷୀଙ୍କ ସହିତ ଯୁଦ୍ଧ)

କାଞ୍ଚିରାଜ— (ଆଖିରେ ଆଶ୍ଚର୍ଯ୍ୟ ଓ ସମ୍ଭ୍ରମର ଦୃଷ୍ଟି)ବାଃ, - ବାଃ କି ଅସିଚାଳନା ଦେଖାଇଲା ଖଣ୍ଡାୟତ - ବାଃ (ବିଭୋର ହୋଇ ରହିବା) (ପଦ୍ମାଙ୍କ ପ୍ରବେଶ)

ସେନାପତି— (ହୁଁକାର) ଆରେ ରେ ବର୍ବର । (ଯୁଦ୍ଧ)

ପଦ୍ମାବତୀ— (ଆଗେଇ) ପିତା - କି ଆଶ୍ଚର୍ଯ୍ୟ - ଗୋଟିଏ ବୀରକୁ ପାଞ୍ଚଜଣ ପ୍ରତିଯୋଦ୍ଧା - ଏ ଯେ ସେନାପତି - ଏ କ'ଣ ପିତା ? ଏ ଅନ୍ୟାୟ ଯୁଦ୍ଧ ବାରଣ କରୁନାହାନ୍ତି କାହିଁକି ପିତା ? (ଯୁଦ୍ଧ ମଧ୍ୟରେ ପଶି) ସ୍ଥିର ହୁଅ ରକ୍ଷୀଗଣ - ଲଜ୍ଜାନାହିଁ ତୁମ୍ଭ ମୁଖକୁ - ଗୋଟିଏ ଖଣ୍ଡାୟତକୁ ଆୟତ୍ତ କରିବାକୁ ନିଜେ କାଞ୍ଚି ସେନାପତି ମଧ୍ୟ ଚାରିଜଣ ସୈନିକର ସାହାଯ୍ୟ ଆବଶ୍ୟକ କରନ୍ତି - ଏ କ'ଣ ଜୟନ୍ତଭାଇ - ତୁମେ ଆହତ -

(ସେନାପତିଙ୍କ ନିକଟକୁ ଯାଇ ଦେଖିବା)

ସେନାପତି— ମୋତେ ଛାଡ଼ ହେମାମଣି - ମୁଁ ବିଶେଷ ଆହତ ନୁହେଁ । (ପଦ୍ମା ଅଟକାଇବା)

କାଞ୍ଚିରାଜ— (ସ୍ୱପ୍ନୋତ୍ଥିତ ପରି) ପଦ୍ମା-ପଦ୍ମା-ତୁ ଏଠି - ଯା ମା - ଭିତରକୁ ଯା !

ପଦ୍ମାବତୀ— ଖଣ୍ଡାୟତ - ଧନ୍ୟ ତୁମ୍ଭର ଅସିଚାଳନା - ବାବା ୟାଙ୍କୁ ମୁକ୍ତ କରିଦିଅନ୍ତୁ !

କାଞ୍ଚିରାଜ— ଧନ୍ୟ ଅସିଚାଳନା ସତେ - ବାଃ - ମୁକ୍ତ କରିଦେବି ? ସେତ ବନ୍ଦୀ ନୁହେଁ - ହାଃ - ହାଃ ।

ଉତ୍କଳଦୂତ— ଜୟ ଜଗନ୍ନାଥଙ୍କର ଜୟ ! (ଜାନୁପାତ କରି ଓ ଦୁଇହସ୍ତରେ ନିଜର ଅସି ଉପହାର ଦେଇ) ଜୟ - ପଦ୍ମାବତୀ - ମହାରାଣୀ । ମହାଦେବୀ ଏ ଦୀନହୀନ ଓଡ଼ିଆର ଏହି ଏକମାତ୍ର ସମ୍ବଳ, ଏକାମାତ୍ର ଏହି ଖଣ୍ଡା ତୁମ ଶ୍ରୀଚରଣରେ ଭେଟି ଦେଉଚି ମା ! ଓଡ଼ିଆର ସମ୍ମାନ ରଖ ମା ଶକ୍ତିମୟୀ !

ପଦ୍ମାବତୀ— ଉଠ - ଖଣ୍ଡାୟତ - ତୁମେ ତୁମ ନିଜଗୁଣରେ, ନିଜ ବାହୁ ବଳରେ ମୁକ୍ତ ଓ ସ୍ୱାଧୀନ ! ଓଡ଼ିଆ ତୁମକୁ କ'ଣ ତୁମର କର୍ତ୍ତବ୍ୟ ଶିକ୍ଷା ଦେବାକୁ ହେବ ? ଯାଅ - ତୁମେ ଯେ ମୁକ୍ତ । (ରକ୍ଷୀହେରିକା ରାଜାଙ୍କ ନତିଦୂରେ ନିଶ୍ଚଳ ରହିବା) ।

କାଞ୍ଚିରାଜ— ନା - ନା, ଏଗୁରା ତୁଚ୍ଛା ଓଲାମି ।

ଉତ୍କଳଦୂତ— (ଉଠି) ମୁଁ ମୁକ୍ତ - ମୁଁ ସ୍ୱାଧୀନ - କିନ୍ତୁ କାହିଁରେ ମୋର ଶକ୍ତି, କାହିଁରେ ମୋର ମୁକ୍ତି - କର୍ତ୍ତବ୍ୟର ନିୟମ ପାଳନ - ତାହାହିଁ ମୋର ମୁକ୍ତି ନୁହେଁ ମା ? ଭଲ ଶିକ୍ଷାଦେଲ - ଏ ଅବୋଧ ସନ୍ତାନକୁ ମା - କାଞ୍ଚିରାଜ - ଏଇ ମୁଁ ଅସି ତ୍ୟାଗ କଲି, ମୋତେ ବନ୍ଦୀ କରନ୍ତୁ । (ରକ୍ଷୀଦ୍ୱୟ ଅଗ୍ରସର ହୋଇ କ୍ଷିପ୍ର ହସ୍ତରେ ବନ୍ଦୀ କରି)

ଜୟନ୍ତ— ବାଃ - ୟାରି ନାଁ ତ ଓଲାମି - (ଅନ୍ୟ କେତେଜଣ ରକ୍ଷୀ ସହିତ ସେନାପତିଙ୍କର ପ୍ରସ୍ଥାନ)

ପଦ୍ମାବତୀ— ଉତ୍ତମ - ବାବା - ବାବା (ଅଗ୍ରସର ହେବା)

କାଞ୍ଚିରାଜ— ରହ ରକ୍ଷୀ (ରକ୍ଷୀଗଣ ଫେରିବା) ନା - ନା, ଯାଅ, ଘେନିଯାଅ (ରକ୍ଷୀଗଣ ଉତ୍କଳଦୂତକୁ ନେଇ ପ୍ରସ୍ଥାନ) ମା - ପଦ୍ମା ! ଓଡ଼ିଯାଗୁରା ଭାରି ହୁଣ୍ଡା ଭାରି ଓଲୁ, ନୁହେଁ- ? (ଅନ୍ୟମନସ୍କ ଭାବରେ ପଦଚାରଣ)

ପଦ୍ମାବତୀ— ହଁ ବାବା । କିନ୍ତୁ ସେ ହୁଣ୍ଡାମି - ସେ ଓଲାମି ଦେଖିଲେ ପାଷାଣରେ ମଧ ଶିହରଣ ଜାଗି ଉଠେ । ଗୁଢ ହୃଦୟର ଉତ୍କ୍ଷିପ୍ତ ଅର୍ଗଳରେ ମଧ ଆମନ୍ତ୍ରଣର ସ୍ପନ୍ଦନ ଲାଗିଯାଏ ବାବା । ଓଡ଼ିଆ ଭାରି ବଡ଼ । ଭାରି ବଡ଼ ବାବା ।

କାଞ୍ଚିରାଜ— ପଦ୍ମା ! କ'ଣ ଭାବୁଛୁ ? ଓଡ଼ିଆ ସହିତ ଯୁଦ୍ଧ ହେବ - ଶୁଣିଛୁ ? କାହିଁକି ଜାଣୁ ? ତୋରି ପାଇଁ - ଜାଣୁ ଓଡ଼ିଆର କେତେଦୂର ଦୁଃସାହସ । କେତେ ସ୍ପର୍ଦ୍ଧା ? ଦାସୀପୁତ୍ର ପୁରୁଷୋତ୍ତମ, ଓଡ଼ିଆଙ୍କ ଚଣ୍ଡାଳରାଜା ତା' ପାଇଁ ତୋ' ହସ୍ତ ଭିକ୍ଷାକରି ଦୂତ ପଠାଇଛନ୍ତି କିଏ ଜାଣୁ ? ତାଙ୍କ ଦାସୀ ମାତା ? (କାନ୍ଧ ଉପରେ ହାତରଖି) କିଛି ମନଦୁଃଖ କରନା ମା- ପଦ୍ମା - ମୁଁ ସେ ପ୍ରସ୍ତାବରେ ପଦାଘାତ କରିଛି - ଆଉ ମା ତୋର ସ୍ୱୟମ୍ବର ପାଇଁ ସମସ୍ତ ଆୟୋଜନ କରିଛି - ମନ ଊଣା କରିବୁ ନାହିଁ ମା - !

ପଦ୍ମାବତୀ— ରକ୍ଷାକର - ରକ୍ଷାକର ପିତା ମୋତେ ଏ ଦଣ୍ଡ ଦିଅନ୍ତୁ ନାହିଁ ବାବା - ମୁଁ ଯେ ଆଗହୁଁ ସ୍ୱୟମ୍ବରା - (ବେଗେ ପ୍ରସ୍ଥାନ)

(ହଠାତ୍ ସତ୍ୟବତୀଙ୍କର ପ୍ରବେଶ)

ସତ୍ୟବତୀ— ମହାରାଜ - ଏ ଦାସୀ ଜୀବନରେ କୌଣସି ଭିକ୍ଷା କରିନାହିଁ ଆପଣଙ୍କ ଚରଣରେ - ପ୍ରଭୁ ! ଏହି ଅନୁରୋଧ ଟିକକ ଦାସୀର ରଖିବା ହେଉ ମହାରାଜ ! ପ୍ରାଣର ପଦ୍ମା ମୋର ଆଉ ବଞ୍ଚିବ ନାହିଁ ମହାରାଜ । ମୁଁ ମିନତି କରୁଛି - ତୁମ୍ଭ ଚରଣ ଧରି ଅଳି କରୁଛି - ଗଳଲଗ୍ନୀକୃତବାସ ହୋଇ - ଦନ୍ତରେ ତିରଣଧରି ମୁଁ ପ୍ରାର୍ଥନା କରୁଛି - ଅବୋଧ ବାଳିକାର ଜୀବନ ନାଶର ବ୍ୟବସ୍ଥା କରନ୍ତୁ ନାହିଁ । ଉତ୍କଳ ମହାରାଜଙ୍କ ପ୍ରସ୍ତାବରେ ସମ୍ମତ ହୁଅନ୍ତୁ ମହାରାଜ ।

(ଚରଣ ଧରିବା)

କାଞ୍ଚିରାଜ— (ଘୋଡ଼ ଛଡ଼ାଇ ଆଣି) ରାଣୀ ! ସାବଧାନ - ସବୁଥର କହିଛି ମୋ ଇଚ୍ଛା ବିରୋଧରେ କୌଣସି କଥା କହିଲେ ଅନିଷ୍ଟ ହେବ ଅଚିରେ ମୋର ଆଜ୍ଞା ପାଳିତ ହେବା ଦରକାର । ନୋହିଲେ ରାଜରାଣୀ - ବା ରାଜକନ୍ୟା ବୋଲି ତୁମ୍ଭଙ୍କୁ ରାଜଦଣ୍ଡରୁ ଅବ୍ୟାହତି ମିଳିବ ନାହିଁ କହି ରଖୁଛି ।

ସତ୍ୟବତୀ— (ଉଠି) ଦିଅନ୍ତୁ - ଦିଅନ୍ତୁ ଦଣ୍ଡ ମହାରାଜ । ମୋର ଅଭାଗିନୀ କନ୍ୟାର ଜୀବନ୍ତ ସମାଧି ପୂର୍ବରୁ ମୋର ଏ ଛାର ପ୍ରାଣଟାକୁ ରାଜଦଣ୍ଡରେ ଚୂର୍ଣ୍ଣ କରିଦିଅନ୍ତୁ । ଏ ଜୀବନ ଥାଇ କଦାପି ମୁଁ ଏ କ୍ରୁର କର୍ମର ଭାଗୀ ହୋଇପାରିବି ନାହିଁ - ମୋତେ ଆଗେ ବଧ କରନ୍ତୁ ମହାରାଜ ।

କାଞ୍ଚିରାଜ— ବଧ ହିଁ କରିବି ନାରୀ । ଯଦି ଆବଶ୍ୟକ ହୁଏ, ମୁଁ ଜାଣେ ରାଣୀ ! ତୁମରି ଦୁର୍ବୁଦ୍ଧିର ଫଳ ଏହି ବିଦ୍ରୋହାଚରଣ । କିହେଲା - ମୁଁ ପ୍ରବଳ ପ୍ରତାପାନ୍ୱିତ କାଞ୍ଚିରାଜ ନରସଂହ ରାଓ - ଯା'ର ଆଜ୍ଞା ଦେଶ ଦେଶାନ୍ତର ମଧ୍ୟରେ ଅବମାନିତ ନୁହେଁ - ଆଉ ମୋହରି ରାଣୀ - ମୋହରି ଢେମା - ମୋର ଅବାଧ । ପଦ୍ମାର ଅବାଧତାର କାରଣ ତୁମ୍ଭେ ରାଣୀ - କିଛି କହିବାର ଆବଶ୍ୟକ ନାହିଁ । ମୁଁ ସବୁ ଜାଣେ । ତୁମ୍ଭେ ନିଜେ ଓଡ଼ିଆ ରାଜ୍ୟର କନ୍ୟା ବୋଲି ତୁମ୍ଭର ଇଚ୍ଛା ଯେ ଓଡ଼ିଆ ରାଜା ସେହି ଚଣ୍ଡାଳଟାର ଗଳାରେ ମୋର କନକ ପ୍ରତିମା ପଦ୍ମାବତୀ ବରମାଲ୍ୟ ଦେବ ?

ସତ୍ୟବତୀ— ମହାରାଜ ! ଏ ଆପଣଙ୍କର ଅନ୍ୟାୟ ଆକ୍ରୋଶ । ନିତାନ୍ତ ଅଯଥା ଦୋଷାରୋପ ମହାରାଜ । ଚିରଦିନ ତୁମ୍ଭେ ମୋର ଜନ୍ମଭୂମିର ନିନ୍ଦାକରି ଆସିଛ - ମୁଁ ସହିଆସିଛି । ପଦେ କଥା ପର୍ଯ୍ୟନ୍ତ କହିନାହିଁ, କିନ୍ତୁ-

କାଞ୍ଚିରାଜ— (ଧମକାଇ) ସ୍ତବ୍ଧ ରହ ପାପିଷ୍ଠା - ମନେ କରିଛୁ ରକ୍ତଚକ୍ଷୁ ଦେଖାଇ କାଞ୍ଚିରାଜର ପ୍ରତିଜ୍ଞା ଟଳାଇଦେବୁ ?

ସତ୍ୟବତୀ— ନାହିଁ କାଞ୍ଚିରାଜ ! ସେ ଦୁରାଶା ଏ ହୃଦୟରେ ଆଉ ସ୍ଥାନ ପାଇବାର ନୁହେଁ । ମୁଁ ଜାଣେ କ୍ରୁର ରାଜା । ତୁମ୍ଭର ହୃଦୟ ମଧ୍ୟରେ ପ୍ରସ୍ତରମୟ ସ୍ୱାର୍ଥର ମୋହ ଅଭିମାନ ଛଡ଼ା ଆଉ କିଛି ନାହିଁ । ଆଉ କିଛି ନାହିଁ - କନ୍ୟାର ବିବାହକୁ ମଧ୍ୟ ବ୍ୟାବହାରିକ ଶାସ୍ତ୍ର ଦ୍ୱାରା ନିୟମିତ କରିବାକୁ

ଚାହଁ । କିନ୍ତୁ ଏ ତୁମର ଭୁଲ୍ ରାଜା - ନିତାନ୍ତ ଭୁଲ୍ ଧାରଣା ଯେ, ମୁଁ ଜନନୀ ହୋଇ ଗର୍ଭଧାରିଣୀ ହୋଇ ମୋ କନ୍ୟାର ହୃଦୟକୁ ପଣ୍ୟ ସାମଗ୍ରୀ ଜ୍ଞାନ କରିବି । ତୁମ୍ଭେ ଜାଣିନା କଠିନ ପୁରୁଷ । ନାରୀ ଥରେ ହୃଦୟ ଦାନ କଲେ ଆଉ ତା'ର ପ୍ରତ୍ୟାହାର କରିବାର ଶକ୍ତି ଏ ତ୍ରିଜଗତରେ ନାହିଁ । ଜାଣ ଅନ୍ଧ - ପ୍ରାଣର ପଦ୍ମା ମୋର ପୁରୁଷୋତ୍ତମ ଦେବଙ୍କ ଠାରେ ହିଁ ସମସ୍ତ ମନପ୍ରାଣ ସମର୍ପଣ କରିସାରିଛି । ପୁରୁଷୋତ୍ତମହିଁ ତା'ର ପ୍ରାଣରକ୍ଷା କରିଛି ସେଦିନ -

କାଞ୍ଚିରାଜ— (ଚମକି) ମିଥ୍ୟା, ମିଥ୍ୟା - ଘୋର ମିଥ୍ୟା । ଦୂର' ହ ପାପୀୟସୀ ମୋ ସମ୍ମୁଖରୁ ଦୂର' ହ । ମୋରି କନ୍ୟା - ମୋରି ରକ୍ତ ଯାହା ଶରୀରରେ ପ୍ରବାହିତ - ସେ ଏତେଦୂର ନୀଚ଼ ଆତ୍ମସମ୍ମାନଜ୍ଞାନଶୂନ୍ୟ ହୋଇନପାରେ !

(ବିଷର୍ଣ୍ଣ ପଦ୍ମାବତୀଙ୍କର ପୁନଃପ୍ରବେଶ ଓ କାଞ୍ଚିରାଜଙ୍କୁ ନତମସ୍ତକ ଓ ପଦପ୍ରାନ୍ତରେ ବସିପଡ଼ି)

ପଦ୍ମାବତୀ— ପିତା - ଏହା ମିଥ୍ୟା ନୁହେଁ, ଏହା ସତ୍ୟ ।

କାଞ୍ଚିରାଜ— (ସବଳେ ପଦ୍ମାକୁ ଟାଣି ଉଠାଇ) କ'ଣ ସତ୍ୟ - କ'ଣ ସତ୍ୟ ଦୁର୍ବିନୀତା ? ତୁ ପୁଣି ପୁରୁଷୋତ୍ତମ ଦେବର ପ୍ରେମାକାଂକ୍ଷିଣୀ ? କହ, କହ ଏ ନିର୍ଲଜ୍ଜ କଥା କ'ଣ ସତ୍ୟ ? କହ, ଶୀଘ୍ର କହ !

ପଦ୍ମାବତୀ— ହଁ, ପିତା ସତ୍ୟ । ପିତା ମୁଁ ବଡ଼ ଅଭାଗିନୀ । କଳଙ୍କିନୀ କନ୍ୟାକୁ କ୍ଷମା କରନ୍ତୁ ପିତା ।

କାଞ୍ଚିରାଜ— ହୁଁ, କ୍ଷମା ନାହିଁ, କ୍ଷମା ନାହିଁ - ପ୍ରଗଲ୍‌ଭା ବାଳିକା (ଭାବି) ଆଚ୍ଛା ତୁ କ'ଣ ଚାହୁଁ ଯେ ତୋର ଉଚ୍ଚଶିର ପିତା କାଞ୍ଚିରାଜ ନରସିଂହ ରାଓ ନତଜାନୁ ହୋଇ ସେ ଚଣ୍ଡାଳର ପ୍ରତ୍ୟାଖ୍ୟାତ କର ପୁଣି ପ୍ରାର୍ଥନା କରିବ ? କହ ପଦ୍ମା - ସ୍ପଷ୍ଟ ଉତ୍ତର ଦେ ?

ପଦ୍ମାବତୀ— (ହାତ ଉଠାଇ) ନାହିଁ, ନାହିଁ ପିତା ! କଦାପି ନୁହେଁ ! ଭାଗ୍ୟହତାକୁ ଆଉ ଦହନ କରନ୍ତୁ ନାହିଁ ମହାରାଜ ! (ସତ୍ୟବତୀଙ୍କୁ ଧରି) ମୋ...

ଆଉ ଏ ଜଗତରେ କୌଣସି ଅଭିଳାଷ ନାହିଁ ମା', ମୋତେ ଶ୍ରୀଚରଣରୁ ବିଦାୟ ଦିଅ । (ସତ୍ୟବତୀଙ୍କୁ ଆଲିଙ୍ଗନ କରିବା)

କାଞ୍ଚିରାଜ— (ଚାହିଁ) ପଦ୍ମା, ସାବଧାନ ମୋରି ସମ୍ମୁଖରେ ମୋରି ଅପମାନ । ସେ ତୋର ଜନନୀ ସତ୍ୟ, କିନ୍ତୁ ସେ ପିଶାଚିନୀ । ତାରି ହେତୁ ହିଁ ତୋର ଆଜି ଏ ହାସ୍ୟକର ଦଶା । ଛାଡ଼ି ଦେ ମୋ କନ୍ୟାକୁ ରାକ୍ଷସୀ (ପଦ୍ମାଙ୍କୁ ଟାଣି ଆଣିବା) ହୁଁ, ଏତେଦୂର । କିଛି ଦିନ ଏ ଦୁହିଁଙ୍କୁ ପୃଥକ୍ କରି ରଖିଲେ, ପଦ୍ମାର ଏ ବାତୁଳତା ନିଶ୍ଚୟ ଦୂର ହେବ । କିଏ ଅଛିରେ -

(କଞ୍ଚୁକୀର ପ୍ରବେଶ)

କଞ୍ଚୁକୀ— ମହାରାଜଙ୍କର ଜୟ ହେଉ ! କି ଆଜ୍ଞା ମହାରାଜ !

କାଞ୍ଚିରାଜ— ଦେଖ କଞ୍ଚୁକୀ, ମହାଦେଈଙ୍କର ଗମ୍ଭୀରାବାସର ଇଚ୍ଛା ବଳବତୀ ହୋଇଛି । ତାଙ୍କର ନିର୍ଜନବାସର ବ୍ୟବସ୍ଥା ଶୀଘ୍ର କର ।

(କଞ୍ଚୁକୀ ଆଶ୍ଚର୍ଯ୍ୟ ହୋଇ ଚାହିଁଲା)

ସତ୍ୟବତୀ— ମହାରାଜ ! ନିର୍ଜନ କାରାଦଣ୍ଡ କହିଲେ କଞ୍ଚୁକୀର ସୁବୋଧ ହୁଅନ୍ତା - ଏହାହିଁ କି ତୁମ୍ଭର ଆଦେଶ ।

କାଞ୍ଚିରାଜ— କିପରି ବୁଝିଲ ? ନିର୍ଜନ କାରାବାସ ଉପଯୁକ୍ତ ରାଜଦଣ୍ଡ ହେଲାକି ନା ? (କ୍ରୁର ହାସ୍ୟ)

ପଦ୍ମାବତୀ— (ଆଶ୍ଚର୍ଯ୍ୟ ହୋଇ) ପିତା ! ମୋର ଜନନୀ ମହାଦେବୀ କାଞ୍ଚି ପଟ୍ଟମହିଷୀଙ୍କ ଉପରେ ଏ ଅତ୍ୟାଚାରର ଅଭିପ୍ରାୟ ? ମା, ମା ! (ପୁଣି ଧାଇଁ ଯାଇ ସତ୍ୟବତୀଙ୍କୁ କୋଳ କରିବା)

ସତ୍ୟବତୀ— ଆ-ମା-ଥରେ ତୋତେ କୋଳ କରିଥାଏଁ (କୋଳ କରିସାରି) ଆସ କଞ୍ଚୁକୀ !

ପଦ୍ମାବତୀ— (ସତ୍ୟବତୀଙ୍କୁ ନଛାଡ଼ି) କୁଆଡ଼େ ଯିବ ମା - ନା, ନା - ଏହା କଦାପି ହୋଇନପାରେ । (ଛାଡ଼ିଦେଇ କାଞ୍ଚିରାଜଙ୍କ ପାଦ ଧରି ନତଜାନୁ ହୋଇ)

ପିତା, ପିତା ! ଜନନୀର ଯଦି କୌଣସି ରାଜଦଣ୍ଡ ପ୍ରାପ୍ୟ ହୁଏ ତାହା ଏ କଳଙ୍କିନୀ କନ୍ୟା ନତ ଶିରରେ ଗ୍ରହଣ କରିବାକୁ ପ୍ରସ୍ତୁତ । ମହାରାଜ - ଆଦେଶ କରନ୍ତୁ, କି ଦୋଷରେ ଏ ଗୁରୁଦଣ୍ଡ ।

କାଞ୍ଚିରାଜ— ପଦ୍ମା, ତୁ ବୁଝିପାରିବୁ ନାହିଁ ତା'ର କି ଦୋଷ ! ସେ ଘୋର ବିଶ୍ୱାସଘାତିନୀ ! ଶତ୍ରୁ ପକ୍ଷର କ୍ରୀତଦାସ ପ୍ରାୟ, ପତିଦ୍ରୋହୀ, ରାଜଦ୍ରୋହୀ, କାଳସର୍ପ ହୋଇ ତୋ ଦେହି ମୋତେ ଆଜି ଦଂଶନ କରିଛି । ତା'ର ଉପଯୁକ୍ତ ଦଣ୍ଡ ଆଜୀବନ ନିର୍ଜନ କାରାବାସ ।

ପଦ୍ମାବତୀ— (କାନରେ ହାତ ଦେଇ ଉଠି) ପିତା ଏ'କି କଥା କହୁଛନ୍ତି । ଜନନୀ ମୋର ଦେବୀ ସ୍ୱରୂପା । ତାଙ୍କୁ ଏ'କି ଆଖ୍ୟା ଦେଉଛନ୍ତି ପିତା - ମୁଁ ଯେ କିଛି ବୁଝିପାରୁ ନାହିଁ ।

କାଞ୍ଚିରାଜ— ହାଃ, ହାଃ ବୁଝିପାରୁନାହୁଁ । ତୋତେ କିଏ ପିତାର ଅବାଧ ହେବାକୁ ଶିଖାଇଲା - ଏହି ସେହି ନାରୀ । କିଏ ତୋତେ ପିତୃଶତ୍ରୁ, ରାଜଶତ୍ରୁ ଚଣ୍ଡାଳଟାରେ ବରମାଲ୍ୟ ଦେବାକୁ ଶିଖାଇଲା ? - ଏ ସେହି ବିଶ୍ୱାସଘାତିନୀ ପିଶାଚିନୀ । ଆଉ ତୋତେ କିଏ ବର୍ତ୍ତମାନ ସୁଦ୍ଧା ପିତୃ ଆଜ୍ଞା ଲଙ୍ଘନ କରିବାକୁ ପ୍ରବର୍ତ୍ତାଇଛି - ଏହି -

ପଦ୍ମାବତୀ— କାହିଁ ମୁଁ ତ କୌଣସି ଆଜ୍ଞା ଛାମୁଙ୍କର ଲଙ୍ଘନ କରିନାହିଁ, ପିତା ?

କାଞ୍ଚିରାଜ— କରିନାହୁଁ, ଜୟନ୍ତକୁ ପତିରୂପେ ବରଣ କରିବାକୁ ତୁ ଅସମ୍ମତ ହୋଇନାହୁଁ ।

ପଦ୍ମାବତୀ— ମୁଁ ତ ଆଗହୁଁ ସ୍ୱୟମ୍ବରା ପିତା । (ଲଜ୍ଜାରେ ମୁଖ ତଳକୁ ପୋତିବା)

କାଞ୍ଚିରାଜ— ପୁଣି ବୋଲୁ ସ୍ୱୟମ୍ବରା । ସ୍ୱୟମ୍ବରା ପ୍ରଗଲ୍‌ଭା ବାଳିକା । (ଭାବି) ଆଚ୍ଛା - ଜାଣିନେ ! ସ୍ୱୟମ୍ବରା ହୋଇ ଉତ୍କଳର ଚଣ୍ଡାଳ ରାଜାକୁ ଧ୍ୟାନ କରି କାରାଗାରରେ ଜୀବନଯାପନ କରିବୁ - ନା - ଏହି କାଞ୍ଚି ରାଜ୍ୟର କାଞ୍ଚନ ଜେମା ତୁ ଜୟନ୍ତକୁ ପତି ରୂପରେ ବରଣ କରି ଏହି ପ୍ରତାପାନ୍ୱିତ ପ୍ରତିଭାଶାଳୀ କାଞ୍ଚି ରାଜ୍ୟର ଭବିଷ୍ୟତ ସାମ୍ରାଜ୍ଞୀ ହେବୁ ଭାବି ଦେଖ ଦୁର୍ମୁଖ ବାଳିକା । ଏକ ଦିଗରେ ତୋର ପିତାର ସ୍ନେହ, ରାଜ୍ୟର ସମ୍ମାନ - ଓ ଅନ୍ୟ ଦିଗରେ ନିର୍ଜନ କାରାବାସ । କିଏ

ତୋତେ ରକ୍ଷା କରିବ ? ସେହି ଚଣ୍ଡାଳ ପୁରୁଷୋତ୍ତମ ? ତାହାର ସାଧ ନାହିଁ - ଶୃଗାଳ ହୋଇ ପଶୁରାଜର ଗହ୍ୱରରେ ପଦାର୍ପଣ କରିବ। ଦେଖ ଭାବି ଦେଖ - ଯେତେ ଇଚ୍ଛା ସେତେ ସମୟ ନେ - କଞ୍ଚୁକୀ ସେନାପତିଙ୍କୁ ଖବର ଦିଅ।

ପଦ୍ମାବତୀ— ମୋର ସ୍ୱୟମ୍ବର ଆବଶ୍ୟକ ନାହିଁ ପିତା। ମୁଁ ସ୍ୱୟମ୍ବରା - ବାଗ୍‌ଦତ୍ତା। ଦୁଇଥର ବିବାହକି କ୍ଷତ୍ରିୟ କନ୍ୟାର ହୁଏ କେବେ ? ମୁଁ ଆପଣଙ୍କର ଅଯୋଗ୍ୟା ଅପରାଧିନୀ କନ୍ୟା, ପିତା। ଦିଅନ୍ତୁ ମୋତେ ଦଣ୍ଡ ଦିଅନ୍ତୁ - ଜୟ ଜଗନ୍ନାଥଙ୍କର ଜୟ ! (କାଞ୍ଚିରାଜଙ୍କର ପଦଧାରଣ)

କାଞ୍ଚିରାଜ— କି !

ସତ୍ୟବତୀ— (ଚରଣ ତଳେ ପଡ଼ି) ମହାରାଜ ! ଇବଣୀ ପିତୁଳା ପଦ୍ମା ପ୍ରତି ଘୋର ଏ ଦଣ୍ଡାଜ୍ଞା ଦେବେ ନାହିଁ। ସ୍ୱାମୀ - ସମସ୍ତ ତ ମୋହର ଦୋଷ- ମୁଁ ସ୍ୱୀକାର କରୁଛି। ମୋତେ ହିଁ ବନ୍ଦୀଶାଳାକୁ ପଠାଇ ଦିଅନ୍ତୁ, ମହାରାଜ !

କାଞ୍ଚିରାଜ— (ହସି) ବୁଝିଲ ନାହିଁ ରାଣୀ କାହିଁକି ମୁଁ ପଦ୍ମାକୁ ବନ୍ଦୀଶାଳାକୁ ପଠାଉଛି - ବୁଝିପାରୁ ନାହିଁ। ତୁମ୍ଭ ଗର୍ଭରୁ ଜନ୍ମଲାଭ କରିଥିବା ପାପର ପ୍ରାୟଶ୍ଚିତ କରିବା ପାଇଁ - ଆସ ଜୟନ୍ତ।

(କ୍ଷତ ସ୍ଥାନରେ ବନ୍ଧନ ସହ ଜୟନ୍ତ ରାଓଙ୍କ ପ୍ରବେଶ ଓ ଅଭିବାଦନ)

ରାଜକନ୍ୟା ପଦ୍ମାବତୀ ତୁମ୍ଭର ବନ୍ଦୀ - ଅପରାଧ ପିତୃଆଜ୍ଞା ଲଙ୍ଘନ ! ତାଙ୍କୁ ଘେନିଯାଅ କାରାଗାରରେ ନିକ୍ଷେପ କର। ନିର୍ଜନ କାରାବାସ ମୋର ଆଦେଶ ! (ଜୟନ୍ତ ବିସ୍ମୟରେ ଚାହିଁବା) ନିର୍ବୋଧଙ୍କ ପରି ଚାହିଁ ରହିଲ ଯେ ଜୟନ୍ତ ! ଦେଖ, ମୋ ଆଜ୍ଞା - ଯେପରି ବିନ୍ଦୁମାତ୍ର ତ୍ରୁଟି ନହୁଏ। ନିର୍ଜନ କାରାବାସ - ଆଉ ଦେଖ - କାରାଗାର ଯେତେଦୂର କଷ୍ଟପ୍ରଦ ହୁଏ - ସେତେ ଉତ୍ତମ - ତୁମ୍ଭର ମଙ୍ଗଳ ପାଇଁ ମୋର ଏ ବ୍ୟବସ୍ଥା, ଜୟନ୍ତ !

ପଦ୍ମାବତୀ— ଜୟନ୍ତ ରାଓ, ମୁଁ ତୁମ୍ଭର ବନ୍ଦୀ। ନିଅ ଏ ଅସାର ଦେହଟାକୁ ନେଇ ବନ୍ଦୀକର ! ଲୌହ ଦେହଟାକୁ ଶୃଙ୍ଖଳରେ ଆବଦ୍ଧ ରଖ। ଲାଞ୍ଛନା

ଦିଅ, କିନ୍ତୁ ମୋର ଏ ପ୍ରାଣ ମୋର । ମୁଁ ଯାହାକୁ ଇଚ୍ଛା ତାହାକୁ ଦେବି । ତୁମ୍ଭର ଶତ ଚେଷ୍ଟାରେ ବି ବିଚ଼ଳିତ ହେବିନାହିଁ । ଜାଣିଥାଅ ପଦ୍ମାବତୀ ତୁମ୍ଭ ପରି ଅସାର ପ୍ରାଣୀକୁ ତା'ର ପ୍ରାଣ ଦିଏନା - ଚାଲ !

(ଅଗ୍ରସର ହେବା)

ଜୟନ୍ତ— ମହାରାଜ! ପଦ୍ମା ! ମା ! (ଦ୍ୱିଧା)

କାଞ୍ଚିରାଜ— ଜୟନ୍ତ ! ନିର୍ବୋଧ ! ପଦ୍ମା ତୁମ୍ଭକୁ ଚାହେଁନା - ପଦ୍ମା ତୁମକୁ ଛାଡ଼ି ଅନ୍ୟଠାରେ ଆସକ୍ତା ।

ଜୟନ୍ତ— ହେଉ, ତଥାପି ମୁଁ ରାଜକୁମାରୀ ରମଣୀ ଉପରେ ଏ ଅତ୍ୟାଚ଼ାର କିପରି କରିବି ମହାରାଜ !

କାଞ୍ଚିରାଜ— (ସଦର୍ପେ) ସେନାପତି, ରାଜଆଜ୍ଞା ପାଳନ କରିବ କି ନାହିଁ !

ଜୟନ୍ତ— (ଅଭିବାଦନ କରି) ଏ ଦାସ ରାଜଆଜ୍ଞା ପାଳନ କରିବାକୁ ବାଧ୍ୟ ।

କାଞ୍ଚିରାଜ— ତେବେ ଯାଅ - ଏହି ମୁହୂର୍ତ୍ତରେ ପଦ୍ମାବତୀକୁ କାରାଗାରରେ ନିକ୍ଷେପ କର । ନିର୍ଜନ କାରାଗାର - ଜଣେ ମାତ୍ର ସଖୀ ସହିତ - ଯାଅ - ଯାଅ - ଧୃଷ୍ଟ ବାଳିକା !

ଜୟନ୍ତ— ଯେ ଆଜ୍ଞା ମହାରାଜ ! (ପ୍ରସ୍ଥାନୋଦ୍ୟତ)

କାଞ୍ଚିରାଜ— ରହକ୍ଷଣେ - ହଁ ରାଣୀ, ଖେମଣ୍ଡି ରାଜକୁମାରୀ କାହାନ୍ତି ? ସେ କିନ୍ତୁ ପଦ୍ମାକତିରେ ରହିପାରିବେ ନାହିଁ - ଆଉ -

(କନକ ଓ ଶଶୀ ପ୍ରବେଶ)

କନକ— (ସତ୍ୟବତୀଙ୍କ ପଦବନ୍ଦନା କରି) ମୁଁ ଆଜି ବିଦାୟ ନେଉଛି ମାଉସୀ ।

ସତ୍ୟବତୀ— (ଉଠାଇ ଦେବା ଓ ଅଞ୍ଚଳରେ ଚକ୍ଷୁପୋଛି ଦେବା)

ପଦ୍ମାବତୀ— ଜୟ ଜଗନ୍ନାଥଙ୍କର ଜୟ, ତୁମ୍ଭରି ଇଚ୍ଛା ପୂରଣ ହେଉ ପ୍ରଭୁ ! ମା, ଦେବୀ । ଏ ଅବଳା ବାଳିକା ପାଇଁ ଏତେ କଷ୍ଟ ସହୁଚ଼ ମା !

(କନକ ଅଗ୍ରସର ହେବାରୁ) ସହୀ ଯାଉଛି ତେବେ - ମୋ ପକ୍ଷରେ ବନ୍ଦୀଶାଳା ଯାହା - ରାଜପ୍ରସାଦ ମଧ ସେଇୟା - ତୁ ତ ଜାଣୁ ! ସେନାପତି - (ଅଗ୍ରସର ହେବା ଓ କନକର ଗୋଡ଼ାଇଯିବା)

କନକ— (କୋଳକରି) ସହୀ ମୁଁ ମୁଁ ମଧ ଯାଏଁ । ଦେଖେ ସେ ପଥରର ଏକାନ୍ତ କି ଇଚ୍ଛା । କିନ୍ତୁ ମନେରଖିଥିବୁ ସହୀ ଏ ଦୁଃଖ ଦୁଃଖ ନୁହେଁ ।

ପଦ୍ମାବତୀ— (କୋଳାଗ୍ରତ କରି) ମୁଁ ଜାଣେ ସହୀ । ତାଙ୍କ ପାଇଁ ଯେ ଏ ଦୁଃଖ - (ଦୂରରେ ଦ୍ୱାର ନିକଟରେ - ଗଳାରୁ ପୁରୁଷୋତ୍ତମ ପ୍ରଦତ୍ତ ହାର ଦେଖାଇ ତଳୁ ନିଜହାର କାଢ଼ି କନକକୁ ପିନ୍ଧାଇ ଦେବା)

(ସେନାପତି, ପଦ୍ମାବତୀ, ଶଶୀ, କଞ୍ଚୁକୀ ପ୍ରଭୃତି ଧୀରେ ଧୀରେ ପ୍ରସ୍ଥାନ ଓ କନକ ଆସି ସତ୍ୟବତୀଙ୍କ ପାଖରେ ଠିଆ ହେବ ।-)

ସତ୍ୟବତୀ— (ପଦ୍ମାବତୀ ଯିବା ଦିଗକୁ ଲକ୍ଷ୍ୟକରି) ମା-ମା- ପଦ୍ମା । (କିଛିଦୂର ଯାଇ ଫେରି) ନା, ନା, ସେ ଠିକ୍ କରିଛି । ପଦ୍ମା ମୋର ଠିକ୍ କରିଛି । (ରହି) ମତେ ଥରେ ଫେରି ଚାହିଁଲା ନାହିଁ । ଯିବାବେଳେ ମୋତେ ଆଖିକୋଣରେ ଚାହୁଁଥିଲା ନାଁ ? ନା, ନା ସେ ଚାହିଁନାହିଁ । ସେ ଠିକ୍ କରିଛି - ପଦ୍ମା ମୋର ଠିକ୍ କରିଛି - ସେ ତା' ଜନ୍ମଦାତାଙ୍କୁ ଠିକ୍ ଚିହ୍ନିଛି - ପାଷାଣ - ପାଷାଣ ଇୟେ - ଚୁପ୍ ଚୁପ୍ - ମୁଁ ବି ବକିବି ନାହିଁ - ଚୁପ୍, ଆଉ କଥା କହିବି ନାହିଁ । (କଣ୍ଠନାଳୀ ଚିପିଧରି) ସ୍ତବ୍ଧରହ କଣ୍ଠ । ଏ ରାକ୍ଷସଟା ଦେଖୁଛି, ହସୁଛି । ତା' ଆଗରେ ଏ ଦଗ୍ଧ ଅନ୍ତରର ପଦେ କଥା ବି ବାହାର ହେବାକୁ ଦେବିନାହିଁ । ଏ ପୋଡ଼ା ଆଖିରୁ ଟୋପାଏ ହେଲେ ଲୁହ ବି ଗଡ଼ିବାକୁ ଦେବିନାହିଁ । କୋହ ଦୂର ହୁଅ (ଛାତି ଧରି) ପଥରଟା ଚାହିଁଚି । ସେ ଦେଖୁଛି । (କଣ୍ଠ ଚାପିଧରିବା ଓ କନକ କୋଳକୁ ଆଉଜି ପଡ଼ିବାରୁ କନକ ତାଙ୍କୁ ନେଇ ଧୀରେ ଧୀରେ ପ୍ରସ୍ଥାନ କଲେ ।)

(କାଞ୍ଚି ପଣ୍ଡିତେ କୋଣରୁ ବାହାରି ଅଗ୍ରସର ହୋଇ କାଞ୍ଚିରାଜାଙ୍କ ସମ୍ମୁଖୀନ ହେବା ଓ କମ୍ପିତ ଦେହରେ ହାତ ଘଷିହେବା)

ପଣ୍ଡିତେ— ଶାନ୍ତ ହୁଅନ୍ତୁ ମହାରାଜ !

କାଞ୍ଚିରାଜ— (ଚାହିଁ) ଦୂର ହ' ମୂର୍ଖ ! (ବିପରୀତ ଦିଗକୁ ବେଗେ ପ୍ରସ୍ଥାନ)

ପଣ୍ଡିତେ— ଓହୋଃ (ଶାନ୍ତହୋଇ) ଗୋଟାଏ ମହାଗିଷ୍ଟ ଖଣ୍ଡନ ହେଲା (ଦୀର୍ଘନିଃଶ୍ୱାସ ଓ ପ୍ରକୃତିସ୍ଥ ହୋଇ) ଏତେ ଦିନେ ରଜାର ସୁବୁଦ୍ଧି ଉଦୟ ହେଲା । ମୁଁ କେଉଁଦିନୁଁ କହୁଛି - ଘର ସମ୍ଭାଳ - ଘର ସମ୍ଭାଳ - (କଙ୍କାଳ ଚିପିଧରି) ଯାଏଁ ଦେଖେଁ - ବ୍ରାହ୍ମଣୀର ଆଜି କେଉଁ ଭାଗରେ ପୀଡ଼ା । (ପ୍ରସ୍ଥାନ)

(ଚିନ୍ତିତ ରଙ୍ଗରାଓର ପ୍ରବେଶ)

ରଙ୍ଗରାଓ— ନାଃ ! ଏଠାରେ ଆଉ ଦଣ୍ଡେ ବିଳମ୍ବ କଲେ ଚଳିବ ନାହିଁ । ଘୋର ପାପପୂର୍ଣ୍ଣ ଏ ରାଜ୍ୟ । ତା' ଉପରେ ପୁଣି ଶତ୍ରୁପୁରୀ । କି ଦର୍ପୀ, ଅହଙ୍କାରୀ ଏହି କାଞ୍ଚିରାଜ ! ନିଜର ଏକମାତ୍ର କନ୍ୟାର ପ୍ରାଣ ବିନିମୟରେ ସୁଦ୍ଧା ସେ ଟେକ ରଖିବାକୁ ଚାହେଁ । ବିଚାରୀ ପଦ୍ମାବତୀ କାରାଗାରରେ ମରଣାପନ୍ନା- ନାସ୍ତିକ ନାସ୍ତିକ ! ହାୟ ବନ୍ଧୁ, ହାୟ, ପୁରୁଷୋତ୍ତମ ଦେବ ! ଆଶା କରିଥିଲି ଏଠାରେ ରହି ତୁମ୍ଭର ଯଦି କିଛି ଉପକାର କରି ପାରିଥାନ୍ତି ତା'ହେଲେ ମୋର ଜୀବନ ସାର୍ଥକ ହୋଇଥାନ୍ତା । ତାହା ଆଉ ଏ ଭାଗ୍ୟରେ ଜୁଟିଲା ନାହିଁ । ତୁମ୍ଭରି ମାନସୀ ପ୍ରତିମା ପଦ୍ମାବତୀ ଏହି ବର୍ବର ରାଜାଟାର ତନୁଜା ବୋଲି ଜାଣିଲା ଦିନୁଁ ମୋର ପ୍ରାଣପଣେ ଚେଷ୍ଟା ସତ୍ତ୍ୱେ କିଛି ବୋଲି କିଛି କରିବାକୁ କ୍ଷମ ହେଲିନାହିଁ । ଅସମ୍ଭବ, ଅସମ୍ଭବ । ଯେଉଁ ପିତା ନିଜର କନ୍ୟାକୁ ମୃତ୍ୟୁ ଶଯ୍ୟାରେ ଶାୟିତା ଦେଖି ସୁଦ୍ଧା ଏତେ କଠୋର ହୋଇପାରେ - ସେ ବର୍ବରଠାରୁ ଆଉ କି ଦୟାର ପ୍ରତ୍ୟାଶା କରାଯାଏ ! ନାଃ, ଏଠାରେ ରହି ଆଉ ମୋ ଦ୍ୱାରା କୌଣସି କାର୍ଯ୍ୟ ହୋଇପାରିବ ନାହିଁ । ଶୀଘ୍ର ଯାଇ ସଖାଙ୍କ ସଙ୍ଗେ ମିଳିତ ହେଲେ ସବୁମଙ୍ଗଳ । (ରହି) ଆଉ ମୋ ନିଜ ହୃଦୟରେ ମଧ୍ୟ ଯେଉଁ ଦାବାନଳ ନିଷ୍ଠୁରା ମାଳି ଜାଳି ଦେଇଛି ତାହା ଏଠାରେ ରହିଲେ ବରଂ ଅଧିକରୁ ଅଧିକତର ତେଜରେ ଜଳିଉଠିବ । (ହୃଦୟ ଚାପିଧରି) ଓଃ ସ୍ଥିର ହୁଅ ହୃଦୟ । ଏତେଦିନ ବଳ ସଞ୍ଚୟ କରି ତଥାପି ଏ କି ଦୁର୍ବଳତା । କନକ ! କନକ ! ଧନମୋର

ମାଳିମୋର ! ଓଃ ହୋଃ ନିଷ୍ଠୁରା । ପାଷାଣୀ - ନାଃ ନାଃ - ଥାଉ । ଯାଏଁ ଥରେ ପଦ୍ମାବତୀଙ୍କର ଖବର ନେଇ ଆଜି ବାହାରି ପଡ଼େ । ଥରେ ଦେଖା ହୋଇଯାଇଥିଲେ ଭଲ ହୋଇଥାନ୍ତା । ହେଲେ ସଖାଙ୍କୁ କ'ଣ କହିବି ? ଆଉ କନକ - ନା - ନା - ଆଉ ପୁଣି ଏ ଦୁର୍ବଳତା କାହିଁକି (ବୈଷ୍ଣବୀର ପ୍ରବେଶ) ଏ କିଏଁ ? ଆହା କି ସୁନ୍ଦର ! ଏଠିକା ଲୋକପରି ତ ଜଣା ପଡୁନାହିଁ ?

ବୈଷ୍ଣବୀ— (ହସି) ମୁଁ କିଏ ପଚାରୁଛନ୍ତି ? ମୁଁ ଜଣେ ଅର୍ଦ୍ଧାଙ୍ଗିନୀ - ଆପଣ ଯେଉଁଭଳି ଅର୍ଦ୍ଧାଙ୍ଗ !

ରଙ୍ଗରାଓ— (ମୁଣ୍ଡ ଆଉଁସି) ଅର୍ଥାତ୍ ?

ବୈଷ୍ଣବୀ— ଅର୍ଥାତ୍ ଆଉ କଅଣ ? ମୁଁ ଜଣେ ଅଧାପଣ୍ଡିତିଆଣୀ ।

ରଙ୍ଗରାଓ— ରକ୍ଷାକରନ୍ତୁ ମୁଁ ପଣ୍ଡିତ ନୁହେଁ କି ଅଧେ ବି ନୁହେଁ ।

ବୈଷ୍ଣବୀ— ହାଃ, ହାଃ ପଣ୍ଡିତ କାହୁଁ ହେବେ ? ଅସମ୍ଭବ । ଯେ ପଣ୍ଡିତ ସେ ପଣ୍ଡିତ । ଆଚ୍ଛା ଟିକିଏ ରହିଲ, ମୁଁ ଦେଖେ । (ଆଙ୍ଗୁଳି ଗଣି ନିଃଶ୍ୱାସ ପ୍ରଶ୍ୱାସ ଦେଖି) (ଆପଣ ପଣ୍ଡିତ ହୋଇପାରନ୍ତି ଇଚ୍ଛା ହେଲେ ?)

ରଙ୍ଗରାଓ— ଆପଣ ଜ୍ୟୋତିଷଶାସ୍ତ୍ର ବି ଜାଣନ୍ତି ନା କ'ଣ ?

ବୈଷ୍ଣବୀ— ସେହି ଅଧେ, ତେବେ ଅଧାଅଧିରେ ବି କାମ ଚଳେ ଶୁଣିବେ ? ଆପଣ ଶ୍ରୀକ୍ଷେତ୍ର ଯିବାକୁ ମାନସ କରିଛନ୍ତି । ସେଠି ଲୁଣାଚଳ ଅଛି ବହୁତ ପାଇବେ ।

ରଙ୍ଗରାଓ— (ସ୍ୱଗତ) ଆରେ ଏତ ଠିକ୍ ମୋ ମନକଥା କହିଦେଉଛି । ଆଚ୍ଛା ଦୟାକରି କହିପାରିବେ କି ଯେ ମୁଁ ଏଠି ଯାହା ଛାଡ଼ିଯାଉଛି ତାହା ପାଇପାରିବି କି ନାହିଁ ?

ବୈଷ୍ଣବୀ— (ହାତଗଣି) ପୁରସ୍କାରରୁ ଅଧେ ଅଗ୍ରିମ ମିଳିଲେ କହିବି ।

ରଙ୍ଗରାଓ— ଆଜ୍ଞା କରନ୍ତୁ ।

ବୈଷ୍ଣବୀ— ମୁଁ ମଧ୍ୟ ଶ୍ରୀକ୍ଷେତ୍ରକୁ ଯିବାକୁ ଚାହେଁ - ମୋତେ ସାଥିରେ ନେବେ କି ?

ରଙ୍ଗରାଓ— (ବିଚ଼ଳିତ ହୋଇ) ଆପଣ ସ୍ତ୍ରୀ ଲୋକ, ମୁଁ କିପରି ! (ବିଚଳିତ ହେବା)

ବୈଷ୍ଣବୀ— ଅଧେ, ସବୁ ଅଧେ । ଅଧେ, ଯାଉଁଲେ ଆପଣ । ଆପଣ ମଧ୍ୟ ମୋ ହାଉଆରେ ଅଧେ ସ୍ତ୍ରୀ ଲୋକ ହେଲେଣି ଦେଖୁଛି ।

ରଙ୍ଗରାଓ— ଆଚ୍ଛା ଚାଲନ୍ତୁ - ଯଦି କହୁଛନ୍ତି । କିନ୍ତୁ କହନ୍ତୁ ମୁଁ ଯାହା ପଚ଼ାରୁଥିଲି ।

ବୈଷ୍ଣବୀ— (ହସି ହସି) ଚାଲନ୍ତୁ - ଚାଲନ୍ତୁ ବାଟରେ କହିବି ଯେ -

ରଙ୍ଗରାଓ— (ଜାନୁପାତ କରି) ନା, ନା ଦୟା କରନ୍ତୁ !

ବୈଷ୍ଣବୀ— ତେବେ ଅଧେ କହୁଛି - ଅଧେ ପାଇବେ !

(ବ୍ୟସ୍ତଭାବରେ ଜୟନ୍ତ ରାଓର ପ୍ରବେଶ) (ବୈଷ୍ଣବୀ ଟିକିଏ ଆଡ଼େଇ ଯିବା)

ଜୟନ୍ତ— ଏଇ ଯେ ନାଳଗୋଣ୍ଡାଧିପତି । ଆଶାକରେ ସୁସ୍ଥ ହେଲେଣି । (ଚମକି ବୈଷ୍ଣବୀକୁ ଦେଖି) ଇଏ କିଏ ? ସେଇ ହରିଣମାରାଝରରେ ଯେ ମତେ ଭୁଲ୍ ବାଟ ବତାଇ ଦେଇଥିଲା ସେଇ ତ ଠିକ୍ !

ରଙ୍ଗରାଓ— ସେନାପତି, ମୁଁ ଟିକିଏ ବ୍ୟସ୍ତ ଅଛି । ମୋ ସହିତ ଆପଣଙ୍କର ବିଶେଷ କିଛି ପ୍ରୟୋଜନ ଅଛି କି ?

ଜୟନ୍ତ— ମହାଶୟ, ସେଦିନ ପଦ୍ମା - କନକ ଜେମାଙ୍କ ପ୍ରାଣ ଓ ପ୍ରାଣୁଁ ବଳି ସମ୍ମାନ ରକ୍ଷା କରି ଆପଣ ଆମ୍ଭମାନଙ୍କର ଧନ୍ୟବାଦାର୍ହ ହୋଇଅଛନ୍ତି । କିନ୍ତୁ ଆପଣଙ୍କ ସହିତ ଅନ୍ୟ ଜଣେ କିଏ ବୀର ଥିଲେ ବୋଲି ଶୁଣିଛି - ସେ କିଏ ଆପଣ ମୋତେ କହିବେ କି ?

ରଙ୍ଗରାଓ— ଆପଣଙ୍କର ପ୍ରୟୋଜନ ସେନାପତି ?

ଜୟନ୍ତ— ମୁଁ ତାହା ବ୍ୟକ୍ତ କରିପାରୁ ନାହିଁ ।

ରଙ୍ଗରାଓ— ମୁଁ ମଧ ଦୁଃଖିତ ଯେ ଏଭଳି ସ୍ଥଳେ ମୁଁ ମୋ ବନ୍ଧୁର ପରିଚୟ ଆପଣଙ୍କ ଠାରେ ବ୍ୟକ୍ତ କରିପାରୁ ନାହିଁ।

ଜୟନ୍ତ— (ହଠାତ୍ ନତଜାନୁ ହୋଇ) ଦୟାକର ରଙ୍ଗରାଓ। ତୁମେ ତ ବୀର, ତୁମେ ତ ପ୍ରେମିକ ପୁରୁଷ, ଦୟାକର ମୋତେ ଥରେ ସେ ଯୁବାର ପରିଚୟ କହିଦିଅ। ମୁଁ ତାକୁ ଥରେ ଖଣ୍ଡ ବିଖଣ୍ଡ, ଚୂର୍ଣ୍ଣବିଚୂର୍ଣ୍ଣ କରିଦିଏ। କହକହ ଦୟାକରି !

ରଙ୍ଗରାଓ— ପ୍ରେମିକ (ଭାବି) କିଏ, କହିଲା ମୁଁ ପ୍ରେମିକ। ମୁଁ ପ୍ରେମ ବୁଝେନା - ପ୍ରେମିକ ଚିହ୍ନେନା। ଯେ କହେ ସେ ପ୍ରମିକ ମୁଁ ତାକୁ ଏହିପରି ଭାବରେ ପଦାଘାତ କରେ। (ପଦାଘାତ) ପ୍ରେମ ବୋଲି ଗୋଟେ ଜିନିଷ କ'ଣ ଏ ଜଗତରେ ଅଛି ? ନାହିଁ ନାହିଁ ସବୁ ଛଳନା। ସବୁ ମୋହ, ସବୁ ମିଥ୍ୟା (ବେଗେ ପ୍ରସ୍ଥାନ)

(ଜୟନ୍ତ ଗୋଡାଇ ଯିବାବେଳେ)

ବୈଷ୍ଣବୀ— (କ୍ରୁଦ୍ଧ ଜୟନ୍ତର ପଛପଟୁ) ଅଧୀର ହୁଅନା ସେନାପତି। ପୀରତି ବଡ଼ ଗହନ କଥା। ବଡ଼ କଠିନ - ଯୁଦ୍ଧ ବ୍ୟବସାୟୀ ତୁମେ - ମୋର ସାନ କଥା ମାନ - ସେଥିରେ ମତି ବଳାଅ ନାହିଁ।

ଜୟନ୍ତ— (ଫେରି) କିଏ - ଓଃ ତୁମେ ପୀରତି କଥା କି ଜାଣ - ଯାଅ ବାଟ ଛାଡ଼ିଦିଅ ମୁଁ ଯାଏ। ତୁମରି ଯୋଗୁ ଆଜି ମୋର ଏ ଦଶା ତ ଜାଣ !

ବୈଷ୍ଣବୀ— ହେଇଥିବ - ଏଇ ନିଆଶିରୀ ଅରକ୍ଷିତିଆଣୀଟା ପାଇଁ ସମସ୍ତଙ୍କର ସବୁ ହୋଇ ଯାଇଛି। ଦୁନିଆ ଉଠୁଛି - ବସୁଛି। ତମର ବା ନହେବ କିଆଁ ? ହଉ ହେଲେ ହେଲା - ଅଧିକ ନିଖରେଇ ହଉଛୁ କିଆଁ ?

ଜୟନ୍ତ— କ'ଣ ଗୁଡ଼ାଏ କହୁଛି ଏ। ଏଟା କ'ଣ ବାୟାଣୀଟାଏ ? ମୁଁ ଯାଏ (ଯିବାକୁ ଉଦ୍ୟତ)

ବୈଷ୍ଣବୀ— ଗୋଟାଏ କଥା ସେନାପତି। ତୁମେ ଯୋଉଥିପାଇଁ ଏତେ ବ୍ୟାକୁଳ ମୁଁ ଜାଣେ। ସେଦିନ କିଏ ପଦ୍ମାବତୀଙ୍କ ପ୍ରାଣ ରକ୍ଷା କରିଥିଲା। ସେହି ସୁନ୍ଦର - ସେହି ବୀରଶ୍ରେଷ୍ଠ ଯେ ତମର ଗନ୍ ଅପହରଣ କରିଛି !

ଜୟନ୍ତ— (ଫେରି) କହ, କହ ନାରୀ -ତୁମେ ଯେ ହୁଅ ପଛକେ ! ମୋତେ ଥରେ କହିଦିଅ ସେ କିଏ ? ତୁମ ପାଦ ଧରୁଛି - କହିଦିଅ ! କହିଦିଅ ! କହିବ ନାହିଁ (ଉଠ) ତମେ ଦେଖ ଏହି ଶାଣିତ ଛୁରିକା - ମୁଁ ନାରୀ ବଧରେ ସୁଦ୍ଧା କୁଣ୍ଠିତ ହେବି ନାହିଁ । ଜାଣିଚ ?

(ସଜୋରେ ବୈଷ୍ଣବୀର ହାତ ଚିପିଧରି)

ବୈଷ୍ଣବୀ— କହିବି ? ଶୁଣିବ ? ସାବଧାନ । ପରେ ମୋର ଦୋଷ ଦେବନାହିଁ ।

ଜୟନ୍ତ— (ଛୁରି ଫିଙ୍ଗି ଦେଇ ପୁଣି ପାଦଧରି) କହ, କହ ମୋତେ ରକ୍ଷା କର !

ବୈଷ୍ଣବୀ— ତେବେ ଶୁଣ - ସେ ବୀରାଧିବୀରବର ଗଜପତି ଶ୍ରୀମହାରାଜ ପୁରୁଷୋତ୍ତମ ଦେବ । ଉତ୍କଳର ସମ୍ରାଟ ।

ଜୟନ୍ତ— ଉଃ ! ଉତ୍କଳ ଗଜପତି ?

(ଯବନିକା)

\+ + + + +

# ୪ର୍ଥ ଅଙ୍କ

# ବିକୃତି

## ପ୍ରଥମ ଦୃଶ୍ୟ

ସ୍ଥାନ— ଗଜମରା ବାରବାଟୀ ଦୁର୍ଗ । କାଳ ମଧ୍ୟାହ୍ନ । ପଶ୍ଚାତ୍‌ରୁ ସାଗର ଜଳାଂଶ ଓ ଅପରପାର୍ଶ୍ୱରେ ପର୍ବତମାଳ ଦେଖାଯାଉଥିଲା ବହୁ ଦୂରରେ । ଉତ୍କଳ ରାଜସଭା ମଧ୍ୟରେ ସିଂହାସନ । ସିଂହାସନ ଉପରେ ପୁରୁଷୋତ୍ତମ ଦେବ । ଦୁଇ ପାର୍ଶ୍ୱରେ ଚାମର ଓ ଆଲଟଧାରୀ ୨ ଜଣ ସେବକ ପରିଚାଳନା କରୁଅଛନ୍ତି । ଏକ ପାର୍ଶ୍ୱରେ ବୃଦ୍ଧ ମନ୍ତ୍ରୀ ଓ ବିକ୍ରମ ଦେବ ଆସୀନ । ଅପରପାର୍ଶ୍ୱରେ ସଭାସଦ୍‌ଗଣ । କକ୍ଷଟି ସୁସଜ୍ଜିତ ଥିଲା ନାନାବିଧ ପୁଷ୍ପ-ପଟ-ଓ ଅସ୍ତ୍ରଶସ୍ତ୍ରରେ । ସିଂହାସନ ଉପରେ - ନୀଳଚକ୍ର ଉପରେ ପତାକା ଉଡୁଥିଲା । ପଟ ଉତ୍ତୋଳନ ସଙ୍ଗେ ସଙ୍ଗେ ଭାଟ ଗାନ ଗାଉଥିଲା ଏକ ପାର୍ଶ୍ୱରେ । ଭାଟର ହସ୍ତରେ ବୃହତ୍ ଦଣ୍ଡ ଓ ତହିଁ ଉପରେ ରକ୍ତ ପତାକା ଉଡ୍ଡୀୟମାନ । ପରିଧାନ ଶୁକ୍ଳ ବସ୍ତ୍ର । ସମ୍ମୁଖରେ ଉତ୍କଳ ସେନାପତି ଦଣ୍ଡାୟମାନ ହୋଇଥିଲେ । ମୁଖରେ ଉତ୍ସାହ ଓ ଗର୍ବ । ପୁରୁଷୋତ୍ତମ ଦେବଙ୍କ ମୁଖରେ ଆନନ୍ଦ, ବିକ୍ରମଙ୍କ ମୁଖରେ ଦୁଶ୍ଚିନ୍ତା ଓ ମନ୍ତ୍ରୀଙ୍କ ମୁଖରେ ଶାନ୍ତିର ଚିହ୍ନ ପରିସ୍ଫୁଟ ।

ପୁରୁ— ଜୟ ଜଗନ୍ନାଥ ଜୟ ! ସାଧୁ ସାଧୁ ସେନାପତି ! ଏହିତ ତୁମର ଉପଯୁକ୍ତ କାର୍ଯ୍ୟ । ଗଣଦେବ ରାଉତରାୟଙ୍କୁ ମଧ୍ୟ ପୁରସ୍କୃତ କରିବାକୁ ହେବ ମନ୍ତ୍ରୀ ।

ମନ୍ତ୍ରୀ— ଯେ ଆଜ୍ଞା ମହାରାଜ ! ଏ ବୃଦ୍ଧର ଖାଲି ଏତିକି ମାତ୍ର କ୍ଷୋଭ ରହିଗଲା ଯେ - ତା'ର ବୁଦ୍ଧିହୀନତା ଯୋଗୁଁ ବିଜୟନଗର ସଙ୍ଗେ ଏ ସଂଘର୍ଷ ଘଟିଲା ।

ପୁରୁ— ବାତୁଳ ହେଉଛନ୍ତି ଦାଦା । ସୁଲତାନ ଗୋଟିଏ ଉପସର୍ଗ ଲୋଡୁଥିଲା ମାତ୍ର । କୋଣ୍ଡା ଓ ମହିନ୍ଦ୍ରୀ ପ୍ରଦେଶ ପୁରସ୍କାର ସ୍ୱରୂପ ଭିକ୍ଷା କରିଥିଲେ

ହେଁ ପ୍ରକୃତରେ ତାଙ୍କୁ ତ ଆମ୍ଭେମାନେ ପ୍ରଦେଶଦ୍ୱୟ ଦେବାକୁ କୌଣସି କାଳେ ସ୍ୱୀକୃତ ହୋଇନଥିଲୁ । କିନ୍ତୁ ଦାଦା, ମୁଁ ତୁମର ସମ୍ମାନ ରକ୍ଷାର୍ଥେ କେବଳ କୋଣ୍ଡା ପ୍ରଦେଶଟି ଦେବାକୁ ସ୍ୱୀକୃତ ଥିଲି । ସୁଲତାନ ଟିକିଏ ଅପେକ୍ଷା କରିଥିଲେ ହୋଇଥାଆନ୍ତା ।

ସେନାପତି— ସେମାନେ ହଠାତ୍ ଦଣ୍ଡପାଟ ଆକ୍ରମଣ କରିବସିଲେ । ସେଥିରୁ ତାଙ୍କର ଉଦ୍ଦେଶ୍ୟ ସହଜରେ ଅନୁମେୟ । କିନ୍ତୁ ଏଇ ଦୂରଦୃଷ୍ଟିକୁ ଧନ୍ୟବାଦ ଯେ ମୁସଲମାନ ଆକ୍ରମଣ ପୂର୍ବରୁ ସେ ସରକାରରେ ଆବେଦନ କରି ଦଶ ସହସ୍ର ସେନା ଦକ୍ଷିଣକୁ ମଗାଇ ନେଇଥିଲେ ।

ମନ୍ତ୍ରୀ— ଆଉ ତୁମ୍ଭ ରଣନୀତିକୁ ମଧ ଧନ୍ୟବାଦ ! ସେନାପତି ! ତୁମ୍ଭେ ଦଶ ସହସ୍ର ସୈନ୍ୟ ସାହାଯ୍ୟରେ ସୁଲତାନ ବାହିନୀକୁ ବିଧ୍ୱସ୍ତ କରିଦେଲ । ମୋର ଆନ୍ତରିକ ଆଶୀର୍ବାଦ ଗ୍ରହଣ କର ସେନାପତି । ତୁମ୍ଭେ ବୃଦ୍ଧକୁ ମହାଦାୟିତ୍ୱରୁ ଅବ୍ୟାହତି ଦେଇଚ଼ । ବର୍ତ୍ତମାନ ମୁଁ ନିଶ୍ଚିନ୍ତ । ଆଉ ମୁସଲମାନମାନଙ୍କୁ ମଧ ସ୍ୱୀକୃତ କୋଣ୍ଡା ପ୍ରଦେଶ ଦେବାକୁ ହେବ ନାହିଁ ।

ପୁରୁ— ତା' ଅବଶ୍ୟ ମନ୍ତ୍ରୀ ମହାଶୟ । ସେମାନଙ୍କର ଯାହାକିଛି ଦାବି ଥିଲା ତାହା ସେମାନେ ନିଜ ଦୁର୍ବୁଦ୍ଧିତାରେ ହରାଇଛନ୍ତି । କିନ୍ତୁ ସେନାପତି ଏତେଦିନ ଯାଏଁ ତୁମର ବିଳମ୍ବ ହେଲା କାହିଁକି ?

ସେନାପତି— ମହାରାଜ, ସୁଲତାନବାହିନୀ ଆମ ହାତରେ ପରାସ୍ତ ହୋଇ କାଞ୍ଚି ଅଭିମୁଖରେ ପ୍ରସ୍ଥାନ କଲା । ସେଠାରୁ ଯୁଦ୍ଧର ଫଳାଫଳ ନ ଜାଣିବା ଯାଏଁ ସେ ଅଞ୍ଚଳକୁ ଅରକ୍ଷିତ ଭାବେ ଛାଡ଼ିଆସିବା ଉଚ଼ିତ ବିବେଚ଼ିତ ନହେବାରୁ ରାଉତରାୟ, ସସୈନ୍ୟ ମୋତେ ସେଠାରେ ଅଟକାଇ ରଖିଥିଲେ ।

ବିକ୍ରମ— କାଞ୍ଚି ଯୁଦ୍ଧରେ ସୁଲତାନଙ୍କର ଜୟ ହେଲା କି ନହେଲା କିଛି ସମ୍ବାଦ ପାଇଥିଲେ କି ?

ସେନାପତି— କାଞ୍ଚି ଯୁଦ୍ଧରେ ସୁଲତାନଙ୍କର ପରାଜୟ ସମ୍ବାଦ ପାଇଲା ମାତ୍ରେ ମୁଁ ପାଞ୍ଚ ସହସ୍ର ସେନା ସହିତ ପ୍ରତ୍ୟାବର୍ତ୍ତନ କରି ଶୁଣିଲି ସୁଲତାନଙ୍କର ସମୂହ ଅନିଷ୍ଟ ଘଟିଛି ।

ପୁରୁ— ସୁଲତାନଙ୍କର କାଞ୍ଚି ଆକ୍ରମଣର ଅଭିପ୍ରାୟ ?

ସେନାପତି— ଶୁଣିଲି ମହାରାଜ, ଖେମଣ୍ଡି ଯୁଦ୍ଧରେ କାଞ୍ଚି ସୈନ୍ୟଙ୍କ ଦ୍ୱାରା ସୁଲତାନଙ୍କ ସୈନ୍ୟର ଯେଉଁ ଅନିଷ୍ଟ ଘଟିଥିଲା, ତାହାର କ୍ଷତିପୂରଣ ଦାବି କରି ସୁଲତାନ ପ୍ରଥମେ ଦୂତ ପଠେଇଥିଲେ । କାଞ୍ଚିରାଜା ପ୍ରତ୍ୟୁତ୍ତର ଦେଇ ତାଙ୍କୁ ଯୁଦ୍ଧକୁ ଆହ୍ୱାନ କଲାରୁ ଏହି ଯୁଦ୍ଧ ମହାରାଜ !

ମନ୍ତ୍ରୀ— ଧନ୍ୟ ଧନ୍ୟ ମହାଦେଈ ! ତୁମ୍ଭର ଅନୁମାନ ଅକ୍ଷରେ ଅକ୍ଷରେ ସତ୍ୟ -

ବିକ୍ରମ— (ସ୍ୱଗତ) କାଞ୍ଚିରାଜର ପରାଜୟ ହେଲାନାହିଁ । ଦର୍ପିତ ମଦମତ୍ତ ନରସିଂହ ରାଓ ।

ପୁରୁ— ବିକ୍ରମ ଭାଇ, ଥରେ ରଙ୍ଗରାଓଙ୍କୁ ସମ୍ବାଦ ଦେଲେ (ବିକ୍ରମ ଉଠି ବାହାରିଗଲେ) ଉପଯୁକ୍ତ ବିଶ୍ରାମ ପରେ ସଖା ପ୍ରସ୍ତୁତ ଥିବେ ବୋଧହୁଏ - ହାୟ କାଞ୍ଚି ଅନ୍ତଃପୁରର ସମ୍ବାଦ ଏ ପର୍ଯ୍ୟନ୍ତ ପାଇନାହିଁ ।

ସେନାପତି— (ଅସ୍ତ୍ର ଝନ୍‌ଝନ୍ କରି) ମହାରାଜ୍, ଦାସର ଧୃଷ୍ଟତା ମାର୍ଜନା ହେଉ ! କିନ୍ତୁ ଇଏ (ବିକ୍ରମ ପ୍ରତି) ଏଠାରେ କାହିଁକି ? ବିଜିତ ଶତ୍ରୁ - ପୁଣି ଭାଇ !

ପୁରୁ— ଉତ୍କଳ ରାଜପୁତ୍ର, ଏ ପବିତ୍ର ସୂର୍ଯ୍ୟବଂଶର ବଂଶଧରତ ସେନାପତି । ତାହାଛଡ଼ା (ହସି) କ୍ଷୁଧିତ ଶ୍ୟେନକୁ ଦୃଷ୍ଟିରୁ ବାହାର କଲେ ହିଁ ବିପଦ ସେନାପତି !

ସେନାପତି— (ନତ ହୋଇ କୁଣ୍ଠିତ ଭାବରେ) ଦୃଷ୍ଟିରୁ ଏକାବେଳେ ଅନ୍ତର କଲେ ହିଁ ନିରାପଦ ମହାରାଜ !

ପୁରୁ— (ହସି) ସେନାପତି କାକବେଶୀ ଶ୍ୟେନକୁ ଦୃଷ୍ଟିରେ ରଖିଥିଲେ ହିଁ ଯଥେଷ୍ଟ । ଯଥା ସମୟରେ ଶର ସନ୍ଧାନ କଲେ ହିଁ ହେଲା - କି ମନ୍ତ୍ରୀ ଦାଦା !

ମନ୍ତ୍ରୀ— ଠିକ୍ ମହାରାଜ, କିନ୍ତୁ ଏ ଯେ ନରଦେହୀ । ଟିକିଏ ସାବଧାନତା ଆବଶ୍ୟକ । (ମୁଣ୍ଡ ହଲାଇବା)

ପୁରୁ— ଉତ୍ତମ, ଉତ୍ତମ, କିନ୍ତୁ ଜାଣ ଦାଦା ମୁଁ ବିକ୍ରମଦେବଙ୍କୁ ଶତ୍ରୁ ଜାଣି ସୁଦ୍ଧା କାହିଁକି ଏ ରାଜସଭାରେ ସ୍ଥାନ ଦେଇଛି ? ମୋର ନିଜ ରାଜକାର୍ଯ୍ୟରେ କୌଣସି ଅବହେଳା ବା ତ୍ରୁଟି ନହୁଏ ! ସେଥିପାଇଁ ସେ ଯେ ମୋର ପ୍ରତିଦ୍ୱନ୍ଦ୍ୱୀ ଶତ୍ରୁ - ସେ ମଧ ଦେଖୁଁ ମୁଁ ଏ ପବିତ୍ର ସିଂହାସନରେ ବସିବାକୁ ଯୋଗ୍ୟ କି ନା ?

(ଦ୍ୱାରୀର ପ୍ରବେଶ ଓ ଅଭିବାଦନ)

ଦ୍ୱାରୀ— ମହାରାଜ, କାଞ୍ଚି ପ୍ରତ୍ୟାଗତ ବାଚ଼ସ୍ପତି ସାକ୍ଷାତ ପ୍ରାର୍ଥୀ ।

ମନ୍ତ୍ରୀ— କିଏ ବାଚ଼ସ୍ପତି ଏକା ? ମୁଁ ଯାଏଁ ଦେଖେ ମହାରାଜ !

ପୁରୁ— ମନ୍ତ୍ରୀ ଦାଦା ! ବାଚ଼ସ୍ପତି କାହିଁକି କାଞ୍ଚି ଯାଇଥିଲେ କି ?

ମନ୍ତ୍ରୀ— (ମୁଣ୍ଡ ଆଉଁସି) ମହାଦେଈ କୌଣସି ବିଶେଷ କାର୍ଯ୍ୟରେ ତାଙ୍କୁ କହିପଠାଇଥିଲେ ।

ପୁରୁ— ବାଚ଼ସ୍ପତିଙ୍କୁ ପଠାଇବାର ବିଶେଷ ଅଭିପ୍ରାୟ କ'ଣ ? ଆଚ୍ଛା ଦେଖିବା ହଉ ଦାଦା । (ମନ୍ତ୍ରୀ ପ୍ରସ୍ଥାନ)

(ରଙ୍ଗରାଓଙ୍କ ପ୍ରବେଶ)

ପୁରୁ— (ଆସନରୁ ଉଠି) ଆସ ସଖା, ପଥଶ୍ରାନ୍ତି ଦୂର ହୋଇଛି ତ ?

(ରଙ୍ଗରାଓଙ୍କୁ କୋଳ କରିବା)

ରଙ୍ଗରାଓ— (ଏକାନ୍ତେ) ସଖା - ଅନେକ କଥା ଅଛି ।

ପୁରୁ— କ'ଣ କହୁନା, କାଞ୍ଚି ଖବର ତ ? କନକାଞ୍ଜିଙ୍କର ଖବର କ'ଣ ? ଆଉ ଅନ୍ୟାନ୍ୟ ସମ୍ବାଦ କ'ଣ ?

ରଙ୍ଗରାଓ— ସଖା, ମୋତେ ଆଉ ବାତୁଳ କରିଦିଅନା ଭଲା ! ତା' ନାମ ମୋ ଆଗରେ କହିଲେ ମୋର ଅହସ୍ୟ ହଉଛି ସତେ !

ପୁରୁ— ଆଚ୍ଛା ଆଚ୍ଛା, ସେସବୁ ବୁଝିବା । ଆଉ କି ଖବର ?

ରଙ୍ଗରାଓ— ଆଗ ମତେ କହିଲ ତୁମର ମାନସୀ ପ୍ରତିମା - ଯାହାଙ୍କ କଥା ମୋତେ କହୁଥିଲ - ସେ କାଞ୍ଚିକେମା ପଦ୍ମାବତୀ କି ନା ? ଯାହାଙ୍କୁ ହରିଣମାରୀଠାରେ ଦେଖିଲ !

ପୁରୁ— ଠିକ୍ ସଖା, ତୁମର ଅନୁମାନ ଅଭ୍ରାନ୍ତ ।

ରଙ୍ଗରାଓ— ତୁମ୍ଭ ଗଳାର ସେହି ମଣିହାରଟି ପଦ୍ମାବତୀଙ୍କ ଗଳାରେ ଦେଖିଲି ଆଉ ତୁମର ରହସ୍ୟାଳାପର ବିସ୍ତୃତ ବିବରଣୀ ମଧ୍ୟ ଶୁଣିଲି । ତଥାପି ମୋର ଟିକିଏ ସନ୍ଦେହ ରହିଯାଇଥିଲା । ପଦ୍ମାବତୀଙ୍କୁ ହିଁ ତାହାହେଲେ ତୁମ୍ଭେ ଦେଉଳ ସମ୍ମୁଖରେ ଦେଖିଥିଲ ନା ? ତମ ଭାଗ୍ୟ ସଖା । ସେଦିନ ହରିଣମାରୀଠାରେ ପ୍ରଜାପତିଟା ଭ୍ରମର ଉପରେ ବସିଥିଲା - କିନ୍ତୁ ତମ ଉପରେ ବସା କରି ରହିବା ତା'ର ଉଚିତ ଥିଲା ସେଦିନୁ ।

ପୁରୁ— କିନ୍ତୁ ଭାଇ କାହିଁକି ବୃଥା ଆଉ ସେ ସ୍ମୃତି ଜଗାଉଛ । ହାୟ ଭାଇ ଲାଳସାର ସମ୍ପର୍କ ମାତ୍ର ନଥାଇ ମୁଁ ତାଙ୍କୁ ମୁହୂର୍ତ୍ତକର ଦର୍ଶନରେ ଏ ହୃଦୟରେ ଚିରସ୍ଥାୟୀ ଆସନ ଦେଇସାରିଥିଲି । କିନ୍ତୁ ସେଦିନ ଦ୍ୱିତୀୟ ଦର୍ଶନର ପାରିପାର୍ଶ୍ୱିକ ଘଟଣାବଳୀରେ ମୋର ଗଭୀର ପ୍ରୀତିର ଅବନତି ଘଟିଲା । ମୁଁ ଖୁବ୍ ଭଲକରି ବୁଝି ଦେଖିଛି - ଯେପରି ବହ୍ନିଶିଖା ସେହିପରି ତାହାର ରୂପରାଶି । କି ମୋହିନୀ ବଳରେ ଏ ହୃଦୟକୁ ପତଙ୍ଗ ପରି ଆକର୍ଷଣ କଲା । ତୁମକୁ କ'ଣ ବୁଝାଇବି ? ସଖା ମୋର ବର୍ତ୍ତମାନ ପରମ ସୌଭାଗ୍ୟର ବିଷୟ ଏହି ହେଉଛି ଯେ ସେ ମୋର ଶତ୍ରୁକନ୍ୟା - ତାଙ୍କ ସହିତ ଐହିକ ମିଳନର ଆଶା ନାହିଁ ।

ରଙ୍ଗରାଓ— କହୁ ନାହଁ - ଆକାଂକ୍ଷା ମଧ୍ୟ ନାହିଁ ।

ପୁରୁ— ନଥିଲା - ପ୍ରଥମେ ନଥିଲା - ଭାଇ ମତେ ବିଶ୍ୱାସ କର । ପ୍ରଥମେ ମୁଁ ଯେତେବେଳେ ତାଙ୍କୁ ଦେଖିଲି ସେତେବେଳେ ଆତ୍ମଜ୍ଞାନଶୂନ୍ୟ ହୋଇ ଦେଖିଥିଲି । ଅତୀତ - ବର୍ତ୍ତମାନ - ଭବିଷ୍ୟତ ସବୁ ଭୁଲି ଯାଇଥିଲି । ସେ ଦେଖିବାର ଯେପରି ଅନ୍ତ ନାହିଁ । ଖାଲି ଦେଖିବାହିଁ ଯେପରି ସେ ଦେଖିବାର ଲକ୍ଷ୍ୟ । ଦ୍ୱିତୀୟ ଦର୍ଶନରେ ମୋର ଯେପରି ଅଧୋପତନ

ହେଲା, ଆଶା ଆଶଙ୍କାର ଯୁଗପତ୍ ଉନ୍ମେଷରେ ମୁଁ ଜାଣିଲି ଭାଇ ମୁଁ କେତେ ଦୁର୍ବଳ। କେତେ ନୀଚ୍ ମୋର ମତିଗତି।

ରଙ୍ଗରାଓ— ମୁଁ କହୁଛି ତୁମ ଭାଗ୍ୟ ଭଲ ସଖା। ତୁମେ ଯାହାଙ୍କ ଠାରେ ମଜିଛ - ସେ ମଧ ମୂଳକଳନ୍ତର ସୁଦ୍ଧା ପ୍ରତିଦାନ ଦେଉଛନ୍ତି, ପଦ୍ମାବତୀ ମଧ ତୁମ ପାଇଁ ପାଗଳିନୀ।

ପୁରୁ— ମିଥ୍ୟା କଥା ସଖା। ମୁଁ ତାଙ୍କର ପିତୃବୈରୀ। କିନ୍ତୁ, ଏ ଅବୋଧ ମନକୁ ଯେତେ ବୁଝାଇଲେ ସୁଦ୍ଧା ବୁଝୁନାହିଁ। ମୁଁ ଜାଣେ ଏ ବୃଥା ପ୍ରଣୟ - କେବେହେଲେ ସଫଳ ହେବାର ନୁହେଁ। ସେ ଯୋଗେ ସେଥିରୁ ନିଜକୁ ନିବର୍ତ୍ତାଇବାକୁ ପ୍ରୟାସ କରୁଛି ସଖା, କିନ୍ତୁ ଏ ଦିଗରେ ମୋର ଶତ ଚେଷ୍ଟା ସୁଦ୍ଧା ବ୍ୟର୍ଥ ହେଲାଣି।

(ବିକ୍ରମ ଦେବଙ୍କର ପ୍ରବେଶ ଓ ନିକଟରେ ଅବସ୍ଥାନ)

ରଙ୍ଗରାଓ— ଆଚ୍ଛା, ଆଚ୍ଛା ସଖା ! ସମୁଦାୟ କଥା ଶୁଣିଲେ ବୁଝିବ। ପରେ କଥାବାର୍ତ୍ତା ହେବା। ଏ ଯାହା କହିଲି ତାହା ନିତାନ୍ତ ଅମୂଳକ ନୁହେଁ। ସେ ତୁମର ଶତ୍ରୁକନ୍ୟା - ଆଉ ନରସିଂହ ରାଓ ପରି ବୋଧହୁଏ ଦ୍ୱିତୀୟ ଶତ୍ରୁ ତୁମର ଏ ଜଗତରେ କେହି ନାହିଁ। ରାଜାର କ୍ରୁର ଅନ୍ୟାୟ ଆଚରଣରେ ବ୍ୟଥିତ ହୋଇ ମୁଁ ଏଠାକୁ ପଳାଇ ଆସିଛି। ସଖା, ଯେଉଁଠାରେ ମୋ ସଖାଙ୍କର ନିନ୍ଦା, ସଖାଙ୍କର ଅବମାନନା ଦିନରାତ୍ରି ଲାଗିଛି, ସେଠାରେ ରହିବାକୁ କେବେ କି ମୋର ପ୍ରବୃତ୍ତି ହୋଇପାରେ ? ତୁମକୁ ପୁଣି କହେ ଚଣ୍ଡାଳ !

ପୁରୁ— (ଚମକି ପଡ଼ି) କିଏ କହେ ସଖା ? କିଏ - କାଞ୍ଚିରାଜ ?

ରଙ୍ଗରାଓ— ହୁଁ। ତୁମର ବିବାହ ପ୍ରସ୍ତାବ ନେଇ ଯେଉଁ ଦୂତ ଯାଇଥିଲା ସେ ତ ବନ୍ଦୀ। ଯେଉଁ ବ୍ରାହ୍ମଣ ପଣ୍ଡିତେ ଯାଇଥିଲେ ସେ କ'ଣ ଫେରିନାହାନ୍ତି ଆଜିଯାଏଁ ?

ପୁରୁ— କାହାର ବିବାହ ପ୍ରସ୍ତାବ ସଖା ? ଏ ତୁମେ କ'ଣ କହୁଛ ?

ରଙ୍ଗରାଓ— ଦେଖୁଛି ସଖାଙ୍କୁ କିଛି ଜଣା ନାହିଁ। ସମ୍ଭବତଃ ଏହା ମହାଦେଈଙ୍କ କାର୍ଯ୍ୟ।

ପୁରୁ— କାଞ୍ଚି ପ୍ରତ୍ୟାଗତ ବାଚ଼ସ୍ପତି କିଏ ଆସିଲା ନା ? ତାଙ୍କରି କଥା ତ କହୁନାହଁ ସଖା ? ସେ କାହାର ବିବାହ ପ୍ରସ୍ତାବ ନେଇଯାଇଥିଲେ ? ମୋର ? ସଖା ମୋର ବିବାହ ପ୍ରସ୍ତାବ ନେଇ କାଞ୍ଚି ରାଜସଭାକୁ ଦୂତ ଯାଇଥିଲା, ନୁହେଁ ? ହୁଁ, ମୁଁ ବୁଝିଲି ଏବେ । ମା'ଙ୍କର ଏତେ ଇଚ୍ଛା ପୁଣି ମତେ ନଜଣାଇ । ମୁଁ ଜାଣିଥିଲେ କଦାପି ଏହା କରାଇ ଦେଇନଥାନ୍ତି । (କ୍ରୋଧାଭିନୟ).

ବିକ୍ରମ— ମହାରାଜ, ଶୁଣୁଛି - କାଞ୍ଚି ପ୍ରତ୍ୟାଗତ ଉତ୍କଳ ପଣ୍ଡିତଙ୍କ ଉପରେ କାଞ୍ଚିରାଜ ଜଘନ୍ୟ ଅତ୍ୟାଚ଼ାର କରିଛି । ଚଣ୍ଡାଳ ପ୍ରଭୃତି ଦୁର୍ବାକ୍ୟ ସହିତ ତାଙ୍କ ଶିଖାମୁଣ୍ଡନ କରି, ଉପବୀତ ଛିନ୍ନକରି ଦୁଇ ହସ୍ତରେ ସମାର୍ଜନୀ ବାନ୍ଧି -

ପୁରୁ— ସ୍ତବ୍ଧ ହୁଅ ସାମନ୍ତ ! ଯଦି ସତ୍ୟ ହୁଏ ତାହାହେଲେ ଏହା ଅସହ୍ୟ, ଅସହ୍ୟ କିଏ ଅଛିରେ । (ଦ୍ୱାରୀର ପ୍ରବେଶ ଓ ଅଭିବାଦନ) ବାଚ଼ସ୍ପ ତି କୁଆଡ଼େ ଗଲେ ? ମନ୍ତ୍ରୀ ଓ ତାଙ୍କୁ ଉଭୟଙ୍କୁ ପ୍ରଣାମ ଦିଅ (ବିଚ଼ଳିତଭାବରେ ପଦଚ଼ାଳନା କଲେ)

ଦ୍ୱାରୀ— ମହାଦେଈ ମଣିମାଙ୍କ ହଂସପୁରକୁ ଯାଇଛନ୍ତି ।

ପୁରୁ— ଯାଅ ଶୀଘ୍ର ପ୍ରଣାମ ଦିଅ । (ପଦଚ଼ାଳନା)

ବିକ୍ରମ— (ସ୍ୱଗତ) ଏହିଥର । ଏହିଥର କାଞ୍ଚିରାଜ । ଦେଖ ତୁମ୍ଭର କି ଦଶା କରୁଛି । ଆଉ ପଦ୍ମାବତୀ, ପଦ୍ମାବତୀ - ଏହିଥର ।

ରଙ୍ଗରାଓ— (ପାଖକୁ ଆସି) ସଖା, ସ୍ଥିର ହୁଅ । ଆଉ ଶୁଣ ।

ପୁରୁ— ଆଉ କିଛି ଶୁଣିବାର ଆବଶ୍ୟକ ନାହିଁ, ସଖା । ମୁଁ ସମସ୍ତ ବୁଝିସାରିଲିଣି । ତୁମେ ନିଶ୍ଚିନ୍ତ ରହ ସଖା । ମୋର ମସ୍ତିଷ୍କ ବିକୃତି ଘଟିବ ନାହିଁ । ଚଣ୍ଡାଳ ? ମୁଁ ଚଣ୍ଡାଳ ? ମୋର କର୍ମଚାରୀ ଚଣ୍ଡାଳର ଦାସ ? (ପଦଚ଼ାଳନା କରିବା) ହଁ ଚଣ୍ଡାଳ - ଶ୍ରୀ ମହାପ୍ରଭୁଙ୍କ, ଶ୍ରୀ ଜଗନ୍ନାଥଙ୍କ....

ବିକ୍ରମ— (ପାଖକୁ ଆସି) ମହାରାଜ, ଏ ବିବାହ ପ୍ରସ୍ତାବ ପଠାଇବା ନିହାତି ଗର୍ହିତ କାର୍ଯ୍ୟ ହୋଇଅଛି । ମୁଁ ଜାଣିଥିଲେ ଏହା କରାଇ ଦେଇ ନଥାଆନ୍ତି କେବେ -

ପୁରୁ— ତା' ଅବଶ୍ୟ ହେ ସାଧୁ । ତୁ ହି ନା ସେଦିନ ପଦ୍ମାବତୀଙ୍କୁ ଚୋରି କରିବା ପାଇଁ ତସ୍କର ବେଶରେ - ନିଃସହାୟ ରମଣୀଙ୍କୁ ଆକ୍ରମଣ କରିଥିଲୁ । ଭଣ୍ଡ ମୁଖରେ ପୁଣି ଉପଦେଶବାଣୀ । (ଅନ୍ୟ ଦିଗକୁ ଫେରିପଡ଼ି ଗୋଡ଼ାଇ ଗୋଡ଼ାଇ ପଦଚ଼ାଳନା)

ବିକ୍ରମ— (ରାଗି) ମୁଁ ଭଣ୍ଡ ହେଇପାରେ ପୁରୁଷୋତ୍ତମ ଦେବ - କିନ୍ତୁ ମତେ ଚଣ୍ଡାଳ ବୋଲି କେହି କହି ନାହିଁ । ମୁଁ ତସ୍କର ହେଇପାରେ ରାଜା - କିନ୍ତୁ ମୋତେ ତ ଉପଯାଚ଼କ ହୋଇ କାହାରି କର ଭିକ୍ଷାକରି ଉପହସିତ ହେବାର କେବେ ଦେଖିନାହିଁ । ପୁଚ୍ଛ କଛ ଶୃଗାଳ, କୁକୁର ପରି ପଦାଘାତ ପାଇକି ଘରାଭିମୁଖରେ ପଳାୟମାନ - କେବେ ପାଇବ ନାହିଁ ମୋତେ (ହଠାତ୍ ବୁଲିପଡ଼ି) ଭାଇ, ଭାଇ, ଏ କ'ଣ ଗୃହ ବିବାଦର ସମୟ । ଆତ୍ମବିସ୍ମୃତ ହୁଅନା ଭାଇ, ଏ ଘୋର ଅପମାନର ପ୍ରତିଶୋଧ ଚିନ୍ତା କର । ଯେଉଁ ହିତାହିତ ଜ୍ଞାନଶୂନ୍ୟ ଅବିବେକୀ ଉଦ୍ଧତ ରାଜା ତୁମର ବିବାହ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରି ତୁମ୍ଭକୁ ଚଣ୍ଡାଳ ଆଖ୍ୟା ଦେଇଛି - ତାହାର ଶାସ୍ତିବିଧାନ କର । ଚଣ୍ଡାଳ - ଚଣ୍ଡାଳ ! ଉତ୍କଳର ମଉଡ଼ମଣି ଗଜପତି ସୂର୍ଯ୍ୟବଂଶୀୟ ମହାରାଜ ପୁରୁଷୋତ୍ତମ ଦେବ ଚଣ୍ଡାଳ ? ଗଣ୍ଡୁଷ ଜଳର ସଫରୀ କାଞ୍ଚିରାଜ ନରସିଂହ ରାଓ - ସେ ପୁଣି କହେ ଉତ୍କଳ ଗଜପତି ଚଣ୍ଡାଳ -

ପୁରୁ— କ୍ଷମାକର ଭାଇ । ଆଉ ଏ ମର୍ମଭେଦୀ ବାଣୀରେ ଏ ଉଷ୍ଣ ରକ୍ତକୁ ଉତ୍ତେଜିତ କରନା ଭାଇ । ଆସ ଏ ଘୋର ଅପମାନର ପ୍ରତିଶୋଧ ଚିନ୍ତା କରିବା ଆସ । (ଭାବି) ଆଚ୍ଛା ଯେଉଁ ମୁଖରେ ସେହି ଦୁର୍ମୁଖ ବର୍ବର ଶ୍ରୀଜଗନ୍ନାଥଙ୍କ ସେବକକୁ ଚଣ୍ଡାଳ ଆଖ୍ୟା ଦେଇଅଛି - ସେହି ମୁଖରେ ଚଣ୍ଡାଳର ପୁରାତନୀ ଶତମୁଖୀର ଚୁମ୍ବନ କିପରି ହେବ ?

ବିକ୍ରମ— ଅତି ଉତ୍ତମ ପ୍ରତିଶୋଧ ହେବ କିନ୍ତୁ (ଅଧୋମୁଖରେ ରହିବା) !

ପୁରୁ— ନୀରବ ହେଲ ଯେ ବିକ୍ରମ (ଭାବି) ହୁଁ ବୁଝିଛି - ବୁଝିଛି ଭାଇ, ତୁମ ଅନ୍ତର କଥା ବୁଝିଛି - ଯେଉଁ କନ୍ୟାର ପାଣିଗ୍ରହଣ ପାଇଁ ଉତ୍କଳ ଗଜପତି ଅଯୋଗ୍ୟ ବିବେଚିତ ହେଲା, ଚଣ୍ଡାଳ ଆଖ୍ୟା ପ୍ରାପ୍ତ ହେଲା...

ବିକ୍ରମ— ସେ କନ୍ୟାର କରପଦ୍ମ ସମାର୍ଜନୀଧାରୀ ଚଣ୍ଡାଳର କରାଶ୍ରୟରେ ଧନ୍ୟ ହେବ । ସେ କନ୍ୟାର ମୁଖାରବିନ୍ଦ ଶତମୁଖୀଧାରୀ ଚଣ୍ଡାଳର ଚୁମ୍ବନରେ ପ୍ରଫୁଲ୍ଲିତ ହେବ - (ଉତ୍କଳ ମନ୍ତ୍ରୀଙ୍କ ପ୍ରବେଶ) ଏଇ ଯେ ମନ୍ତ୍ରୀ ମହାଶୟ ଆସିଗଲେ...

ପୁରୁ— (କୌଣସି ଦିଗକୁ ନଚାହିଁ କିଛି ନଶୁଣି) ଠିକ୍ ଠିକ୍ - ମୁଁ ଆଜି ଏ ପୁଣ୍ୟ ରାଜସିଂହାସନ ସମକ୍ଷରେ ଏହି ପବିତ୍ର ରାଜସଭାରେ ପ୍ରତିଜ୍ଞା କରୁଛି (ମୁକୁଟ କାଢ଼ି ସିଂହାସନ ଉପରେ ରଖିବାକୁ ଯିବାବେଳେ ରଙ୍ଗରାଉତ ବାଧା ପ୍ରଦାନ) ଯାଅ ସଖା -ବାଧା ଦିଅନା । ନିଜ ବଂଶ ଗୌରବ ରକ୍ଷା ପାଇଁ କାହାର ଉପଦେଶ ମୋର ଲୋଡ଼ା ନାହିଁ । ଆପଣଙ୍କୁ, ମନ୍ତ୍ରୀଙ୍କୁ ସମସ୍ତିଙ୍କୁ ସାକ୍ଷୀ ରଖି ମୁଁ ପ୍ରତିଜ୍ଞା କରୁଛି ଯେ, କାଞ୍ଚି ଜୟକରି କାଞ୍ଚିଜେମା ପଦ୍ମାବତୀଙ୍କୁ ବନ୍ଦୀ କରି ଆଣି ତାଙ୍କୁ ଚଣ୍ଡାଳ ହସ୍ତରେ ଅର୍ପଣ କରାଯିବ । (ମନ୍ତ୍ରୀ ପ୍ରମୁଖ ସମସ୍ତେ କର୍ଣ୍ଣରେ ହାତଦବା)

ବିକ୍ରମ— ସାଧୁ - ସାଧୁ - ମହାରାଜ, ଏହା ବଂଶୋଚିତ ପ୍ରତିଜ୍ଞା - ରାଜୋଚିତ ସଂକଳ୍ପ !

ମନ୍ତ୍ରୀ— (ଜନାନ୍ତିକେ) ଚୁପ୍ କର ସାମନ୍ତ !

ପୁରୁ— (ଭ୍ରୁକୁଟୀ କରି) ସମସ୍ତେ ଚୁପ୍ କର - ମୋ କଥା ଶୁଣ । ଯଦି ଏ ପ୍ରତିଜ୍ଞା ପୂରଣ କରି ନପାରେ ତାହାହେଲେ ଏ ସିଂହାସନର ଅଯୋଗ୍ୟ ବୋଲି ସିଂହାସନ ତ୍ୟାଗ କରି ନିଜେ ଚଣ୍ଡାଳ ବୃତ୍ତି ଅବଲମ୍ବନ କରିବି । ସତ୍ୟ ସତ୍ୟ ତ୍ରିବାର ସତ୍ୟ । ଜୟ ଜଗନ୍ନାଥଙ୍କର ଜୟ !

ମନ୍ତ୍ରୀ— ମହାରାଜ, ଏ କଠୋର ପ୍ରତିଜ୍ଞା କରିବା ପୂର୍ବରୁ ମହାଦେଈଙ୍କୁ କି ମୋତେ -

ପୁରୁ— ତୁମ୍ଭେମାନେ ହିଁ ତ ମୋର ଏ ଅପମାନ ଓ ଘୋର ଲାଞ୍ଛନାର କାରଣ । ଏହା କ'ଣ ସତ୍ୟ ନୁହେଁ ଯେ ତୁମ୍ଭେ ମୋର ବିନାନୁମତିରେ, ବିନା ପରାମର୍ଶରେ, ଅଜ୍ଞାତସାରରେ କାଞ୍ଚିକୁ ମୋର ବିବାହ ପ୍ରସ୍ତାବ ପଠାଇଥିଲ ? ଏହା କ'ଣ ମିଥ୍ୟା ଯେ ଦର୍ପିତ କାଞ୍ଚିରାଜ ତୁମ୍ଭ ପ୍ରସ୍ତାବରେ ପଦାଘାତ କରିଅଛି ? ଏହା କ'ଣମିଥ୍ୟା ଯେ ତୁମ୍ଭ ପ୍ରେରିତ ବ୍ରାହ୍ମଣ ପଣ୍ଡିତଙ୍କୁ ଚଣ୍ଡାଳ ବେଶରେ ତାଙ୍କ ହସ୍ତରେ ସମାର୍ଜନୀ ପର୍ଯ୍ୟନ୍ତ ବାନ୍ଧି ବିଦାୟ କରିଅଛ ? ଏ ଲଜ୍ଜା କାହାର ? ଦେଖ ଏ ଘୋର ଅପମାନ ଦ୍ୱାରା ଏ ଉତ୍କଳର ପବିତ୍ର ସିଂହାସନ କିପରି ମଳିନ ଦିଶୁଅଛି । ଏ ନିନ୍ଦା, ଏ ଅପଯଶ, ଏ କଳଙ୍କ ତୁମେ ହିଁ ତ ସମଗ୍ର ଓଡ଼ିଆ ଜାତିର ମସ୍ତକରେ ଟୋକିଦେଇଅଛ । ତୁମ୍ଭେ କ'ଣ ଜାଣନା ? ବର୍ବର ନରସିଂହ ରାଓ ଓଡ଼ିଆଙ୍କୁ କି କଦର୍ଯ୍ୟ ଦୃଷ୍ଟିରେ ଦେଖେ । ମୁଁ ଯେଉଁ ସାମାନ୍ୟ ପ୍ରତିଜ୍ଞା କରିଛି ତାହା ଏହି ପୁଣ୍ୟ ସିଂହାସନର ଘୋର ଅପମାନର - ଏ ରାଷ୍ଟ୍ରୀୟ କଳଙ୍କର, ଏ ଜାତୀୟ ଲଜ୍ଜାର ପ୍ରତିବିଧାନ ପକ୍ଷରେ କଦାପି ଯଥେଷ୍ଟ ନୁହଁ ।

ମନ୍ତ୍ରୀ— ମହାରାଜ ! ଏ ଦାସ ଭର୍ତ୍ସନାର ଯୋଗ୍ୟ ଏକା । ଏ ବୃଦ୍ଧକୁ ଯଥୋଚିତ ଦଣ୍ଡରୁ ଅବ୍ୟାହତି ଦେବେ ନାହିଁ ମହାରାଜ । (ନତମସ୍ତକରେ ରହିବା) ।

ପୁରୁ— (ହସ୍ତଧରି) କଦାପି ନୁହଁ ଦାଦା - ତୁମ୍ଭ ଅବିବେଚନାର ଫଳ ସ୍ୱରୂପ ତୁମ୍ଭକୁ ଏହି ଦଣ୍ଡାଦେଶ ଦିଆଗଲା ଯେ, କାଞ୍ଚି ରାଜକୁମାରୀ ପଦ୍ମାବତୀଙ୍କୁ ତୁମ୍ଭେ ହିଁ ନିଜେ ସର୍ବସମକ୍ଷରେ ସମାର୍ଜନଧାରୀ ଚଣ୍ଡାଳ ହସ୍ତରେ ଅର୍ପଣ କରିବ ।

ମନ୍ତ୍ରୀ— ମୋର ଉପଯୁକ୍ତ ଦଣ୍ଡ, ତୁମର ଉପଯୁକ୍ତ ବିଧାନ । ଜରା, ଜରା ରାକ୍ଷସୀ କେବେ ତୋର ମନସ୍କାମନା ପୂର୍ଣ୍ଣ ହେବ ?

ବିକ୍ରମ— ମନ୍ତ୍ରୀ ମହାଶୟ - ବାଚସ୍ପତି କୁଆଡ଼େ ଗଲେ ।

ମନ୍ତ୍ରୀ— ମହାଦେଈଙ୍କ ଗହଣରେ ଅଛନ୍ତି । (ରହି) ତାଙ୍କର ବୃଥାରେ ଏ ସଭାକୁ ଆସିବା ଫଳ କ'ଣ ? ବିକ୍ରମ ସାମନ୍ତ, ଆପଣଙ୍କୁ ମହାଦେଈ ଅତି ସତ୍ୱର ସ୍ମରଣ କରିଛନ୍ତି । (ସ୍ୱଗତ) ହାୟ ମୋର ଯେ ବିଜୟ

ହେଇଗଲା । ଯେଉଁ ଅନିଷ୍ଟ ହେବାର ତା' ତ ହୋଇଯାଇଛି । ମହାଦେଈ ଠିକ୍ ସନ୍ଦେହ କରିଥିଲେ । ଯାଅ ଶୀଘ୍ର....

ବିକ୍ରମ— ମୋତେ କାହିଁକିରେ ବାପା ! ଏ ଅନୁଗ୍ରହ ତ ମୋ ଭାଗ୍ୟରେ କେବେ ଘଟିନାହିଁ । ଯାହାହେଉ ମୋର ଅଭୀଷ୍ଟ ସିଦ୍ଧି ତ ହୋଇଯାଇଅଛି । ପୁରୁଷୋତ୍ତମ ସତେ କାଞ୍ଚି ଜୟ କରିବ ନା ତା' ଅଭୀଷ୍ଟ ପ୍ରତିଜ୍ଞା ପୂରଣ ହେବ । ସିଂହାସନ ତ୍ୟାଗ କଲେ ରାଜା ମୁଁ - ଆଉ ଯଦି କାଞ୍ଚି ଜୟ କରେ ତାହାହେଲେ ବୈର ନିର୍ଯାତନାର ଚୂଡ଼ାନ୍ତ (ପ୍ରସ୍ଥାନ) ।

ପୁରୁ— ମନ୍ତ୍ରୀ ! ସେନାପତି ! ଯୁଦ୍ଧାଭିଯାନର ଆୟୋଜନ ଅତିଶୀଘ୍ର ହେବା ଦରକାର !

ମନ୍ତ୍ରୀ— ମହାରାଜ ! ଏହା କ'ଣ ଅଧମକୁ ଜଣାନାହିଁ ? ବାଚସ୍ପତିଙ୍କ ଠାରୁ ସମ୍ବାଦ ପାଇବା ମାତ୍ରେ ମୁଁ ସତର୍କ ହୋଇଅଛି । ବିଜୟନଗର ସୁଲତାନଙ୍କର ଜଣେ ଦୂତ ଆସି ସଦଳବଳେ ଅପେକ୍ଷା କରିଛନ୍ତି । ମୁଁ ତାଙ୍କୁ ରଖାଇଛି ଏଇ ଆଶାରେ ଯେ ସେମାନେ ଆମର ସହାୟ ହୋଇପାରନ୍ତି ।

ପୁରୁ— ସତେ ଦାଦା, ଏ ଅତି ଉତ୍ତମ ସୁଯୋଗ, ତାଙ୍କୁ ଡକାଅ । ତାଙ୍କର କ'ଣ କହିବାର ଅଛି ଶୁଣାଯାଉ । (ମନ୍ତ୍ରୀ ପ୍ରସ୍ଥାନ) ସଖା, କ୍ଷୁଣ୍ଣ ହେଲ କି - ମୁଁ ଟିକିଏ କ୍ରୋଧର ବଶବର୍ତ୍ତୀ ହୋଇ ପଡ଼ିଥିଲି । ମୋ ରଢ଼ ଆଚରଣ ଯୋଗୁଁ ମୁଁ ଲଜ୍ଜିତ ।

ରଙ୍ଗରାଓ— ନା ନା ସଖା, ତୁମ ଆଚରଣ କିଛି ରଢ଼ ହେଇନାହିଁ । କୁଣ୍ଠିତ ହୁଅନା ସଖା ବରଂ ମୁଁ ଲଜ୍ଜିତ ଯେ କାଲି ରାତିରୁ ଆଜି ଏ ପର୍ଯ୍ୟନ୍ତ ମୋ ଆଗମନର ଉଦ୍ଦେଶ୍ୟ ତୁମ୍ଭଠାରେ ବ୍ୟକ୍ତ କରିପାରି ନାହିଁ । ମୋର ଆଳସ୍ୟ ଯୋଗେ ଆଜି ଯେ ଭୀଷ୍ମ ପ୍ରତିଜ୍ଞା କରିବସିଲ ତାହାର ଫଳ ଯେ କ'ଣ ହେବ ମୁଁ କିଛି ବୁଝିପାରୁନି । ପଦ୍ମାବତୀଙ୍କର ଦଶା କ'ଣ ହେବ ଭାବି ମୋର ମରଣ ସନ୍ତୋଷ ହୋଇଛି ସଖା ! ସେ ନିର୍ଦ୍ଦୋଷ ବାଳିକା ତୁମ୍ଭଙ୍କୁ ପତି ରୂପେ ବରଣ କରି ଆଉ ସ୍ୱୟମ୍ବରରେ ଯୋଗ ନଦେବାକୁ ବଦ୍ଧପରିକର ହୋଇ ପିତାର ବିଦ୍ରୋହାଚରଣ କରି ଦଣ୍ଡିତା ହେଉଅଛି । ଅଥଚ ଯାଡ଼େ ତୁମ୍ଭେ ତାଙ୍କୁ ଚଣ୍ଡାଳର ଗୃହିଣୀ କରିବାର ପ୍ରତିଜ୍ଞାରେ ଯୁଦ୍ଧାଭିଯାନ କରୁଅଛ ।

ଏ ବିଧିର ବିଡ଼ମ୍ବନା ! ଏ ବିଷୟ ସମସ୍ୟାର କାରଣ ମୁଁ ସିନା, ସଖା ! ମୁଁ ଯଦି ଗୋଟିଏ ମୁହୂର୍ତ୍ତ ଆଗରୁ ପଦ୍ମାବତୀଙ୍କ ମନୋଭାବ ତୁମଠାରେ ପୂର୍ଣ୍ଣ ପ୍ରକାଶ କରିଥାଆନ୍ତି ସଖା, ତାହାହେଲେ ତୁମେ ଏ ପ୍ରତିଜ୍ଞା କରିନଥାଆନ୍ତ । ହାୟ ମହାରାଜ, ହାୟ ପଦ୍ମାବତୀ -

ପୁରୁ— ଏ ତୁମର ଭ୍ରମାତ୍ମକ ଧାରଣା ! ନିଜକୁ ଦୋଷୀ କରନାହିଁ ସଖା - (ହାତଧରି) ଭୁଲିବ ନାହିଁ ସଖା ! ମୁଁ ସାମାନ୍ୟ ପୁରୁଷ ନୁହେଁ, ମୁଁ ରାଜା । ଏହି ସମଗ୍ର ଭାରତର ଶ୍ରେଷ୍ଠତମ, ପୁରାଣତମ ପୁଣ୍ୟ ଓଡ଼ିଆ ଜାତିର ରାଜା । ଏହି ସିଂହାସନ ଦେଖୁଛ ସଖା, ଏହା କେବଳ ସୁବର୍ଣ୍ଣ ମଣିମୁକ୍ତା ନିର୍ମିତ ଆସନ ବିଶେଷ ନୁହେଁ । ଏହି ଜୀବନ୍ତ କୀର୍ତ୍ତିସ୍ତମ୍ଭ ନିର୍ମାଣରେ କେତେକେତେ ସ୍ୱାର୍ଥ ବଳି, କେତେ କେତେ ଆତ୍ମାହୁତି, କେତେ ମହାବୀରଙ୍କର ଉଷ୍ଣ ଶୋଣିତର ପୂତଧାରା, କେତେ କେତେ ଦିଗ୍‌ବିଜୟର ହୀରକୋଜ୍ଜ୍ୱଳ ଶୁଭ୍ର ମର୍ମର ଫଳକ ଆଉ ସର୍ବୋପରି ଏହା ମହାମହିମ ଉନ୍ନତ ଓଡ଼ିଆ ଜାତିର ଯୁଗଯୁଗାନ୍ତର କଠୋର ସାଧନାର ସୁବର୍ଣ୍ଣ ପ୍ରଲେପହୀନତା, ନ୍ୟୂନତାର ଲଜ୍ଜା, ପରାଜୟର ଅନ୍ତର୍ଦାହ - ଦାସତ୍ୱର ଉଷ୍ଣ ଶ୍ୱାସ ଏ ମହାକୀର୍ତ୍ତିର ଗରିମାମୟ ସ୍ୱର ଦ୍ୟୁତିକୁ କଦାପି ପ୍ରତିହତ କରିନାହିଁ । ଏହି ମହାକୀର୍ତ୍ତିର ରକ୍ଷକ ମୁଁ ସଖା । ଏହି ଓଡ଼ିଆ ଜାତିର ପୁଣ୍ୟସ୍ତମ୍ଭର ଭାର ଏହି ଦୁର୍ବଳ ସ୍କନ୍ଧରେ ନ୍ୟସ୍ତ । ମୋର କ୍ଷୁଦ୍ର ସ୍ୱାର୍ଥ କି ମୋର କର୍ତ୍ତବ୍ୟ ଉପରେ ? ମୁଁ ତ ଛାର କ୍ରୀଡ଼ନକ ମାତ୍ର - ମୋର କି ସାମର୍ଥ୍ୟ ମୁଁ ସେ ଅଖଣ୍ଡ ଆଦେଶ ଲଙ୍ଘନ କରିବି ? ସ୍ୱାର୍ଥର ଆହୁତି ନଦେଲେ ଏହି ସିଂହାସନରେ ନିଜେ ଦଗ୍ଧ ହେବା ଛଡ଼ା ଅନ୍ୟ ପଥ ନାହିଁ ସଖା ! ଜୟ ପ୍ରଭୁ ଜଗନ୍ନାଥ !

ରଙ୍ଗରାଓ— ତଥାପି ଭାଗ୍ୟର ଏ କି ଦାରୁଣ ପରିହାସ ସଖା - ନିୟତିର ଏ କି କଠିନ ନିର୍ଦ୍ଦେଶ - ଯାର କ'ଣ ସମାଧାନ ନାହିଁ ?

ପୁରୁ— ଥିଲେ ସେହି ନିୟତିର ଗର୍ଭରେ । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଛାମୁରେ ସଖା । ଛାର ମାନବର ସେଥିରେ କୌଣସି ହାତ ନାହିଁ । ଜୟ ଜଗନ୍ନାଥଙ୍କର ଜୟ (ମନ୍ତ୍ରୀ ଓ ସୁଲତାନଙ୍କର ପ୍ରବେଶ) ଆସ ମନ୍ତ୍ରୀ - ଏ କିଏ ? ସୁଲତାନ ଅହମ୍ମଦ ସାହ ନା ?

ସୁଲତାନ— ଗଜପତିଙ୍କର ଜୟ ହେଉ ! (ଛଦ୍ମାବରଣ କାଢ଼ି) ମୁଁ ଭାଇ ସେହି ହତଭାଗ୍ୟ ସୁଲତାନ ଅହମ୍ମଦ । ଭାଇ ମୋର ଅବିବେକିତାର ଫଳ ମୁଁ ପାଇଛି । ଦଣ୍ଡପାଟ ଯୁଦ୍ଧ ପାଇଁ ଯଦି ମୋ ପ୍ରତି ଆକ୍ରୋଶ ରଖିଥାଅ ତାହାହେଲେ ମୋତେ ବନ୍ଦୀ କରିପାର । କିନ୍ତୁ ମୁଁ ତୁମର ଶରଣାପନ୍ନ । ତୁମର ସାହାଯ୍ୟପ୍ରାର୍ଥୀ, ପୁରୁଷୋତ୍ତମ ଦେବ !

ମନ୍ତ୍ରୀ— ଇଏ ସୁଲତାନ ଅହମ୍ମଦ ନିଜେ ! (ମଲା ମୋ ଆଖିଟା ଥିଲା କୁଆଡ଼େ ?)

ପୁରୁ— ସୁଲତାନ ! ଓଡ଼ିଆ ଆଶ୍ରିତ ବନ୍ଧୁଙ୍କୁ ଆଶ୍ରୟ ଛଡ଼ା ଆଉ ଯଦି କିଛି ଦିଏ ତ ତାହା ଏହି - (ଆଲିଙ୍ଗନ କରି) ମହାଶୟ ! ଆଶ୍ଚର୍ଯ୍ୟ ହବାର ଏଥିରେ କିଛି ନାହିଁ । କାହିଁକି ତୁମକୁ ଅସ୍ପୃଶ୍ୟ ଭାବିବୁଁ ! ଏ ଯୁଦ୍ଧକ୍ଷେତ୍ର ନୁହଁ ଯେ ତୁମକୁ ବନ୍ଦୀ କରିବୁ !

ସୁଲତାନ— ଧନ୍ୟ ଉତ୍କଳରାଜ ! ତୁମ ମହାନୁଭବତାରେ ମୁ ମୁଗ୍ଧ । ବର୍ତ୍ତମାନ ଦୟାକରି ମୋ ପ୍ରସ୍ତାବଟି ଶୁଣିବେ କି ?

ପୁରୀ— ଆଜ୍ଞା କରନ୍ତୁ !

ସୁଲତାନ— ମୁଁ କାଞ୍ଚି ଆକ୍ରମଣ କରି ପରାଭୂତ ହେଇ ଛତ୍ରଭଙ୍ଗ ଦେଇଥିବା ସେନାଙ୍କୁ ଗୋଦାବରୀ ତୀରରେ ଏକତ୍ର କରି ରଖି ତୁମଙ୍କୁ ସୈନ୍ୟ ସାହାଯ୍ୟ ମାଗିବାପାଇଁ ଆସିଥିଲି । ଏଠାରେ ଶୁଣୁଛି ତୁମେ ମଧ କାଞ୍ଚି ବିଜୟ ପାଇଁ ବଦ୍ଧପରିକର । ଏପରି ଅବସ୍ଥାରେ ଦୁଇଜଣ ଏକତ୍ରିତ ହେବା ହିଁ ଉଭୟ ପକ୍ଷର ମଙ୍ଗଳ !

ପୁରୁ— ମୁଁ ତାହା ଅସ୍ୱୀକାର କରେନା ସୁଲତାନ - କିନ୍ତୁ ଆପଣଙ୍କ ସହିତ ମିଳିତ ନହେଲେ ମଧ ମୋର ଅନିଷ୍ଟ ବା କ୍ଷତି ବୃଦ୍ଧି ହେବ ନାହିଁ ।

ମନ୍ତ୍ରୀ— ମହାରାଜ, ସୁଲତାନ ସେନା ଯଦି କାଞ୍ଚି ପକ୍ଷରେ ଯୋଗ ଦିଅନ୍ତି, ତାହାହେଲେ ?

ପୁରୁ— ତାହାହେଲେ ବି କ୍ଷତି ବୃଦ୍ଧି ନାହିଁ । ଯାହା ଅସମ୍ଭବ -

ସୁଲତାନ— ତୁମ୍ଭେ ବାଳକ ସ୍କନ୍ଧରେ ପ୍ରବୀଣ ମସ୍ତକ ଧାରଣ କର ଦେଖୁଛି ପୁରୁଷୋତ୍ତମ ଦେବ। ମୁଁ ଆଶା କରିଥିଲି ମୁଁ କାଞ୍ଚି ବିଜୟ କରିବି ଓ ତୁମ୍ଭେ ମୋର ସହାୟ ହେବ। କିନ୍ତୁ ତାହା ହବାର ନୁହଁ ଦେଖୁଛି !

ପୁରୁ— ନା, ତା ହବାର ନୁହଁ ସୁଲତାନ ! ମୁଁ କାଞ୍ଚି ବିଜୟ ପାଇଁ ଯୁଦ୍ଧ ଯାତ୍ରା କରିବି। ଆପଣଙ୍କର ଅଭିରୁଚି ହେଲେ ଆପଣ ମୋର ସହାୟ ହୋଇପାରନ୍ତି। ବସ୍ତୁତଃ ଆପଣଙ୍କ ସାହାଯ୍ୟ ପାଇଲେ ମୁଁ ନିଜକୁ କୃତାର୍ଥ ମଣିବି।

(ବିକ୍ରମ ପ୍ରବେଶ)

ସୁଲତାନ— (ଦୀର୍ଘ ନିଃଶ୍ୱାସ) ତେବେ ତାହାହିଁ ହବ। କେବେ ସୁଦ୍ଧା ଯୁଦ୍ଧାଭିଯାନ କରିବାର ଇଚ୍ଛା ?

ପୁରୁ— ଆପାତତଃ ସୈନ୍ୟ ସମାବେଶ ସଙ୍ଗେ ସଙ୍ଗେ ଆପଣଙ୍କ ସହିତ ମିଳିତ ହେବାର ଆଦେଶ ଦେଉଛି। ସେନାପତି ! ସୁଲତାନ ସେନାଙ୍କ ସହିତ ଆମ ସେନା ମିଳିତ ହେବ।

ସେନାପତି— ଯେ ଆଜ୍ଞା ମହାରାଜ !

ସୁଲତାନ— ତେବେ ମୁଁ ବିଦାୟ ହୁଏ ମହାରାଜ। କାଲି ବା ପରଦିନ ରମାନା ହେବାକୁ ପଡ଼ିବ।

ପୁରୁ— ବିଶ୍ରାମ କରିବେ ନାହିଁ ସୁଲତାନ ?

(ଭାବି) ଯଦି କାଲି ଯିବାକୁ ପଡ଼ିବ ତାହେଲେ - ବିକ୍ରମ ସାମନ୍ତ ! ତୁମ୍ଭେ ସୁଲତାନଙ୍କ ସଙ୍ଗରେ ଉପଯୁକ୍ତ ରକ୍ଷୀ ସହ ପ୍ରସ୍ଥାନ କର। ଉତ୍କଳ ସୈନ୍ୟ ପହଞ୍ଚିବା ଯାଏଁ ସୁଲତାନଙ୍କର ଆତିଥ୍ୟ ଗ୍ରହଣ କରିପାର। ପଥରେ ବନ୍ଧୁଙ୍କର ଯେପରି କୌଣସି କଷ୍ଟ ନହୁଏ।

ବିକ୍ରମ— ଯେ ଆଜ୍ଞା (ସ୍ୱଗତ) ଆଶ୍ଚର୍ଯ୍ୟ କଥା। ସିଆଡ଼େ ମହାଦେଈଙ୍କର ଆଦେଶ ମଧ ସେୟା। ଇଏ ମାତା ପୁତ୍ରଙ୍କର କ'ଣ ମାନସିକ କଥାବାର୍ତ୍ତା ହୁଏ ନା କ'ଣ। ଯାହା ହେଉ ମୋ ଉଦ୍ଦେଶ୍ୟ ତ ପ୍ରାୟ ସିଦ୍ଧ ହେଉଛି। ଯେ ସୁଯୋଗ ମନ୍ଦ ନୁହେଁ।

ସୁଲତାନ— ତେବେ ଆସେ ଭାଇ ! ବିକ୍ରମ ଚାଲନ୍ତୁ।

ପୁରୁ— ଆସନ୍ତୁ ବନ୍ଧୁ - ମୁଁ ଅଚିରେ ଆପଣଙ୍କ ସହିତ ମିଳିତ ହେବି (ହାତ ମିଳାଇବା)

(ରଙ୍ଗରାଓ ପୁରୁଷୋତ୍ତମଙ୍କ ଛଡ଼ା ସର୍ବେ ପ୍ରସ୍ଥାନ)

ଆସ ସଖା ! ଚାଲ ମୋର ସମସ୍ତ ଶକ୍ତିର ଉତ୍ସ ସେହି ଶକ୍ତିମୟୀ ମହାମାନ୍ୟ ଜନନୀଙ୍କ ଚରଣ ବନ୍ଦନା କରି ଆସିବା ।

ରଙ୍ଗରାଓ— ହୁଁ ସଖା ! (ଆଶ୍ଚର୍ଯ୍ୟ)

ପୁରୁ— କ'ଣ ସଖା ?

ରଙ୍ଗରାଓ— ମୋର ରାଗ ହେଉଛି । ବୁଝି ପାରୁନାହଁ ? ମୁଁ ରାଗିଛି ।

ପୁରୁ— କାହା ଉପରେ ?

ରଙ୍ଗରାଓ— (ସଙ୍କୁଚିତ ହୋଇ) ଠିକ୍ କଥା କାହା ଉପରେ ? କାହା ଉପରେ ମୁଁ ରାଗିଛି ? କିନ୍ତୁ ମୁଁ ରାଗିଛି, ଏ କଥା ଠିକ୍ ମାନୁଛ ତ ?

ପୁରୁ— ଆଚ୍ଛା ମାନିଲି - ତା' ପରେ । ମୋର ସେଥିରେ କଣ ହେଲା ?

ରଙ୍ଗରାଓ— କିଛି ହେଲା ନାହିଁ ? କିଛି ହେଲା ନାହିଁ ତମର ? ଦେଖ ସଖା, ଏଥର ତମରି ଉପରେ ରାଗିଲି - ରାଗିଲି - ରାଗିଲି ଜାଣିଥା ।

ପୁରୁ— (ଧରି) ସଖା, ମୋର ଦୋଷ ?

ରଙ୍ଗରାଓ— ତମର ଦୋଷ ? ତମର ଦୋଷ ? ଇଃ -

ପୁରୁ— ପାଟି ଚାକୁଳଉଛ କାହିଁକି ସଖା । କହିପକା କ'ଣ ମୋର ଅପରାଧ ।

ରଙ୍ଗରାଓ— ଅପରାଧ କଠିନ । ତୁମ୍ଭେ ସଖା ଭୟାନକ ବ୍ୟଭିଚାରୀ ।

ପୁରୁ— (ଆଶ୍ଚର୍ଯ୍ୟ ହୋଇ) ବ୍ୟଭିଚାରୀ ? ମୁଁ ବ୍ୟଭିଚାରୀ ?

ରଙ୍ଗରାଓ— (ରାଗି) ହଁ ବ୍ୟଭିଚାରୀ । ମୁଁ କହିଛି ଥରେ - ବ୍ୟଭିଚାରୀ ।

ପୁରୁ— ସଖା -

ରଙ୍ଗରାଓ — ଅନ୍ତତଃ ତମର ଆଚାରବ୍ୟବହାର କଦାଚିତ ସ୍ୱାଦ୍ୟ...

ପୁରୁ— ସଖା !

ରଙ୍ଗରାଓ— ଅନ୍ତତଃ ତୁମର ବ୍ୟବହାର ଅତି ଅଳ୍ପ ଉପଭୋଗ୍ୟ...

ପୁରୁ— ସଖା !

ରଙ୍ଗରାଓ— ଅନ୍ତତଃ ତୁମ୍ଭର ଆଜିର ବ୍ୟବହାର ଅତ୍ୟନ୍ତ ଅସ୍ପୃହଣୀୟ...

ପୁରୁ— କ'ଣ କହୁଛ ସଖା - ମୋତେ ଅବାକ୍ କରି ଦେଲ ଯେ...

ରଙ୍ଗରାଓ— ଆଉ ଦଣ୍ଡେ ଅବାକ୍ ରହ । ମୁଁ କହିସାରେ । ହଁ କହିବି ତମେ ମହାନୁଭବତାର ବେଶ୍ୟାବୃତ୍ତି ଆରମ୍ଭ କରିଛ ।

ପୁରୁ— ଏଁ ? ବେଶ୍ୟାବୃତ୍ତି ? କ'ଣ ଯେ କହ ସଖା ତମେ ? (ହାସ୍ୟ)

ରଙ୍ଗରାଓ— ହସନା ସଖା - କଥା କହ ନାହିଁ । ଭାବି ଦେଖ - ତମର ଆଜିକାର ଆଚରଣ ମହାନୁଭବତାର ବେଶ୍ୟାବୃତ୍ତି ଛଡ଼ା ଆଉ କ'ଣ ? 'ମହାନୁଭବତାର ବେଶ୍ୟାବୃତ୍ତି' ତମର ଅପରାଧ (ସହଜ ଭାବରେ) ସଖା - ସଖା ଏଥର ମୁଁ ଶାନ୍ତ । ଆଉ ମୋର ରାଗ ନାହିଁ ।

ପୁରୁ— ସଖା ! କ'ଣ ଯେ ତୁମେ କହ ! (ଆଲିଙ୍ଗନ କରିବାକୁ ଯିବା)

ରଙ୍ଗରାଓ— ନା, ନା, ଆଉ ଟିକିଏ ବାକି ଅଛି । ଦଣ୍ଡ ଗ୍ରହଣ କର । ଅପରାଧୀ । ତମର ହୃଦୟଟା କେଉଁଠି ସ୍ପଷ୍ଟ ଉତ୍ତର ଦିଅ ।

ପୁରୁ— (ହସି ହସି) ସମ୍ଭବତଃ ଏହି ପଛଆଡ଼େ (ପିଠି ଦେଖାଇବା) । ରଙ୍ଗରାଓ ହଠାତ୍ ଆସି ପୁରୁଷୋତ୍ତମ ଦେବଙ୍କ ଦୁଇହାତ ଧରି ପକାଇ ସହଜ ସ୍ୱରରେ, "ଭାଇ ଟିକିଏ ସ୍ୱସ୍ଥାନକୁ ଆଣିପାରିବ କି କ୍ଷଣକ ପାଇଁ ମାତ୍ର ?"

ପୁରୁ— ଅବଶ୍ୟ ସଖା ! ଆସ ମୋ ହୃଦୟକୁ ଆସ ! ମୋ ଭଗ୍ନ ହୃଦୟକୁ ଆସ । (କୋଳ କରିବା)

ପଟପତନ

\+ + + + +

# ପଞ୍ଚମ ଅଙ୍କ

## ଅଭିଯାନ

### ପ୍ରଥମ ଦୃଶ୍ୟ

ସ୍ଥାନ— ମୁସଲମାନ ଶିବିର ନିକଟସ୍ଥ ବନପଥ । କାଳ - ସନ୍ଧ୍ୟା, ସ୍ଥାନେ ସ୍ଥାନେ ଚନ୍ଦ୍ରଜ୍ୟୋତ୍ସ୍ନା ଦେଖାଯାଉଥିଲା । କ୍ଳାନ୍ତଭାବରେ ପୁରୁଷ ଅଶ୍ୱାରୋହୀ ବେଶରେ କନକର ପ୍ରବେଶ ।

କନକ— ଆଶା କରିଥିଲି ସନ୍ଧ୍ୟା ପୂର୍ବରୁ କୌଣସି ଗ୍ରାମରେ ପହଞ୍ଚି ପାରିବି । କିନ୍ତୁ ଅଶ୍ୱ ମୋର ପଥଶ୍ରାନ୍ତ - ପଦେ ମାତ୍ର ଅଗ୍ରସର ହେବାକୁ ଅକ୍ଷମ । କ'ଣ ଯେ ଏବେ କରିବି - ଏଟା କେଉଁ ରାଜ୍ୟ କେଜାଣି ? କେଉଁଠି ଏବେ ଆଶ୍ରୟ ନେବି ? ବୃକ୍ଷମୂଳ ଛଡ଼ା ତ ଅନ୍ୟଗତି ଦେଖୁନାହିଁ । ହେଉ ଜଗନ୍ନାଥଙ୍କର ଯାହା ଇଚ୍ଛା । (ବୃକ୍ଷମୂଳରେ ବସି) 'ମୋତି' କିଛିକ୍ଷଣ ଚରୁ । ତାକୁ ଏହି ବୃକ୍ଷମୂଳରେ ବାନ୍ଧି ନିଜେ ସେହି ଡାଳରେ ଆଶ୍ରୟ ନେବି । (ରହି) ହାୟ ପ୍ରଭୁ ! ଅଭାଗିନୀ କର୍ମରେ କ'ଣ ଅଛି କେଜାଣି ? ବଡ଼ ଦମ୍ଭରେ, ବଡ଼ ଗର୍ବରେ, ସଖୀର ପ୍ରତିକାର ଆଶାରେ ଏକାକିନୀ ତୁମ୍ଭ ଚରଣ ତଳକୁ ଆସିଥିଲି । କେବେ ଯାଇ ତୁମ ଶ୍ରୀଛାମୁରେ ପହଞ୍ଚିବି ପ୍ରଭୁ । ପହଞ୍ଚି ପାରିବି ତ ? (ହଠାତ୍ କାନ ଡେରି ଶୁଣିବା)

ନେପଥ୍ୟେ— ବିକ୍ରମ - ଦୋସ୍ତ, ଆସ ଗୋଟେ ବଡ଼ଗଛ ମୂଳ ଦେଖି ବସିବା । ସୁଲତାନ ଚାଲ - ଏ ଜଙ୍ଗଲଟି ବଡ଼ ସୁନ୍ଦର ହେଇଛି -, ଜହ୍ନରାତିରେ ନୁହେଁ । ଆଚ୍ଛା ଦୋସ୍ତ ତୁମେ ଗୀତ ଗାଇ ଜାଣ ? ମୋର ଗୀତ ଗାଇବାକୁ ଇଚ୍ଛା ହଉଛି !

କନକ— (ସ୍ୱଗତ) କିଏ ଏମାନେ ଇଆଡେ ଆସୁଛନ୍ତି । ଖଣ୍ଡ ତସ୍କର ନୁହଁନ୍ତି ତ ? ଯାଏ ଗଛ ଉପରେ ବସେଁ (ଗଛ ଉପରେ ଉଠି ବସିଲା)

(ବିକ୍ରମ ଦେବ ଓ ସୁଲତାନଙ୍କ ପ୍ରବେଶ)

ବିକ୍ରମ— ନାହିଁ ଦୋସ୍ତ, ମୋତେ ଗୀତ ଆସେ ନାହିଁ । ମୁଁ ତ କାମର ମଣିଷ । ତୁମେ ପ୍ରେମିକ ଲୋକ - ସୁଲତାନ । ଗୀତ ଗାଇବା ତୁମ ପାଖରେ ଶୋଭାପାଏ ।

ସୁଲତାନ— ବିକ୍ରମ ଦୋସ୍ତ । ମୋର ଏ ଜାନ୍ ତ ତୁମ ହାତରେ ଭାଇ ?

ବିକ୍ରମ— ଆସ ଭାଇ । ଏଇ ସିଅ ଉପରେ ବସିବା (ଦୁହେଁ କନକ ବସିଥିବା ଗଛତଳେ ବସିବା) ମୁଁ ସେଇକଥା ପାଇଁ ତ ତୁମକୁ ଏ ନିର୍ଜନ ସ୍ଥାନକୁ ନେଇଆସିଛି । ହଁ, ଭାଇ ।

ସୁଲତାନ— ଦୋସ୍ତ, ତୁମ ହାତରେ ତ ସବୁ । ତୁମେ ଯଦି ମତେ ବଞ୍ଚାଇବ ତ ବଞ୍ଚିବି । ପଦ୍ମାବତୀ ବିନା ଏ ପ୍ରାଣ ରହିବ ନାହିଁ ଭାଇ ।

ବିକ୍ରମ— ପଦ୍ମାବତୀ ତ ତୁମର, ମୁଁ ତ କହିଛି । ସବୁ ବନ୍ଦୋବସ୍ତ ଠିକ୍ । ଆସ ଏଇଠି ବସ । ସେଠି ତୁମର ଅସୁବିଧା ହଉଛି ।

କନକ— (ସ୍ୱଗତ) ଏଁ, ଏମାନେ ମୋର ସହୀ ନାମ ଧରି କି କଥାବାର୍ତ୍ତା ହଉଛନ୍ତି ? ଆଉ ସେ ଲୋକଟିତ ସେହି ହରିଣମାରୀ ଖଣ୍ଡପରି ଦେଖାଯାଉଛି ।

ସୁଲତାନ— ହଁ, ବିକ୍ରମ ସାମନ୍ତ । ତୁମେ ଏ ପ୍ରାଣରେ ଆଶାର ସଞ୍ଚାର କରିଛ । ତୁମର ଉପକାର ଏ ଜୀବନରେ ଭୁଲିପାରିବି ନାହିଁ । କାଞ୍ଚିରାଜା ଆଉ କିଛି ଖବର ଦେଇଛି ?

କନକ— ବିକ୍ରମ ସାମନ୍ତ ! କାଞ୍ଚିରାଜା ? ତାହାହେଲେ ଯେ ମୋ ସହୀକଥା ଠିକ୍ ।

ବିକ୍ରମ— ହଁ, ସୁଲତାନ ! ମୁଁ ପୁଣି ସବୁ କଥା ପକ୍କା କରିନବା ପାଇଁ ଆଉ ଥରେ ଲୋକ ପଠାଇଛି । ଚିଠି ଲେଖି ଦେଇଛି - କିପରି କେଉଁଠାରେ ମୋ ହାତରେ ପଦ୍ମାବତୀଙ୍କୁ ଦେବାକୁ ହବ ଓ କିପରି ଆମେ ଠିକ୍ ସମୟରେ ପଦ୍ମାବତୀଙ୍କୁ ବନ୍ଦୀ କରିନବା !

କନକ— ଓଃ, ବିଶ୍ୱାସଘାତକ !

ସୁଲତାନ— ଭାଇ ଆସ୍ତେ କଥା କହ ! ଛାଉଣି ଲୋକେ ଏ ପାଖେ ଯିବା ଆସିବା କରୁଥିବେ । ହଁ ଭାଇ, ତମ ହାତରେ ପଦ୍ମାବତୀକୁ ଦେବେ ନା ?

ବିକ୍ରମ— ହଁ ଦୋସ୍ତ, ତମ ନାମ ନେଲେ ପଦ୍ମାବତୀଙ୍କୁ ପାଇବା ଆଶା କମ୍ । ବୁଝିପାରୁନା ଦୋସ୍ତ । ଜାତି ଅଦୁଆଟା ?

ସୁଲତାନ— ହଁ, ଠିକ୍ ଠିକ୍ । ନା ନା ଭାଇ, ତୁମକୁ ମୋର ଅବିଶ୍ୱାସ ହବ ! ଛି ଛି !

ବିକ୍ରମ— ମୋତେ ଏ ସବୁ କିଛି ଭଲ ଲାଗେ ନାହିଁ । ଜାଣତ ଦୋସ୍ତ । ମୁଁ ଚାହେଁ ଖାଲି କାମ ।

ସୁଲତାନ— ଠିକ୍ ବାତ୍ । ଓଡ଼ିଆ ଜାତିଟାର କିଛି ବନ୍ଦ୍ ଖେୟାଲ୍ ନାହିଁ । ଆଚ୍ଛା - ମୋର ଲୋକ ତମ ପତ୍ର ନେଇଗଲେ ସନ୍ଦେହ ହେବ ନାହିଁ ?

ବିକ୍ରମ— ନା, ଭାଇ । ମୋର ଗୋଟିଏ ଭାରି ବିଶ୍ୱସ୍ତ ଲୋକ ଓଡ଼ିଆ ଡଗରା ଅଛି । ସେ ଗୋଟିଏ ନାଏକ । ମୁଁ ତାକୁ ହିଁ ପଠାଇବି ।

ସୁଲତାନ— କିଏ ବିଶୁ ପାଇକରା ! ଯେ ସେଦିନ କଟକ ଯାଇ ସେଠା ଖବରସବୁ ନେଇ ଆସିଥିଲାଟି ?

ବିକ୍ରମ— ହଁ ଭାଇ, ସେଇ । ଚାଲ ଦୋସ୍ତ, ଏଠି ଆଉ ବେଶି କଥାବାର୍ତ୍ତା କରିବା ଉଚିତ ନୁହଁ । ଚାଲ ଶିବିରରେ ସେ ପତ୍ର ଦେଖିବ । ତୁମେ ଦେଖିସାରିଲେ ବିଶୁ ପାଇକରାକୁ ଯାଉଁ ଦେବି । ସେ ରାତାରାତି ବାହାରିଯିବ । (ଉଠିବା, ଯିବାବେଳେ ଉପରକୁ ଚାହିଁ) ପଦ୍ମାବତୀ, ପଦ୍ମାବତୀ ତୁମପାଇଁ ମୁଁ ସବୁ କରିପାରେ । ଆହେ କେବେ ମୋର ପ୍ରତିହିଂସା ବୃତ୍ତି ଚରିତାର୍ଥ ହେବ । ଆଉ କେବେ ତୁମକୁ ପାଇବି ?

(ଉଭୟେ ପ୍ରସ୍ଥାନ)

କନକ— ଇୟେତ ସେହି ତସ୍କରଟା । ଠିକ୍ ତ ! ସେହି ବିକ୍ରମ ସାମନ୍ତ ହାୟ ସହୀ । ହାୟ ପଦ୍ମାବତୀ । କ'ଣ ହବ ! ହେ ମହାପ୍ରଭୁ ଜଗନ୍ନାଥ ! ପଥ

ଦେଖାଇଦିଅ । ପ୍ରଭୁ କିପରି ଓଡ଼ିଆ ଶିବିରକୁ ଯିବି । କିପରି ଆଉ ବିଶୁ ପାଇକରା ପାଖରୁ ସେ ପତ୍ର ପାଇବି । ନା, ଏକାବେଳେକେ ଯିବି ଚାଲି କଟକ । ଯିବି ବା କିପରି ଏ ଘୋର ରାତିରେ । ଏ ଗଭୀର ବନ ମଧ୍ୟରେ ? ସେମାନେ ଗଲେଣି - ଏଥର ଓହ୍ଲାଇ ଦେଖେ ( ଡେଇଁ ପଡ଼ିବା, ତଳେ ବୈଷ୍ଣବୀ ଠିକ୍ ସେତିକିବେଳକୁ ଯାଉଥିବା)

ବୈଷ୍ଣବୀ— ଓଃ - ତୁମେ ବି ଶୁଣୁଥିଲ କି ?

କନକ— ତୁମେ ଶୁଣୁଥିଲ ତାହାହେଲେ ?

ବୈଷ୍ଣବୀ— କ'ଣ କରିବ ଭାବିଛ ?

କନକ— କ'ଣ କରିବି ? ଘୋଡ଼ାଥିଲେ ମୁଁ ଏଇନାଗେ ଯାଆନ୍ତି । ଖାଲି ବାଟ ମତେ ଜଣା ନାହିଁ ।

ବୈଷ୍ଣବୀ— ତାହାହେଲେ ଭଲ କଟକ ଯିବ ତୁମେ । ହଉ ମୁଁ ଯାଏଁ ଦେଖେଁ - ଯଦି ମୁଁ ଦୁଇଟା ଘୋଡ଼ା ପାଏଁ । ତୁମେ ଏଇଠି ଥାଅ ।

କନକ— (ବୈଷ୍ଣବୀ ହାତଧରି) ମତେ ଭାରି ଡର ଲାଗୁଛି । କ'ଣ ହବ ।

ବୈଷ୍ଣବୀ— (ହସି) ତୁମେ ଡରିଲେ ଚଳିବ ? ତୁମପରି ବୀର ପୁରୁଷ - ହେଁ - (ପ୍ରସ୍ଥାନ)

କନକ— କ'ଣ ଏବେ କରିବି - କୁଆଡ଼େ ଯିବି ?

ବୈଷ୍ଣବୀର ଗୀତ

ବିଶ୍ୱ ଭାଗ୍ୟଲିପି ତୋ ମୋ ହାତେ,
ଅଧାଅଧି ଭାଗବଣ୍ଟା ତୋ ସାଥେ ମୋ ସାଥେ
ମୋ ଅଧକ ମୁଁ ସମ୍ଭାଳେ - ତୋ ଭାଗ ତୋ ହାତେ
ନିଆଁ ଢାଳିଦିଏ ମୁହିଁ - କଳାମେଘ ଆସେ ଉଇଁ
ଶାନ୍ତିବାରି ଦେଉ ଢାଳି - ତୁ ଅନ୍ଧାରୀ ପ୍ରଭାତେ ।

ଫୁଲେ ଫୁଲେ ଫୁଟି ବୁଲେ ମୁଁ ଅଳି ସାଥେ ଚାନ୍ଦ ବୁଲେ
ଫୁଲକନ୍ୟା ଇଂଦୀବର ମିଳାଉ ଗୁପତେ
(ମୁଁ) ବାଆ ନେଇ ଆସେ ଧାଇଁ, ବିଚ୍ଛେଦ ନାଗରା ବାଇ
ମଧୁଅଠା ଦେଇ ଓଠେ ଢୋଡ଼ାଉ ଶକତେ ।

(ଗୀତ ନ ସରୁଣୁ ଦୁଇଜଣ ମୁସଲମାନ ସୈନିକଙ୍କ ପ୍ରବେଶ । ହାତ, ମୁହଁ ହଲାଇ ଚାହିଁ ରହିଥିବା ଓ ପରେ -)

ପ୍ରଥମ ସୈନିକ — ଆରେ ଭାଇୟା - ଏ ଛୋକରି ତ ଆଚ୍ଛା ଗାନ ଗାଉଛି !

ଦ୍ୱିତୀୟ— କିଏ ତୁମେ ଅଛ ସବାର ?

କନକ— ଆମେ ବାଟୋଇ ଅଛୁଁ (ଉଠି ସ୍ୱଗତ) ଏମାନେଯେ ମୁସଲମାନ ସୈନିକ !

ପ୍ରଥମ— କେଉଁ ମୁଲକର ଲୋକ ଅଛ ଆପଣ ?

କନକ— ଆମେ ଓଡ଼ିଆ, ତୁମେମାନେ କିଏ ?

ଦ୍ୱିତୀୟ— ହାମେ ମୁସଲମାନ - ବାହାମନୀ ସୁଲତାନ ଅହମ୍ମଦ ସାହାଙ୍କ ଫୌଜିର ସିପାହୀ ।

ପ୍ରଥମ— (ନିଶ ମୋଡ଼ି) ହାମେ ହାବିଲଦାର, ସମଝିଲ ! ତମେ ଓଡ଼ିଆ ଆପଣ ? ସଲାମ୍ !

କନକ— (ନିଶ ସ୍ଥାନରେ ହାତ ଦେଇ) ସଲାମ ! ଆମେ ଏକହଜାରୀ ଖଣ୍ଡାୟତ । ନଢ଼େଇକି ଯାଉଚୁ ।

ଦ୍ୱିତୀୟ— ଆରେ ଭାଇୟା - ଇୟେ ହରଗିଜ୍ କାଇଁଝି ଲଢ଼େଇକି ଯାଉଛ ।

ପ୍ରଥମ— ଚୁପ୍ ଦୋସ୍ତ ଚୁପ୍ - ପରାୟ ଆଦମି ସାମନାରେ ହାମକୋ ବରାବର ସମଝନା । ଭେଇଆ ମତ୍ କହନା, ହାଁ ଖଣ୍ଡାୟତ ସାହେବ ଆପଣ କ'ଣ କାହିଁ ଲଢ଼ାଇକି ଯାଉଛ ?

କନକ— ଠିକ୍ ସମଝିଛ ହାବିଲଦାର । ବୀରାଧିବୀରବର ଗଜପତି ମହାରାଜଙ୍କର ସେନା ସହିତ ଯୋଗ ଦେବାକୁ ଯାଉଛି । ସୈନ୍ୟ ସାମନ୍ତ ସମସ୍ତ ଆଗ ମେ ଗିୟା । ଆମେ ଏକେଲା ଏଇ ଗଛକା ଉପର ବସା କରେଙ୍ଗା ।

ପ୍ରଥମ— ହସି - ହଦକିୟା - ହଦକିୟା - ରାତି ଏହି ଜଙ୍ଗଲମେ ଏହି ଗଛକା ଉପର ଗୁଜାରିବେ । ସାହେବ ଚାଲ, ଆମର ଡେରାକୁ । ମୁସଲମାନ ସୈନ୍ୟ ନଦୀକା ପାଶ୍ ଡେରା କରିଛି । ହଜରତ ସୁଲତାନ ବି ଅଛନ୍ତି ।

କନକ— ସୁଲତାନ ତ ଶତ୍ରୁ । ବିଧର୍ମୀ । ଆମେ ସେଠାକୁ କିପରି ଯିବା ?

ଦ୍ୱିତୀୟ— ଆରେ ହଜୁର୍ । ଆପ୍‌କୁ ସବ୍ ଖବର ମାଲୁମ୍ ନାହିଁ ଦେଖୁଛି । ଓଡ଼ିଆ ମହାରାଜ କା ସାଥ ହାମେ ବି କାଞ୍ଚି ଲଢ଼େଇକୋ ଯାଉଛୁଁ ।

କନକ— ସତେ ? ଇୟେତ ବଡ଼ ବିଚିତ୍ର କଥା ! ଅସମ୍ଭବ କ'ଣ ? ଯାହା ଶୁଣିଥିଲେ ତାହାହେଲେ ସେଇଆ, ତାହା ସତ୍ୟ । ତୁମକୁ ଧନ୍ୟବାଦ ମୁସଲମାନ, କିନ୍ତୁ ମୁଁ ତୁମ ଡେରାରେ ଯାଇ କ'ଣ କରିବି ? ମୁଁ ଯେ ହିନ୍ଦୁ ଓଡ଼ିଆ ।

ପ୍ରଥମ— କୁଛ୍ ପରବାୟ ନାହିଁ ଖଣ୍ଡାୟତ ସାହେବ । ହମେ ଓଡ଼ିୟାର ଦୁସମନ୍ ନହିଁ । ବାଦ୍ ଆପକା ଓଡ଼ିୟା ଲୋକ ବି ଡେରାରେ ଅଛନ୍ତି । ଏକ୍ ବିକ୍ରମ ସାମନ୍ତ କୋଇ ହମାରା ହଜରତ ସୁଲତାନଙ୍କ ସାଥ ଆସିଛନ୍ତି । ତାଙ୍କରି ଡେରାରେ ରହିବ । କ୍ୟୋଉଁ ?

କନକ— ଆଚ୍ଛା ମିଆଁ ସାହେବ, ବିକ୍ରମ ସାମନ୍ତ କ୍ୟା ସୁଲତାନ ସାଙ୍ଗରେ ଆସିଛନ୍ତି ?

ପ୍ରଥମ— ଆରେ ମିଆଁ - ଆପକୋ କୁଛ ମାଲୁମ୍ ନହିଁ । ହଜରତ ସୁଲତାନ ପୁରୀ ଯାଇଥିଲେ, ୱାପସ ଆସିଲା । ତାପରେ ତୁମର ମହାରାଜା ୟାଙ୍କୁ ସାଥ ପଠାଇଲ ବହୁତ ଲୋକ ଲସ୍କର ଦେଇକରି । ସମଝିଲ, ଓଡ଼ିଆ ଫୌଜ ବି ଦୋ ଚାର ରୋଜରେ ପହଞ୍ଚିବ ମାଲୁମ୍ ? ବିକ୍ରମ ସାହେବ କୋନ ଦିନ୍ ସେ ଇଁହା ଡେରା କରିଛନ୍ତି । ଆପ୍ ପରାବା ମତ କର ଚାଲ୍ ହାମରା ସାଥ୍ ।

କନକ— (ସ୍ୱଗତ) ମୋର ଯିବାରେ ବାଧା କ'ଣ ? ତେବେ ଯଦି ମୋ ଛଦ୍ମବେଶ ଧରାପଡିଯାଏ - ତାହାହେଲେ ବିପଦ । କିନ୍ତୁ ପରିଚିତ କାହାରି ସହିତ ସାକ୍ଷାତ ହବାର ସମ୍ଭାବନାତ ଦେଖୁନାହିଁ । ଶିବିରକୁ ଗଲେ କିଛି ଉପାୟ ହେଇପାରେ ଅନ୍ତତଃ ଘୋଡ଼ା ତ ମିଳିଯାଇ ପାରେ । ଆଚ୍ଛା ମୁସଲମାନ, ଆପଣଙ୍କର ସୌଜନ୍ୟ ପାଇଁ ମୋର ଶତ ଧନ୍ୟବାଦ । ତାହାହେଲେ ମୋତେ ନେଇ ଓଡ଼ିଆ ଡେରାରେ ପହଞ୍ଚାଇ ଦେବେ ?

ପ୍ରଥମ— ହାଁ ହାଁ - ଜରୁର୍, ଜରୁର । ଲେକିନ୍ ହମାରା ଡେରାମେ ଲହମାଁଏ ବସି ଏକଠୋ ଗାନା ଗାଇବାକୁ ହେବ ସାହେବ । ଆପକା ଆବାଜ୍ ବଡ଼ି ମିଠି ।

କନକ— ଆଚ୍ଛା ମିଆଁ ସାହେବ, ମୋର କିଛି ଆପତ୍ତି ନାହିଁ ।

ଦ୍ୱିତୀୟ — ଏବେ ହଜୁର ତସରିଫ୍ ଲେଇଚାଲ । (ଆଗେ ଆଗେ ଯିବା) ।

ପ୍ରଥମ— ଇହମାଁ ଏ ହେର ଇଆର୍ । ଆଚ୍ଛା ଆପ୍‌କା ଘୋଡ଼ା କାହିଁ ?

କନକ— ହଁ ଠିକ୍ ଠିକ୍ ହାବିଲଦାର । ମୋ ଘୋଡ଼ାଟି ବଡ଼ ଥକି ଯାଇଛି । ସେହି ଝରଣା ପାଖେ ତାକୁ ଚରିବାକୁ ଛାଡ଼ି ଆସିଥିଲି । ଜରା ମେହେରବାନୀ କର୍ - ତାକୁ ମଧ ନେଇଯିବାକୁ ହେବ ।

ପ୍ରଥମ— ଆମର ଯିବାର କାମ କ'ଣ ? ଏ ଦୋସ୍ତ, ଯାଆତ ଘୋଡ଼ାଟା - ନେଇ ଡେରାମେ ଚାଲ । ହାଁମେ ଏବାଟେ ଆସୁଛୁଁ ।

ଦ୍ୱିତୀୟ— ଜୋ ହୁକୁମ୍ (ସ୍ୱଗତ) କାହାକୁ କହିବି ଏବେ । ସବୁ ତଗ୍‌ଦିର । ବଡ଼ା ପାହିଆର ଆଦ୍‌ମି - ତାଙ୍କ ସାଥେ ଦୋସ୍ତଦାରୀ - ଝକ୍‌ମାରୀ - ଝକ୍‌ମାରୀ (ପ୍ରସ୍ଥାନ)

କନକ— ତେବେ ଚାଲ୍ ହାବିଲଦାର !

ପ୍ରଥମ— ବେସକ୍ - ଲେକିନ୍ ରାସ୍ତାମେ ଯାଉ ଯାଉ ଏକ୍‌ଠୋ ଗାନା ଫରମାଇଯେ ।

କନକ— ଆଉ ଗୋଟିଏ ଗୀତ ଗାଇବି, ଏଇଆ ତ ? କୌଣସି ଆପତ୍ତି ନାହିଁ ମିଆଁ ସାହେବ ।

ପ୍ରଥମ— ବହୁତ ମେହେରବାନୀ, ଏକ୍‌ଠୋ ଗଜଲ ଖଣ୍ଡାୟତ ସାହେବ ।

କନକ— ଗଜଲ ? ଗଜଲ କ'ଣ ମୁଁ ଜାଣେନା ? ତେବେ ତୁମ ପଠାଣୀ ରାଗରେ ଓଡ଼ିଆ ଗୀତ ଗାଇପାରେ ।

ପ୍ରଥମ— ବହୁତ୍ ଖୁବ୍ । ଓହି ସହି !

(ପରେ ଦ୍ୱିତୀୟ ସୈନିକର କନକନ ହୋଇ ପ୍ରବେଶ)

ଦ୍ୱିତୀୟ— ଭଯେ ଉଇଁଚେ ଏତେ ସଉକି । ହାମେ ଯିବୁ ଘୋଡ଼ା ଆଡ୍ରେଡ଼, ଆଉ ଇଏ ମଉଜମଜ୍‌ଲିସ୍‌ରେ ରହିବେ ! ବିସ୍ମିଲ୍ଲା ଛପି ଛପି କର୍ ସବ୍‌ସୁନ୍‌ଲିଆ । କ୍ୟା ମିଠି ଆବାଜ୍ ଏ ଖଣ୍ଡାୟତର ଆବାଜ୍ ଶୁନ୍‌କର ହାମରା ବିବି କଥା ୟାଦ୍ ହଉଛି ।

(ନୃତ୍ୟ ସହ ଗୀତ)

(ବିଶ୍ୱ ଭାଗ୍ୟଲିପି ତୋ ମୋ ହାତେ)

(କନକ ପ୍ରଭୃତି ଯାଇଥିବା ବିପରୀତ ଦିଗରୁ ବୈଷ୍ଣବୀର ପ୍ରବେଶ)

ବୈଷ୍ଣବୀ— କୁଆଡ଼େ ଗଲା ସେ ଟୋକୀ । ଭାରି ତେଜ ଅଛି । ଭାରି ଦମ୍ଭ ଅଛି ତା'ର । ପ୍ରେମ ଗର୍ବରେ ଗରବିଣୀ । ଭାବିଛି ବାଞ୍ଛିତ ସହିତରେ ଦୈହିକ ମିଳନର କୌଣସି ଆବଶ୍ୟକତା ନାହିଁ । (ହସି) ମାଇକିନା ଜାତିତ ! ତା'ର ପୁଣି ଏତେ ଦମ୍ଭ ! ଏତେ ନିର୍ଭର ସଫଳତା । ହେଉ ହେଉ ଦେଖେ (ଏଇତ ଆସିଲାଣି) ମଜା ଦେଖେ ଟିକେ । ଅନ୍ତରାଳକୁ ଯିବା)

(ତରବର ହୋଇ କନକର ପ୍ରବେଶ)

କନକ— ଠିକ୍ ଏଇଠିତ । ଏଇଠିତ ସେ ମାତା ମତେ କହିଥିଲା ରହିବାକୁ । ମୁଁ କାହିଁକି ଗଲି ହାୟ ! ସେ ଯଦି ଘୋଡ଼ା ନେଇଆସି ମତେ ଖୋଜି ନପାଇ ଫେରିଯାଇଥିବ ! ହାୟ ମୋର ସବୁ ଆଶା ବ୍ୟର୍ଥ ହେଲା । ଏତେ କଷ୍ଟ କରି ବିକ୍ରମ ସାମନ୍ତର ଏ ପତ୍ର ପାଇକରା ପାଖରୁ

ଚୋରାଇ ଆଣିଛି । କିନ୍ତୁ ଫଳ କ'ଣ ? ପଳାଇ ଯାଇ ଓଡ଼ିଆ ସେନାଙ୍କ ସହିତ ନ ମିଶିପାରିଲେ ଆଉ ଲାଭ କ'ଣ ? ଓଃ - ଶତ୍ରୁ - ଶତ୍ରୁ, ସମସ୍ତେ ଶତ୍ରୁ । କେଡ଼େ ପିଶାଚ୍ ଏ ବିକ୍ରମଟା । ଦେଶଦ୍ରୋହୀ - ଭ୍ରାତୃଦ୍ରୋହୀ, ମିତ୍ରଦ୍ରୋହୀ । କିନ୍ତୁ ମୁଁ ଏବେ କରୁଛି କ'ଣ ? ମୁଁ ଯଦି ଧରାପଡ଼େ ମୋ ଦଶା କ'ଣ ହେବ ? ଉଃ - ଧରାପଡ଼ିଲେ ସବୁଧରା ପଡ଼ିଯିବ । ବିକ୍ରମ ! ସେ ରାକ୍ଷସଟା ପୁଣି ମତେ ଚିହ୍ନିବ । କ'ଣ କରିବି ? କାହିଁକି ପ୍ରାଣାଧିକ ରଙ୍ଗରାଓଙ୍କ ସାଙ୍ଗ ଛାଡ଼ିଲି । କାହିଁକି ତାଙ୍କୁ ତାଙ୍କ ପଥରେ ଏକା ଯିବାକୁ ଛାଡ଼ିଦେଇ ନିଜେ ଏ ହରିକାଠରେ ପଡ଼ିଲି । ଜୀବନସର୍ବସ୍ୱ - ପ୍ରାଣଧନ - ମୋତେ କ୍ଷମାକର । ମୁଁ ତୁମ୍ଭକୁ ବ୍ୟଥା ଦେଇଛି । ତୁମ୍ଭର ଦୁଃଖବେଳରେ ଆହୁରି ଅଧିକ ଆଘାତ ଦେଇଛି । ହାୟ ଥରେ ତାଙ୍କ ହାତ ଧରି ଅଳି କରିଥାନ୍ତି । ପୋଡ଼ା ଆଖିର ଲୋତକ ଧାରାରେ ତାଙ୍କ ଚରଣ ଧୌତ କରିଦିଅନ୍ତି । ସ୍ୱାମୀ ମୋର ! ଭର୍ତ୍ତା ମୋର ! ରକ୍ଷକ ମୋର ! ଏ ଅବଳାକୁ ଏ ଦୁଃସମୟରେ ସହାୟ ହୁଅ ନାଥ !

(ବୈଷ୍ଣବୀର ପ୍ରବେଶ ଅଲକ୍ଷ୍ୟରେ) ନା, ନା ମତେ ଦମ୍ଭ ଧରିବାକୁ ହେବ । ତାଙ୍କ ପାଖକୁ ମତେ ଫେରିବାକୁ ହବ । ନୋହିଲେ ତାଙ୍କ ପ୍ରାଣରେ ବ୍ୟଥା ଲାଗିବ ଯେ ! ନାଃ - ଦେଖେ - ଯଦି କିଛି ଉପାୟ କରିପାରେ । (ବୁଲି ଚାହିଁବା)

ବୈଷ୍ଣବୀ— ତମେ ତ ଭଲ ଦଗାଦାରୁଟିଏ - ଅଃ - ମୋତେ କଣ୍ଟଦେଇ ଏପରି ନିରାଶ କରନା ନାଗରବର ! (ଛଟା ଦେଖାଇବା)

କନକ— ଓଃ ମୋ ପିଣ୍ଡରେ ପ୍ରାଣ ପଶିଲା । ହଇଗୋ ମାତ ତମେ କ'ଣ ଏତେବେଳେଯାଏଁ ମତେ ଚିହ୍ନିପାରିନା ? ମୁଁ ପରା ମାଇକିନାଟାଏ - ତମରି ପରି ଗୋ - ଏ ବେଶ ଖାଲି ଛଳନା ଯେ, - ମତେ କାଞ୍ଚି ନଗରରେ ଦେଖିଥିଲ ମନେ ନାହିଁ ?

ବୈଷ୍ଣବୀ— ହଁ ଦୁଇଟି ଘୋଡ଼ା ଠିକ୍ କରିଛି - ଯିବ ଯଦି ଚାଲ ହେଇ ଦେଖୁନା (ଏକ ପାର୍ଶ୍ୱକୁ ଦେଖାଇ) ଧଳା କଳା ଘୋଡ଼ା ଦୁଇଟି ଚରୁଛନ୍ତି ।

କନକ— ଚାଲ ଚାଲ ତେବେ ! ଆଉ ବିଳମ୍ବ କରନା ଚାଲ ! ତମେ ବାଟ ଦେଖିଛଟି ମାତା ?

ବୈଷ୍ଣବୀ— ବାଟ ଅବାଟରେ ମୋର କ'ଣ ଥାଏ ଗୋ ମଣି ! ଯିବା ତ ଯିବା ଚାଲ - ଭୟ କ'ଣ ?

(ବୈଷ୍ଣବୀର ଗୀତ)

ହାତଧରି ବାଟ କଢ଼ାଇ ନିଅହେ -
ପଥଭୁଲା ପାନ୍ଥ ଡାକୁଛି
ଆହା ବୋଲିବାକୁ ସାହା କେହି ନାହିଁ
ତୁମ ବାନା ତଳେ ଲୋଟୁଛି
ଏକାକୀ ଯାଏ ମୁଁ ଆଖି ବୁଜି ଚାଲି
ପଦେ ପଦେ ମତେ ଜଗିଥାଅ ଖାଲି
ତୁମରି ପତାକା ବୋହିବା ଶକତି
କଣିକାଏ ଅନ୍ଧ ମାଗୁଛି ।

(ଉଭୟ ପ୍ରସ୍ଥାନ)

(ପଟପରିବର୍ତ୍ତନ)

## ଦ୍ୱିତୀୟ ଦୃଶ୍ୟ

ସ୍ଥାନ— ନଦୀ ତୀରବର୍ତ୍ତୀ - ପଥପାର୍ଶ୍ୱସ୍ଥ ଛାଉଣି । କାଳ - ପ୍ରଭାତ, ଦୃଶ୍ୟ - ପୁରୁଷୋତ୍ତମ ଅତି ଆଗ୍ରହରେ ରଙ୍ଗରାଓ ସହିତ କ'ଣ ପରାମର୍ଶ କରୁଥିଲେ । ରଙ୍ଗରାଓ ଦୃଢ଼ ଦୃଷ୍ଟିରେ ପୁରୁଷୋତ୍ତମଙ୍କୁ ଚାହିଁଥିଲେ । ଉଭୟଙ୍କର ରଣସାଜ ।

ପୁରୁ— ସଖା, ଏଥିରୁ କ'ଣ ବୁଝାଯାଉଛି ?

ରଙ୍ଗରାଓ— କ'ଣ ବୁଝାଯାଉଛି ? ଏଥିରୁ ବୁଝାଯାଉଛି ଯେ ସୁଲତାନ ଘୋର ବିଶ୍ୱାସଘାତକତା କରିଛି । ବିକ୍ରମ ସାମନ୍ତଙ୍କର ଏ ଷଡ଼ଯନ୍ତ୍ର ସଖା । ସେଇପରା ସେଦିନ ପଦ୍ମାବତୀଙ୍କରହରଣ ପାଇଁ ଚେଷ୍ଟା କରୁଥିଲେ ?

ପୁରୁ— ହଁ - ତାହାରି ଏ କୁଚକ୍ର ! ଠିକ୍ ! କିନ୍ତୁ କାଞ୍ଚିରାଜା କ'ଣ ତା'ର ଏ ଘୃଣିତ ପ୍ରସ୍ତାବରେ ସମ୍ମତି ଦେଇଛନ୍ତି ବୋଲି ତମର ବିଶ୍ୱାସ ହୁଏ ?

ରଙ୍ଗରାଓ— ବିଶ୍ୱାସ ନ ହୋଇ ବାଟ ଅଛି ! ପତ୍ରରେ ସ୍ପଷ୍ଟ ଉଲ୍ଲେଖ ଅଛି ଯେ, ସୁଲତାନ କାହିଁକି ସେହି ଏକମାତ୍ର ସର୍ତ୍ତରେ ଠିକ୍ ଯୁଦ୍ଧବେଳେ ଆମ୍ଭ ପକ୍ଷ ଛାଡ଼ି ତାଙ୍କ ପକ୍ଷରେ ଯୋଗ ଦେବେ - ଯଦି ପଦ୍ମାବତୀଙ୍କୁ ସେ ବିକ୍ରମଙ୍କ ହସ୍ତରେ ତତ୍‌ପୂର୍ବରୁ ସମର୍ପଣ କରନ୍ତି । ପତ୍ର ଶେଷରେ ଲେଖାଅଛି ଯେପରି ଯେଉଁଦିନ ପଠାଇବାକୁ ହେବ ।

ପୁରୁ— କିନ୍ତୁ ମୁଁ ବୁଝିପାରୁ ନାହିଁ । ଏଥିରେ ସୁଲତାନର କି ଲାଭ ! ଆଉ ପଦ୍ମାବତୀଙ୍କ ବିଷୟ ନେଇ ଏ ଘୃଣିତ ପ୍ରସଙ୍ଗରେ କଥାବାର୍ତ୍ତା ହବାକୁ ମଧ ମୋର ଘୃଣା ହେଉଛି ସଖା !

ରଙ୍ଗରାଓ— ବୁଝୁନାହଁ । ବିଶ୍ୱାସଘାତକ ଯେ - ସେ ସମସ୍ତଙ୍କ ଠାରେ ବିଶ୍ୱାସଘାତକ । ବିକ୍ରମ ସମ୍ଭବ ସୁଲତାନକୁ ବୁଝାଇଛି ତା' ନାମରେ ପଦ୍ମାବତୀ ଲାଭ ହେଲେ ସୁଲତାନ ହିଁ ଫଳଭୋଗ କରିବେ - କୂଟନୀତି !

ପୁରୁ— ଆଉ କହନା ସଖା - ଏ ଅସହ୍ୟ । ଭାବିବାକୁ ମଧ ମୋର ଉଦ୍‌ଗାର ଉଠୁଛି । କି କଦର୍ଯ୍ୟ ସେ ବିକ୍ରମଟାର ଅନ୍ତଃକରଣ ସଖା ! ଏ ଘୋର ପୈଶାଚିକତା ସଖା । ୟାର ଯେପରି କଠିନ ଶାସ୍ତି ହେବା ଦରକାର । (ଭାବି) କିନ୍ତୁ ଆଗେ କାଞ୍ଚି ବିଜୟ ଓ ପଦ୍ମାବତୀ ଉଦ୍ଧାର । ପରେ ସେ କଥା - ବର୍ତ୍ତମାନ ଏଣେବାଟେ ନ ଯାଇ ସିଧା କାଞ୍ଚି ଯିବା ହିଁ ଉଚିତ । ନା, କ'ଣ ସଖା !

ରଙ୍ଗରାଓ— କିନ୍ତୁ ଯଦି ସୁଲତାନ ସତର୍କ ହୋଇ ପଳାୟନ କରେ ?

ପୁରୁ— ଠିକ୍ ନା ! ଏହିଠାରୁ ଗୋଟିଏ ବାହିନୀ ମୁସଲମାନ ଶିବିର ଉଦ୍ଦେଶ୍ୟରେ ଯାତ୍ରା କରୁ । ତାଇ ଆମ୍ଭେମାନେ ଆଗେ କାଞ୍ଚିଯାତ୍ରା କରିବା ! ହଁ ଏହି ଠିକ୍ ହେବ ସେନାପତି...

(ସେନାପତିଙ୍କ ପ୍ରବେଶ ଓ ଅଭିବାଦନ କରିବା)

ମନ୍ତ୍ରଣାକକ୍ଷକୁ ସମସ୍ତ ବନ୍ଦିମାନଙ୍କୁ ଡକାଅ, ମୁଁ ଯାଉଛି । ସଖା, କାଞ୍ଚି ଆଉ କେତେ ବାଟ ? (ସେନାପତିଙ୍କ ପ୍ରସ୍ଥାନ)

ରଙ୍ଗରାଓ— ସଖା, ମୁଁ ମୂଳରୁ କହୁଛି । ଏ ବାଟଟା ଢେର ବୁଲାଣିଟା । ମିଛୁଟାରେ ସିନା ଏ ବାଟରେ ଆସିଲେ । ମୁଁ ଯେଉଁ ବନପଥ କଥା କହୁଥିଲି ସେ ବାଟରେ ଗଲେ ଏହିକ୍ଷଣି ବି ଆଠଦିନ ଆଗରୁ କାଞ୍ଚି ଆକ୍ରମଣ କରାଯାଇପାରେ ।

ପୁର— ମୁଁ ସେହି ବିଶ୍ୱାସଘାତକ ସୁଲତାନ ହାତ ଏଡାଇ ପାରିନାହିଁ । ସଖା - ସେଟା ମୋର ଦୁର୍ବଳତା । ବର୍ତ୍ତମାନ ତୁମରି ନିର୍ଦ୍ଦିଷ୍ଟ ପଥରେ ଆମ୍ଭେମାନେ ସିଧା କାଞ୍ଚିଯାତ୍ରା କରିବା । କାହାରିକୁ କିଛି ନଜଣାଇ ବୁଝିଲ ?

ରଙ୍ଗରାଓ— ଅବଶ୍ୟ, ଅବଶ୍ୟ ସଖା । ମୁଁ ସବୁବେଳେ କହିଆସିଛି ତୁମର ଏ ପୁଣ୍ୟ ଧର୍ମ କଳିକାଳରେ ଚଳିବ ନାହିଁ । ପୁଣି ଯୁଦ୍ଧରେ ତୁମେ ଚାହଁ ସତ୍ୟଯୁଗର ନୀତି । ସଖା, ଆଶାକରେ ଆଉ ପୁଣ୍ୟ ପାଖ ପଶିବ ନାହିଁ । ମୋର ନୀତି ହେଲା - ଶତ୍ରୁକୁ ଜୟ କରିବା, ଯେମିତି ପାର, ଯେତିକି ପାର, ଯେତେବେଳେ ପାର !

ପୁରୁ— ଠିକ୍ ସଖା, ତୁମକଥାକୁ ଗୁରୁଜ୍ଞାନ କଲି । ଏ ମହତ୍ ଶିକ୍ଷା ତୁମରି । କିନ୍ତୁ ସେ ବୀର ଯୁବକ କୁଆଡ଼େ ଗଲେ - ଯେ ଆମ୍ଭଙ୍କୁ ଏ ଘଡ଼ିସନ୍ଧିବେଳେ ସାବଧାନ କରାଇଦେଲେ ।

ରଙ୍ଗରାଓ— ବ୍ୟାକରଣ ଦୋଷ ଘଟିଲା ମହାରାଜ ।

ପୁରୁ— ଅର୍ଥାତ୍ !

ରଙ୍ଗରାଓ— ଯିଏ ବିକ୍ରମର ପତ୍ର ଚୋରାଇ ଆଣି ଆମର ଏ ମହତ୍ ଉପକାର କଲେ ସିଏ ଖଣ୍ଡାୟତ - ପୁରୁଷ ଅଶ୍ୱାରୋହୀ ବେଶୀ । ମାତ୍ର ବୀର ନୁହନ୍ତି । ବୀ....ରା, ଯୁବକ ନୁହଁନ୍ତି - ଯୁ-ବ-କୀ ନା -ନା- ଯୁ-ବ-ତୀ !

ପୁରୁ— ମୁଁ କିଛି ବୁଝିପାରୁ ନାହିଁ ସଖା ! ସେ କ'ଣ ସତେ ନାରୀ ?

ରଙ୍ଗରାଓ— ହଁ ସଖା ସେ ନାରୀ ଏବଂ ନାରୀମାନଙ୍କ ମଧ୍ୟରେ ଜଣେ ବିଶିଷ୍ଟା ଚତୁରୀ - ତୁମର ପରିଚିତା ମଧ୍ୟ ।

ପୁରୁ— ଏଁ କ'ଣ କହୁଛ ? ସତେ ସେ କିଏ ସଖା !

ରଙ୍ଗରାଓ— ସେ କନକମାଳି - ପଦ୍ମାବତୀଙ୍କୁ ବନ୍ଦିନୀ ଦେଖି ତୁମ ପୁରୁଷତ୍ୱ ପାଖେ ଗୁହାରି କରିବାକୁ ଧାଇଁ ଆସିଥିଲା । ପଥରେ ମୁସଲମାନ ଶିବିରରେ ଏ ଘଟଣା !

ପୁରୁ— ସତେ ! ସେ କନକମାଳି । ଓଃ- ସେଇଥିପାଇଁ ଆଜି ସଖାଙ୍କ ମୁହଁରେ ହସ ଫାଟି ପଡୁଛି । ଓହୋ ବେଶ୍ - ବେଶ୍ ତାଙ୍କୁ ଏହି ମୁହୂର୍ତ୍ତରେ ପୁରସ୍କୃତା କରିବି କିନ୍ତୁ ପଦ୍ମାବତୀ ବନ୍ଦିନୀ ! ଏହାର ଅର୍ଥ ?

ରଙ୍ଗରାଓ— ନରସିଂହ ରାଓ ତାଙ୍କୁ ଅବାଧ୍ୟତା ଦଣ୍ଡରେ ବନ୍ଦୀ କରିଛି । କାରଣ ସେ ତେଜସ୍ୱିନୀ ରସିକାମଣି ତୁମ ଛଡ଼ା ଅନ୍ୟ କାହାରି ଗଳାରେ ବରମାଲ୍ୟ ଦେବାକୁ ଅନିଚ୍ଛୁକା । ଏଣେ ରସିକଶେଖର ତୁମେ ତାଙ୍କୁ କିପରି ସୁପାତ୍ରସ୍ଥା କରିବା ଉଦ୍ଦେଶ୍ୟରେ ଏ ଯୁଦ୍ଧାଭିଯାନ କରୁଅଛ - ଏହା ଶୁଣି କନକମାଳି ଶଯ୍ୟାଶାୟିନୀ !

ପୁରୁ— କିନ୍ତୁ କାହାନ୍ତି ସେ ? ମୋର ତାଙ୍କଠାରେ ଯେ ବିଶେଷ ପ୍ରୟୋଜନ, ସଖା !

ରଙ୍ଗରାଓ— କେ-ଏ-ଜାଣି-ମୋର ତାଙ୍କ ସାଙ୍ଗରେ କି ସମ୍ବନ୍ଧ ?

ପୁରୁ— ବାଃ- ଇଏତ ଭାରି କୌତୁକ ତୁମେ କରୁଛ ସଖା ? କନକମାଳି ନ ଥିବାବେଳେ ମାଳି - ମାଳି ବୋଲି ଝୁରିବ - ଆଉ ତାଙ୍କୁ ପାଖରେ ପାଇଲେ ଗୋଡ଼ ଲମ୍ୱାଇବ ।

ରଙ୍ଗରାଓ— ନାଇଁ ଭାଇ, ସେ ମତେ ବଡ଼ ହୀନସ୍ତା କରିଛି - ମୁଁ ଠିକିକରି ଶିଖିଲିଣି ପରା ! ଏ ସ୍ତ୍ରୀ ଜାତିଟା, ସଖା, ବଡ଼ ଅଦ୍ଭୁତ । ଦୁଃଖ ଏତିକି ଯେ, ତାଙ୍କ ଉପରେ ଆସ୍ଥା ସ୍ଥାପନ କରିବା ଯେତିକି ଭୁଲ୍ ତାଙ୍କୁ ଅନାସ୍ଥା କରିବା ମଧ୍ୟ ସେତିକି ଅସମ୍ଭବ । ତାଙ୍କୁ ଗୋଡ଼ାଇ ଥାଅ - ସେ ପଳାଉଥିବେ - ଧରାଦେବେ ନାହିଁ କେବେ - ତାଙ୍କ ପାଖ ନପଶ ସେ ତୁମକୁ ଗୋଡ଼ାଇ ଗୋଡ଼ାଇ ଧରିବେ ତେବେ ଯାଇଁ ଛାଡ଼ିବେ ।

ପୁରୁ-- ଓ, ସେଇ ଆଶାରେ ପରା ତୁମେ ଏଲନା ପାଖଛଡ଼ା ଦଉଛ, ନା ?

ରଙ୍ଗରାଓ— ଆହାଃ ! ବୁଝିଲ ନାହିଁ ସଖା ? ମତେ ଯାହା ସବୁବେଳେ ତୁମେ ଭୁଲ ବୁଝିଲ - ଏଇ ତ ମୋର ଦୁଃଖ । ମୁଁ କ'ଣ କହୁଥିଲି କି ଏ ନାରୀ ଜାତିଟାର ସ୍ୱଭାବ - ହେଁ ବଡ଼ ଜଟିଳ ବଡ଼ ରହସ୍ୟମୟ ।

ପୁରୁ— ତାହାହେଲେ କନକମାଳି ବର୍ତ୍ତମାନ ତୁମ ସହିତ ସନ୍ଧିର ପ୍ରୟାସୀ କୁହ ! ଇଏ ଅତି ଉତ୍କୃଷ୍ଟ ସୁଯୋଗ ସଖା । ମୁଁ ମଧ ତାଙ୍କୁ ପୁରସ୍କୃତ କରିବି - ଏହି ଦଣ୍ଡରେ । ଦଣ୍ଡପାଟ, ମାହେନ୍ଦ୍ରୀ ଓ କୋଣ୍ଡା ତମ ରାଜ୍ୟର ସୀମାରେ ତ ? ବେଶ୍ ଭାରି ଭଲ ହବ । କନକମାଳିଙ୍କର ଉପଯୁକ୍ତ ଯୌତୁକ ଅବଶ୍ୟ ହେବ ।

ରଙ୍ଗରାଓ— କିନ୍ତୁ ମୋ ରାଜ୍ୟ ସହିତ କନକଙ୍କର ଏହି ତୁମ ପ୍ରଦତ୍ତ ରାଜ୍ୟର କି ସମ୍ବନ୍ଧ ?

ପୁରୁ— କିଛି ନା - କେବଳ ଶୁଭବିବାହ ବନ୍ଧନରେ ପ୍ରଜାପତି ରାଜତ୍ୱର ଯାହା ସମ୍ବନ୍ଧ । ସଖା, ଆଉ ପାଗଳାମି କରନାହିଁ । ଆସ କନକମାଳିଙ୍କ ସହିତ ମିଳାମିଶା କରିନିଅ - ଯେତେ ଶୀଘ୍ର ପାର ।

(ଉତ୍କଳ ମନ୍ତ୍ରୀଙ୍କର ବ୍ୟସ୍ତ ହୋଇ ପ୍ରବେଶ)

ମନ୍ତ୍ରୀ— ମହାରାଜ ! ଜୟୋସ୍ତୁ ! ସ୍ୱୟଂ ପ୍ରଭୁ ଜଗନ୍ନାଥ, ବଳଭଦ୍ରଙ୍କ ସହିତ ଏ ଯୁଦ୍ଧକୁ ବିଜେ କରୁଛନ୍ତି । ଆଜି ଏ ଉତ୍କଳ ସେନାର ଆନନ୍ଦର ସୀମା ନାହିଁ । ଏଇ ଦେଖନ୍ତୁ - ଏଇବାଟେ ଧଳା କଳା ଘୋଡ଼ାରେ ଚଢ଼ି - ଜଗନ୍ନାଥ ବଳଭଦ୍ର ଦୁହେଁ କାଞ୍ଚିଆଡ଼କୁ ଗଲାବେଳେ ସେହି ଗ୍ରାମର ମାଣିକ ନାମ୍ନୀ ଗୋପାଳୁଣୀ ଠାରୁ ଦହିଦୁଧ ଖାଇ କଉଡ଼ି ପରିବର୍ତ୍ତରେ ଏହି ମହାପ୍ରଭୁଙ୍କର ଶ୍ରୀହସ୍ତ ମୁଦ୍ରିକା ତାଙ୍କୁ ଉପହାର ଦେଇଯାଇଛନ୍ତି ।

ପୁରୁ— ସତେ ଦାଦା ! (ମୁଦି ଦେଖି) ହଁ ଠିକ୍ ତ ! ଏ ରନ୍ମୁଦିତ ମୁଁ ମହାପ୍ରଭୁଙ୍କ ହସ୍ତରେ ଦେଖିଛି । କିନ୍ତୁ କାହାନ୍ତି ସେ ଭାଗ୍ୟବତୀ ଗୋପାଳୁଣୀ ?

ମନ୍ତ୍ରୀ— ଆମର ଶିବିରରେ ଅଛନ୍ତି ମହାରାଜ ! ତାଙ୍କୁ ଏ ଆଦେଶ ଥିଲା ଯେ ଛାମୁଙ୍କ ଠାରେ ଏ ମୁଦ୍ରିକା ଦେଖାଇଲେ ଦୁଧ ଦହିର ମୂଲ୍ୟ ବାବତରେ ଯଥେଷ୍ଟ ଧନ ମିଳିବ...

ପୁରୁ— ଅବଶ୍ୟ ମିଳିବ ଦାଦା - ଯାର ବନ୍ଦୋବସ୍ତ ଶୀଘ୍ର କର - ଏଠାରେ ମାଣିକ ନାମରେ ଗୋଟିଏ ପାଟଣା ବସାଇ ଦିଅ ।

ରଙ୍ଗରାଓ— ଧୀରେ - ଧୀରେ ସଖା । ସବୁ ଜାଣି ତୁମେ ବିଶ୍ୱାସ କଲ.... ହେଲା ! କିନ୍ତୁ ଏ ସମସ୍ତର ଶେଷ କେଉଁଠି ? ବୁଝିଲ - ମହାପ୍ରଭୁଙ୍କର ଆନୁକୂଲ୍ୟରେ ତୁମେ କାଞ୍ଚି ଜୟକରିବ ଓ ବନ୍ଦିନୀ ପଦ୍ମାବତୀଙ୍କୁ ପୁନଶ୍ଚ ଶୃଙ୍ଖଳିତ କରି ରାଜଧାନୀକୁ ଘେନି ଯିବ । କିନ୍ତୁ ତା' ପରେ - ତା' ପରେ ସଖା ! ତୁମରି ଆଜ୍ଞା ଅନୁସାରେ ତାଙ୍କରି ସେହି ଦଶା ହିଁ ତ ହେବ । ଏହି ପକ୍ୱକେଶ ବୃଦ୍ଧ ନିଜେ ନେଇ ତାଙ୍କୁ ଚଣ୍ଡାଳ ହସ୍ତରେ ନିକ୍ଷେପ କରିବେ । ହାଃ ଦଇବ - ଏ କି ତମ ମହାପ୍ରଭୁଙ୍କ ବୁଝାମଣା । ଏ କି ସେ ଏକପ୍ରାଣା ସୁନ୍ଦରୀ ପ୍ରତି ଯୋଗ୍ୟ ବ୍ୟବହାର !

ମନ୍ତ୍ରୀ— ବ୍ୟସ୍ତ ହୁଅନାହିଁ ନଳଗଣ୍ଡାଧୀଶ । ବ୍ୟସ୍ତ ହୁଅନ୍ତୁ ନାହିଁ ମହାରାଜ ! ଜଗନ୍ନାଥଙ୍କ ପୁଣ୍ୟ ମଙ୍ଗଳମୟ ରାଜଧାନୀରେ ଏତେବଡ଼ ଅବିଚାର କେବେହେଲେ ସମ୍ଭବ ହେଇପାରେ ? କଦାପି ନୁହଁ । ନିଶ୍ଚିନ୍ତ ହୋଇ ମହାପ୍ରଭୁଙ୍କ ତତ୍‌କାଳୀନ ନିର୍ଦ୍ଦେଶ ଅନୁସାରେ କାର୍ଯ୍ୟକରିବା ଛଡ଼ା ଅଳ୍ପ - ଦୃଷ୍ଟି ମାନବର ଆଉ ଅନ୍ୟ ଉପାୟ ନାହିଁ ।

ରଙ୍ଗରାଓ— ବର୍ତ୍ତମାନ ମହାପ୍ରଭୁଙ୍କର ନିର୍ଦ୍ଦେଶ କ'ଣ ? ଯୁଦ୍ଧ ଜୟ ଓ ପଦ୍ମାବତୀ ପ୍ରାପ୍ତି, - ନାଃ ।

ମନ୍ତ୍ରୀ— ହଁ, ତାହାହିଁ ମହାପ୍ରଭୁଙ୍କର ଉପଯୁକ୍ତ ଆଦେଶ ।

ପୁରୁ— ପୁଣି ତାହାହିଁ ପ୍ରତିଜ୍ଞା ପାଳନର ଉପଯୁକ୍ତ ପନ୍ଥା ।

ମନ୍ତ୍ରୀ— ମହାରାଜ, ଏଇ ଦେଖନ୍ତୁ ମହାଦେଈଙ୍କର ପତ୍ର - ସେଥିରେ କିପରି ସ୍ପଷ୍ଟ ଭାବରେ ମହାପ୍ରଭୁଙ୍କ ଆଜ୍ଞା ଲେଖା ହୋଇଅଛି...

(ପତ୍ର ଦେବା ଓ ପୁରୁଷୋତ୍ତମ ଦେବ ପଢ଼ିବା)

ରଙ୍ଗରାଓ— ଚାଲନ୍ତୁ କିଏ ସେ ଗୋପିନୀ ତାଙ୍କୁ ଦେଖି ଆସିବା ।

ମନ୍ତ୍ରୀ— ନିଶ୍ଚିନ୍ତ ରହନ୍ତୁ ମହାରାଜ। ମହାଦେଇଙ୍କ କଥାରେ ବିଶ୍ୱାସ କରନ୍ତୁ ସମସ୍ତ ଅଡୁଆ ତୁଟିଯିବ। ସମସ୍ତଙ୍କ ଅଭୀଷ୍ଟ ସିଦ୍ଧି ହେବ। ସନ୍ଦେହ ନାହିଁ ! (ପ୍ରସ୍ଥାନ)

ପୁରୁ— ରହ ସଖା, ସାଙ୍ଗ - ହୋଇ ଯିବା (ପଢ଼ିବା)

ରଙ୍ଗରାଓ— ଏଇ ଯେ ମୋ ମାଳି ଆସିଲେଣି। (ଜିଭ କାମୁଡ଼ି) ନାଃ ନାଃ ଶ୍ରୀମତୀ କନକମାଳି।

(କନକମାଳିଙ୍କର ପୁରୁଷ ଅଶ୍ୱାରୋହୀ ବେଶରେ ପ୍ରବେଶ ଓ ଅଭିବାଦନ)

ପୁରୁ— ଆସନ୍ତୁ - ଖ୍ରିମିଡ଼ି ଜେମା। ମୋର ବିଶେଷ କିଛି କଥା ଅଛି। (ଅଭିବାଦନ) (ସ୍ୱଗତ) ଏ କାହା ହାର ଯାଙ୍କ ଗଳାରେ ଝଲମଲ କରୁଅଛି। ଏ ହାରକୁ ତ ମୁଁ ଦେଖିଛି କୋଉଠି ?

କନକ— ଗଜପତିଙ୍କର ଜୟ ହେଉ ! ମୋର ମଧ ପ୍ରୟୋଜନ ଆପଣଙ୍କ ଠାରେ ମହାରାଜ !(ଗଳାରୁ ହାର କାଢ଼ି) ଏ ହାରଟି ପଦ୍ମାବତୀ ଦେଇଛନ୍ତି।

ରଙ୍ଗରାଓ— ଗଜପତିଙ୍କର ଜୟ ହେଉ। ପଦ୍ମାବତୀ ଓ ଛଦ୍ମବତୀ ସମସ୍ତଙ୍କର ଜୟ ହେଉ ! ହୀନମତି ରଙ୍ଗରାଓ ଏଠାରୁ ଯାଉ। (ଜୋର ପାଦପକେଇ ଯିବା)

ପୁରୁ— (ହାର ଗ୍ରହଣ କରି) ସଖା - ନିଅ ନିଅ ! ଏ ହାରଟି ଯେ ତୁମର (ଧାଇଁ ଯାଇ ରଙ୍ଗରାଓଙ୍କୁ ଧରି ସବଳେ ହାର ପିନ୍ଧାଇ ଦେବା ଓ କନକର ଜିହ୍ୱା ଦଂଶନ)

କନକ— (ପ୍ରକାଶ୍ୟେ) ମୋର ଭ୍ରମ ହେଇଥିଲା, ମହାରାଜ, ସେଇଟା ମୋ ନିଜ ହାର। ପଦ୍ମାବତୀ କିନ୍ତୁ ମହାରାଜଙ୍କ ପାଇଁ ଏ ହାରଟି ଦେଇଛନ୍ତି - (ଗଳାରୁ ଅନ୍ୟ ହାରଟି କାଢ଼ି ଦେବା)

ପୁରୁ— ଥାଉ ଦେବୀ ! ମୁଁ ସେ ହାରର ଯୋଗ୍ୟ ନୁହଁ (ହାତ ଟେକିବା ଓ ମୁହଁ ଫେରାଇବା) ଏହି ସେଇ ହାର। ପଦ୍ମାବତୀ ଏହାକୁ ହିଁ ଅରୁଣସ୍ତମ୍ଭ ନିକଟରେ ପିନ୍ଧିଥିଲେ। ଦେଖିଛି। କିନ୍ତୁ କାହିଁକି ଏ ବିଡ଼ମ୍ବନା।

ରଙ୍ଗରାଓ— ସଖା, ମୋତେ ଏକା ନିରୀହ ପାଇଲ ନା କ'ଣ ? ଭାରି ଚାଙ୍ଗ (କନକ ହାତରୁ ହାର ନେଇ) ନିଅ ପିନ୍ଧ କହୁଛି (ପିନ୍ଧାଇ ଦେଇ) "ଶଠେ ଶାଠ୍ୟଂ ସମାଚ଼ରେତ ।"

ପୁରୁ— ହେଲା - ହେଲା - ପିନ୍ଧିଲି ଆଉ କ'ଣ । ଆସ ସଖା । ଆସ କଲ୍ୟାଣୀ (ଦୁହିଁଙ୍କ ହାତ ମିଳାଇ) "ଯୋଗ୍ୟଂ ଯୋଗ୍ୟେନ ଯୋଜୟତେ" ।

ରଙ୍ଗରାଓ— ପୁଣି ବ୍ୟାକରଣ ଭୁଲ୍ ସଖା !

ପୁରୁ— ପୁରୁଷଠୁ ଅଧିକ କାମ କରୁଛନ୍ତି କନକମାଳି - କିନ୍ତୁ ଦେବୀ କିପରି ଆପଣ ସୁଲତାନ ଓ ବିକ୍ରମର ଷଡ଼ଯନ୍ତ୍ର ଧରିପାରିଲେ ଓ କିପରି ତାଙ୍କର କାଞ୍ଚିରାଜାଙ୍କ ପାଖକୁ ପତ୍ର ହସ୍ତଗତ କଲେ ସମସ୍ତ ଶୁଣିବାକୁ ବଡ଼ କୌତୂହଳ ହେଉଅଛି ମୋର ।

କନକ— ମହାରାଜ ! ନିଷ୍ଠୁର କାଞ୍ଚିରାଜାଙ୍କ ଆଦେଶରେ ମୋତେ ମଧ ବନ୍ଦିନୀ ପଦ୍ମାବତୀଙ୍କୁ ଛାଡ଼ି ଏକାକୀ ଆପଣଙ୍କ ଉଦ୍ଦେଶ୍ୟରେ ଯାତ୍ରା କରିବାକୁ ହେଲା । ପଥରେ ଗୋଦାବରୀ ତୀରରେ ଶୁଣିଲି ଉତ୍କଳ ବାହିନୀ, ମୁସଲମାନ ସେନାଙ୍କ ସହିତ ମିଳିତ ହୋଇ ନିକଟରେ ଅବସ୍ଥାନ କରୁଛି । ସନ୍ଧ୍ୟା ଉତ୍ତୀର୍ଣ୍ଣ ହୋଇଥିବାରୁ ଉତ୍କଳ ସେନାଙ୍କ ଡେରା ଖୋଜି ସେ ଶିବିରରେ ପହଞ୍ଚିଲି ଏହିପରି ପୁରୁଷ ବେଶରେ । ଆଶ୍ରୟ ମଧ ମିଳିଲା...

ରଙ୍ଗରାଓ— ଯେଉଁ ତମ୍ବୁରେ ଆଶ୍ରୟ ମିଳିଲା ସେଥିରେ ଆଉ ତିନିଜଣ ଖଣ୍ଡାଏତ ରହୁଥିଲେ ସେମାନେ ଆସି ନ ଶୋଇବା ଯାଏ ମାଳିଙ୍କୁ ନିଦ ହେଲା ନାହିଁ । ଇତି ମଧ୍ୟରେ ବିକ୍ରମ ଓ ଜଣେ ଖଣ୍ଡାୟତ ଅଦୂରରେ କଥାବାର୍ତ୍ତା କରୁଥିବା ଶୁଣି ବିକ୍ରମର ସ୍ୱର ଚିହ୍ନିପାରି ଉତ୍କର୍ଣ୍ଣ ହୋଇରହିଲେ । ଖଣ୍ଡିଏ ପତ୍ର ନେଇ ଉଷାକାଳରେ ତା'ର କାଞ୍ଚିଯାତ୍ରା କରିବାର ଶୁଣି ସେ, ଖଣ୍ଡାୟତ ଶୋଇବାଯାଏଁ ଅପେକ୍ଷା କରି ରହିଲେ । ନିଦ୍ରାଭିଭୂତ ହୁଅନ୍ତେ - ଉଠି ତାହାର ପାଗ ଭିତରୁ ପତ୍ରଖଣ୍ଡି ନେଇ ଏକାବେଳେକେ ପ୍ରସ୍ଥାନ । ଷଡ଼ଯନ୍ତ୍ରର ଯଥେଷ୍ଟ ଆଭାସ ମିଳିଥିଲା କି ନା - ବିକ୍ରମଙ୍କ କଥାରୁ ।

ପୁରୁ— ଓଃ - ଧନ୍ୟ ସାହସ ତୁମର ଦେବୀ । ତାପରେ ? ଏତେ ପଥ ଆସିଲ କିପରି ଗଭୀର ରାତ୍ରିରେ ?

କନକ— ଶିବିରରୁ ବାହାରି ଘୋଡ଼ା ଖୋଜିଲି - ପାଇଲି ନାହିଁ - ବନ ମଧ୍ୟକୁ ପଳାଇଲି । ସେଠାରେ ଅଗ୍ନି ସାହାଯ୍ୟରେ ରାତ୍ରିଯାପନ କରିବି ବୋଲି ମନସ୍ଥ କରିଥିଲି - କିନ୍ତୁ ଦୈବୀ ସାହାଯ୍ୟ ମିଳିଗଲା । ମହାରାଜ, ପୁରୀର ଜଣେ ବୈଷ୍ଣବୀ - ମହାରାଜଙ୍କର ବିବାହ ପ୍ରସଙ୍ଗରେ କାଞ୍ଚିରେ ତାଙ୍କୁ ଦେଖିଥିଲି । ସେ ହଠାତ୍ ସେଠାରେ ପହଞ୍ଚି କହିଲେ, ସେ ମଧ୍ୟ ପୁରୀ ଯିବେ । ଆହୁରି ମଧ୍ୟ କହିଲେ ଅଦୂରରେ ଦୁଇଟି ଘୋଡ଼ା ଚରୁଛନ୍ତି ବୋଲି । ପ୍ରକୃତରେ ଅତି ନିକଟରେ ଗୋଟିଏ କଳା ଓ ଗୋଟିଏ ଧଳା ଘୋଡ଼ା ପାଇଲୁ ଓ ଦୁହେଁ ଅଶ୍ୱଯୋଗେ ସେ ଅନ୍ଧକାରରେ ପଳାଇ ଆସିଲୁ ।

ରଙ୍ଗରାଓ— ଓଃ ଏ କଥାତ ତୁମେ କହିନାହଁ ମାଳି ! ଇଏ ନିଶ୍ଚୟ ସେହି ବୈଷ୍ଣବୀ, ଅଧ ପଣ୍ଡିତିଆଣୀ, ଯେ ମୋତେ କହିଥିଲେ ଅଧେ ପାଇବ ବୋଲି !

ପୁରୁ— (ଆଗ୍ରହରେ) କ'ଣ ଅଧେ ପାଇବ କହୁନା ?

ରଙ୍ଗରାଓ— ମୁଁ କାଞ୍ଚିରୁ ପଳାଇ ଆସିଲା ବେଳେ ସେ ମୋ ସାଥିରେ ଆସିବାକୁ କହିଲେ । ପୁରସ୍କାର ସ୍ୱରୂପ ମୋର ଗୋଟିଏ ପ୍ରଶ୍ନ ଗଣି ଦେଇଥିଲେ ।

ପୁରୁ— କି ପ୍ରଶ୍ନ କହୁନାହଁ ?

ରଙ୍ଗରାଓ— କଥା କ'ଣ କି, ମୁଁ କାଞ୍ଚିରେ ଗୋଟିଏ ଚିଜ ଛାଡ଼ି ଆସିଥିଲି, ତାହା ପୁନରାୟ ପାଇବି କି ନାଁ ସେକଥା ପଚାରିବାରୁ ସେ କହିଲେ "ଅଧେ କହୁଛି - ଅଧେ ପାଇବେ" । ତାଙ୍କର ସବୁ ଅଧେ ସେ କହିଲେ ।

ପୁରୁ— "ଅଧେ କହୁଛି - ଅଧେ ପାଇବେ" ମାନେ ତ ପୂରା ପାଇବ ସଖା - କିନ୍ତୁ କି ଜିନିଷ ତୁମେ କାଞ୍ଚିରେ ଛାଡ଼ି ଆସିଥିଲ କି ?

ରଙ୍ଗରାଓ— ନାଇଁ - ତା ନାଆଁ କଣଟି - ପାଉସାରିଲିଣି ଯେ । ଆଉ କାହିଁକି ସେ କଥା - (କନ କନ ହବା)

ପୂର୍ବ— ନା - ନା - କହ ସଖା !

ରଙ୍ଗରାଓ— କହିବା ବଡ଼ କଠିନ (କନକକୁ ଚାହିଁବା)

କନକ— ପାଇସାରିଲଣିଟି ଭାଇ ? ଅଧେ ନା ପୂରା !

ରଙ୍ଗରାଓ— ଏ ପ୍ରଶ୍ନ ଆହୁରି ଗୁରୁତର । ହେଃ ଅଧେ ନା ପୂରା !

(କନକର ସମ୍ମୁଖୀନ ହେବା)

କନକ— ଅଧେ ନା ପୂରା - ଠିକ୍ କୁହ !

ରଙ୍ଗରାଓ— ପୂରା - ସମ୍ପୂର୍ଣ୍ଣ (ବାହୁ ପ୍ରସାରଣ)

ପୂର୍ବ— (ହସି) ଓଃ ଏଉ ଜିନିଷ - ମୁଁ ଯାଏଁ... (ପ୍ରସ୍ଥାନ)

(କନକ ଓ ରଙ୍ଗରାଓ କୋଳାଗ୍ରତ ହେବାବେଳେ ପଟପତନ)

+ + + + +

# ଷଷ୍ଠ ଅଙ୍କ

## ଶତ୍ରୁ ସଂହାର

### ପ୍ରଥମ ଦୃଶ୍ୟ

ସ୍ଥାନ - କାଞ୍ଚି          କାଳ - ରାତ୍ରି

ଉତ୍କଳ ଶିବିରରେ ପୁରୁଷୋତ୍ତମଙ୍କ ଶୟନ କକ୍ଷ । ଅଦୂରରେ ପ୍ରହରୀ ପହରା ଦେଉଥିଲା - ବେଳେ ବେଳେ ଦେଖାଯାଉନଥିବା ଶଯ୍ୟାଉପରେ ପୁରୁଷୋତ୍ତମ ଦେବ ଓ ଅଦୂରରେ ରଙ୍ଗରାଓ ଉପବିଷ୍ଟ । ପୁରୁଷୋତ୍ତମଙ୍କ ମନରେ ଅନ୍ତର୍ଯୁଦ୍ଧ ହେଉଥିଲା । ମୁଖ ଚିନ୍ତାଭାରକ୍ଳାନ୍ତ । ରଙ୍ଗରାଓ ଚକିତ ଓ ଚଞ୍ଚଳତାଭରା ମୁଖରେ ଗାଲରେ ହାତଦେଇ ବସିଥିଲେ ।

ପୁରୁ— ଆଜି ପୁଣି ଏକି ଓଲଟା କଥା, ତୁମର ସଖା !

ରଙ୍ଗରାଓ— ଓଲଟା କଥା ! ଓଲଟା କଥା ? (ଆଶ୍ଚର୍ଯ୍ୟଭାବ ଦେଖାଇ)

ପୁରୁ— ଓଲଟା କଥା ନୁହେଁ । ତୁମେ ତ ମୂଳରୁ କହିଆସୁଛ ଏ ଯୁଦ୍ଧର ସାର୍ଥକତା କିଛି ନାହିଁ । ମୁଁ ଆଜି ସେ କଥା ମର୍ମେ ମର୍ମେ ଅନୁଭବ କରୁଅଛି । ମୋର ଆଉ ଯୁଦ୍ଧର ଇଚ୍ଛା ନାହିଁ । ତୁମେ ପୁଣି କେଉଁ ଯୁକ୍ତିରେ ମୋତେ ଯୁଦ୍ଧରେ ପ୍ରବର୍ତ୍ତାଉଛ ? ଓଲଟା ଗାଉ ନାହଁ ତୁମେ ?

ରଙ୍ଗରାଓ— ହେଁ, ଏଇଆକୁ ତୁମେ ଓଲଟା କଥା କହୁଅଛ ? ମୋର ଖୁବ୍ ଭଲ ଭଲ ଯୁକ୍ତି ଅଛି ଜାଣ ?

ପୁରୁ— କି ଯୁକ୍ତି ? କେଉଁ ଲାଭ ପାଇଁ ମୁଁ ଏ ଯୁଦ୍ଧ କରିବି ? କହ...

ରଙ୍ଗରାଓ— ସତ୍ୟପାଳନ ଗୋଟାଏ ଯୁକ୍ତି । ପଦ୍ମାବତୀ ଲାଭ ଦ୍ୱିତୀୟ ଓ ପ୍ରଧାନ ଯୁକ୍ତି -

ପୁରୁ— ପ୍ରଥମ ଯୁକ୍ତି ଓ ଦ୍ୱିତୀୟ ଯୁକ୍ତିର ଉଚ୍ଛେଦନ କରି ତୁମର ସମସ୍ତ ଯୁକ୍ତିର ଅସାରତା ପ୍ରମାଣ କରୁଅଛି । ତୁମେ ହିଁ ସେଦିନ କହିଛ ପଦ୍ମାବତୀ ଲାଭ କଲେ ମଧ ସେଥିରେ ଲାଭ କିଛି ନାହିଁ ।

ରଙ୍ଗରାଓ— ତା-ତା-ସଖା, ଯୁକ୍ତି ତର୍କ ଛାଡ଼ିଦିଅ ନା । କର୍ତ୍ତବ୍ୟ ବୋଲି କରିଯାଅ । ମାନିବ ନାହିଁ ଆଜ୍ଞା । ମୁଁ ମୋ ମନକଥା ସ୍ପଷ୍ଟ ତୁମକୁ କହେ ଶୁଣ । ମୋର ଆଶା ଥିଲା ଉତ୍କଳ ବାହିନୀ କାଞ୍ଚିନଗର ଅବରୋଧ କଲେ କାଞ୍ଚିରାଜର ଚୈତନ୍ୟ ଉଦୟ ହବ ଓ ସେ ସନ୍ଧି ପ୍ରସ୍ତାବ କରିବ ଓ ପଦ୍ମାବତୀଙ୍କ ପାଇଁ ତୁମ ହସ୍ତ ଭିକ୍ଷା କରିବ ହିଁ କରିବ । ଏହି ଆଶାରେ ହିଁ ମୁଁ ଏ ଜଟିଳ ସମସ୍ୟାର ସମାଧାନ ଏ ପର୍ଯ୍ୟନ୍ତ କରିଆସିଛି । ମୋର ଏ ଆଶା ମଧ୍ୟ ଏପର୍ଯ୍ୟନ୍ତ ଯାଇନାହିଁ । ଆଜି ତ ଅବରୋଧର ପ୍ରଥମ ଦିନ । ଆହୁରି ଦୁଇ ଚାରିଦିନ ଅବରୁଦ୍ଧ ହୋଇ ରହିଲେ ଉତ୍କଳ ସେନାର ସ୍ଥିରପ୍ରତିଜ୍ଞା ଅନୁଭବ କଲେ କାଞ୍ଚିରାଜ ନିଶ୍ଚୟ - ନିଶ୍ଚୟ ଏ ପନ୍ଥା ଅବଲମ୍ବନ କରିବ...

ପୁରୁ— (ସାଶ୍ଚର୍ଯ୍ୟେ) ଏହି କ'ଣ ଏ ସମସ୍ୟାର ସମାଧାନ ? ପୁଣି ପଚାରୁଛି ସଖା ଲାଭ ?

ରଙ୍ଗରାଓ— କାହିଁକି ? ପଦ୍ମାବତୀ ଲାଭ । ଚଣ୍ଡାଳର ପରିବର୍ତ୍ତେ ମୋ ସଖାଙ୍କ ସହିତ ପଦ୍ମାବତୀର ମିଳନ ।

ପୁରୁ— ଓଃ - ଚଣ୍ଡାଳ ସହିତ ପଦ୍ମାବତୀର ବିବାହ ଏହି ମୋର ଆଜ୍ଞା । ଏହି ମୋର ପ୍ରତିଜ୍ଞା - ସଖା - ସଖା (ରଙ୍ଗରାଓ ବିଚଳିତ ପୁରୁଙ୍କୁ ବିଛଣାରେ ଶୁଆଇ ଦବା)

ରଙ୍ଗରାଓ— ଛି ସଖା ତୁମେ ଏଭଳି ବିଚଳିତ ହଉଛ ? ମହାଦେଈଙ୍କୁ ସ୍ମରଣ କର ! ତୁମର ଜଗନ୍ନାଥ ମହାପ୍ରଭୁଙ୍କୁ ସ୍ମରଣ କର ! ମନେଅଛି ମହାଦେଈଙ୍କ ଉପଦେଶ । ତାଙ୍କ ତତ୍କାଳୀନ ନିର୍ଦ୍ଦେଶ ଅନୁସାରେ କାର୍ଯ୍ୟ କରିବା ଛଡ଼ା କ୍ଷୁଦ୍ରବୁଦ୍ଧି ମାନବର ଅନ୍ୟ ଉପାୟ କ'ଣ ?

ପୁରୁ— ସଖା - ଆଉ ମୁଁ ସହ୍ୟ କରିପାରୁ ନାହିଁ । ଏ ବଡ଼ କଠୋର ପରୀକ୍ଷା ! ମୋର ମହାପ୍ରଭୁଙ୍କର କି ଶୁଭେଚ୍ଛା ଏଥିରେ ଲୁକ୍କାୟିତ ଅଛି ଭାଇ ସେ ଜାଣନ୍ତି - କିନ୍ତୁ ମୁଁ ଆଉ ପାରୁନାହିଁ । ଉଃ ! କି ଭୀଷଣ ସମରାନଳ ଏ ଅନ୍ତଃସ୍ଥଳରେ ଚାଲିଛି । ଦେଖ - ଦେଖ ଭାଇ ରଙ୍ଗରାଓ ।

(ଅର୍ଦ୍ଧୋତ୍‌ଥିତ ଅବସ୍ଥାରେ ଛାତି ଚାପି ଧରିବା ଓ ରଙ୍ଗରାଓ ପୁଣି ଶୁଆଇ ଦବା)

ତୁମେ ଏ ଯୁଦ୍ଧର ଧାରଣା କରିପାରିବ ନାହିଁ ସଖା । ଏପରି ଭୀଷଣ ଯୁଦ୍ଧ ଏ ତ୍ରିଜଗତରେ କୌଣସି କାଳରେ ହୋଇନାହିଁ । ମାରାତ୍ମକ ପରୀକ୍ଷା ସଖା !

ରଙ୍ଗରାଓ— ଶାନ୍ତ ହୁଅ ସଖା, ଶାନ୍ତ ହୁଅ ! ପରୀକ୍ଷା ଜାଣ, ତେବବେ ବୀର ପରି, ଯୋଦ୍ଧା ପରି ସେଥିରୁ ମୁକ୍ତ ହୁଅ - ଏ କ'ଣ, ଛି ?

ପୁରୁ— ଭାଇ, ଜାଣ ମୁଁ କ'ଣ କରିଛି ? ଏ କ୍ଷୁଦ୍ର ପ୍ରାଣରେ ଦେବୀପୂଜାର ଉଦ୍‌ବୋଧନ ସଙ୍ଗେ ସଙ୍ଗେ ବିସର୍ଜନର କ୍ରନ୍ଦନ ଡାକି ଦେଇଛି । ଏ ହାତ ପଦ୍ମାବତୀଙ୍କୁ ବରଣ କରିଛି - ଆଉ ଏ ହାତ ତାକୁ ଟାଣି ଆଣି ପଦାଘାତ ପାଇଁ ପ୍ରସ୍ତୁତ କରୁଛି । କେଢ଼େ ଆତ୍ମଘାତୀ ତାହା ବୁଝି ପାରୁଛ ? ଆକାଶର ଯୁଦ୍ଧ ବତାସ ସହିତ, ଅଗ୍ନିଶିଖାର ଅଗ୍ନି ସହିତ ଯୁଦ୍ଧ, ଧରିତ୍ରୀର ମୃତ୍ତିକା ସହିତ ଦ୍ୱନ୍ଦ୍ୱ । ଇଯେ ସଖା ! ପିଣ୍ଡ ସହିତ ପ୍ରାଣର, ପଞ୍ଚଭୂତ ସହିତ ଆତ୍ମାର ଏ ବିକଟ ସଂଗ୍ରାମର ତାଣ୍ଡବ ଲୀଳା - ଦେଖ - ଦେଖ ସଖା - ଏଇଠି - ଏଇଠି ! (ହୃଦୟ ଚାପି ଧରି)

ରଙ୍ଗରାଓ— ଛିଃ ଛିଃ ସଖା ! ଶାନ୍ତ ହୁଅ ! ଟିକିଏ ବିଶ୍ରାମ କର ସଖା !

ପୁରୁ— ଶାନ୍ତ ହେବି ? ସଖା - ସଖା - ଏ ଦାବାଗ୍ନିରେ ଆଉ ଶାନ୍ତି ଅଛି ! (ରହି) ନାହିଁ - ନାହିଁ । ଯାଅ ସଖା, ତୁମେ ବିଶ୍ରାମ କର ଯାଅ । ମୁଁ କେତେଥର କହିଛି ତୁମକୁ, ମୋର ସଂସର୍ଗ ତ୍ୟାଗ କର । (ଉଠି) ଯାଅ ଭାଇ, ଶୋଇବ ଯାଅ, କାଲି ପୁଣି ଯୁଦ୍ଧ ହେବ ।

ରଙ୍ଗରାଓ— କାଲି ଯୁଦ୍ଧ - ଠିକ୍ ତ ? ଏଇ ତ ମୋ ସଖାଙ୍କ ପରି କଥା ।

ପୁରୁ— ହଁ ଭାଇ, କାଲି ଯୁଦ୍ଧ । ଆଉ କାଲି ଯୁଦ୍ଧ ହିଁ ମୋର ଶେଷ ଯୁଦ୍ଧ, ସଖା ! କାଲି ହେଲେ ପ୍ରତିଜ୍ଞା ପୂରଣ - ନହେଲେ ମହାଯୁଦ୍ଧର ଅବସାନ - (ଶୋଇବା) ମହାଯୁଦ୍ଧ ! ମହାଯୁଦ୍ଧ ସଖା । ଯାଅ ମୁଁ ଟିକିଏ ଶୁଏ, ସଖା !

ରଙ୍ଗରାଓ— ତୁମେ ଶାନ୍ତ ହୋଇ ଶୁଅ, ମୁଁ ଯାଉଛି ଯେ - (ଅନ୍ଧକାର କରିଦବା-ବତୀ ବନ୍ଦ କରି) (ଯାଉଁ ଯାଉଁ) ମହାଯୁଦ୍ଧ ହିଁ ସତେ ! ଧନ୍ୟ ମହାବୀର !

ଧନ୍ୟ ତୁମର ଜନକଜନନୀ । ମୁଁ ପୁଣି ଆଶା କରିଥିଲି କନକଙ୍କୁ କାଞ୍ଚିଗଡ଼କୁ ପଠାଇବା ବିଷୟରେ ଯାଙ୍କୁ ସମ୍ମତ କରାଇପାରିବି । (ମୁଣ୍ଡ ହଲାଇ) କି ଫଳ ? କନକ ଯାଇ ସେ ପ୍ରସ୍ତର ଖଣ୍ଡକୁ କ'ଣ ଟଳାଇ ପାରିଥାନ୍ତା ? ନା - ନା- ଏଇ ଭଲ ? ଯୁଦ୍ଧ ଜୟ ଓ ପଦ୍ମାବତୀ ଲାଭ, ପରକଥା ପରେ ବିଚାର୍ଯ୍ୟ । (ରହି) ଯାଙ୍କୁ ନଜଣାଇ କନକଙ୍କୁ କାଞ୍ଚିଗଡ଼କୁ ପଠାଇ ଦେବି ? କାଞ୍ଚି ମହାଦେଈଙ୍କୁ ଖବର ଦେବି ସିଦ୍ଧାନ୍ତ କରାଇବା ପାଇଁ ପଦ୍ମାବତୀଙ୍କ ବିବାହ ପ୍ରସ୍ତାବ ପଠାଇ ? ସେ ନରସିଂହ ରାଓ କ'ଣ ମଙ୍ଗିବ ? ଆଉ ଏ ମୋର ପ୍ରାଣର ସଖା ? ଯାଙ୍କୁ ନ ଜଣାଇ ମୁଁ ଏହା କରିବି ? ସେ ଦିନ ସେ କଠୋର ପ୍ରତିଜ୍ଞା କଥା ମୋର କଣ ମନେ ନାହିଁ ? ଏ ଯେଉଁ ଦିବ୍ୟମୂର୍ତ୍ତି ମୋତେ କହିବେ ତମେ ମୁଣ୍ଡରେ ଚାଲ - ଆଉ ମୋ କନକକୁ କହିବେ ତମେ ଉଡ଼ ନହେଲେ ପ୍ରତିଜ୍ଞା କରି ବସିବେ ପୁଣି - ନା - ନା ଥାଉ । ମହାପ୍ରଭୁ ଜଗନ୍ନାଥ ଅଛନ୍ତି । ସେ ନିଶ୍ଚୟ ସମସ୍ୟାର ସମାଧାନ କରିବେ । (ମୁଣ୍ଡରେ ହାତ ଦେଇ) ଜୟ ଜଗନ୍ନାଥ - ଜୟ ଜଗନ୍ନାଥ (ଜିଭ କାମୁଡ଼ି) ରାମ, ରାମ, ରାମ କିଏ ଶୁଣିବ ମୁଁ ଜଗନ୍ନାଥଙ୍କୁ କହୁଛି - ଡାକୁଛି (ପ୍ରସ୍ଥାନ) ।

ପୁରୁ— (ଶାୟିତ ଅବସ୍ଥାରେ) ଠିକ୍ କହୁଛ ସଖା - ଠିକ୍ କଥା । ଯୁଦ୍ଧ କରି ବିପକ୍ଷକୁ ବ୍ୟତିବ୍ୟସ୍ତ କରି ପକାଇବା ତେବେ ଯାଇ ସନ୍ଧି ହେବ । ସନ୍ଧି - ସନ୍ଧି ! (ଗବାକ୍ଷ ବାଟେ ଚାହିଁ) ସେହି ଉନ୍ନତ ହର୍ମ୍ୟ ଚୂଡ଼ାରେ ଶ୍ୱେତ ପତାକା ଉଡ୍ଡୀୟମାନ ହବ । (ଶୋଇ) ଉଃ ଏହା କ'ଣ କେବେ ସତ୍ୟ ହେବ । ହେ ଭଗବାନ ! ହେ ମହାପ୍ରଭୁ ଜଗନ୍ନାଥ ! (ବିଛଣାରୁ ତଳକୁ ଓହ୍ଲାଇ ସାଷ୍ଟାଙ୍ଗ ପ୍ରଣିପାତ ପରେ ପୁଣି ଶୟନ) (କିଛିକ୍ଷଣ ପରେ ନେପଥ୍ୟେ ମୃଦୁ ଯନ୍ତ୍ରାଳାପ ଓ ବୈଷ୍ଣବୀର ଦୂରରୁ ସଂଗୀତ) ।

### ଗୀତ

ମୁଁ ପାଦ ନୂପୁର ବାଜା..... ମାଁ ସେ ନଟବର
ଅଡୁଆ ସୂତା ଖିଅ ମୁଁ ..... (ସେ) ପୁରୁଣା କାରିଗରର ।
ନାଚି ନାଚି (ସେ) ଯାଏ ଖେଳି ଭବରଙ୍ଗ ଭୂମି ପରେ
ବାଜି ବାଜି ଯାଏ ମୁହିଁ ତାଳେ ତାଳେ ଫର ଫର ।

(ସେ) ବୁଣି ବୁଣି ଯାଏ ଜାଲେ (ମୁଁ) ଖୋଲି ଖୋଲି ଚାଲେ
(ପୁଣି) ଗଣ୍ଠି, ଗଣ୍ଠିକେ ମୁଁ ଥାଏ ମହାଜାଲେ (ସେ) ଧୀବରର ।

ପୁରୁ— (ହଠାତ୍ ଉଠି) ମାର - ମାର୍, ଭାଙ୍ଗିଦିଅ ଭାଙ୍ଗିଦିଅ - କାହିଁ ମୋର ତରବାରୀ (ତରବାରୀ ନେଇ) ଦିଗ୍‌ବିଜୟୀ ଓଡ଼ିଆ ଉଠ, ଜାଗ !

(ପ୍ରହରୀର ପ୍ରବେଶ ଓ ଅଭିବାଦନ)

(ସଙ୍କୁଚିତ ହୋଇ) କିଏ ପ୍ରହରୀ ? ଯାଅ ଦେଖ ମୋ ନିଦ୍ରାରେ ଯେପରି ବ୍ୟାଘାତ ନହୁଏ । (ଶୟନ)

ପ୍ରହରୀ— ଯେ ଆଜ୍ଞା ମହାପ୍ରଭୁ ! (ପ୍ରସ୍ଥାନ) ବୈଷ୍ଣବୀର ନେପଥ୍ୟେ ଗୀତ ଓ ପାଦ ଚିପି ଚିପି ଅନ୍ୟ ଦିଗରୁ ପ୍ରବେଶ ଓ ମସ୍ତକ ପାର୍ଶ୍ୱରେ ଠିଆ ହେବା)

ବୈଷ୍ଣବୀ— ମୁଁ ନଅରରୁ ମହାଦେଈ ମଣିମାଙ୍କ ଗହଣରୁ ଆସିଛି । ମହାରାଜ ! ମହାଦେଈ କହିଛନ୍ତି, ଆପଣ ଦାସୀପୁତ୍ର ନୁହଁନ୍ତି ।

ପୁରୁ— କିଏ ? ମା ? ଏହାର ଅର୍ଥ ନାରୀ ? ଏହି କୁତ୍ସିତ ଇଙ୍ଗିତ କଦାପି ମା' କରି ନାହାନ୍ତି ।

ବୈଷ୍ଣବୀ— ଏହାର ଅର୍ଥ ମହାରାଜ ବୁଝନ୍ତୁ ! କାଞ୍ଚିରାଜ ମଣିମାଙ୍କୁ ଦାସୀ ଆଖ୍ୟା ଦେଇଥିଲେ । ସେଇକଥାକୁ ମା' ବୋଧହୁଏ ଏହିପରି କହିଛନ୍ତି ।

ପୁରୁ— ହଁ - କାଞ୍ଚିରାଜାର ଆସ୍ପର୍ଦ୍ଧା । ଆଉ କ'ଣ କହିଛନ୍ତି ମା' ?

ବୈଷ୍ଣବୀ— ଅଭୟ ଦେଲେ କହିବି ।

ପୁରୁ— ଶୀଘ୍ର କହ ନାରୀ - ମୋତେ ପାଗଳ କରିଦିଅନା ଭଲା !

ବୈଷ୍ଣବୀ— ମହାଦେଈ କହିଛନ୍ତି - ପୁତ୍ରର ଯଦି ମନରେ ସନ୍ଦେହ ବା ବିଶ୍ୱାସ ଥାଏ ଯେ ସେ ଦାସୀ ପୁତ୍ର, ସେ ଯୁଦ୍ଧ ତ୍ୟାଗକରି ଫେରି ଆସିପାରେ ।

ପୁରୁ— ହଁ, ବୁଝିଛି, ମା'ଙ୍କ କଥାର ମର୍ମ ବୁଝିଛି । ହାୟ, ଶକ୍ତିମୟୀ ! ଏ ଅଧମ ସନ୍ତାନର ଅପରାଧ ନେବୁ ନାହିଁ । ମୁଁ ଭାବିଥିଲି ମୋତେ ନ ବିଚାରି କାଞ୍ଚିକୁ ବିବାହ ପ୍ରସ୍ତାବ ପଠାଇବା ଦ୍ୱାରା ମୋର ଏକା ଅପମାନ ହୋଇଥିଲା । ହାୟ ମା' (ବୈଷ୍ଣବୀର ଧୀରେ ପ୍ରସ୍ଥାନ) ଏତେ ବଡ଼ ଅପମାନ ତୋର, ତୁ ମତେ ଲୁଚାଇ ରଖିଲୁ ମା ! ମା ! ମା !ସ୍ୱାର୍ଥାନ୍ଧ ଅଧମପୁତ୍ରର ଦୋଷ ମାର୍ଜନା କର ମା ? ମୁଁ ଯୁଦ୍ଧ କରିବି । ପ୍ରତିଜ୍ଞା ପାଳନ କରିବି । ଯାଅ ମା'ଙ୍କୁ କହିବ, ଏଁ - କୁଆଡ଼େ ଗଲେ ସେ ମାତା ? ମୁଁ କ'ଣ ତଥାପି ସ୍ୱପ୍ନ ଦେଖୁଛି - ନା - କ'ଣ ? ମୁଁ ସୁପ୍ତ ନା ଜାଗ୍ରତ ? (ଚାହିଁବା) ପ୍ରହରୀ, ପ୍ରହରୀ (ପ୍ରହରୀର ପ୍ରବେଶ ଓ ଅଭିବାଦନ)

ପ୍ରହରୀ— ମହାପ୍ରଭୁ !

ପୁରୁ— ସେ ମାତା କୁଆଡ଼େ ଗଲେ ?

ପ୍ରହରୀ— କେଉଁ ମାତା ମହାରାଜ ?

ପୁରୁ— ହଁ ଯାଅ (ପ୍ରହରୀ ଅଭିବାଦନ କରି ପ୍ରସ୍ଥାନ) କିନ୍ତୁ ଇଏ କ'ଣ ! (ତଳୁ ପଦ୍ମକଢ଼ି ଉଠାଇ) ପ୍ରହରୀ ଏଠାକୁ ପଦ୍ମଫୁଲ କାହୁଁ ଆସିଲା ? (ପ୍ରହରୀର ପ୍ରବେଶ ଓ ଅଭିବାଦନ)

ପ୍ରହରୀ— ମହାପ୍ରଭୁ ! ଆଜ୍ଞା ମଣିମା - ଏଟା ପୁଷମାସ ଆଜ୍ଞା !

ପୁରୁ— ଆଚ୍ଛା ଯାଅ !

(ପ୍ରହରୀ ଅଭିବାଦନ କରି ପ୍ରସ୍ଥାନ) ହାୟ ପଦ୍ମାବତୀ ! ପଦ୍ମାବତୀ ! ଏ ପଦ୍ମକଢ଼ି କାହାର ସଙ୍କେତ ? ଆସ ହୃଦୟକୁ ଆସ ପଦ୍ମାବତୀ । ମୋର ଆଉ ଅନ୍ୟ କୌଣସି ଅବଲମ୍ବନ ନାହିଁ ।

(ପଦ୍ମାବତୀଙ୍କ ହାର ଓ ପଦ୍ମକଢ଼ି ଛାତିରେ ରଖି ଶୋଇବା)

ଅଭିଶପ୍ତ ଜୀବନ ତୋର ପୁରୁଷୋତ୍ତମ ! ଆସ ରାତ୍ରି ଚିର ଅନ୍ଧକାର ବେଢ଼ା । ହାସ୍ୟହୀନ, ସ୍ପନ୍ଦନହୀନ, ନିଷ୍କରୁଣ ଅତି, ବିହଙ୍ଗ ନ ଗାଅ

ଆଉ, ନ ବାଜ ମୂରଲୀ, ଦୂରେ ଯାଅ ଜ୍ୟୋତିରେଖା - ଦୂରେ - ନିର୍ମମ ନିୟତି ଯନ୍ତ୍ରେ ଚଳାଏ ଯେ ଜନେ କିବା କାର୍ଯ୍ୟ ଦୃଷ୍ଟି ସେ ଅନ୍ଧର - ତେବେ ତମିସ୍ରା ରଜନୀ ଆସ ଘେରି । କର୍ମର ବନ୍ଧନ ନିଅ ଟାଣି, ନିଅ ଟାଣି, ମାୟା ପାଶେ - ଯେଣେ ଇଚ୍ଛା ସେହି ଏ ଅନ୍ଧର ପଥ ! କିନ୍ତୁ ମହାପ୍ରଭୁ (ରହି - ଅର୍ଦ୍ଧୋତ୍‌ଥିତ ଭାବେ) ଦୟାକର ଦୟାକର ଦୀନେ । ସେ ପଥର ଆଦ୍ୟେ - ପଦ୍ମାବତୀ, ମଧ୍ୟେ ପଦ୍ମାବତୀ, ଅନ୍ତେ ମଧ୍ୟ ପଦ୍ମାବତୀ ହେଉ - ଇହ ଜନମରେ ଅବା ଶତଜନ୍ମାନ୍ତରେ । (ପ୍ରଣିପାତ କରି ଶୟନ)

+ + + + +

## ଦ୍ୱିତୀୟ ଦୃଶ୍ୟ

ସ୍ଥାନ— କାଞ୍ଚି ରାଜପ୍ରାସାଦର ଏକ ପ୍ରକୋଷ୍ଠ । କାଳ - ଅପରାହ୍ଣ । ବନ୍ଦିନୀ ପଦ୍ମାବତୀ ଗୋଟିଏ କାଷ୍ଠାସନ ଉପରେ ବସି ମନ ଦୁଃଖରେ ଗୀତ ଗାଉଥିଲେ ।

- ଗୀତ -

ପ୍ରିୟ ସହୀ ଏ ବନ୍ଧା ଏ ମନ କୋଣେ ଗୋ,
ସାତ ସପନରେ ଯା'କୁ ନ ପାଇବି - ସେ ବନ୍ଧା ଏ ମନକୋଣେ ଗୋ ।
ଚନ୍ଦ୍ରମଲ୍ଲୀ କଢ଼ି ଛାତିରେ ପଡ଼ିଲା
ହରଷ ଜଗାଇ ଯେ ପରଶ ଦେଲା
ଜଳିଗଲା ଅଳି - ରହିଛି ସେ କଳି
ଭୁଲିକି ପାରୁଛି କ୍ଷଣେ ଗୋ ।
କ୍ଷଣେ ପାଇବାର କ୍ଷଣକେ ଅନ୍ତର
ସେତ ବାହାରର ଜଣେ ଗୋ,
(ଯାକୁ) ରତନ ଆସନେ ଥାପିଛି ମୁଁ ପ୍ରାଣେ
ଏ ବନ୍ଧା ଏ ମନକୋଣେ ଗୋ ।

(ଗୀତଟି ଶେଷ ନ ହେଉଣୁ ବୈଷ୍ଣବୀ ଓ ଶଶୀର ପ୍ରବେଶ - ପରେ)

ବୈଷ୍ଣବୀ— ଏଡ଼େ ହତାଶ ହେଉଛୁ କାହିଁକି ଝିଅ । ସୁଖ ପରେ ଦୁଃଖ, ଦୁଃଖ ପରେ ସୁଖ ଏ ସଂସାରରେ ତ ଲାଗି ରହିଛି ମା । ଆଜି ଦୁଃଖ ଦିନ ତୋର ମା । କାଲି ପରି ଫେରିଯିବ । ଶୀତଦିନ ଆସିଲେ ଯେପରି ବସନ୍ତ ନିକଟ ହେଲା ବୋଲି ଜଣାଯାଏ ସେମିତି ତୋର ଦୁର୍ଦ୍ଦିନର ଅବସାନ ବୋଲି ଜାଣିବୁ, ମା । ଆହା ସୁନା ଦେହ କଳା ପଡ଼ିଗଲାଣି । ତା'ର ପରା ରୂପଲାବଣ୍ୟ କୁଆଡ଼େ ମଉଳି ପଡ଼ିଲାଣି !

ଶଶୀ— ଯାଙ୍କର ସୁଖର ଦିନ କେବେ ଆସିବ ଗୋ ମା ? ମୋ ସହୀର ଯେ କ'ଣ ହେବ କିଏ ଜାଣେ । ଯୁଦ୍ଧରେ ଯଦି ଜୟ ହୁଏ, ତେବେ ମୋ ସହୀର କଷ୍ଟର ସୀମା ରହିବ ନାହିଁ । ଯଦି ପରାଜୟ ହୋଇ ଗଜପତିଙ୍କର ଜୟ ହୁଏ, ତାହା ହେଲେ ତା'ର ଆହୁରି ଦୁଃଖ- ଜାଣନା ମାତା ? ତାକୁ ଯେ ଚାଣ୍ଡାଳକୁ ସମର୍ପଣ କରିବାକୁ ବନ୍ଦୀ କରି ନେବେ ଗୋ !

ବୈଷ୍ଣବୀ— (ହସି) ବାୟାଣୀ, ବାୟାଣୀ ସମସ୍ତେ । କାହିଁରେ କ'ଣ ହବ ନ ହବ ତୁମେ କୁଆଡୁ ଜାଣିଲ । ମୁଁ କହୁଛି ପରା ଦୁଃଖ ଦିନ ଯାଉଛି - ସୁଖ ଦିନ ଆସୁଛି - ତେବେ ବି ତୁମ ମନ ବୋଧ ହେଉନି । ଉଠ, ମା' ପଦ୍ମିନୀ ଉଠ - ମଳୟର ପ୍ରଣୟ ଗୁଞ୍ଜନ ଶୁଣ - କୋକିଳର ଜୟ ବଂଶୀ ଶୁଣ - ଅଳିର ବିଜୟ ଦୁନ୍ଦୁଭି ଶୁଣ (ନେପଥ୍ୟେ ରଣ ବାଦ୍ୟ) ମୁଁ ଯାଏଁ - (ପ୍ରସ୍ଥାନ)

ପଦ୍ମା— (କଷ୍ଟରେ ଉଠି) କିଏ ? କିଏ ସେ ? ଏ ଅତଳ ନୈରାଶ୍ୟ ସାଗରରେ ଆଶାର ଉଦ୍ଦୀପନା ଢାଳି ଦେଇଗଲ ? ହାୟରେ ପାଗଳ ମନ, ପୁଣି ଆଶାର ଆଶାରେ ଭୁଲୁଛି ।

ଶଶୀ— (ପାଖକୁ ଯାଇ) ସହୀ - ଧୈର୍ଯ୍ୟ ଧର, ଏତେ ଅଧୀର ହୁଅନା (ଚକ୍ଷୁରେ ଅଞ୍ଚଳ ନେବା)

ପଦ୍ମା— ନା - ଆଉ ଅଧୀର ହେବି ନାହିଁ । ସହୀ, ଯୁଦ୍ଧର ଖବର କ'ଣ ?

ଶଶୀ— ଓଡ଼ିଆ ସେନା ଆହୁରି ବେଗରେ ମାଡ଼ି ଆସୁଛନ୍ତି - ନଗର ରକ୍ଷା ହବ କି ନା କିଛି ବୁଝି ହଉ ନାହିଁ । ଆମ ସେନାପତି ଅକ୍ଲାନ୍ତ ଭାବରେ ଯୁଦ୍ଧ

କରୁଛନ୍ତି - ମହାରାଜ ମଧ୍ୟ । ସେନାପତିଙ୍କର ଅଭେଦ୍ୟ କୌଶଳମାନ ଏପର୍ଯ୍ୟନ୍ତ ଶତ୍ରୁଙ୍କୁ ଦୂରରେ ରଖିପାରିଛି ।

ପଦ୍ମା— ଉତ୍ତମ ! ଜୟନ୍ତ ଭାଇର ଜୟ ହେଉ ! ସେ ବଡ଼ ବ୍ୟଥା ପାଇଛି ମୋ ଘେନି । ଏ ବାଟେ ଯଦି ତା'ର କିଛି ଲାଭ ହୁଏ (ଯୁଦ୍ଧ କୋଳାହଳ ହବା) ସହୀ, କ'ଣ ହେଲା ଦେଖିଲୁ ନଗର ଭିତରୁ ଯେପରି ଏ ଯୁଦ୍ଧ କୋଳାହଳ ଶୁଭୁଛି ।

ଶଶୀ— ଦେଖୁଛି, ତୁମେ ଟିକିଏ ସ୍ଥିର ହୁଅ ସହୀ - ଆଉ କାନ୍ଦନା । (ଶଶୀର ପ୍ରସ୍ଥାନ)

ପଦ୍ମା— ଆଉ କି ସ୍ଥିର ହେବି ! ହେ ଜଗନ୍ନାଥ, ହେ ମହାପ୍ରଭୁ ! ମୁଁ ତୁମ ଚରଣରେ କି ଅପରାଧ କରିଛି - (ରକ୍ତାକ୍ତ କଳେବରରେ ରକ୍ତରଞ୍ଜିତ ତରବାରୀ ହସ୍ତରେ ସେନାପତିଙ୍କର ପ୍ରବେଶ) ଜୟନ୍ତ ଭାଇ, ତୁମେ ଏଠି ?

ଜୟନ୍ତ— ଆଉ ଯୁଦ୍ଧ କରିବି ନାହିଁ ପଦ୍ମା - ଯୁଦ୍ଧ କରି ଲାଭ ?

ପଦ୍ମା— ଲାଭ କିଛି ନାହିଁ । ରାଜ୍ୟରକ୍ଷା, ଦେଶରକ୍ଷା, ଆମ୍ଭମାନଙ୍କର ପ୍ରାଣଠାରୁ ବଳି ସମ୍ମାନ ରକ୍ଷା - ଇଏ କ'ଣ କିଛି ଲାଭ ନୁହେଁ ସେନାପତି ? ଶତ୍ରୁ ଜୟ, ଆଉ ଜୟର କୃତିତ୍ୱ ଇଏ କ'ଣ କିଛି ଲାଭ ନୁହେଁ ଭାଇ ?

ଜୟନ୍ତ— ନା, ରାଜକୁମାରୀ । ସେ ସବୁରେ ମୋର ପ୍ରୟୋଜନ ନାହିଁ । ମୁଁ ତୁମ୍ଭଠାକୁ ଆସିଛି - ଆଜି ମୋର ଶେଷ ଆସିବା - ଦୟା କରି ଟିକିଏ ଶୁଣ ପଦ୍ମା - ମୋର ଏଇ ଶେଷ କଥା !

ପଦ୍ମା— ନା, ମୁଁ କିଛି ଶୁଣିବାକୁ ଚାହେଁ ନାହିଁ - ତୁମେ ଯାଅ । ଲଜ୍ଜା ନାହିଁ ସେନାପତି, ଶତ୍ରୁସେନା ପୁରାଙ୍ଗନରେ ନୃତ୍ୟ କରୁଛି - ଆଉ ବୀର ତୁମେ କ୍ଷତ୍ରିୟ ତୁମେ - ରାଜ୍ୟର ସେନାପତି ଆଉ ରାଜକୁମାରୀର କରାଭିଳାଷୀ ତୁମେ ଜୟନ୍ତ ରାଓ - ତୁମେ ଆସି ଗୃହକୋଣରେ, ନାରୀ ଅଞ୍ଚଳ ପ୍ରାନ୍ତରେ...

ଜୟନ୍ତ— (ବିଚ୍ଛଳିତ ହୋଇ ହାତ ଟେକି) ନା - ମୋର ଲଜ୍ଜା ନାହିଁ । ମୋ କଥା ଶୁଣ ?

ପଦ୍ମା— ଏପରି ନିର୍ଲଜ୍ଜ କାପୁରୁଷର କଥା ଶୁଣିବାକୁ ମୋର କର୍ଣ୍ଣ ନାହିଁ - ଯାଅ ସେନାପତି ।

ଜୟନ୍ତ— ନା ପଦ୍ମା - ନା ନା - ତୁମକୁ ଆଜି ମୋ କଥା ଶୁଣିବାକୁ ହେବ । ତୁମେ ପୁରୁଷୋତ୍ତମର ପ୍ରେମାକାଂକ୍ଷିଣୀ ମୁଁ ଜାଣେ - ସେ ତୁମ ପାଇଁ ଭୀଷଣ ବାହିନୀ ନେଇ ଦ୍ୱାରରେ ସମୁପସ୍ଥିତ । ତା'ର ପଥରୋଧ କରିବାକୁ ବିଜୟନଗରରେ ମୋ ଛଡ଼ା ଆଉ ଶକ୍ତି ନାହିଁ । ଆଦେଶ କର ପଦ୍ମା, ଏହି ମୁହୂର୍ତ୍ତରେ ମୋର ଶକ୍ତି ମୁଁ ପ୍ରତ୍ୟାହାର କରିନିଏ । ଆଉ ପୁରୁଷୋତ୍ତମ ଓ ତୁମ ଭିତରେ ତିଳେ ବ୍ୟବଧାନ ନରହୁ । ଓଃ - ହୋ - ସେ ବଡ଼ କଷ୍ଟ ପଦ୍ମା । ମୁଁ ଯେଉଁ କଷ୍ଟରେ ପଦେ ପଦେ ଦଗ୍ଧ ହେଉଛି ସେହି ବିରହ ଦୁଃଖରେ ମୋର ପରମ ଶତ୍ରୁ ମଧ ନିୟନ୍ତ୍ରିତ । ତୁମର ମଧ ସେହି ଦୁଃଖ ପଦ୍ମା - ମୁଁ ତାହା ସହିପାରିବି ନାହିଁ । ଆଦେଶ କର - ଆଦେଶ କର ପଦ୍ମା - ଏହି ମୁହୂର୍ତ୍ତରେ ତୁମର ମିଳନ ଘଟାଇ ଦିଏଁ ପଦ୍ମା - ପଦ୍ମା ।

ପଦ୍ମା— ସ୍ତବ୍ଧ ରୁହ କାପୁରୁଷ ! ଏଇ ତୁମର ଯୋଦ୍ଧୃ ବ୍ୟବସାୟ - ଏହି ତୁମର କ୍ଷତ୍ରିୟ ଆଚ୍ଚରଣ ? (କୋଳାହଳ ଆହୁରି ସନ୍ନିକଟ) (ହାତଧରି) ଯାଅ, ଯାଅ ଭାଇ ଶୀଘ୍ର ଯାଅ, ଯୁଦ୍ଧ କର - ଦେଶକୁ ପରାଧୀନତାର ଶୃଙ୍ଖଳ ଜାଣି ଜାଣି ପିନ୍ଧାଇ ଦିଅ ନାହିଁ । ଯାଅ ଭାଇ, ମୁଁ ପୁରୁଷୋତ୍ତମ ଦେବଙ୍କୁ ଚାହେଁ ନାହିଁ । ଆଉ ସେ ମୋତେ କାହିଁକି ନେବାପାଇଁ ଆସିଛନ୍ତି ଜାଣ ?

ଜୟନ୍ତ— ନା - ନା - ତ ?

ପଦ୍ମା— ମୋତେ ଚଣ୍ଡାଳ ହସ୍ତରେ ସମର୍ପଣ କରିବାକୁ, ଶୁଣିଲ ? ଶୁଭୁଛି ? ତଥାପି ତୁମର ରକ୍ତ ଉଷ୍ମ ହୋଇ ଉଠୁ ନାହିଁ । ତଥାପି ତୁମେ ଜଡ଼ କାଷ୍ଠପିଣ୍ଡ ପ୍ରାୟ ଏଠାରେ ରହିଛ !

ଜୟନ୍ତ— ଏହା ମିଥ୍ୟା - ଏହା କେବେ ସତ୍ୟ ହୋଇ ନପାରେ, ପଦ୍ମା ।

ପଦ୍ମା— ନା - ନା ଭାଇ, ଏହା ସତ୍ୟ । ଅତି କଠୋର, କଠିନ ସତ୍ୟ । ତଥାପି ତୁମେ ଯଦି ଯୁଦ୍ଧକୁ ଫେରିବ ନାହିଁ, ତେବେ ମୋର ଗୋଟିଏ କାର୍ଯ୍ୟ କରିବ ।

ଜୟନ୍ତ— ଆଦେଶ କର, ପଦ୍ମା !

ପଦ୍ମା— ତୁମର ସେଇ ଶତ୍ରୁରକ୍ତରଞ୍ଜିତ ତରବାରୀ ମୋତେ ଦିଅ - ଦିଅ - ବିଳମ୍ବ କରନା - (ନେପଥ୍ୟେ ଜୟ ଜୟ କୋଳାହଳ)

ଜୟନ୍ତ— (ତରବାରୀ କାଢ଼ୁଁ କାଢ଼ୁଁ କୋଷ ବନ୍ଦ କରି) ବୁଝୁଛି ରାଜକୁମାରୀ, ତୁମର ଉଦ୍ଦେଶ୍ୟ ବୁଝିଛି । ଓଃ - ଲଜ୍ଜା - ମୋର ଏ ଦୁର୍ବଳତା କାହିଁକି ହେଲା ? ତୁମେ ସତରେ କ'ଣ ଆତ୍ମହତ୍ୟା କରିବାକୁ ଚାହଁ ପଦ୍ମା । ତେବେ କ'ଣ ଏହା ସତ୍ୟ ଯେ ପୁରୁଷୋତ୍ତମ ଦେବ ଚଣ୍ଡାଳ ହସ୍ତରେ ତୁମ୍ଭଙ୍କୁ ଦେବାକୁ ଚାହେଁ !

ପଦ୍ମା— (ଜାନୁପାତ କରି) ସେନାପତି, ଜୟନ୍ତ ଭାଇ, ଏଇ ବକ୍ଷ ମୁଁ ତୁମ ଆଗରେ ଉନ୍ମୁକ୍ତ କରିଦେଉଛି । ତୁମର ସେହି ନିଷ୍ଠିନ୍ତ ତରବାରୀଟି ନିଷ୍ଠିନ୍ତ ମନରେ ଏହିଠାରେ ଆମୂଳ ବିଦ୍ଧ କରିଦିଅ, ଭାଇ । ପରେ ଯୁଦ୍ଧ କରିବା ନକରିବା ତୁମ ଇଚ୍ଛା ! ଦିଅ, ଆଉ ବିଳମ୍ବ କରନାହିଁ । ତରବାରୀ ଗ୍ରହଣ କର ଜୟନ୍ତ ରାଓ !

ଜୟନ୍ତ— (କାଢ଼ି) ଉଠ ରାଣୀ - ଉଠ ପଦ୍ମାବତୀ - ତରବାରୀ ଗ୍ରହଣ କଲି, କିନ୍ତୁ ସେ ତୁମ କୋମଳ ବକ୍ଷରେ ବିଦ୍ଧ କରିବାକୁ ନୁହଁ । (ଆସ୍ଫାଳନ କରି) ଶତ୍ରୁ ରକ୍ତ, ଶତ୍ରୁରକ୍ତରେ ସ୍ନାନ କରାଇବା ପାଇଁ । ଏଇ ଶେଷ ଯୁଦ୍ଧ ମୋର, ପଦ୍ମାବତୀ । ମୋର ଏଥର ଜୟ ନହେଲେ ମୃତ୍ୟୁ (ବେଗେ ପ୍ରସ୍ଥାନ)

ପଦ୍ମା— ହାୟ ମୁଁ ଯେ ବନ୍ଦିନୀ - ନହେଲେ ଶଶୀ ଗଲା କୁଆଡ଼େ ? (କାଞ୍ଚିରାଜ, ରାଣୀ, ପଣ୍ଡିତ, ସତ୍ୟବତୀ, ଶଶୀ ପ୍ରବେଶ କଲେ)

କାଞ୍ଚିରାଜ— କାହିଁଗଲା ସେନାପତି । ନା - ପଣ୍ଡିତେ ଆଉ କିଛି ଆଶା ନାହିଁ । ନଗର ତୋରଣ ଓ ପ୍ରାଚୀର ଯେବେ ଭାଙ୍ଗିଛି - ସେତେବେଳୁ ମୁଁ

ଜାଣେ ବୋଧହୁଏ ସେନାପତି ହତ । ଯାଉ - ରାଣୀ ! ପଦ୍ମାକୁ ମୁକ୍ତ କରିଦିଅ ।

(ରାଣୀ ପଦ୍ମାକୁ ମୁକ୍ତ କରିବା ଓ ଦୁହେଁ କୋଳାବଦ୍ଧ) ଆସ ସମସ୍ତେ ମୋ ଆଗରେ ଧାଡ଼ି ହୋଇ ଠିଆ ହୁଅ । ସମସ୍ତ ପୁର ନାରୀ । ପଣ୍ଡିତେ ତୁମର କି ଅଭିପ୍ରାୟ !

ପଣ୍ଡିତେ— (ଥରି) ମହାରାଜ ! ମହାରାଜ ! ମୁଁ ପଳାଏଁ (ଚେଷ୍ଟା କରିବା) କିନ୍ତୁ ଗୋଡ଼ ଚଳୁନାହିଁ ମହାରାଜ (ଥରିବା) ?

କାଞ୍ଚିରାଜ— ତୁମେ ମଧ ଏହି ନାରୀମାନଙ୍କ ସହିତ ଧାଡ଼ିରେ ଛିଡ଼ା ହୁଅ । (ତରବାରୀ କାଢ଼ି) ଆସ - ସମସ୍ତେ ପ୍ରସ୍ତୁତ ?

(ସମସ୍ତେ ଆଖି ବୁଜି କରଯୋଡ଼ି ରହିବା)

ପଣ୍ଡିତେ— (ଧାଡ଼ିରେ ଛିଡ଼ା ହୋଇ) ମହାରାଜ ! ମହାରାଜ ! ମୋତେ ସମସ୍ତଙ୍କ ଆଗରେ ଦିଅନ୍ତୁ ଶେଷ କରି । ନା - ନା ମୋ ବୋପା ଲୋ । ସମସ୍ତଙ୍କ ପଛରେ ମହାରାଜ ! ମହାରାଜ ! ଏତେ ଖଣ୍ଡାଟା ଟିକିଏ କଅଁଳ କରିଦବା ହଉ । (ତରବାରୀ ଛାତିରେ ଲାଗିବାରୁ ବୁଲି ପଡ଼ି) ମହାରାଜ, ଆଗପଟ ନୁହଁ (ପଛପଟେ) । ପିଠି ଦେଖାଇ ଥରୁଥିବା)

(ସଦଳବଳେ ଜୟ ଜଗନ୍ନାଥ କହି ରଙ୍ଗରାଓ, କନକ ପୁରୁଷ ବେଶରେ, ଉତ୍କଳ ସେନାପତି ପ୍ରଭୃତି ପ୍ରବେଶ କଲେ)

ରଙ୍ଗରାଓ— କ୍ଷାନ୍ତ ହୁଅନ୍ତୁ କାଞ୍ଚିରାଜ ! (କନକ ପଦ୍ମାବତୀଙ୍କ ପାଖକୁ ଧାଇଁଯିବା)

କନକ— ସହୀ - ସହୀ !

ପଦ୍ମା— ଇଏ ମୋ ସହୀ କନକ ତ ? (କୋଳ କରିବା)

କାଞ୍ଚିରାଜ— ସେ ଚାଣ୍ଡାଳ ରାଜା କାହିଁ ? ତାହାରି ସହିତରେ ଥରେ ଯୁଦ୍ଧ - ତା'ପରେ ମୃତ୍ୟୁ (ବେଗେ ପ୍ରସ୍ଥାନାଭିମୁଖେ, ସେନାପତି ବାଧା ଦେବା)

ରଙ୍ଗରାଓ— ଛାଡ଼ିଦିଅ ସେନାପତି । ମହାରାଜ ଶିବିରରେ । କିଛି ଚିନ୍ତା ନାହିଁ । ମହାରାଜଙ୍କର ଆଦେଶ କାହାରିକୁ ବନ୍ଦୀ କରିବା ନାହିଁ । ପଦ୍ମାବତୀ - ରାଜକୁମାରୀ - ଏଇ ନିଅନ୍ତୁ - ରାଜାଧିରାଜ - ଉତ୍କଳ ଗଜପତି ପୁରୁଷୋତ୍ତମ ଦେବଙ୍କର ବିଜୟ ସଂକେତ (ମୁଦ୍ରିକା ଦେବା) । ସେ ଆହତ ନହୋଇଥିଲେ ତୁମ୍ଭଙ୍କୁ ସଙ୍ଗରେ ନେବାକୁ ନିଜେ ଆସିଥାନ୍ତେ । (ଦେଇ ନତ ହେବା)

ପଦ୍ମା— (ଗ୍ରହଣ କରି) ଏ ପରିହାସ ନୁହଁ ସହୀ ? ଆଉ ଏ ସଂକେତ ବା ଉଦ୍ଦେଶ୍ୟ କ'ଣ ସହୀ ? ମୁଁ ପରା ଚାଣ୍ଡାଳ ଗୃହିଣୀ ହେବା ପାଇଁ ପ୍ରସ୍ତୁତ ଯିବି ?

କନକ— (ଅଧୋବଦନ) କ'ଣ ସତେ ? କ'ଣ ସତେ ମହାରାଜଙ୍କ ଠାରେ ଏ କୋମଳତାଟିକ ସମ୍ଭବ ହେଲା । ନା - ରଙ୍ଗରାଓର ଏ ବୁଦ୍ଧି ! ମହାରାଜା ତ ଆହତ, ହତଚେ଼ତ ନଥିଲେ । ଏ କି ବିଡ଼ମ୍ବନା । ହାୟ ସହୀର ମୋର କ'ଣ ହେବ କେଜାଣି ?

ରଙ୍ଗରାଓ— ନା - ନା କାଞ୍ଚିଜେମା, ଆପଣ ଅନ୍ୟଥା ଭାବିବେ ନାହିଁ । ମତେ ବିଶ୍ୱାସ କରନ୍ତୁ ପଦ୍ମାବତୀ, ପୁରୁଷୋତ୍ତମ ଦେବ ତୁମରି ଠାରେ ପ୍ରାଣ ବିକିଛନ୍ତି । ତେଣିକି ଜଗନ୍ନାଥଙ୍କର ଇଚ୍ଛା । ଏବେ ବିଜେ କରନ୍ତୁ ଦେବୀ ।

କନକ— ଆ - ହସୀ (ଅଗ୍ରସର ହେବା...)

ପଦ୍ମା — ଚାଲନ୍ତୁ - ଚାଲ ସହୀ - ମୁଁ ଦେଖିବି । ସେ କିପରି ପୁରୁଷ ଓ ସେ କିପରି ଠାକୁର । ଅବଳା ନାରୀର ହୃଦୟ ନେଇ ଏ ରହସ୍ୟ ଭିଆଇଅଛନ୍ତି - ସେ ଯେପରି ପୁରୁଷୋତ୍ତମ - ସେହିପରି ପୁରୁଷ ସିଂହ ଆଉ ସେ କିପରି ଦେବତା ! (ପୁରନାରୀ ସହ କନକ ଓ ପଦ୍ମାବତୀଙ୍କ ପ୍ରସ୍ଥାନ)' (ବ୍ୟସ୍ତ ହେଇ ଉତ୍କଳ ମନ୍ତ୍ରୀଙ୍କ ପ୍ରବେଶ)

ମନ୍ତ୍ରୀ— ଏହି ଯେ ନଳଗୋଣ୍ଡାଧୀଶ - ଏହି ଯେ ସେନାପତି । ବଡ଼ ସୁଖବର ! ବକ୍ସି ଗଣଦେବ ରାଉତରାଏ ସୁଲତାନ ବାହିନୀକୁ ଛତ୍ରଭଙ୍ଗ କରି ବିଧ୍ୱସ୍ତ

କରି ଫେରି ଆସିଛନ୍ତି । ଏଥର ଆଉ ସେ ମୁସଲମାନର ଓଡ଼ିଆ ସହିତ କୌତୁକ କରିବାର ଅଭିଳାଷ ରହିବ ନାହିଁ ।

ରଙ୍ଗରାଓ— କିନ୍ତୁ ବିକ୍ରମ ସାମନ୍ତଙ୍କୁ ବନ୍ଦୀ କରିଛନ୍ତି ଟି ? ଆଉ ସେ ସୁଲତାନ ?

ମନ୍ତ୍ରୀ— ନା, ଗଣଦେବ ରାଉତରାଏ ଯଥାସାଧ ଚେଷ୍ଟା ସତ୍ତ୍ୱେ ସେ ଦୁହିଁଙ୍କୁ ବନ୍ଦୀ କରିପାରିଲେ ନାହିଁ । ସମ୍ଭବତଃ ଆକ୍ରମଣ ସଙ୍ଗେ ସଙ୍ଗେ ସେ ଦୁହେଁ ପଳାୟନ କରିଥିଲେ । କିନ୍ତୁ କାହାନ୍ତି କାଞ୍ଚିହେମା ? ଆପଣମାନେ ଏ ଦିଗକୁ ଆସିବାର ଶୁଣି ମୁଁ ଆସିଛି । ହେମାମଣିଙ୍କୁ ମୋ ଶିବିରରେ ଖେମିଡ଼ି ହେମାଙ୍କ ସହିତ ରଖାଇବାର ବନ୍ଦୋବସ୍ତ କରିଆସିଛି ।

ରଙ୍ଗରାଓ— ଚାଲନ୍ତୁ ତା'ହେଲେ - ସେମାନେ ଏକ ବାଟରେ ଯାଉଛନ୍ତି । ମନ୍ତ୍ରୀ - ଚାଲନ୍ତୁ ।

ଯବନିକା

\+ + + + +

## ସପ୍ତମ ଅଙ୍କ

ସ୍ଥାନ— ପୁରୀ ଅରୁଣ ସ୍ତମ୍ଭ ନିକଟରେ ବଡ଼ ଦେଉଳ ସମ୍ମୁଖ ।

କାଳ - ପ୍ରହରାଧିକ । ମନ୍ଦିର ସମ୍ମୁଖରେ କେତେକ ଯାତ୍ରୀ ଯିବା ଆସିବା କରୁଥିଲେ ।

ଶଙ୍ଖ, ଘଣ୍ଟା, କାହାଳୀ ରବ ମନ୍ଦିର ଭିତରୁ ଶୁଭିଲା ଓ ମନ୍ଦିର ସିଂହଦ୍ୱାର ଫିଟିଲା । ବାହାରୁ ଜନତା ଭିତରୁ ହରିବୋଲ ! ଭିତରୁ ସର୍ବାଗ୍ରେ ପୁରୁଷୋତ୍ତମ ଦେବ ଛେରା ପହଁରା କରି ପ୍ରବେଶ । ପଛରେ ପଣ୍ଡା ପଡ଼ିହାରୀଗଣ ପଥ ଶୋଧନ କରୁଥିଲେ । ଏକ ପାର୍ଶ୍ୱରୁ ମନ୍ତ୍ରୀ, ରଙ୍ଗରାଓ, କନକ, ଶଶୀକଳାଙ୍କ ସହିତ ପଦ୍ମାବତୀ ପ୍ରବେଶ କଲେ ।

ଅନ୍ୟମାନେ ପରାମର୍ଶ କରୁଥିବା ବେଳେ ପଦ୍ମାବତୀ ଠାକୁରଙ୍କୁ ଚାହିଁ ନତଜାନୁ ହୋଇ କହିଲେ !

ଆଜି ମୋର ଅଭିସାର ତୁମ୍ଭ ପାଖେ ନାଥ
ସେହି ଏକ ମହାଶୁଭକ୍ଷଣେ ତୁମରି ଚରଣେ ।
ତୁମରି ଚରଣେ ଢଳା ଲୋତକରୁ ଗୀତ
ନୟନର ନବଜ୍ୟୋତି ଦେଇ ପ୍ରଥମ ଦର୍ଶନ
ମନପ୍ରାଣ କଲି ସମର୍ପଣ ଏହିଠାବେ
ହେ କଠିନ ଦାରୁଭୂତ ପ୍ରଭୁ, କେଉଁ ପାପ ବଳେ
ଆଜି ପୁଣି ଏହି ପୁଣ୍ୟ ସ୍ଥଳେ
ହେବ ମୋର ହୃଦୟ ବିକ୍ରୟ ପୁନର୍ବାର ?
ତୁମରି ଆଦିଷ୍ଟ ସ୍ୱୟମ୍ବରେ ନିବେଦିତ
ଏ ଦେହଟି ହେବ ମୋର ପୁନଃଅର୍ପିତ
ଅପର ହସ୍ତେ - ହେବି ଦ୍ୱିଚାରିଣୀ ?
ଏହି କି ତୁମରି ଇଚ୍ଛା ହେ ମଙ୍ଗଳମୟ
କର ମୋତେ ଶକ୍ତ ତେବେ କଠିନୁ କଠିନ
ଜୀବନର ଏକମାତ୍ର ଧନ ମୋର -
ପ୍ରାଣର ସ୍ଥିର ବିଶ୍ୱାସ ନିଅ ଏବେ କାଢ଼ି,

ହୁଏ ମୁଁ ନିଶ୍ଚିନ୍ତ ହୋଇ ଚଣ୍ଡାଳଗାମିନୀ,
ହେଉ ତୁମ ଇଚ୍ଛା ପରିପୂର୍ଣ୍ଣ ।

(ଇତି ମଧ୍ୟରେ ପୁରୁଷୋତ୍ତମ ଦେବ ମନ୍ଦିର ମଧ - ବେଢ଼ାରେ ଅଦୃଶ୍ୟ ହୋଇଗଲେ, ପଣ୍ଡାପଡ଼ିହାରୀ ସହ)

ପଦ୍ମାବତୀ ଉଠିଲେ । ଚାରିଆଡ଼କୁ ଚାହିଁ ମନ୍ତ୍ରୀଙ୍କୁ କହିଲେ, "ମନ୍ତ୍ରୀବର ଆଉ ତେବେ ବିଳମ୍ବ କାହିଁକି ? ଦୁଇମାସ କାଳ ଆପଣଙ୍କ ଚେଷ୍ଟାରେ ମୋତେ ଗ୍ରହଣ କରିବା ପାଇଁ ଏ ଦେଶରେ ଚଣ୍ଡାଳ ମିଳି ନାହାନ୍ତି ? ଆଜି ପୃଥିବୀର ଯାବତୀୟ ଚଣ୍ଡାଳ ମହାପ୍ରଭୁଙ୍କ ଘୋଷଯାତ୍ରା ପାଇଁ ଏଠାରେ ସମବେତ । ଏହି ଦିନ ଅପେକ୍ଷାରେ ଆପଣ ମୋତେ ଆଜିଯାଏଁ ଆପଣଙ୍କ ଘରେ ପ୍ରତିପାଳନ କରାଇଆସିଲେ । ଶୀଘ୍ର ମତେ ପାତ୍ରସ୍ଥ କରାନ୍ତୁ ।" (କନକ ଓ ଶଶୀକଳା ଧାଇଁ ଆସି ତାଙ୍କୁ କୁଣ୍ଢାଇ ଧରିବା)

ମନ୍ତ୍ରୀ୦ ସମସ୍ତ ପ୍ରଜାମଣ୍ଡଳୀ ଶୁଣ ! ଏହା ମହାରାଜାଙ୍କ ଆଦେଶ - କାଞ୍ଚିରାଜଜେମା ଏହି ପଦ୍ମାବତୀ, ସୁନ୍ଦରୀ ଲଳନା ହୋଇବେ ଅର୍ପିତ ଆଜି ଚଣ୍ଡାଳର ହସ୍ତେ । କିଏ ଅଛ ଚଣ୍ଡାଳ ତେବେ ଆସ ତ୍ୱରା କରି (ରହି) ନିର୍ଭୟରେ ଆସ !

(ଜନତା ସ୍ତବ୍ଧ ବିସ୍ମୟରେ ଚାହିଁ ରହିବା ସମୟରେ ଛୋଟେଇ ଛୋଟେଇ ଓ ଜୀର୍ଣ୍ଣ ବେଶରେ ଛିନ୍ନ ବସ୍ତ୍ର ପରିହିତ ବିକ୍ରମର ଏକ ପାର୍ଶ୍ୱରୁ ପ୍ରବେଶ)

ବିକ୍ରମ— ଦିଅ, ଦିଅ ମୋତେ ପଦ୍ମାବତୀ ! (ମନ୍ତ୍ରୀ ପାଖରେ ନତଜାନୁ)

ମନ୍ତ୍ରୀ— କିଏ ତୁମ୍ଭେ ? ସତେ କି ଚାଣ୍ଡାଳ ? ପରିଚୟ ତବ ?

ରଙ୍ଗରାଓ— (ଦେଖି) ଏ ତ ବିକ୍ରମ ପରି ଦେଖାଯାଉଛି !

ମନ୍ତ୍ରୀ— ଏଁ - ନା - ନା ଏ କଦାପି ଉତ୍କଳ ରାଜପୁତ୍ର ବିକ୍ରମ ହୋଇନପାରେ (ଦେଖି) ଏଁ - ଏଁ ସତେତ । ବିକ୍ରମ ପରି ଦେଖାଯାଉଛି ତ !

ବିକ୍ରମ— ବିକ୍ରମ ଦେବ ମୋ ନାମ ଥିଲା ଦିନେ ସତ୍ୟ । କିନ୍ତୁ ବହୁ ପୁରାତନ କଥା ତାହା, ଆଜି ମୁଁ ଚାଣ୍ଡାଳ । ହାଃ ହାଃ ହାଃ - ଦିଅ, ଦିଅ ମତେ ପଦ୍ମାବତୀଙ୍କୁ ଦିଅ - ରାଜାଦେଶ ପାଳନ କର ମନ୍ତ୍ରୀ !

ମନ୍ତ୍ରୀ— ଛି, ଛି, ବିକ୍ରମ ସାମନ୍ତ ଲଜ୍ଜା ନାହିଁ । ଯାଅ କିଏ ଅଛରେ -

ବିକ୍ରମ— (ଉଠି) ଲଜ୍ଜା - ଲଜ୍ଜା - ସେଟା କି ପଦାର୍ଥ - ମତେ ଲଜ୍ଜା ହେବ କାହିଁକି ? ଆଜି ତ୍ରିଲୋକ ଦୁର୍ଲଭ ପଦ୍ମାବତୀ ସୁନ୍ଦରୀ - କାଞ୍ଚିରାଜକନ୍ୟା - ଉତ୍କଳମଣି - ପୁରୁଷୋତ୍ତମ ଦେବଙ୍କ ହୃଦୟବଲ୍ଲରୀ ପଦ୍ମାବତୀ ଚଣ୍ଡାଳ ହସ୍ତରେ ପତିତ ହେବେ । ଆଜି ପୁଣ୍ୟ ବଡ଼ ଦାଣ୍ଡରେ, ଲଜ୍ଜା, ଲଜ୍ଜା କାହାକୁ ଲଜ୍ଜା - ସେ ଆଜି ନିର୍ବାସିତ ହେଇଛି ମନ୍ତ୍ରୀ । ଦିଅ ମତେ ପଦ୍ମାବତୀଙ୍କୁ ଦିଅ । ମୁଁ ଯେ ଚାଣ୍ଡାଳ - ଦେଖୁନାହଁ । ଏହି ଉଦ୍‌ଗ୍ରୀବ ଜନତା ସତ୍ୟପାଳନରେ ପରାକାଷ୍ଠା ଦେଖିବାକୁ ବ୍ୟାକୁଳ ହେଇ ଉଠିଲେଣି...

ମନ୍ତ୍ରୀ— ଯାଅ ବିକ୍ରମ - ତୁମେ ଚାଣ୍ଡାଳ ନୁହଁ ! ବୃଥା ବାକ୍ୟ ବ୍ୟୟ କରନାହିଁ ।

ବିକ୍ରମ— ମୁଁ ଚାଣ୍ଡାଳ ନୁହଁ ? ମୁଁ ଚାଣ୍ଡାଳ ନୁହେଁ ତ ଚାଣ୍ଡାଳ କିଏ ? ହାଃ ହାଃ - ତୁମ୍ଭମାନଙ୍କର ଏ ଦଶା କିଏ କରିଛି ଜାଣ ମନ୍ତ୍ରୀ । ପୁରୁଷୋତ୍ତମ ଦେହରେ ଯେଉଁ ରାବଣର ଚିତା ଅଗଣିତ ଲେଲିହାନ ଜିହ୍ୱା ବିସ୍ତାର କରି ଏହି ଦାଣ୍ଡରେ ତାକୁ ଦଗ୍ଧ କରୁଅଛି - ସେ ଚିତାର ରଚୟିତା କିଏ ? ଜାଣ ? ମୁଁ - ମୁଁ ଚାଣ୍ଡାଳ ନୁହଁ । ମନ୍ତ୍ରୀ ? ଏହି ଆଲୋକ ସାମାନ୍ୟ ସୁରସୁନ୍ଦରୀ ପଦ୍ମାବତୀ - ତା'ର ଚଣ୍ଡାଳ ଗମନର ପଥ କିଏ ପରିଷ୍କାର କରିଛି ମନ୍ତ୍ରୀ ଜାଣନା - ଜାଣନା ସେ ଏହି ଚାଣ୍ଡାଳ !

ମନ୍ତ୍ରୀ— ଖୁବ୍ କରିଛ ରାଜପୁତ୍ର । ଢେର ହୋଇଛି - ତୁମ୍ଭକୁ ଆଉ କିଛି କରିବାକୁ ହେବ ନାହିଁ । ଯାଅ - ଯାଅ । ତୁମ୍ଭକୁ ପଦ୍ମାବତୀଙ୍କୁ ଦିଆଯିବ ନାହିଁ । ତୁମେ ଚାଣ୍ଡାଳ ନୁହଁ । ତୁମେ ପିଶାଚ, - ତୁମେ ଦାନବ - ତୁମେ ଶୈତାନ, ତୁମେ ପୁଣି ଚାଣ୍ଡାଳ ? ଚାଣ୍ଡାଳ ଯେ ତଥାପି ମନୁଷ୍ୟ । ସେ ତା'ର ଜନ୍ମ ପାଇଁ ଦାୟୀ ନୁହଁ । ଅଥଚ୍ ସେହି ଜନ୍ମର ଫଳ ସ୍ୱରୂପ ଯିଏ ଆପାମର ସମସ୍ତଙ୍କର ମଳମୂତ୍ର ଯାବତୀୟ ଆବର୍ଜନା ସ୍ୱହସ୍ତରେ

ପରିଷ୍କାର କରି କରି ମନୁଷ୍ୟତ୍ୱ ଓ ପୁରୁଷତ୍ୱର ଜୟଧ୍ୱଜା ଉଡ଼ାଉଥିବ ଯୁଗ ଯୁଗ ଧରି । ତୁମେ ଚଣ୍ଡାଳ !

ବିକ୍ରମ— (ଭାବି ପୁଣି ନତଜାନୁ ହୋଇ) ମନ୍ତ୍ରୀ - ମନ୍ତ୍ରୀ ମୁଁ ଚଣ୍ଡାଳ । ମୁଁ ଚଣ୍ଡାଳର ମଧ୍ୟେ ଚଣ୍ଡାଳ । ମୁଁ ଆପାମର ଚଣ୍ଡାଳର ମଳମୂତ୍ର ସଫା କରିବାକୁ ପ୍ରସ୍ତୁତ । ଯଦି ଖାଲି ପଦ୍ମାବତୀଙ୍କୁ ପାଏ । ଓଃ - ହୋଃ - ଏତେ କରି ମଧ ପଦ୍ମାବତୀର ଯୋଗ୍ୟ ହେଇପାରିଲି ନାହିଁ । ତଥାପି ଚଣ୍ଡାଳ ହେଇପାରିଲି ନାହିଁ । ଦେବ ନାହିଁ ଦେବ ନାହିଁ ? ଉଠି ଉଦର ଜ୍ୱାଳାରେ ବିଷ୍ଠା ଉଦ୍ଧାରରୁ ଅନ୍ନ ଉଠାଇ ଖାଉଛି, ତୃଷାର ତାଡ଼ନାରେ ନାଳନର୍ଦ୍ଦମାରୁ ଦୁର୍ଗନ୍ଧମୟ ମୂତ୍ର ପୂର୍ଣ୍ଣ କର୍ଦ୍ଦମାକ୍ତ ଜଳପାନ କରିଛି ତଥାପି ମୁଁ ଚଣ୍ଡାଳ ନୁହେଁ ! ଆଚ୍ଛା ଯାଏଁ ତେବେ, ଏଥର ସ୍ୱହସ୍ତରେ ପୃଥିବୀର ଯାବତୀୟ ଜଞ୍ଜାଳ ପରିଷ୍କାର କରିବି । କନା ପହଁରାରେ ଯାବତୀୟ ମଳମୂତ୍ରାଗାର ଏହି ଦଶ ଆଙ୍ଗୁଳିରେ ପହଁରିବି । ଦେଖିବି, ଦେଖିବି ମନ୍ତ୍ରୀ - କିପରି ପଦ୍ମାବତୀଙ୍କୁ ମୋତେ ନ ଦବ (ବେଗେ ପ୍ରସ୍ଥାନ)

(ନାରୀଗଣ ମୁହଁ ଫେରାଇବା)

ମନ୍ତ୍ରୀ— (ନତଜାନୁ) ହେ ଜଗନ୍ନାଥ - ହେ ମହାବାହୁ । ଏ ବାତୁଳ ପ୍ରତି ସହାୟ ହୁଅ । (ଉଠି) କିଏ ଅଛିରେ ଯାଅ ଦେଖ କୁଆଡ଼େ ଗଲେ । ହେ ଦୀନବନ୍ଧୁ ! ଏ ବୃଦ୍ଧ ଅଥର୍ବକୁ ତା'ର କର୍ତ୍ତବ୍ୟ କରିବାକୁ ଦିଅ । ପ୍ରଜାବୃନ୍ଦ ଶୁଣ - ତମ ଭିତରେ କେହି କ'ଣ ଚାଣ୍ଡାଳ ନାହିଁ ? ପ୍ରକୃତ ଚାଣ୍ଡାଳ - ଯେ ପଦ୍ମାବତୀଙ୍କ ପାଣିଗ୍ରହଣ କରିପାରିବ ନା ? କେହି ଆସିଲ ନାହିଁ । କେହି ଆସିଲ ନାହିଁ ? ଏ ଦେଶରେ କ'ଣ ଚାଣ୍ଡାଳ କେହି ନାହିଁ ? ଚାଣ୍ଡାଳ ଅଦ୍ଭୁତ ଅବା ଚାଣ୍ଡାଳ ଆଚାରୀ - କରିବ ଗ୍ରହଣ ନାନା ରତ୍ନବିଭୂଷିତା ରାଜକନ୍ୟା ପଦ୍ମାବତୀ (ଜନତା ଭିତରୁ 'କେଉଁ ଚଣ୍ଡାଳଟାର ଏତେ ସାହସ ହବ', 'ଧିକ୍ ଧିକ୍ ଉତ୍କଳ ଗଜପତିଙ୍କୁ ଧିକ୍' 'ତାଙ୍କର ଏ ଅଭିହିତ ଆଜ୍ଞାକୁ ଧିକ୍' ପ୍ରଭୃତି କଥା ଶୁଣାଗଲା ।

(ଏତିକି ବେଳେ ପୁନରାୟ ମନ୍ଦିର ଦ୍ୱାର ଫିଟିଲା ଓ ପୁରୁଷୋତ୍ତମ ଦେବ ଅଗ୍ରେ ଅଗ୍ରେ ଛେରାପହଁରା କରି କରି ପ୍ରବେଶ କଲେ - ପଛରେ ସୁଦର୍ଶନ ଚକ୍ରକୁ ପହଣ୍ଡି କରାଇ ପଣ୍ଡାପଢ଼ିହାରୀଗଣ ଆସୁଥିଲେ)

ବୈଷ୍ଣବୀ— (ହଠାତ୍ କଳହାସ୍ୟ ସହିତ ପ୍ରବେଶ କରି) ଚଣ୍ଡାଳ ଆଚାରୀ ଖୋଜ ଅନ୍ଧ ମନ୍ତ୍ରୀ, ଦେଖ ଚକ୍ଷୁମେଲି !

ମନ୍ତ୍ରୀ— (ଉଠି ଅଗ୍ରସର ହୋଇ ଓ ହସି ନତଜାନୁ ହୋଇ) ଧନ୍ୟ ମହାପ୍ରଭୁ (ଉଠି) ଅଗ୍ରସର ହୋଇ ମହାରାଜ ! ପଦ୍ମାବତୀଙ୍କୁ ଗ୍ରହଣ କରିବାକୁ ଚଣ୍ଡାଳ ଅଭାବ । ଏଥିକୁ ମହାରାଜ ନିଜେ ବର୍ତ୍ତମାନ ଚଣ୍ଡାଳ ଆଚାରୀ, ତେଣୁ ମହାରାଜଙ୍କ ହସ୍ତରେ ପଦ୍ମାବତୀଙ୍କୁ ଛାମୁଙ୍କ ଆଦେଶ ମତେ ନିକ୍ଷେପ କଲି ।

(ଜନତା ଭିତରୁ ଧନ୍ୟ ମନ୍ତ୍ରୀ, ଜୟ ଜଗନ୍ନାଥଙ୍କ ଜୟ ! ଗଜପତିଙ୍କର ଜୟ ଓ ଜୟ ମହାରାଣୀ ପଦ୍ମାବତୀଙ୍କର ଜୟ, ପ୍ରଭୃତି ଧ୍ୱନିରେ କୋଳାହଳ । ଏତିକିବେଳେ ଅଚଞ୍ଚଳ ଚରଣରେ ପଦ୍ମାବତୀଙ୍କ ପାଖକୁ ଆଗେଇ ଆସିଲେ ଗଜପତି)

ପୁରୁ— କ୍ଷମାକର ରାଜକୁମାରୀ । ଏ ଦାସ ଚାଣ୍ଡାଳ ଅଧମ । ସେ କି ପଦ୍ମାବତୀଙ୍କର ଯୋଗ୍ୟ ଦାସ ହେଇପାରେ କେବେ ?

(କାଞ୍ଚିରାଜ ନରସିଂହ ରାଓ ଭିକ୍ଷୁ ବେଶରେ ଗୁରୁଣ୍ଡି ଗୁରୁଣ୍ଡି ପ୍ରବେଶ - ଗୋଡ଼ ଓ ହାତରେ କଠାଉବନ୍ଧ ।)

କାଞ୍ଚିରାଜ— ମନ୍ତ୍ରୀ - ମୁଁ କନ୍ୟାଦାନ କରିବି - ମୋତେ ମୋ କନ୍ୟା ପଦ୍ମାବତୀଙ୍କୁ ପାତ୍ରସ୍ଥ କରିବାକୁ ଦିଅ - ମୁଁ କାଞ୍ଚିରାଜ ନରସିଂହ ରାଓ ।

ଉତ୍କଳମନ୍ତ୍ରୀ— ଯା ଯାଃ । ଏଇଟା ପୁଣି କିଏ ବା ? କାଞ୍ଚିରାଜ ନରସିଂହ ରାଓ !

କାଞ୍ଚିରାଜ— (ଆଣ୍ଠୁ ଉପରେ ଅଧା ଉଠି) ମୁଁ କାଞ୍ଚିରାଜ ନରସିଂହ ରାଓ ଆଜି ଓଡ଼ିଆ ବକ୍ଷକୁ ଫେରି ଆସିଛି । ଏଇ ପାଦ ଓ ହାତରେ ବାଟ ଚାଲି ଆସିଛି !

ପଦ୍ମାବତୀ— ରାଜ ଚାଣ୍ଡାଳ । ହେ ଦାରୁଭୂତ ମହାପ୍ରଭୁ ଜଗନ୍ନାଥଙ୍କ ଚଣ୍ଡାଳ । ଏ ଅମାର୍ଜିତ ହୃଦୟର ସତ୍ୟ ଚଣ୍ଡାଳ - (ମୌନ ରହିବା)

ପୁରୁ— ମତେ କ୍ଷମାକର, ଦେବୀ !

(ପୁରୁଷୋତ୍ତମ ଦେବ ବାହୁ ପ୍ରସାରଣ କରି ପଦ୍ମାବତୀଙ୍କ ମସ୍ତକରେ ସୁବର୍ଣ୍ଣ ସମାର୍ଜ୍ଜନୀ ସ୍ପର୍ଶ କରାଇ ପଦ୍ମାବତୀଙ୍କୁ ଗ୍ରହଣ)

ପଣ୍ଡାପଢ଼ିହାରୀଗଣ ପୁଷ୍ପ ବୃଷ୍ଟି କଲେ । ସମସ୍ତେ ଆଗ୍ରହରେ ସେ ଆଡ଼କୁ ଚାହିଁ ରହିଲେ ।

ଯବନିକା



# ପ୍ରତ୍ୟନ୍ତର

ଆଜି ଆସ ହେ ରାସ ବିହାରୀ
ଚିର ବିରହିଣୀ ଦୁଃଖିନୀ ରାଧିକା - ଅଞ୍ଚଳ ପ୍ରସାରି କରୁଛି ଗୁହାରି
ଗୋକୁଳେ ସକଳେ ପ୍ରେମ କାଙ୍ଗାଳିନୀ
ଶୁଣିବ ନାହିଁକି କାହାରି ଦାୟିନୀ
ଆଜିକ ଆସ ହେ ଗୋପୀ ମନୋହାରୀ ।୧।

(ଯଦି) କେଉଁ ସୋହାଗିନୀ ଭାଗ୍ୟବତୀଠାରେ ନାଥ, କରିଥାଅ ଢଣ
ନ କର ନ କର ନିରାଶ ବାଳାକୁ ଆସ ହେ ରାସବିହାରୀ
ଆସ ହେ ଆସ ହେ କୋଟିରୂପ ଧରି ସଭିଙ୍କ ପାଇଁ ଗୋପୀନାଥ
କୋଟିକୁ ଗୋଟିଏ ସଖୀକୁ ଗୋଟିଏ ସବୁ ଗୋପୀଙ୍କ ଧରହାତ
ତେବେ ଭଲା ପୂରୁ ରାଧା ମନସାଧ
ରାସେ ଶୁଣ ରାଧା ଗୁହାରି ।୨।

ତାରା— (ଗୀତ ଗାଉଁ ଗାଉଁ ପ୍ରବେଶ କରି ବସିବା ଘର ଚେୟାର, ଟେବୁଲ, ।ଫୁଲଦାନି ଇତ୍ୟାଦି ସଜାଡୁଥିବା ବେଳେ ଗୀତ - ଆଜି ଆସ ହେ ରାସବିହାରୀ, (ପ୍ରଥମ ପଦ ପର୍ଯ୍ୟନ୍ତ) - ଖଣ୍ଡେ ବହି ଚେୟାର ଉପରେ ଫିଙ୍ଗି ଦେଲାପରେ ।

ଆଚାର୍ଯ୍ୟ ସୁରେଶ— (ପ୍ରବେଶ କରି) ଓ ହୋ - ଆଜି ରସରସରେ ଭାସୁଚ ଯେ ତାରାଦେବୀ । ନା ନା ସଂକୋଚ କାହିଁକି, ଗାଅ ଗାଅ !

ତାରା— ନା, ସାର୍ - ସଂକୋଚ କ'ଣ - କାହିଁକି ? କିନ୍ତୁ ମୁଁ ଭାବୁଥିଲି - ଗୀତଟା ଅବଶ୍ୟ ଗାଉଥିଲି - କିନ୍ତୁ ଭିତରେ ବି ଜୋରରେ ଚିନ୍ତା କରୁଥିଲି - ଜାଣନ୍ତି ?

ଆଚାର୍ଯ୍ୟ ସୁରେଶ— (ହସି) କ'ଣ ଚିନ୍ତା କରୁଥିଲା ତାରା ଦେବୀ ? ରାଧାକୃଷ୍ଣ ପ୍ରେମତତ୍ତ୍ୱ ଲୀଳାମୃତ ?

ତାରା— (ଦାନ୍ତ ଚିପି) ନା ନା, ଆଚାର୍ଯ୍ୟ ଆପଣେ - ମୁଁ ରାମଚନ୍ଦ୍ର ଓ ଶ୍ରୀକୃଷ୍ଣଙ୍କ ଚରିତ୍ର ବିଷୟରେ ଭାବୁଥିଲି - ଗୋଟାଏ ଜାଗାରେ ପଢ଼ିଲି -

ଆ.ସୁ.— ପଢ଼ି ପଢ଼ି ମୁଣ୍ଡ ଖରାପ କରିବକି ତାରା ଦେବୀ ? ରାମ ଆଉ କୃଷ୍ଣ - ସେହି ପୁରୁଣା ଇତିହାସ - ସେହି ପୁରୁଣା ଚିତ୍ର ଓ ଚରିତ୍ର - କ'ଣ ସେଥିରେ ଅଛି - ବାସି - ରନ୍ଧି -

ତାରା— ପଢ଼ିଲି .......

ଆ.ସୁ.— ଏକଦମ୍ Out of date ! ସେଗୁଡ଼ା ପଢ଼ିବ ପୁଣି ସେ ବିଷୟ ନେଇ ଭାବିବ - ନିଶ୍ଚୟ ବିକଳ୍ପ ବୋଧ -

ତାରା— (ଗୋଡ଼ ବାଡ଼େଇ) ମୁଁ କ'ଣ ପଢ଼ିଲି, କ'ଣ ଭାବିଲି ଶୁଣିବେ କି ନା ?

ଆ.ସୁ.— ହଁ ହଁ କ'ଣ ପଢ଼ିଲଟି (କାନଡେରି)

ତାରା— ଟାକୁଇ ଥଟ୍ଟାର ବିଷୟ ନୁହେଁ ସାର - (ଆ.ସୁ.) ବଡ଼ ଗୁରୁତ୍ୱପୂର୍ଣ୍ଣ କଥା - ଅବଧାନ ହୋଇ ଶୁଣିବା ହେଉନ୍ତୁ -

ଆ.ସୁ.— (ମୁରୁକି ହସି) ଜୟ ଗୁରୁଜୀ । କ'ଣ ପଢ଼ନ୍ତୁ - ପଢ଼ାନ୍ତୁ ଏବେ...

ତାରା— (କାନଛାଡ଼ି ବହିକୁ ପଢ଼ିବା) (ବହିରୁ) "ରାମଚନ୍ଦ୍ରଙ୍କଠାରେ ସଂକୋଚନ ଓ କୃଷ୍ଣଚନ୍ଦ୍ରଙ୍କଠାରେ ପ୍ରସାରଣ ଅତି ସ୍ପଷ୍ଟଭାବରେ ପ୍ରକଟିତ ।" ରାମଙ୍କ ମନ ବଡ଼ ନୁହେଁ, କୃଷ୍ଣଙ୍କ ମନ ଅତି ବଡ଼ । ରାମଙ୍କ ମନ କ୍ଷୁଦ୍ର ବା ଅତି ନୀଚ୍ ନହେଲେ ହେଁ କୃଷ୍ଣଙ୍କ ତୁଳନାରେ ଛୋଟ, ଏଥିରେ ସନ୍ଦେହ ନାହିଁ । ସୀତା ବନବାସ ତାହାର ପ୍ରମାଣ ।

ଆ.ସୁ.— ଶ୍ରୀକୃଷ୍ଣ ମଧ ଗୋପୀମାନଙ୍କୁ ପରିତ୍ୟାଗ କରିଥିଲେ ତ ?

ତାରା — କିନ୍ତୁ କେବଳ ଶାରୀରିକ ଭାବରେ - 'କୋଟିକୁ ଗୋଟିଏ' ହୋଇ ଶାରୀରିକ ଉପସ୍ଥିତି ଯାହା - ମଥୁରାଗମନର ଅନୁପସ୍ଥିତି ମଧ ତାହା - ସ୍ଥଳ ଓ

କାଳର ସଂକୋଚ୍ ସୁପ୍ରସର ଗୋପୀପ୍ରେମରେ କାହିଁ ? ସବୁ ବନ୍ଧନର ବାହାରେ କୃଷ୍ଣ !

ଆ.ସୁ.— ହୁଁ - ଭାବିବାର କଥା । କିନ୍ତୁ ତାରାଦେଈ । ଏତେ ବଡ଼ ବଡ଼ କଥା ତମ ମୁଖରେ !

ତାରା— ଶ୍ରୀକୃଷ୍ଣ ହିଁ ମୋର ହିରୋ । ରାମଚନ୍ଦ୍ର ନୁହଁନ୍ତି - ତମେ କ'ଣ ରାମଚନ୍ଦ୍ରଙ୍କ ଭକ୍ତ ସୁରଭାଇ ? ହି - ହି -

ହାରା— (ନେପଥ୍ୟରୁ) 'ଅପମାନ' - 'ଅପମାନ' -

ତାରା— (ତାଳିମାରି) ହି - ହି -

ଆ.ସୁ.— (ଲଜ୍ଜିତ ଓ କ୍ରୁଦ୍ଧ ଭାବରେ ଠିଆ ହେଲେ ଓ ହଠାତ୍ ନେପଥ୍ୟକୁ ଚାହିଁ ବୁଲିପଡ଼ି ଚାଲିଯିବାକୁ ଉଦ୍ୟତ ହେଲାବେଳେ)

ହାରା— (ପ୍ରବେଶ କରି) -ହାଁ-ହାଁ- ଲଜ୍ଜାରେ ଆଉ ପଳାଇ ଯାଅନା ! କୁଆଡ଼େ କ'ଣ କରିପକାଇବ ଯେ— ।

ତାରା— (ହସ ବନ୍ଦକରି) କି ପ୍ରଚଣ୍ଡ କୋପ ! (ହାତଧରି ଫେରାଇ ଆଣି ବସାଇ) ଦେଈଙ୍କୁ କ'ଣ ସୀତା ବନବାସ ଦେବେ କି ? ସୁରଭାଇ !

ହାରା— 'ଅପମାନ' ! 'ଅପମାନ' । (ହସିବା)

ତାରା— ହି-ହି !

ଆ.ସୁ.— (ପୁଣି ଉଠି ଦୀପ୍ତଭାବରେ) ଦେଈର ସୀତା ବନବାସ - ନା ମୋ ଅଗ୍ନିପରୀକ୍ଷା- ଅସହ୍ୟ - ଅସହ୍ୟ (ଦଉଡ଼ି ପ୍ରସ୍ଥାନ)

ତାରା— ଦେଈ ! ଦେଈ ' କ'ଣ ଭାବୁଚୁ - ସତରେ ସୁରଭାଇ ରାଗିଗଲେ- ?

ହାରା— (ଦୀର୍ଘଶ୍ୱାସ) - ହଁ-ରାଗିଲେ ରାଗନ୍ତୁ ତୁ କାହିଁକି ଭାବୁଚୁ ଛି-କାନ୍ଦୁଚୁ ?

ତାରା— ଦେଈ- ମୁଁ ତୋର କୁଗ୍ରହ - (ମୁହଁରେ ଲୁଗାଦେଇ କାନ୍ଦିବା)

ହାରା— ଥାଉ ତୁ ମୋର କୁ ଗ୍ରହ କି ସୁଗ୍ରହ - ଅନ୍ତର କି ପ୍ରତ୍ୟନ୍ତର ଜାଣେଁନା ତେବେ ତୁ ନଥିଲେ ତାରା-ମୁଁ କେଉଁ ଦିନୁଁ ଏ ଘରୁ ଯାଆନ୍ତିଣି - ଛି - ଥାଉ - (ତାରା ତୁନିକରି କାନ୍ଦିବା)

ତାରା— ମୁଁ ଯାଏଁ ଦେଈ - ମୋତେ ଛାଡ଼ି ଦେ - ମୁଁ ଯାଏ - ଆମର ସେଇ ପୁରୁଣା ଛୋଟ ଘରଟିକୁ - ଗାଁରେ - ସେଇଠି ତୁଳସୀ ମୂଳରେ ଛୋଟ ଦୀପଟିଏ ଜାଳୁଥିବି - ଥାଉ ତୋର ସୁଖ ମନାସୁଥିବି - ମୋତେ ଛାଡ଼ି ଦେ - ଦେଈ !

(ହେଟ୍ ଓ ଛଡ଼ି ଧରି ଆଚାର୍ଯ୍ୟ ସୁରେଶ ପୁଣି ପ୍ରବେଶ କଲେ । ଦୁଇ ଭଉଣୀ ଧରାଧରି ହୋଇ ହୋଇ ଗୋଟିଏ ପାଖକୁ ଗଲେ)

ଆ.ସୁ— ଆଁ- ତାରା ! କାନ୍ଦୁଚି ? କାହିଁକି ? କ'ଣ ହେଲା ?

ହାରା— କ'ଣ ହେଲା, କ'ଣ ହେଲା ? (ତାରାକୁ ଛାଡ଼ିଦେଇ-ପାଖକୁ ଆସି) କ'ଣ ହେଲା ? ପିଲାଟାର ମୁଣ୍ଡ ଖାଇବ ତମେ - ସେ ଗାଁକୁ ଯିବ - ଅଝଟ ଧରିଚି - ସମାଜ ଏବେ - (ଯିବାକୁ ଉଦ୍ୟତ - ତାରା ଝାଡ଼ିଝୁଡ଼ି ହୋଇ ଠିଆ)

ଆ.ସୁ.— ତାରା ଦେବୀ ! ୟେ କ'ଣ ? ତମେ କାନ୍ଦୁଚ ? କାନ୍ଦୁଥିଲ ?

(ତାରା ଔଦ୍ଧତ୍ୟର ପ୍ରତିମୂର୍ତ୍ତି ସ୍ୱରୂପ ଠିଆହୋଇ ଗୀତ - ହସି ହସି ଭଙ୍ଗୀକରି ନ—ନା- ପ୍ରତିବାଦରେ ମୁଣ୍ଡ ହଲାଇ)

ଆସହେ ଆସହେ କୋଟିରୂପ ଧରି ସଭିଙ୍କ ପାଇଁ ଗୋପୀନାଥ

କୋଟିକୁ ଗୋଟିଏ ସଖୀକୁ ଗୋଟିଏ ସବୁ ଗୋପୀଙ୍କ ଧର ହାତ ।

ତେବେ ଭଲା ପୂରୁ ରାଧା - ମନ - ସାଧ -

ରାସେ ଶୁଣ ରାଧା ଗୁହାରି ଆଜି ଆସ ହେ ରାସବିହାରୀ

(ହାରାର ପ୍ରସ୍ଥାନ)

ଆ.ସୁ.— ବୁଝିଲି ନାହିଁ (ମୁଣ୍ଡରେ ହାତ ଦେଇ) ମୁଁ ସ୍ତମ୍ଭୀତ । ଜଡ଼ୀଭୂତବୋଧ କରୁଛି ତାରା ଦେବୀ - ତମର ସ୍ୱରୂପ କିଏ ତମେ ପରା ଏଇନା କାନ୍ଦୁଥିଲ । ଇୟେ କି ପାଲା ?

ତାରା— (ପୁନରାୟ ଗୀତ — ପ୍ରଥମ ୨ ଧାଡ଼ି)

"ଆଜି ଆସ ହେ ରାସବିହାରୀ ଚିରବିରହିଣୀ,
ଦୁଃଖିନୀ ରାଧିକା ଅଞ୍ଚଳ ପ୍ରସାରି କରୁଛି ଗୁହାରି ।"

ଆ.ସୁ.— ରାସଲୀଳା ବନ୍ଦ କର ତାରା ଦେବୀ । ଏଁ ଏଟା କି ପ୍ରକାର ରସ - କୃଷ୍ଣ ସିନା ଗୋପୀମାନଙ୍କୁ ତ୍ୟାଗ କରିଥିଲେ ।

ତାରା— ଏଟା ସୁଆଙ୍ଗ ସାର୍ - ବିକଳ୍ପ ରସ ଆଚାର୍ଯ୍ୟ ମହାଶୟ । ଯାଉ - କୁଆଡ଼େ ବାହାରିଲେ ଏତେ ସହଳ ସହଳ ଆଜି ।

ଆ.ସୁ— ଆଜି 'ବନ୍ଦନା' ପେଣ୍ଡଲରେ ଗୋଟିଏ କେସ୍ ଅଛି - ସୋ ଆଗରୁ ଦେଖିବାକୁ ପଡ଼ିବ (ଘଡ଼ି ଦେଖି) ଆରେ - ୬ଟା ହେଇଗଲା - ମୋଟେ ଘଣ୍ଟାଟିଏ ଟାଇମ୍ ମିଳିବ— ଏଥିରେ ମୁଁ କେସ୍ ଷ୍ଟଡି କ'ଣ କରିବି-

ତାରା— ବନ୍ଦନାର ଅଭିନେତା ନା ଅଭିନେତ୍ରୀ ଆପଣଙ୍କ କେସ୍ ? କିଏ କହନ୍ତୁନା ସୁର ଭାଇ ? (ପାଖକୁ ଆସି ଗେହ୍ଲେଇ ହବା) କହନ୍ତୁ - କହନ୍ତୁ ହଁ ।

ଆ.ସୁ.— ଅଭିନେତ୍ରୀ - ମାନେ - ତାରା - star

ତାରା— କିଏ ସେ ସୁରଭାଇ - ରଞ୍ଜନା ? ଅଞ୍ଜନା ?

ଆ.ସୁ.— କହିଲି ପରା ତାରା - ସେ ଜଣେ ନୂଆ star ଫିଲ୍ମରୁ ଆସି ବନ୍ଦନାରେ ପ୍ଲେ କରୁଛନ୍ତି - କ'ଣ ନାମଟି ? ଆଃ-

(ହାରାର ପ୍ରବେଶ)

ହାରା— "ବନ୍ଦନା"ରୁ କିଏ ଜଣେ ସ୍ତ୍ରୀ ଲୋକ ଫୋନ୍ କରୁଛନ୍ତି । ଡାକ୍ତର ସାହେବ କାହିଁକି ଗଲେ ନାହିଁ ପଚାରୁଛନ୍ତି । ରଞ୍ଜନା କିଏ ସେ - ଭାରି ଉତ୍ପାତ କରୁଛି -

ଆ.ସୁ.— ହଁ, ହଁ, ରଞ୍ଜନା ।

ତାରା —ତାଙ୍କର କ'ଣ ହେଉଛି ସୁରଭାଇ ? ମନରୋଗ ତ ?

ଆ.ସୁ.— ହଁ - ତୋରି ରୋଗ ତାରା - ପ୍ରତିବିମ୍ବ—ପ୍ରତ୍ୟାଗ୍ରହ — ମୋର ମନେ ହୁଏ - ବିକଳ୍ପ ବୋଧ - ତୋରି ପରି ।

ତାରା— ମୋରି ପରି ନା ତମରି ପରି ଆଚାର୍ଯ୍ୟ ମହାଶୟ ? ପ୍ରତିକଳ୍ପ - ପ୍ରତିମିମ୍ବବୋଧ ? ମୋତେ ଟିକିଏ ସାଙ୍ଗରେ ନେବେ ସୁରଭାଇ - ମୁଁ ଟିକିଏ ଦେଖନ୍ତି ।

ଆ.ସୁ.— (ନ ଶୁଣିଲା ପରି) ବିକଳ୍ପ ନା ପ୍ରତିକଳ୍ପ ? ପରୀକ୍ଷା - ବିଶ୍ଳେଷଣ - ଗଭୀର ଅନୁସନ୍ଧାନ ଆବଶ୍ୟକ ।

ତାରା— କାହିଁକି ଏ ସବୁ କଥା ତମେ ପିଲାଟିକୁ କହ ? ତମେ ତ ମନରୋଗର ମହୋପାଧ୍ୟାୟ ପଣ୍ଡିତ - ତମ ନିଜ ମନ ଉପରେ ତମର ଏତକ ଅଧିକାର ନାହିଁ - ଛି !

ତାରା— ନାଇଁ ଦେଇ - ମୁଁ ଯିବି ଆଜି ସୁରଭାଇଙ୍କ ସାଙ୍ଗେ ରଞ୍ଜନା କେସ୍‌ଟା ଦେଖିବି ।

ଆ.ସୁ.— ନା ନା, ମୁଁ ଯାଏଁ - ଆଜି ନୁହେଁ । ଆଜି ମୁଁ ଦେଖି ଆସେ - ପରେ ଆଉ ଦିନେ ଏକାବାରକେ ଯିବା, ଥରେ ଦେଖିବା - ଆସିବା - ହେଲା ? (ତାରାକୁ ଛଡ଼ାଇ ଯିବାକୁ ଉଦ୍ୟତ)

ତାରା— ତା'ର ମୁଣ୍ଡ ବି ଖରାପ କରିଦବ ତମେ ଦେଖୁଛି - ତମେ ତ କେସ୍ ଦେଖିବ - ତାକୁ କାହିଁକି ନବ ଯେ - ତାକୁ ଏପରି ପ୍ରଶ୍ରୟ କାହିଁକି ଦଉଛ ? ତମେ ସବୁଦିନେ -

ଆ.ସୁ.— ହେଁ, ସେ ପରା ସାଇକୋଲୋଜି ଛାତ୍ରୀ ଗୋ । ବୁଝିଲ ନାହିଁ dear - ନିହାରିକା ଦେବୀ । ତାରା ବି ମୋର ଗୋଟିଏ କେସ୍ ମଧ୍ୟ କହିଲି ପରା । A Case of Transference - ବୁଝିଲ ତାରା ଦେବୀ । ତମେ ଗୋଟିଏ ବିକଳ୍ପ ରୋଗୀ ।

ତାରା— (ମୁହଁ ଓଟାଉ) ବାଃ - ଘରେ ଡାକ୍ତର । ମୋର ଆଉ ଚିନ୍ତା କ'ଣ ? କିନ୍ତୁ ଆଚାର୍ଯ୍ୟ ଆପଣେ - ମୋ ମନ ଭିତରକୁ ଝାଙ୍କିବାର ତମର କ'ଣ ଅଧିକାର ଅଛି ? କାହିଁକି ତମର ଗୋଟାଏ 'କେସ୍' କରିନେଲେ ଆପଣ ? ମୁଁ ଯାଉଥିଲି ତମକୁ consult କରିବାକୁ ।

ଆ.ସୁ.— ହିଃ ହିଃ - ଏଇତ କେସ୍‌ର ମହିମା - A Case of Projection - ହଁ ହଁ ମୋର ଅଧିକାର ଅଛି ।

ହାରା— ହଁ ଥାଉ ଥାଉ (ତାରାକୁ କୋଳ କରିବା)

ଆ.ସୁ.— (ଯିବା)

ତାରା— (ହସି ହସି) ହଉ ହଉ - ଯାଅ ଆଚାର୍ଯ୍ୟ ଆପଣେ— ମୋ ରୋଗ ଘରେ ଥାଉ - ତମ ରୋଗ ନେଇକରି ତମେ ଯାଅ । (ହାରା ମଧ ହସୁଥିବା)

ଆ.ସୁ.— (ବୁଲିପଡ଼ି) କ'ଣ କହିଲୁ - ମୋ ରୋଗ, ମୋ ରୋଗ (ପ୍ରସ୍ଥାନ)

ତାରା— ହିଁ ହିଁ ଆଗ ନିଜର ଚିକିତ୍ସା - ନିଜର ବ୍ୟବସ୍ଥା କରାକୁ ଆଚାର୍ଯ୍ୟ ଆପଣେ ?

ପ୍ରସ୍ଥାନ (Drop)



# ତାଙ୍କ ପୁସ୍ତକହିଁ ତାଙ୍କର ପରିଚୟ

ବୈଷ୍ଣବଚରଣ ଗ୍ରନ୍ଥାବଳୀ ପ୍ରକାଶନ ଅବସରରେ କିଛି ଲେଖିବା ପାଇଁ ମତେ ସ୍ୱର୍ଗତଃ ବୈଷ୍ଣବ ଚରଣ ଦାସଙ୍କ ପତ୍ନୀ ବୀଣାପାଣି ଦେବୀ ଓ କନ୍ୟା କବିତା ଦେବୀ, ଗୀତା ଦେବୀ ଅନୁରୋଧ କରିଥିଲେ । କ'ଣ ଲେଖିବି କ'ଣ ନଲେଖିବି ଏମିତି ଭାବୁ ଭାବୁ ଅନେକ ଦିନ ଚାଲିଗଲା । ଭାବିଥିଲି ବୈଷ୍ଣବଚରଣଙ୍କ ରଚନାକୁ ଅଧ୍ୟୟନ କରିବି ବୋଲି । ସମୟର ଆଖିରେ ଜୀବନର କର୍ମ ବ୍ୟସ୍ତତାକୁ ମାପିବା ଓ ଓଡ଼ିଆ ସାହିତ୍ୟରେ ଏକ ନୂତନ ମାନଚିତ୍ର ସୃଷ୍ଟି କରିବା ବର୍ତ୍ତମାନ ସମୟରେ ବହୁ କଷ୍ଟସାଧ୍ୟ ।

ବର୍ତ୍ତମାନ ସମୟରେ ସାହିତ୍ୟକୁ ଚଉଲାଇବା ଓ ସମାଜରେ ନିଜକୁ ସାହିତ୍ୟିକ କହିବା ଅତି ସହଜସାଧ୍ୟ । ଦୁଃଖ ସୁଖ ପରିବେଶ ପରିସ୍ଥିତି ତଥା ଭିନ୍ନ ଭିନ୍ନ ରୂପକଳ୍ପ ନେଇ ସାହିତ୍ୟ ଭିନ୍ନ ଭିନ୍ନ ରୂପ ଧାରଣ କରିଥାଏ । କେଉଁଠି କବିତାର ନଦୀ ହୋଇ ସମୁଦ୍ରରେ ମିଶିବାକୁ ଧାଇଁ ଯାଏ ତ କେଉଁଠି ଗଳ୍ପ ଓ ଉପନ୍ୟାସର ହ୍ରଦ ହୋଇ ଜୀବନର ପ୍ରତି ମୁହୂର୍ତ୍ତକୁ ସୁଖ ଆଉ ଦୁଃଖକୁ ନେଇ ନିରାଶାର ପାହାଡ଼ ଭିତରେ ଆତ୍ମଗୋପନ କରିଥାଏ । ଶିଶୁର ହସଠାରୁ କୁଆଁରୀ ମନର କାମନା ସକାଳ ସୂର୍ଯ୍ୟର ଭିଜା ଆଖିରୁ ପୃଥିବୀର ଉତପ୍ତ ଓଠର ଚୁମ୍ବନ କବି ଓ ସାହିତ୍ୟିକ ପାଇଁ ଅନେକ ଖୋରାକ ଯୋଗାଇଥାଏ ।

ଗାଳ୍ପିକ ବୈଷ୍ଣବଚରଣ ଏକ ଅନନ୍ୟ ପ୍ରତିଭାର ପ୍ରତୀକ । ସେ ଯଦିଓ ତାଙ୍କ କର୍ମମୟ ଜୀବନ ଭିତରେ ବିଭିନ୍ନ ପଦପଦବୀରେ ରହି ଦେଶସେବା କରି ଆସୁଥିଲେ ତାରି ଭିତରେ ସେ ସମୟକୁ ଟାଣିଆଣି ସାହିତ୍ୟ ସୃଷ୍ଟି କରିଥିଲେ। ଏବଂ ସେହି ସାହିତ୍ୟ ଆଜି ଏକ ଗ୍ରନ୍ଥାବଳୀ ଆକାରରେ ରୂପାନ୍ତରିତ ହେବାକୁ ଯାଉଛି । ସମସ୍ତେ 'ମନେ ମନେ' ରଖନ୍ତି ମନର ଭାବନାକୁ କହିପାରନ୍ତିନି କି ଦେଖାଇ ପାରନ୍ତିନି, ଯେମିତି ବୈଷ୍ଣବଚରଣ ତାଙ୍କର ଚାକିରି

ସମୟର ପ୍ରତ୍ୟେକ ଭାବନା ଓ ଅନୁଭୂତିକୁ ସାମାଜିକ ଉପନ୍ୟାସର ରୂପକଳ୍ପ ଦେଇ 'ମନେ ମନେ' ସୃଷ୍ଟି କରିଛନ୍ତି ନିଜର ଗ୍ରନ୍ଥ ସାମ୍ରାଜ୍ୟ । ଭାଷା ଶୈଳୀ ଓ ଶବ୍ଦ ବିନ୍ୟାସର ଉପକ୍ରମଣିକାକୁ ଦେଖିଲେ ଫକୀର ମୋହନ ସେନାପତିଙ୍କ କଥା ମନେପଡ଼େ । ଯେପରି ଫକୀର ମୋହନ ସେନାପତି 'ରେବତୀ' ଗଳ୍ପରେ ରେବତୀର ଚରିତ୍ରକୁ ନେଇ ସାମାଜିକ, ମନସ୍ତାତ୍ତ୍ୱିକ ଚିନ୍ତାଧାରାକୁ ପରିପ୍ରକାଶ କରିଥିଲେ, ବୈଷ୍ଣବଚରଣ ସେହିପରି 'ମନେ ମନେ'ରେ କେଉଁଠି ହରିବାବୁ ତ କେଉଁଠି ଗଉରୀ ବୋଉ ଓ କୋଉଠି 'ବୋହୂଟି ପିଲା' ସମ୍ବୋଧନ କରି ବିଭିନ୍ନ ସମସ୍ୟା ଓ ସାମାଜିକ ମନସ୍ତତ୍ତ୍ୱକୁ ବିଭିନ୍ନ ଚରିତ୍ର ମାଧମରେ ପ୍ରକାଶ କରିବାକୁ ପଛାଇ ନାହାନ୍ତି ।

ଗାନ୍ଧିକ ବୈଷ୍ଣବଚରଣ ଏକାଧାରରେ କବି, ନାଟ୍ୟକାର, ଦାର୍ଶନିକ ଓ ଔପନ୍ୟାସିକ ଥିଲେ । ମଣିଷକୁ ସମାଜରେ ବଞ୍ଚି ରହିବାକୁ ହେଲେ ସାହିତ୍ୟ ଯେ ନିତାନ୍ତ ଆବଶ୍ୟକ ଯାକୁ ଯେ କେହି ଅନୁଭୂତିରେ ଆଣି ପାରିବ । ଭାଷା, ସଂସ୍କୃତି, ପରମ୍ପରା ତଥା ରାଷ୍ଟ୍ରୀୟ ଅନୁଚିନ୍ତାକୁ ପ୍ରବନ୍ଧ ଆକାରରେ ପରିପ୍ରକାଶ କରିବାରେ ବୈଷ୍ଣବ ଚରଣ ଥିଲେ ସିଦ୍ଧହସ୍ତ । ତାଙ୍କ ପୁସ୍ତକ ଓ ସେ ନିଜେ ହିଁ ତାଙ୍କର ପରିଚୟ ।

ତାଙ୍କ ରଚିତ ପୁସ୍ତକାବଳୀ ସାହିତ୍ୟ ଦରବାରରେ ଯେ ନିଶ୍ଚିତ ଭାବରେ ଚିର ଆଦୃତ ହୋଇ ରହିବ ତା ମୁଁ ରଖୁଛି 'ମନେ ମନେ' ।

*ସ୍ୱାମୀ ଅରୂପାନନ୍ଦ*
*ସଭାପତି, ନିଖିଳ ଉତ୍କଳ ମଠମନ୍ଦିରାଧୀଶ ସେବାସଂଘ*
*ଓଡ଼ିଶା, ଭୁବନେଶ୍ୱର*

# ଉତ୍କଳ ପୁଲିସ ବିଭାଗର ସର୍ବାଧିନାୟକ
# ଶ୍ରୀ ବୈଷ୍ଣବ ଚରଣ ଦାସଙ୍କର ଅବସରୋପଲକ୍ଷେ

# ବିଦାୟ - ବାଣୀ

ହେ ବରେଣ୍ୟ,

ଆଜିର ଏ ଦିନଟି ଯେ ଅମୂଲ୍ୟ ଦୁର୍ମୂଲ୍ୟ,
ସୁଦିନ ବା ଦୁର୍ଦ୍ଦିନ ତା ହୁଏନି ମୀମାଂସି ।
ସୁଦିନ ଏ ଯେଣୁ ଆଜି କରୁ ସମ୍ବର୍ଦ୍ଧନା
ଉତ୍କଳ ପୁଲିସାକାଶ ପ୍ରଦୀପ୍ତ ଭାସ୍ୱରେ ।

X X X

ଦୟା, କ୍ଷମା, ଶାନ୍ତି, ମୈତ୍ରୀ, ମୃଦୁ ସମ୍ଭାଷଣ,
ସମଦର୍ଶୀଭାବ ଆଦି ସର୍ବ ଶୁଭ ଗୁଣ,
ଥିଲା ଯା'ର ମାନଦଣ୍ଡ ପୁଣି ନ୍ୟାୟଦଣ୍ଡ,
ଏପରି ମହାନ୍ ପୁଣି ଉଦାର ଗମ୍ଭୀର,
କାୟମନୋବାକ୍ୟେ ଯେହୁ ସାକ୍ଷାତ୍ "ବୈଷ୍ଣବ",
କଠୋର କର୍ତ୍ତବ୍ୟ ସାଧି ନିର୍ଭୀକେ ନୀରବେ,
ଅପସରିଯାନ୍ତି ସେ ଯେ କର୍ମ ପ୍ରାଙ୍ଗଣରୁ
ଏହି ଦିଏ ପ୍ରାଣେ ଆଜି ଦାରୁଣ ବେଦନା ।

X X X

ତଥାପି ହେ, ପୂଜ୍ୟ ତୁମେ ଆଜି ଏ ଦୁର୍ଦ୍ଦିନେ,
ଅପସରି ଗଲେ ମଧ କର୍ମ ପ୍ରାଙ୍ଗଣରୁ,

ପ୍ରତି ହୃଦ ମନ୍ଦିରରେ ତବ ମଧୁ ସ୍ମୃତି,
ଦୋଳିବ ସାଗରେ ଯଥା ତରଙ୍ଗିତ ଊର୍ମି ।
ନାହିଁ ଭାବ, ନାହିଁ ଭାଷା, ନାହିଁ ବି ସଙ୍କେତ,
ବାଢ଼ିବାକୁ ପ୍ରାଣର ଯା ନୀରବ ବେଦନା ।
ବିଭୁପଦେ ଏହି ଶେଷ ଗୁମ୍ଫିତ ମିନତି,
ଅବସର-ବାସ ତବ ହେଉ ମଧୁମୟ ।
"ବୈଷ୍ଣବ"ର ନାମ ତବ ହେଉ ଏ ସାର୍ଥକ,
ବିଷ୍ଣୁବରେ ହୁଅ ଦେବ ଶତାୟୁ ଏ ଭବେ ।

କଟକ
ତା ୧୦-୯-୫୩

ଆପଣଙ୍କର
*ସୌଜନ୍ୟମୁଗ୍ଧ*
*ଓଡ଼ିଶା ପୁଲିସ ବିଭାଗୀୟ*
*ଅମଲାବୃନ୍ଦ*

---

# Farewell Address
# by
# Secretary of the I. P. (S). Association.

DEAR SRI DAS,

It is with a heavy heart today we are bidding you a farewell. I need hardly say that the heart is heavy because we are bidding farewell to two officers at one time and this has hardly happened before. You will pardon us for this weakness as it is no mean task for younger and junior officers to part with superiors and colleagues who have put-in 30 years' of service in the Department and have been the scarred veterans of many battles in the common main, that has been the Police Service in India, during the last three decades.

To you Sir, we owe a deep debt in advice and instructions and above all in a glorious sense of honour, which has pulled us up particularly from many difficult positions with grace. As a man of society and taste and as a noble host (and may I say Srimatee Das as a hostess). We owe a lesson, which can never be lost on us. You have shown the way that a Policeman can be a novelist, artist, musician, a

connoisseur of good tastes and yet remain a diehard Policeman undisturbed to the core. In recognition of our debt to you and as a sweet memento of our past associations with you, we offer to you an humble token in the form of an 'ATARDAN'. If you will cast back your memory, Sir, you will recall that its design is associated with the hollowed memory of Sri M. S. Das, C.I.E., who was an aristrocrat amongst the politicians of Orissa and politician amongst the aristrocrats here. As you have enjoyed a striking resemblance amongst us to the position Sri Das enjoyed amongst the aristrocrats and politicians, we thought of offering this humble present. If you will open it you will find in it four small tubes containing essence, the essence of Police Service as it were which will hereafter bring to your memory, the four Police honest men the Why, the How, the Who and the When on whom you relied upon. We do hope that although formally retired, you will keep on remembering us and reminding us of these four men so that we rely on them more and more. With these words Sir, we wish you and Srimatee Das all the best of luck and a long life in retirement.

---

# Farewell Address
# By
# Orissa Police Service Association.

Mr. J. Simon, read out the following address on behalf of the Association.

Dear Sri Das,

You have been a gentlemen-policeman; to-day you shed your Police uniform. You had been an example to all of us - how one can rise to the highest rung of a ladder beginning anywhere. We are proud of you because you began life as one of us and rose to become the I. G. of this State by sheer dint of merit. During all these days of your prosperity you have not forgotten us; what is more you have been a loving friend to each one of us. When heart is full, speech is superfluous and I request you to allow us to indulge in the pleasure of presenting you with a fishing tackle, which may make your long leisures enjoyable.

We hope these little mementos will remember us. We may have been the cause of many a headache to you, and if we have unconsciously

caused any pain to you, please Sir, forgive, being so large-hearted.

*Capt. Mohanty in his address said,*

"Like a toast master who eats a meal which he does not want so that he can get up and tell a lot of stories which he does not remember to people who have already heard about them, I have eaten a meal which I badly wanted and shall tell you stories about Mr. Das you have not only heard before but you have experienced yourself, and the stories I shall be telling you are true stories which I remember very well indeed. Mr. Das has been hospitable to those who have had an opportunity of visiting him. His hospitability has been so highly spoken of by every-body that I need not try to relate them; even if I try I will not be able, I am afraid, because my two lips are not adequate and I wish I had four pairs of lips like Brahma to relate adequately the qualities of his hospitability. Even then, I am afraid, I would not be able to do justice since my vocabulary is by no means adequate.

Mr. Das has been a gentleman when he met prosperity and has been a man when he met adversity. Not that he had many occasions to exhibit manliness. But I remember instances, when I had been to him to relate my troubles and to weep on his shoulders, by the way he had shoulders broad

enough to accommodate any distressed persons in case anybody needed advice. He had been, on all occasions, very kind and attentive and has given me one advice and that is, be a man and your adversity would be defeated. He considered such occasions to be his real adversity. He entered the Police Service long before I left my craddle and it would be presumptuous on my part to attempt in describing his virtues during the service. But in "32 years and after" Mr. A. K. Sinha, M. A., M. B. E., C. I. E., I. P. has made reference to Mr. Das and he has said very highly of him. Mr. Das did not make any-body unhappy during these long years until to-day when he makes all of us unhappy because he is leaving us. I don't say that we shall be unhappy because he is about to enjoy leisures of a retired officer, since he has earned very well this leisure, but we shall be sorry and unhappy indeed, because he will be free to move about, without sending a copy of his tour programme as he used to do when he was wearing the uniform." !

---

Canadian Pacific Hotels

Calgary
Alberta Province
3.9.51, CANADA

Dear M. Das,

I am sorry, I was not able to write to you earlier. I left Delhi with other delegates from India, on the 26th afternoon, and reached Montreal, Canada, via, Karachi, Bahrein, Cairo, Rome, London and New York on 28th at 5 P.M. You should however know that Canada and New York are 12 hours behind Indian time. I left Montreal (Province of Quebec) on 29th morning, again by plane and reached Edmont (Province of Alberta) on the same evening. We stopped then till today and have come here, another city in this Province, only this afternoon. From here we toured about the Province, and then proceed to British Columbia (another Province) on the 10th.

The country is very pretty and the people are rich. So they have beautiful cities and lovely roads. Population of Canada is only 15 millions, and they have such a vast country. Canada is bigger than United States as well as India, in area.

I am keeping fine. I hope, you are keeping fit with Bina and children. Please remember me to Felu and Ranpur. How is the club going.

You can write to me in this address. The will be

Hopping all well. With kind regards & best wishes for all.

affectionately

U. N. Bhuyan

Athmallik
2.11.49

My dear Mr. Das,

You must really think me guilty of great negligence the delaying so long to express my gratitude for your kind present which was so welcome to me. In the meantime I was laid up with fever and suffered for some days together. This prevented me to write to you in time. Hope you don't mind it. I have recovered no doubt but the weakness is still there. There is some visible defect in the mechanism of the telescopic sight. So I am arranging to send it to Calcutta for necessary repairs.

As regards Bhubaneswar land I have not been able as yet to send a man to see the site. I shall, however, do it as soon as my mace here is free from other entanglements and let you know my views.

I had been to Cuttack last month on some private business and spent a couple of days with H.E. I saw the Premier, too.

I met my old friend Rai Saheb B. Misra and was very cordially invited to his house in Shekh Bazar.

Hope you all are faring well. With kindest regards

Yours

affectionately

# ଶ୍ରୀ ବୈଷ୍ଣବ ଚରଣ ଦାସ, ଏମ୍‌. ଏ., ଆଇ. ପି.,

## ପୁଲିସ ଇନ୍‌ସପେକ୍‌ଟର-ଜେନେରାଲ ମହୋଦୟ

ମହାଭାଗ,

ଆପଣଙ୍କ ଭଳି ଜଣେ ସର୍ବଗୁଣସମ୍ପନ୍ନ ସୁଯୋଗ୍ୟ ସର୍ବୋଚ୍ଚ କର୍ମକର୍ତ୍ତାଙ୍କର ସ୍ନେହ ଓ ସହାନୁଭୂତିରୁ ପ୍ରତ୍ୟକ୍ଷ ଭାବରେ ବଞ୍ଚିତ ହେବାର ଦୁଃଖ ଆମ୍ଭମାନଙ୍କୁ ଯେତିକି ଦ୍ରବୀଭୂତ କରୁଛି, ଏହି ଗୁରୁଦାୟିତ୍ୱପୂର୍ଣ୍ଣ କର୍ମକ୍ଷେତ୍ରରେ ଆପଣଙ୍କ ଭଳି ଜଣେ ସର୍ବଜନାଦୃତ ଅଧିନାୟକଙ୍କର ଅଭ୍ରାନ୍ତ ଇଙ୍ଗିତର ଅଭାବ ସେତିକି ଅପୂରଣୀୟ କ୍ଷତିର ଆଶଙ୍କା ସୃଷ୍ଟି କରୁଛି ।

ମହାଶୟ, ଆପଣହିଁ ଏ ପ୍ରଦେଶର ପ୍ରଥମ ଉଚ୍ଚଶିକ୍ଷିତ ଯୁବକ; ଯିଏ ସର୍ବ ପ୍ରଥମେ ପୁଲିସ ଦପ୍ତରର ଦାୟିତ୍ୱ ବହନ କରି ଶିକ୍ଷିତ ସମାଜର ଦୃଷ୍ଟିଭଙ୍ଗୀ ବଦଳାଇ, ଏ ବିଭାଗ ପ୍ରତି ସାଧାରଣଙ୍କର ବିତୃଷ୍ଣା ଦୂର କରି ପାରିଥିଲେ ।

ଆପଣହିଁ ଉତ୍କଳର ପ୍ରଥମ ପୁଲିସ କର୍ମଚାରୀ ଯାହାଙ୍କର ନେତୃତ୍ୱରେ ଉତ୍କଳର ପୁଲିସବାହିନୀ ସୁଦୂର ଇଂଲଣ୍ଡରେ ତା'ର କର୍ମକୁଶଳତା ପ୍ରତିପାଦନ କରି ଏ ବିଭାଗର ଇତିହାସରେ ଏକ ଉଲ୍ଲେଖଯୋଗ୍ୟ ଅଧ୍ୟାୟ ସୃଷ୍ଟି କରି ପାରିଥିଲା ୧୯୩୭ ସାଲରେ ।

ଆପଣହିଁ ଏ ରାଜ୍ୟର ପ୍ରଥମ ପୁଲିସ କର୍ମଚାରୀ ଯିଏ ସ୍ୱୀୟ ଦକ୍ଷତା ଓ ବିଜ୍ଞ ପରିଚାଳନା ବଳରେ ବିଭାଗର ସର୍ବୋଚ୍ଚ ଶିଖରୀରେ ଆସୀନ ହୋଇ ପାରିଥିଲେ ।

ପୁଲିସ ଜୀବନର କର୍ମମୟ ନିଗଡ଼ ଭିତରେ ସୁଦ୍ଧା ଆପଣ ଥିଲେ ବାଣୀର ଆରାଧକ, କଳାମୋଦୀ, ରସଗ୍ରାହୀ । ବଳିଷ୍ଠ ଲେଖନୀ ଓ ଅଭିନବ ପ୍ରକାଶଭଙ୍ଗୀ ଥିଲା ଆପଣଙ୍କର ଏକାନ୍ତ ନିଜସ୍ୱ ।

ଆପଣଙ୍କର ସୁମହାନ୍ ବ୍ୟକ୍ତିତ୍ୱ ସମସ୍ତଙ୍କୁ ପ୍ରଭାବାନ୍ୱିତ କରି କର୍ତ୍ତବ୍ୟରେ ନିୟୋଜିତ କରିଥିଲା । ଆପଣଙ୍କର ଶୃଙ୍ଖଳାଜ୍ଞାନ କେବେହେଲେ କୌଣସି ଅଧସ୍ତନ କର୍ମଚାରୀର କର୍ତ୍ତବ୍ୟବୋଧ ଓ ଆଦେଶ ପାଳନର ନିଷ୍ଠାକୁ ଶୃଙ୍ଖଳରେ ପରିଣତ କରି ନଥିଲା । ଶାସନର ସର୍ବୋଚ୍ଚ ଶିଖରୀରେ ଥାଇ ସୁଦ୍ଧା ସର୍ବକନିଷ୍ଠ ପୁଲିସ କର୍ମଚାରୀର ଦୁଃଖ ଓ ଦୈନ୍ୟରେ ଝଙ୍କୃତ ହେଉଥିଲା ଆପଣଙ୍କର ହୃଦୟତନ୍ତ୍ରୀ—ସମସ୍ତଙ୍କ ପାଇଁ ଅବାରିତ ଥିଲା ଆପଣଙ୍କର ପିତୃସୁଲଭ ସ୍ନେହ ।

ଆପଣଙ୍କର ଦୟା, ଦାକ୍ଷିଣ୍ୟ ଓ ନ୍ୟାୟପରାୟଣତା କେବେହେଲେ ଆମ୍ଭମାନଙ୍କୁ କର୍ତ୍ତବ୍ୟ ଅବହେଳାରେ ପ୍ରଶ୍ରୟ ଦେଇ ନାହିଁ । ବରଂ ଆପଣଙ୍କର ଅଧିନାୟକତ୍ୱ ଦଣ୍ଡକୁ ମଧ, ଦୟା ଏବଂ ନ୍ୟାୟ ପୁଟରେ ରଞ୍ଜିତ କରି ଆମ୍ଭମାନଙ୍କର ଉଜ୍ଜ୍ୱଳ ଭବିଷ୍ୟତର ନିର୍ଦ୍ଦେଶକ ଏବଂ ଗୌରବର ସାଙ୍କେତିକ ହୋଇ ପାରିଛି ।

ଆପଣ ସାଧାରଣ ରକ୍ତମାଂସ ବିଶିଷ୍ଟ ମନୁଷ୍ୟ ଦେହ ଭିତରେ ଦେବତ୍ୱର ଉଦାରତା ଏବଂ ମହିମା ପୋଷଣ କରି ପାରିଛନ୍ତି ।

ତେଣୁ ଆପଣ ଧନ୍ୟ, ମହିମାମୟ ଏବଂ ଗୌରବଦୀପ୍ତ ।

ଆଜି ଦୀର୍ଘ ବ ୩୧ ର୍ଷ ଧରି ପୁଲିସ ବିଭାଗ ଭଳି ଏକ କଠିନ ଓ ଦାୟିତ୍ୱପୂର୍ଣ୍ଣ କର୍ମକ୍ଷେତ୍ରରେ ଶ୍ରାନ୍ତିହୀନ କର୍ତ୍ତବ୍ୟ ସାଧନ ପରେ, ଆପଣଙ୍କର ଏ ଅବସର ଗ୍ରହଣ ଗୌରବମଣ୍ଡିତ ହୋଇଛି, ଏହାହିଁ ଆମ୍ଭମାନଙ୍କର ବିଦାୟକାଳୀନ ସାନ୍ତ୍ୱନା ।

ଆପଣଙ୍କର ସଦ୍‌ଗୁଣାବଳୀ ଆମ୍ଭମାନଙ୍କୁ ଅନୁପ୍ରାଣିତ କରୁ । ସୁଖମୟ ହେଉ ଆପଣଙ୍କର ଅବସର ବାସର । ଇତି ।

ଆପଣଙ୍କର ଆଶୀର୍ବାଦ-ଭିକ୍ଷୁ,
ଓଡ଼ିଶା ପୁଲିସ କର୍ମଚାରୀ ସଂଘର ସଦସ୍ୟବୃନ୍ଦ

## (ଶ୍ରୀଯୁକ୍ତ ବି. ସି. ଦାସ, ଏମ, ଏ., ଆଇ.ପି. ଙ୍କର ଭାଷଣ)

ପୁଲିସ ଆସୋସିଏସନର ପ୍ରେସିଡେଣ୍ଟ ମହୋଦୟ,
ଦେଶ ଓ ଦଶର ପ୍ରତିନିଧିତ୍ୱ ପ୍ରହରୀ ସମାଜ !

ଆପଣମାନଙ୍କ ସୌଜନ୍ୟ ଓ ମହାନୁଭବତା ଆଜି ମୋତେ ଅଭିଭୂତ କରି ପକାଇଛି । ଆପଣମାନେ ମୋର ଗଭୀର କୃତଜ୍ଞତା ଓ ଆନ୍ତରିକ ଧନ୍ୟବାଦ ଗ୍ରହଣ କରନ୍ତୁ । କେବଳ ଆପଣମାନଙ୍କ ସଖ୍ୟ, ସହଯୋଗ ଓ ତତ୍ପରତା ବଳରେ ମୁଁ ଏ ବିଭାଗରେ ଦୀର୍ଘ ବ ୩୧ ର୍ଷ କାମ କରି ଆସି ପାରିଛି । ଆଜି ଏହା ମୋର ବିଶେଷ ଗର୍ବର ଓ ଗୌରବର ବିଷୟ ଯେ ମୁଁ ଆପଣମାନଙ୍କର ସମ୍ମାନ ବା ଶ୍ରଦ୍ଧା ହରାଇ ନାହିଁ । ଏତିକି ମୋ ପକ୍ଷରେ ଯଥେଷ୍ଟ ଓ ଏହାର ସ୍ମୃତି ମୋର ଅବଶିଷ୍ଟ ଜୀବନ ପଥର ସମ୍ବଳ ଓ ପାଥେୟ ହୋଇ ରହିବ । ଅବଶ୍ୟ ଆପଣମାନେ ନିଜ ଗୁଣରେ ମୋତେ ଯେଉଁ ଆଖ୍ୟା ଓ ପ୍ରଶଂସାତ୍ମକ ଉଚ୍ଚ ସ୍ଥାନ ଦେଇଛନ୍ତି, ମୁଁ ସେଥିର ନିତାନ୍ତ ଅଯୋଗ୍ୟ । ଜାଣେନା ମୁଁ କେଉଁ ଭାଷାରେ ଆପଣମାନଙ୍କ ସ୍ତୋକବାକ୍ୟର ପ୍ରତିବାଦ କରିବି । ମୁଁ ଆପଣଙ୍କର କିଛି ହେଲେ କରି ନାହିଁ ବା କରି ପାରି ନାହିଁ — ଅଥଚ କର୍ମକ୍ଷେତ୍ରରେ କର୍ତ୍ତବ୍ୟର ତାଡ଼ନାରେ ହୁଏତ କାହାରି କାହାରିଠାରେ ମଧ୍ୟ ଅପରାଧୀ ବା ଅପ୍ରିୟ ହୋଇଥିବା ସମ୍ଭବ ଓ ସ୍ୱାଭାବିକ । ମୁଁ ସେଥିପାଇଁ ସମସ୍ତଙ୍କଠାରୁ କ୍ଷମାର ପ୍ରାର୍ଥୀ ଆଜି ମୋର ପ୍ରହରୀକର୍ମ ଜୀବନର ଅବସାନରେ । ଯାହାହେଉ ପ୍ରହରୀ ଭାଇମାନେ ! ଆଜି କାଳ ଗତିରେ ଆମର ଏ ପୁଲିସ ବିଭାଗ ଆତ୍ମୋନ୍ନତି ସାଧନରେ ସକ୍ଷମ ହୋଇଛି ଓ ମୋର ଦୃଢ଼ ବିଶ୍ୱାସ ଅଗ୍ରଗତିର ଶେଷ ସୋପାନ ସୁଦୂରପରାହତ ନୁହେଁ । ସମୟୋପଯୋଗୀ ମନୋଭାବ ଓ କାର୍ଯ୍ୟ—ଉଭୟତଃ ଆମର ଯଥେଷ୍ଟ ଉନ୍ନତି ଘଟିଛି ଏ

କେତେ ବର୍ଷ ମଧ୍ୟରେ—ଆମର ମୌଳିକ ସେବା-ଧର୍ମ ରକ୍ଷା-କର୍ମ ବ୍ୟାପାରରେ । ତଥାପି ଯଥେଷ୍ଟ ବାକୀ ଅଛି—କେଉଁଠି ଯେପରି ଗୋଟାଏ ଅସଂବଦ୍ଧ କ୍ଲିଷ୍ଟଭାବ ରହିଯାଇଛି ଅତର୍କିତ ଭାବରେ । ତେବେ ମୋର ଦୃଢ଼ ବିଶ୍ୱାସ ଓ ଆଶା ଯେ, ସେବାକୁ ମୂଳମନ୍ତ୍ର କରି ନୈତିକ ବଳ ଓ ସାହସରେ ପ୍ରଭାବିତ ହୋଇ ଆମର ଏ ପ୍ରହରୀ— କର୍ମଜୀବନରେ ଅଗ୍ରସର ହେଲେ ଯେ ପୁଲିସ ନାମର ସାର୍ଥକତା ଓ ସିଦ୍ଧି ଅଚିରେ ଲାଭ ହେବ, ଏଥିରେ ମୋର ବିନ୍ଦୁମାତ୍ର ସନ୍ଦେହ ନାହିଁ । ଆପଣଙ୍କର ଆସୋସିଏସନ ଓ ପ୍ରତ୍ୟେକ ସଭ୍ୟ ଏହି ଭାବରେ ଅନୁପ୍ରାଣିତ ହୋଇ ବିଭାଗର ଉତ୍ତରୋତ୍ତର ଉନ୍ନତି ଓ ଏହି ଶେଷହୀନ ସାଧନାର ସିଦ୍ଧିଦିଗରେ ଉତ୍ସାହ, ସମତା ଓ ସମବେତ ଚେଷ୍ଟାର ତ୍ରୁଟି କରିବେ ନାହିଁ, ଏହା ଅତି ନିଶ୍ଚିତ । ସମୟର ସଙ୍କେତକୁ ଏଡ଼ିବା ଅନ୍ୟାୟ ଓ ଅସମ୍ଭବପ୍ରାୟ ! ସେ ଇଙ୍ଗିତ ସ୍ପଷ୍ଟ— ତାକୁ ଗ୍ରହଣ କରନ୍ତୁ ।

ଆମର ଦଳର ଓ ବିଭାଗର ପ୍ରଧାନମାନଙ୍କର ନିର୍ଦ୍ଦେଶ ଓ ପ୍ରେରଣାର ଅନୁବର୍ତ୍ତୀ ହୋଇ ଦେଶର ଓ ଦଳର ସେବା ତଥା ପ୍ରହରୀ କାର୍ଯ୍ୟରେ ଅଗ୍ରସର ହୁଅନ୍ତୁ— ଜୟୀ ହେବେ ।

ମୋର ସମୟ ଉତ୍ତୀର୍ଣ୍ଣ ହୋଇଛି । ଗଭୀର ଦୁଃଖର ସହିତ ଆଜି ବିଦାୟ ନେବା ବେଳେ ମୁଁ ଭଗବାନଙ୍କଠାରେ ପ୍ରାର୍ଥନା କରେ ଏ ଉଦ୍ୟମ ଏ ପ୍ରଚେଷ୍ଟା ଆପଣମାନଙ୍କର ଜୟଯୁକ୍ତ ହେଉ ! ମୁଁ ପୁନର୍ବାର ଆପଣମାନଙ୍କୁ ମୋର ଶ୍ରଦ୍ଧା ଓ ଧନ୍ୟବାଦ ଜ୍ଞାପନ କରି ଆପଣମାନଙ୍କଠାରୁ ବିଦାୟ ନେଉଛି ।

*ଜୟହିନ୍ଦ୍*

ଭୁବନେଶ୍ୱର

ତା- ୨୦-୧୦-୨୭

ପ୍ରିୟ ମହାଶୟ,

କଟକରୁ ଫେରିଆସିଲା ଦିନୁଁ ମୁଁ କୌଣସି ଏକ ସ୍ଥାନରେ ବେଶୀଦିନ ରହିପାରିନଥିଲି । ତେଣୁ ଆପଣଙ୍କ ପ୍ରଦତ୍ତ ''ମନେ ମନେ'' ପାଠ କରିବାକୁ ସ୍ଥିର କଲି । ପାଠପଢ଼ା ଶେଷକରି ମୋର ଅଭିମତ ଟିକକ ଲେଖି ପଠାଇଲି । ଆପଣ ବର୍ତ୍ତମାନ ଯୁବକ ଏବଂ ମୁଁ ଆଶାକରେ ଆପଣ ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧି ଅଧିକ କରି ସମସ୍ତଙ୍କର ଧନ୍ୟବାଦାର୍ହ ହେବେ ।

ଆପଣଙ୍କର

*ଶ୍ରୀ ମଧୁସୂଦନ ଦାଶ*

HAREKRUSHNA MAHTAB
PREMIER
ORISSA

CUTTACK

ତା ୧୨.୧୨.୧୯୪୯

ପ୍ରିୟ ବୈଷ୍ଣବବାବୁ,

ମୋର ଜନ୍ମବାସରରେ ଆପଣଙ୍କର ଦେଇଥିବା ଶ୍ରଦ୍ଧା ଉପହାର ଓ ସେଥି ସହିତ ଜ୍ଞାପନ କରିଥିବା ଶୁଭେଚ୍ଛା ପାଇଁ ମୁଁ ଧନ୍ୟବାଦ ଜଣାଉଅଛି ।

ଆପଣ ମୋ ପ୍ରତି ଯେଉଁ ଶ୍ରଦ୍ଧା ଓ ସହାନୁଭୂତି ଦର୍ଶାଇଛନ୍ତି ମୁଁ ତାହା ପାଇବାର ଯୋଗ୍ୟ ପାତ୍ର ହୁଏଁ— ଏହା ହିଁ ମୋର ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ।।ଇତି।।

ଆପଣଙ୍କର

*ଶ୍ରୀ ହରେକୃଷ୍ଣ ମହତାବ*

ଠିକଣା :-

**ଶ୍ରୀ ବୈଷ୍ଣବ ଚରଣ ଦାସ, D. I. G. Police**

**ସମ୍ବଲପୁର ।**

Lt. col B. K. Das (Retd)
Adviser, Union Public Service Commission
&
Chief Patron for life,
GEORGIANS ASSOCIATION, India (Regd)

2 Malcha House
23/24 S. P. Marg
New Delhi - 110021

20th. March, 1996

ମୋର ପରମସୌଭାଗ୍ୟ, ଭୂତପୂର୍ବ ଶ୍ରୀ ବୈଷ୍ଣବ ଚରଣ ଦାସ, ଆଇ. ପି. ଓଡ଼ିଶାର ଭୂତପୂର୍ବ ଆଇ. ଜି. ପୁଲିସଙ୍କ ସହ ମୋର ଅନୁଭୂତିର ପଦେ ଅଧେ ଲେଖିପାରିଛି । ଶ୍ରୀ ବି. ସି. ଦାସ (ବୈଷ୍ଣବ ଭାଇ) ଆମର ଘନିଷ୍ଠ ନିକଟ ସମ୍ପର୍କ - ତାଙ୍କ ସ୍ତ୍ରୀ ଶ୍ରୀମତି ବୀଣାପାଣି ଦାସ (ବୀଣାଦେଈ) ମୋର ଧର୍ମପତ୍ନୀ ହେମନ୍ତ କୁମାରୀ (ହେମ)ର ବଡ଼ ଭଉଣୀ, ବୈଷ୍ଣବଭାଇ-ବୀଣାଦେଈଙ୍କ ନିକଟ ସମ୍ପର୍କରେ ମୁଁ ଆସିଲି ପ୍ରାଏ ପଚାଶ ଷାଠିଏ ବର୍ଷ ଧରି, ଯେତେବେଳେ  ମୋର ସ୍କୁଲ ଓ କଲେଜର ଅନ୍ତରଙ୍ଗ ବନ୍ଧୁ ଓ ଭାଇ ପୂର୍ଣ୍ଣଚନ୍ଦ୍ର (ପି.ସି:-କୁନି) ଓ ମୁଁ ଏକାସାଙ୍ଗରେ ପଢୁଥିଲୁ ବାଲେଶ୍ୱର, କଟକ, ପାଟନା ଓ ବିଲାତରେ । ସେ ଦିନରୁ ଆମ ଦୁଇ ଘର (ପି.ସିର ବାପା ଓ ମୋର ଶଶୁର ରାୟସାହେବ ଶ୍ରୀସୂର୍ଯ୍ୟମଣି ଦାସ(ଜଜ୍) ଓ ମୋ ବାପା ଶ୍ରୀ କୁଞ୍ଜବିହାରୀ ଦାସ ବେଙ୍ଗଲ, ବିହାର ଓଡ଼ିଶାର ତତ୍‌କାଳୀନ ପୁଲିସ ଅଫିସର କଲିକତାରେ ଓ ପରେ ଜମିଦାର) ଗୋଟିଏ ଘର ଭାବରେ ସପୃକ୍ତ ଥିଲେ ।

ବୈଷ୍ଣବଭାଇଙ୍କର ଲେଖାଗୁଡ଼ିକ (ତାଙ୍କର ଉପନ୍ୟାସ ''ମନେ ମନେ'' ''ବାସନ୍ତୀ'' ଉପନ୍ୟାସର ଏକ ଅଧ୍ୟାୟ, ତାଙ୍କର ଅନେକ ଗଦ୍ୟ, ପଦ୍ୟ କବିତା ପ୍ରଭୃତି) ପଢ଼ି ମୁଁ ଯାହା ଆନନ୍ଦ ପାଉଥିଲି କହି ହେବ ନାହିଁ । ସେ ଥିଲେ ଲେଖକ କବି, ସଙ୍ଗୀତଜ୍ଞ, ପାଠ ଖେଳରେ ପ୍ରବୀଣ । ସବୁ ପ୍ରକାର ପଶୁପକ୍ଷୀ ଶିକାରରେ ଦକ୍ଷ, ତାଙ୍କ ପୁଲିସ କାମରେ ସମର୍ଥ, ଇତ୍ୟାଦି ଇତ୍ୟାଦି । କଣ ସେ ନ ଥିଲେ ? ସେ ହେଲେ ମୋର ସେଦିନୁ ଜୀବନର ଆଦର୍ଶ । ମୋର ଜୀବନଟା ତାଙ୍କରି ମହତ ଉଦାହରଣ ଉପରେ ଗଢ଼ିଲା । ମୁଁ ଯଦି ଗୋଟିଏ ନାଟକ (ପ୍ରେମ ଲତାର ଭୁଲ) ଲେଖିପାରିଲି ତାଙ୍କରି ଆଦର୍ଶ ପ୍ରେରଣାରେ, ମନେ ପଡୁଛି ମୋ ନାଟକଟି ୧୯୪୪ରେ ଅନ୍ନପୂର୍ଣ୍ଣା ଥିଏଟର୍‌ସ କଟକ ରଙ୍ଗମଞ୍ଚରେ ଅଭିନୀତ

ହେଉଥିଲା - ମୋତେ ଯେତେବେଳ ବୈଷ୍ଣବଭାଇ ରଙ୍ଗମଞ୍ଚରେ ଫୁଲମାଳ ପିନ୍ଧାଇଥିଲେ ସମସ୍ତଙ୍କ ସାମନାରେ । ମୁଁ ତାଙ୍କର ଆଶୀର୍ବାଦ ପାଇଥିଲି ତାଙ୍କର କମଳ ଚରଣରେ ମୋର ଆନନ୍ଦାଶ୍ରୁ ବୁହାଇ ।

ତାଙ୍କର ଉଦାରତା, ସ୍ନେହ, ଶ୍ରଦ୍ଧା, ସହିଷ୍ଣୁତା ଓ ସବୁପ୍ରକାର ସ୍ୱଭାବ, ଚାଲିଚଳଣ, ବ୍ୟବହାର କଥା ମନେ ପଡ଼ିଲେ ମୁଁ ଅନେକ ସମୟରେ ଭାବେ, ମା ଭବାନୀଙ୍କର ସବୁ ମୂର୍ତ୍ତି, ବୁଦ୍ଧି, ଶକ୍ତି, ଦୟା, କ୍ଷମା, ଶାନ୍ତି, ଶ୍ରଦ୍ଧା, ତୁଷ୍ଟି ଇତ୍ୟାଦି ତାଙ୍କରି ପାଖରେ ଥିଲା ଠୁଳ ହୋଇ । ତାଙ୍କର ମହତ୍ୱର ଉଦାହରଣ ଦେବାପାଇଁ ବସିଲେ ଗୋଟିଏ ପର୍ବ ଓ ଯୁଗ ବିତିଯିବ ।

ତେବେ ମୁଁ ଗୋଟିଏ ଦୁଇଟି ଘଟଣା ସମସ୍ତିଙ୍କୁ ନଜଣାଇ ରହିପାରି ନାହିଁ । ମିଲିଟେରିରେ ଥିବାବେଳେ ଥରେ ଛୁଟିରେ ତାଙ୍କ ପାଖରେ ଦିନେ ପୁରୀରୁ କଟକ ଯାଇଥିଲି, କଟକରୁ ଫେରିଲି ପୁରୀ ତାଳଚେର ଗାଡ଼ିରେ - ପହଞ୍ଚିଲି ତାଙ୍କ ଏସ୍.ପି. କୋଠିରେ ରାତି ଦୁଇଟାରେ, ଚୁପକରି ମୁଁ ମୋ ବିଛଣାରେ ଯାଇ ଶୋଇ ପଡ଼ିଲାବେଳେ ତାଙ୍କର ଗମ୍ଭୀର ସ୍ୱର ଶୁଣିଲି ''ବେଶ ଭଲ ଲୋକ ତମେ ଶୋଇ ପଡ଼ିଲଣି- ଆମେ ଅପେକ୍ଷା କରିଛୁ ଖାଇବା ପାଇଁ, ତମ ଆସିବା ପରେ ।'' ତାପରେ ଆମର ଖାଇବା ଆରମ୍ଭ ହେଲା । ଖାଇବାରେ କଣ ନଥିଲା- ମାଛ, ମାଂସ ଓ ସବୁ ପ୍ରକାର ତାଙ୍କର ଘରର ରାନ୍ଧୁଡ଼ା ଖାନା ।

ଦିନେ ମନେ ପଡୁଛି ମୁଁ ଆସି ପହଞ୍ଚିଲି ତାଙ୍କ ଘରେ, ସେଦିନ ସେ ଦୁଇ ପ୍ରାଣୀଙ୍କୁ ଛାଡ଼ି କେହି ନ ଥିଲେ । ଅସାଧାରଣ, କାରଣ ପ୍ରତିଦିନ ଦଶ ପନ୍ଦର ଲୋକଙ୍କର ସମାଗମ, ଖାଇବା ପିଇବା ଚାଲିଥାଏ ପ୍ରତିଦିନ ବର୍ଷବର୍ଷ ଧରି । ଦେଖି ମୁଁ ଭାବିଲି କିଛି ଅସାମାନ୍ୟ ଘଟିଛି, ପଚାରିବାରେ କହିଲେ ଦୁହେଁ ବଡ଼ କରୁଣ ସ୍ୱରରେ, ''ଆମକୁ ବୋଧହୁଏ ସମସ୍ତେ ଭୁଲି ଗଲେଣି '' ।

ମନେ ପଡୁଛି, ଦିନେ ବରଷା ହଉଥିଲା, ଆମେ ବସି ଗପସପ କରୁଥିଲୁ । ତାଙ୍କର ଚାକର 'ହରି' (ଯେ ପ୍ରଥମେ ଚୋରି ଅଭିଯୋଗରେ ଜେଲ ଯାଇଥିଲା ତାକୁ ରଖିଥିଲେ ଘରେ ତା'ର ସ୍ୱଭାବ ବଦଳେଇବା ପାଇଁ) ଯେତେବେଳେ ଚା ଆଣିଲା ତାକୁ ଦେଖି ହସି ହସି ସେ ଗୀତ ଗାଇଲେ :-

''ବରଷା କାଳରେ ହରି, କିମ୍ବା କଲ ଛତା ଚୋରି,
(ପୁଣି) ଚୋରିକଲେ ଜେଲଖାନା ଯିବ ନ ଆସିବ ଫେରି ।''

ତାଙ୍କର ନୀରବ ଉପହାସ, ମନ୍ତବ୍ୟ, କଥାବାର୍ତ୍ତା ସମସ୍ତଙ୍କ ପ୍ରତି ଉଦାରତା ଇତ୍ୟାଦି ବିଷୟରେ ଭାବିଲେ ମୁଁ ବେଳେବେଳେ ଭାବେ ସେପରି ଲୋକ କେମିତି ଏ ଦୁନିଆକୁ ଆସିଲେ । ସେ ସବୁ ବିଷୟରେ ମୋ ଆଖିରେ ଦେବତା ଭଳି ମୋ ଜୀବନଟା ତାଙ୍କର ସବୁ ଚାଲିଚଳଣ, ସ୍ୱଭାବ ଓ ଆଦର୍ଶରେ ଗଢ଼ା, ମୁଁ ଇଂରାଜୀରେ ଅନର୍ସ ନେଲି କଲେଜରେ କାରଣ ତାଙ୍କର ଥିଲା ଇଂରାଜୀ ଅନର୍ସ, ଅରଗେନରେ ଗୀତ ଗାଇବାକୁ ଚେଷ୍ଟାକଲି କାରଣ ସେ ଥିଲେ ଅରଗେନ ବଜାଇବାରେ ଧୁରନ୍ଧର । ଲେଖିଲି ନାଟକ, କବିତା ପ୍ରଭୃତି ତାଙ୍କର ଆଦର୍ଶ ପ୍ରେରଣାରେ, ଶିକାର କଲି ତାଙ୍କରି ଆଦର୍ଶରେ, ତାଙ୍କ ଦସ୍ତଖତ ନକଲରେ ମୋ ଦସ୍ତଖତ କଲି— ଓ କରୁଛି । ତାଙ୍କ କଥା ଭାବିଲେ ମୋର ମନେ ପଡୁଛି :-

''ତ୍ୱମେବ ମାତା ଚ ପିତା ତ୍ୱମେ ବ,
ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ
ତ୍ୱମେବ..... ସର୍ବ ଦେବଦେବ ।''

ତାଙ୍କ ଗୁଣ ଆଉ କେତେ ଗାଇବୁ ଆମେ- ହେମ ଓ ମୁଁ ଆମର ଏହି ଜୀବନ ସନ୍ଧ୍ୟାରେ ? ସେ ଯେଉଁଠି ଥାଆନ୍ତୁ, ତାଙ୍କ ଚରଣରେ ଆମର କୋଟିକୋଟି ପ୍ରଣାମ । ତାଙ୍କ ଲେଖାଗୁଡ଼ିକୁ ଯେଉଁ ସାହିତ୍ୟ ଏକେଡେମି ସମ୍ମାନ ଦଉଛନ୍ତି ଆଜି ତାଙ୍କୁ ମଧ୍ୟ ଆମର ଶତ ଧନ୍ୟବାଦ ସହ ପ୍ରଣାମ । ଶ୍ରଦ୍ଧାମୟୀ ବୀଣାଦେଈଙ୍କୁ ଆମର ଜୁହାର ଓ ଉପରେ ଜୁହାର ତାଙ୍କ ପ୍ରିୟ ପିଲାପିଲିଙ୍କୁ ଆମର ଅଶେଷ ସ୍ନେହ ଓ ଆଶୀର୍ବାଦ ରହିବ ଚିରଦିନ । ଆମର ଶେଷ ଆକାଂକ୍ଷା ରହିଛି ଏ ଦୁନିଆ ଛାଡ଼ିବା ପରେ ଆମର ଦେବତୁଲ୍ୟ ସ୍ୱର୍ଗୀୟ ବୈଷ୍ଣବ ଭାଇଙ୍କର ଚରଣ ଦର୍ଶନ କେଉଁଠି ମିଳିବ କି ? ଆଶାରେ ଭାସି ଚାଲିଛୁ ।।

*(ବସନ୍ତ - ବି. କେ.)*

"ମନେ ମନେ" ପ୍ରେମିକପ୍ରେମିକାମାନଙ୍କର ପାଠୋପଯୋଗୀ ଖଣ୍ଡିଏ ଉଚ୍ଚଧରଣର ଓଡ଼ିଆ ଉପନ୍ୟାସ । ଏହା ଶ୍ରୀଯୁକ୍ତ ବାବୁ ବୈଷ୍ଣବ ଚରଣ ଦାସ ଏମ୍. ଏ. ଙ୍କ ଦ୍ୱାରା ପ୍ରଣୀତ । ଏଥିରେ ଭାଷାଭାବର ଅନୁରୂପ ଏବଂ ନାୟକ ନାୟିକାମାନଙ୍କର ଉପଯୋଗୀ ହୋଇଅଛି ।

ପ୍ରେମ ମନୁଷ୍ୟର ସହଜ ଏବଂ ପ୍ରତ୍ୟକ୍ଷ ଭାବରେ ଅସୀମ ସୁଖର ଜନ୍ମଦାତା । ମାତ୍ର ନରଶାସିତ ସମାଜ ଏକ କୃତ୍ରିମ ବସ୍ତୁ । ମାନବ ପ୍ରକୃତିତ ସୁଖଲିପ୍ସୁ ଏବଂ ତାହାର ହୃଦୟ ପ୍ରେମପ୍ରତି ସ୍ୱତଃ ଆକୃଷ୍ଟ । କୃତ୍ରିମ ସମାଜ ନରସମୂହର ସୁଖର ନିୟାମକ ହୋଇ ପ୍ରତ୍ୟେକ ମାନବକୁ ଏକପ୍ରକାର ସସୀମ ସୁଖ ଆଣି ଦେଉଥିବାରୁ ତାହା ତାହାର ପ୍ରେମର ମଧ୍ୟ ନିୟାମକ ହୋଇଅଛି । ଏହି କାରଣରୁ ସମାଜର ନିୟମାଧୀନ ମାନବ ପ୍ରେମର ପୂର୍ଣ୍ଣାନନ୍ଦ ଉପଭୋଗ କରି ପାରିବାରୁ କଠିନ । ତାହାର ଜୀବନ ସନ୍ତତଃ ସୁଖଦୁଃଖମୟ ।

"ମନେ ମନେ" ଉପନ୍ୟାସର କନକ ଏବଂ ଗୌରୀ ଉଭୟେ ଅର୍ଦ୍ଧଶିକ୍ଷିତା ହେଲେହେଁ ସାମାଜିକ ଆଦର୍ଶ ନାରୀ, ମାତ୍ର ନୀଳୁବାବୁ ତଥା ନିଧିବାବୁ ଉଚ୍ଚଶିକ୍ଷା ଲାଭ କରିଥିଲେ ହେଁ ସାମାଜିକ ଆଦର୍ଶ ପୁରୁଷ ନୁହନ୍ତି ।

ଐଶ୍ୱରିକ ପ୍ରେମ ହିଁ ଆଦର୍ଶ ଅଖଣ୍ଡ ପ୍ରେମ ଏବଂ ନିରବଚ୍ଛିନ୍ନ ସୁଖର ଆଧାର । ଅତ୍ର ଉପସ୍ଥିତି କ୍ଷେତ୍ରରେ ଏଥିର ଆଲୋଚନା ଅନାବଶ୍ୟକ ।

ମୁଁ ଏହି ଉପନ୍ୟାସ ଖଣ୍ଡିକ ପାଠକରି ପ୍ରଚୁର ଆନନ୍ଦ ଉପଭୋଗ କରିଅଛି ଏବଂ ଆଶାକରେଁ ଗ୍ରନ୍ଥକାର ମହାଶୟ ଅଧିକ ସଂଖ୍ୟକ ଉପନ୍ୟାସ ଲେଖି ଉତ୍କଳର ଅନୁର୍ବର ଔପନ୍ୟାସିକ ସାହିତ୍ୟକୁ ଉତ୍କୃଷ୍ଟ ଫଳପୁଷ୍ପରେ ସୁଶୋଭିତ କରିବେ । ମୁଁ ଈଶ୍ୱରଙ୍କ ନିକଟରେ ଗ୍ରନ୍ଥକାରଙ୍କର ଦୀର୍ଘାୟୁ କାମନା କରୁଅଛି ।

*ଶ୍ରୀ ମଧୁସୂଦନ ଦାଶ*

ତା- ୨୦-୧୦-୨୭

ତବ ଦୟା ବଳେ ସିନା ଏ ଦୀନ
ଏଭଳି ପଦକୁ ହେଲା ଭାଜନ
ଯଦି ତବ ଦୟା ମୋରେ ନଥାନ୍ତା
ମୋ ଦୁରାବସ୍ଥା କେ ବର୍ଣ୍ଣି ପାରନ୍ତା ।

ଦୀନ ବନ୍ଧୁ ହୋଇ ଦୀନବନ୍ଧୁ ନାମ
ବହିଛନ୍ତି ଏକା ସିନା ପରମବ୍ରହ୍ମ
ସେ ଦୀନବନ୍ଧୁଙ୍କ ମୂର୍ତ୍ତିକୁ ସାକ୍ଷାତେ
ଦେଖୁଛନ୍ତି ଦୀନେ ତବ ମୂର୍ତ୍ତି ମଧ୍ୟେ ।

ଥାଉ ସେହି ଦୀନ ଜନଙ୍କ ଭଣ୍ଡାର
ପୂରି ତବଠାରେ ପ୍ରଭୋ ନିରନ୍ତର
ପାଆନ୍ତୁ ସର୍ବଦା ସର୍ବେ ହୋଇ ତୋ
କରନ୍ତୁ କାମନା ତବ ଦୀର୍ଘାୟୁଷ ।

ଏ ଅଧମ ହୀନ ଦୀନଜନ ଦୀନ
କି ଦେଇ ପୂଜିବ ତବ ଶ୍ରୀଚରଣ
ତବ ସ୍ନେହ ଦୟା ଉପକାର ପାଇଁ
କି ଅବା ଜଗତେ ଉପମା ଅଛଇ ।

ଜାଣି ବା ନ ଜାଣି କରିଥିଲେ ଦୋଷ
କ୍ଷମା କରିବା ପାଇଁକି କରେ ଆଶ
ତବ ଶ୍ରୀଚରଣେ ତଳେ ଦୀନ ମଥା
ରଖି ସର୍ବଦା ହରୁ ସର୍ବ ବ୍ୟଥା ।

ତବେ ସଦା ସାହା ଥାନ୍ତୁ ଭଗବାନ
ତବ କୀର୍ତ୍ତିଗାଥା ଦୂ ଦିନୁ ଦିନ ।

*ମୋର ଭୂମିଷ୍ଠ ପ୍ରଣାମ ନେବେ, ମାମା ମଧ*
*ଆପଣଙ୍କ ଶ୍ରୀପଦସେବକ ଶ୍ରୀ ହୃଦାନନ୍ଦ,*
*ମେଢେଙ୍କାମୁଣ୍ଡା ଥାନା, ସମ୍ବଲପୁର, ୨୩.୧୧.୪୨ ।*



ସ୍ୱର୍ଗତଃ ବୈଷ୍ଣବ ଭାଇଙ୍କ ବିଷୟରେ ମୁଁ କ'ଣ ଲେଖିବି ବୁଝିପାରୁନାହିଁ । ସେ ଥିଲେ ଅଜାତଶତ୍ରୁ । ତାଙ୍କର ଦୀର୍ଘ ପୃଥୁଳକାୟ ଓ ଅସାଧାରଣ ଧୀଶକ୍ତି ପୋଲିସ୍ ଚାକିରି କ୍ଷେତ୍ରରେ ସୁନାମ ଅର୍ଜନ ପାଇଁ ସହାୟତା କରିଥିଲା ।

ସେ ଥିଲେ କବି, ଲେଖକ । ତାଙ୍କର ବହୁ କବିତା ଓ ଉପନ୍ୟାସ ପ୍ରକାଶିତ ହୋଇଛି । ତାଙ୍କ ମଧ୍ୟରେ ପୂରି ରହିଥିଲା ମାନବିକତା । ତାଙ୍କର ସ୍ନେହ, ମମତା ଓ ଅମାୟିକ ବ୍ୟବହାରରେ ତାଙ୍କର ସହକର୍ମୀ ଓ ଅଧସ୍ତନ କର୍ମଚାରୀମାନେ ତାଙ୍କୁ ଘେରି ରହୁଥିଲେ । ସର୍ବୋପରି ସେ ଥିଲେ ଭୋଜନବିଳାସୀ । ନିଜେ ପର୍ଯ୍ୟାପ୍ତ ପରିମାଣରେ ଖାଇବେ ଓ ଅନ୍ୟକୁ ଖୁଆଇବେ ।

ବହୁ ଦିନରୁ ସେ ଚାଲିଗଲେଣି କିନ୍ତୁ ଯେଉଁମାନେ ତାଙ୍କ ସମ୍ପର୍କରେ ଆସିଛନ୍ତି ଏବଂ ବର୍ତ୍ତମାନ ବଞ୍ଚି ରହିଛନ୍ତି ସେମାନଙ୍କ ମୁହଁରେ ବୈଷ୍ଣବଭାଇଙ୍କର ପ୍ରଶଂସା ଶୁଣୁଛି ।

ବାସନ୍ତୀ ମହାପାତ୍ର

ସେ ନିଃସ୍ୱାର୍ଥପର ଓ ଧର୍ମବିଶ୍ୱାସୀ । ପୁରୀ ମନ୍ଦିରରେ ସେ ଦର୍ଶନ ପରେ ପ୍ରସାଦ ଖାଇବା ନିମିତ୍ତ ତାଙ୍କ ସହିତ ଯେତେ ଲୋକ ଥିବେ ସମସ୍ତଙ୍କୁ ତାଙ୍କ ବଢ଼ା ହୋଇଥିବା ପ୍ରସାଦ ସାମଗ୍ରୀକୁ ନିଜ ହାତରେ ଖୁଆଇ ଦିଅନ୍ତି ଓ ତାଙ୍କ ସ୍ତ୍ରୀଙ୍କୁ ମଧ୍ୟ ସେୟା କରିବାକୁ କହନ୍ତି । ତା ପରେ ସେଏପରି ବ୍ୟକ୍ତି ଥିଲେ ସମସ୍ତଙ୍କର ଭଲ ମନ୍ଦ ବା ଭୁଲ୍ ଠିକ୍ ଜାଣି ସୁଦ୍ଧା ସେମାନଙ୍କୁ କ୍ଷମା କରିଥାଆନ୍ତି ଓ ସେ କ୍ଷମା କରି ମଧ୍ୟ କିଛି କହନ୍ତି ନାହିଁ ।

ଭଗବତ୍ ବିଶ୍ୱାସ ତାଙ୍କର ଏତେ ଥିଲା ଯେ ପିଲାମାନଙ୍କର ଭବିଷ୍ୟତ ଉନ୍ନତି ପାଇଁ କିଛି ଭାବନ୍ତି ନାହିଁ । ସବୁ ଠାକୁରଙ୍କ ଉପରେ ଛାଡ଼ି ଦିଅନ୍ତି । ଏପରିକି ତାଙ୍କ ପୁତ୍ର (ମୁଁ) ବି.ଏ. ପରୀକ୍ଷା ସମୟରେ ସେ ଶିକାର ପାଇଁ ଯିବାକୁ ଇଚ୍ଛା କରିବାରୁ ସେ କହିଲେ ହଉ ତୁ ଯା । କିନ୍ତୁ ସେ କାହିଁକି ବାରଣ କଲେ ନାହିଁ । ସେଇଥିରୁ ଅନୁମାନ କରାଯାଏ ସେ ତା'ର ଭାଗ୍ୟକୁ ଭଗବାନ ନିୟନ୍ତ୍ରିତ କରିପାରନ୍ତି, କିନ୍ତୁ ତାଙ୍କର ଉପଦେଶ ଦବା ସମୀଚୀନ ନୁହେଁ । ଶିକ୍ଷା, ଚାକିରି ସବୁ କିଛି ଭଗବାନଙ୍କ ଉପରେ ଛାଡ଼ି ଦେଇଥିଲେ । ଯାହାର ଯାହା ଭାଗ୍ୟ ସେ ତାକୁ ଭୋଗ କରିବ ।

ତାଙ୍କ ଘରେ ଅତିଥି ସେବା ବିରାଟ ଭାବରେ ଦେଖିବାକୁ ମିଳେ । ସମସ୍ତଙ୍କୁ ଖାଇବାକୁ ଦବାପାଇଁ ମୁକ୍ତ ହସ୍ତରେ ଓ ଖୁସି ମନରେ ଆଗଭର ଥାଉ ସ୍ତ୍ରୀ ଲୋକମାନଙ୍କୁ ବିଶେଷ ଭାବରେ ସମ୍ମାନ ଦେଇଥାଆନ୍ତି ।

ରମେଶ ମିଶ୍ର

୧୭-୯-୯୦

# ସ୍ମୃତିପଥେ

*ବାପା (ବାପୁଙ୍କ) ବିୟୋଗରେ*
*୧୯୫୮, ନଭେମ୍ବର ମାସ*

ସ୍ମୃତିପଥେ ଚାଲେ ମୁହିଁ
ଫେରି ଚାହେଁ ଥର ଥର,
ଅତୀତ, ପଛୁ ଡାକେ
ଶୁଭେ ପ୍ରିୟ ଡାକ ବାର ବାର

କେଉଁ ପଥେ ଯାଇଛ ଚାଲି ବାପୁ !
ଛିଣ୍ଡାଇ ଏ ମାୟାର ବନ୍ଧନ,
ଖୋଜେ ମୋର ଏ କ୍ଷୁଦ୍ର ପରାଣ
ଖୋଜେ ଅବା ଆତ୍ମା ଆତ୍ମାର ସନ୍ଧାନ ।

ହେଲା କି ଅସହ୍ୟ ତବ ଜୀବନର ଭାର
ଗଲ କି ଅଭିମାନେ ଚାଲି ?
ନୀରବେ ପଡ଼ିଲ ଶୋଇ
ନୀରବର ଚିହ୍ନ ରଖିଗଲ ଖାଲି ।

ମଉଳି ନଥିଲ ଝରିଗଲ ଆହା
ମଉଳିଲା ତବ କାମନା ରାଶି,
ଅତୃପ୍ତ ବାସନା ରହିଗଲା ବାକି
ମଉନେ ତେଜିଲ ଏ ପୁରବାସୀ ।

ଚିତାର କୁହେଳିକା ଜୀବନେ ହାତ ଦେଲା,
ଆଶାର ସଉରଭ ଅକାଳେ ଝଡ଼ିଗଲା ।
ଶାନ୍ତି କି ପାଅ ବାପୁ ସେ ପୁରେ ଥାଇ ଏବେ,
ବିରହୀ ବିଧୁରା ପ୍ରଣୟିନୀ ତବ
ଏ ପୁତ୍ର ନୟନର ଧାରା ଢ଼ାଳଇ ଯେବେ ?

ଲେଖନୀର ଧାରେ ମୁଁ ଯେ
ଫୁଟାଇ ପାରୁନି ମରମର ବ୍ୟଥା ତିଳେ,
ପୁରୁଣା 'ବୀଣା'ର ଝଙ୍କାର ଶୁଣି ମନେ
ବିଷାଦ ଢମାଟ ବାନ୍ଧେ ମୋ ଅନ୍ତର ତଳେ ।

କୁହ ବାପୁ କୁହ -
ଯେ କବରୀ ସାଜିଥିଲ ତବ ଅନ୍ତରର ଫୁଲ ଦେଇ
ଯେ ଲଲାଟେ ଲେପିଥିଲ ମମତାର ସିନ୍ଦୁରର ଗାର
ଯେ ବୀଣା ଝଙ୍କାର ଥିଲା ହୃଦୟର ମହାମନ୍ତ୍ର ନେଇ
ସେ 'ବୀଣା' ଯାଇଛି କି ଭାଙ୍ଗି ?

ଦେଖ ବାପୁ ଦେଖ - କିପରି କାନ୍ଦି ଲୋଟି ଯାଉଛି ସେ
ତା'ର ମଥାକୁ ଫଟାଇ ଫଟାଇ ।

—ମଳି

# କବି

ଆଉ କି ଉଠିବ ନାହିଁ ?
ଶତ କଳ୍ପନା ରହିଗଲା ବାକି,
ବାସ୍ତବ ରୂପ ପାଇଁ ।

ନୀରବ କର୍ମୀ ହେ ସାଧକ, ଅନୁଭବ,
ନୀରବ ସ୍ୱପ୍ନେ ଦେଖୁଥିଲ କେତେ ଛବି
ନୀରବେ ପଡ଼ିଲ ଶୋଇ,
ସରବ ଏ ଧରା, ନୀରବେ ତେଜିଲ କାହିଁ ?

ଏ ଧରା ତିମିର, ଗଲା ଦୂରେ ଅପସରି,
କଲପନା ଲୋକ, ଦେଲା ଅନ୍ତର ଭରି
ଅସୀମର ସୁରେ ସୁରେ,
ସସୀମର ମାୟା ତେଜି ଚାଲି ଗଲ ଦୂରେ ।

ଉତ୍କଳ-ଭାରତୀ ବନ୍ଦନା ପାଇଁ ଦିନେ,
ତୋଳିଥିଲ ଯେଉଁ କଳ୍ପନା 'ମନେ ମନେ'
କବିତା-ସୁମନରାଜି,
ନ ହେଉଣୁ ମାଳା ଧୂଳିରେ ଝରିଲା ଆଜି ।

ଉତ୍କଳ ମାତା ଢାଳିଲା ଆଶିଷ ବାରି
କର୍ମକ୍ଷେତ୍ର ଗୌରବେ ଗଲା ଭରି,
ହେ କଳା-ସାଧନା ବ୍ରତୀ,
ରିକ୍ତ ଧରାରେ ତେଜି କି ପାଇଲ ଶାନ୍ତି ?

ସ୍ନେହ ଶ୍ରଦ୍ଧା ଡୋରେ ଯାରେ ରଖିଥିଲ ବାନ୍ଧି,
ସେ ସବୁ ପରାଣ ଆକୁଳେ ଉଠଇ କାନ୍ଦି,
ଅମୃତ ପାରାବାରେ,
ପ୍ରିୟଜନ ଡାକ ହଜେ ଦିଗନ୍ତ ପାରେ ।

ଶୋକ ସନ୍ତାପିତ ପରିବାର ଖୋଜେ ରାହା,
'ସୁନ୍' ଓ 'ସଙ୍ଗାତେ' କିଏ ହେବ ଆଉ ସାହା,
ନୀରବ ହେ ତବ 'ବୀଣା'
ଝଙ୍କାର ତାର ଶେଷ ହେଲା ତବ ବିନା ।

ତବ ସ୍ନେହେ କେବେ ଦେଇ ନାହିଁ ପ୍ରତିଦାନ,
ଶ୍ରଦ୍ଧାଞ୍ଜଳି ଦେଇ କରୁଛି ଭକ୍ତିଗାନ,
ବାଢୁଛି ପଦେ ପ୍ରଣତି,
ଦିଅ ହେ ଆଶିଷ ଏତିକି ମୋର ମିନତି

—ନେଲି

## ଆଜି

ସଲିଳ ସାଗର
ଆଜି ଶୁଷ୍କମରୁ (ଢାଇଛି ସହସା)    ଆସିଛି ତହିଁଗୋ ଦୁର୍ଗମ ବଢ଼ି
ଆଜି ଶୁଷ୍କଲତା ଢାଇଁଛି ସହସା    ଧରିଛି ତହିଁଗୋ ଅପୂର୍ବ କଢ଼ି !

(ଆଜି) ଯାଇଛି ଯୋଡ଼ିଗୋ ଏ ଦୀନବୀଣାର    ଖଣ୍ଡେ ଖଣ୍ଡେ ଛିଣ୍ଡା ଚୁମ୍ବକୀ ତାର
(ଆଜି) ବାଜିଲେ ବାଜନ୍ତି ବିକଳ-ରାଗିଣୀ    ବନ୍ଧ ଦୁଃଖରାଶି କରି ଉଦ୍‌ଗାର !

(ଆଜି) ନୈରାଶ୍ୟ-କଦମ୍ବ-ଶିରେ ତୁ କିଏରେ,    ବୁଣିଦେଉ ମଧୁମୁରଲୀତାନ
(ଆଜି) ବାସନା-ଅତଳ-ଯମୁନା ତରଙ୍ଗେ    ଭସାଇ ନେଉ ଏ ଦୁଃଖୀପରାଣ ?

ଆଜି, ଦୁଃଖଭରା ହୃଦୟ ମୋର ଗୋ    ଢ଼ାଳିବି କି କହ ତୋରି ଚରଣେ
ଆଜି, ଦୁଃଖଗଢ଼ା କୁସୁମକଳିକା    ଅର୍ପିବି କି କହ ତୋହ ବରଣେ ?

*ଉତ୍କଳ ସାହିତ୍ୟ, ଆଷାଢ଼, ୧୩୨୬ ରେ ପ୍ରକାଶିତ ।*



# BRITISH EMPIRE SERVICE LEAGUE

Patron-in-Chief- HIS MAJESTY THE KING
Patron - H.R.H. The Duke of Gloucester.

Grand President - Field-Marshal Lord Milne, G.C.B., G.C.M.G., D.S.O

## Uniting the Ex-Service Organizations of the British Empire

Hon. Treasurer :
Brig.-Gen Sir Archibald Home K.C.V.O., C.B., C.M.G., D.S.O.
Hon. Secretary :
Captain Donald Simson, C.B.E.

Telegrams :
"LOYALTY, WESDO, LONDON."
Telephone :
WELBECK 7453-4.

Empire Service.
Empire Settlement
Empire Trade.
"Our Empire" Magazine.

EMPIRE HOUSE.,
BLANDFORD STREET,
BAKER STREET,
LONDON, W.1

Our Ref. ..........................

Your Ref. ..........................

*With the Compliments*
*of*
*Field-Marshal Lord Milne,*
*G.C.B., G.C.M.G., D.S.O.,*
*Chairman Overseas Troops Entertainment Fund, 1937,*
*and*
*Grand President of the British Empire Service League.*

Dy. Supt. Babu Baisnab Charan Das

# କଥାକାର ବୈଷ୍ଣବ ଚରଣଙ୍କର ରଚନାବଳୀ

| | | |
|---|---|---|
| ଉପନ୍ୟାସ : | ମନେ ମନେ | ପ୍ରକାଶିତ |
| | ବଡ଼ ସାନ | ଧାରାବାହିକ ଭାବରେ 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ |
| | କିନ୍ତୁ | ଧାରାବାହିକ ଭାବରେ ପ୍ରକାଶିତ, ଏହି ଲେଖାର ପାଣ୍ଡୁଲିପି ମିଳୁନାହିଁ |
| ନାଟକ: | ପଦ୍ମାବତୀ | ମଞ୍ଚସ୍ଥ ହୋଇଛି |
| କ୍ଷୁଦ୍ରଗଳ୍ପ: | ଅଦ୍ୱିତୀୟା | 'ଗଳ୍ପ' ବିଶେଷାଙ୍କରେ, ନଭେମ୍ବର ୧୯୫୬ରେ ପ୍ରକାଶିତ |
| | ପାଇ ନ ପା | ଅପ୍ରକାଶିତ |
| | ଯୋଗ ବାରୁଣୀ | |
| | ମାଷ୍ଟ୍ରାଣୀ | 'ଡଗର'ରେ ପ୍ରକାଶିତ |
| | ପାଗଳା ରହିମ୍ | |
| ନାଟକ: | ପ୍ରତ୍ୟନ୍ତର | |
| କବିତା: | ଅଭିମାନେ | ଭଦ୍ରକ, ବୈଶାଖ ୧୯୧୯ |
| | ଆଶିଷମଣି | |
| | ଆଜି | |
| | ରାଧାଶ୍ୟାମ | |
| | ଧ୍ରୁବତାରା | କଟକ, ୧୭.୭.୧୯୨୦ |
| | ମୂଢ଼ | କଲେଜ ହଷ୍ଟେଲ, ୯.୨.୧୯୨୦ |
| | ନିରାଶା | କଟକ, ୧୭.୭.୧୯୨୦ |
| | ବଂଶୀ | ପାଟନା, ସେପ୍ଟେମ୍ବର ୧୯୨୧ |
| | ଆ - ଆରେ | ,, ,, ୧୯୨୧ |
| | ଆଜି ମୁଁ | ପାଟା, ୧୪.୧୦.୧୯୨୧ |

| | |
|---|---|
| ଶ୍ରୀ | ପାଟନା, ୧୯୨୧, ଅକ୍ଟୋବର |
| ଉଇଁଛି ସେ ଚାନ୍ଦ | ପାଟନା, ୨.୨.୨୨ |
| ବିଦାଏ | ଭଦ୍ରକ, ଫେବୃଆରୀ ୧୯୧୮ |
| ନୀଳ ଆଭାତଳେ | କଟକ, ୨.୨.୨୦ |
| ଖେଦ | କଟକ, ୧୭.୧.୧୯୨୦ |
| ଆଉ ନପାରିବ ଚାହିଁ | ରଥଯାତ୍ରା ୧୯୨୬, ପୁରୀ |

କି ଅଭାବେ ଏ ଭାବେ

କେ ସେ ?

ମୋର ହାତ ଧରି ବାଟ

ଭାରତ ଜନନୀ

ଆହେ ସୁନ୍ଦର ମନୋହର

ଚାତକ

କିଏ ନେବ ଏ ପଦ୍ମକଢ଼ି

ପ୍ରିୟ ସହି ସେ ବନ୍ଧା

ସେ ମତେ ମାଗୁଛି ନିତି

ଆଶା ଦେଇ ଯେବେ ଆଶାୟୀ ପ୍ରାଣେ

ନୀଳାଚଳ

ଆସ ହେ ରାସବିହାରୀ

ପତିତା

ଆମେ ଯିବା ଚାଲି

ଦଳ ବେହେରା ଯାଉଛି ଡାକି

ଓଡ଼ିଆ ପଖାଳ ଭାତ

କହିବି କଥା କାନେ କାନେ

ବିଦାପେ

ଉପନ୍ୟାସ: ‘ବାସନ୍ତୀ’ର୍ ୯ଜଣ ସବୁଜ କବି ମଧ୍ୟରୁ ସେ ଜଣେ ଥିଲେ ।